

ପଶ୍ଚିମା ପବ୍ଲିକେଶନ୍ସ

# ହାତପାପୁଲିରେ ଖରା

ଯଶୋଧାରା ମିଶ୍ର

ହାତପାପୁଲିରେ ଖରା (ଉପନ୍ୟାସ)

ଯଶୋଧାରା ମିଶ୍ର

---

ପ୍ରକାଶକ : ପଶ୍ଚିମା ପବ୍ଲିକେଶନ୍ସ, ୧୮୮୨, ନୟାପଲ୍ଲୀ, ଭୁବନେଶ୍ୱର-୧୨
ମୁଦ୍ରଣ : ତୁତୁଲି ପ୍ରୋସେସ୍ ଏଣ୍ଡ୍ ଅଫ୍‌ସେଟ୍, ଭୁବନେଶ୍ୱର
ପ୍ରଚ୍ଛଦ : ଅଶୋକ ମହାନ୍ତି
ପ୍ରଥମ ପ୍ରକାଶ : ୨୦୧୭
ମୂଲ୍ୟ :୨୭୦.୦୦

---

**Hata Papulire Khara**

Written by **Yashodhara Mishra**
Published by Paschima Publications,
1882, Nayapalli, Bhubaneswar
Odisha, PIN-751012, INDIA
1st Edition : 2017

**Rs : 270.00**

Email: paschima1990@yahoo.com
*For online purchase please visit :*
www.paschimapublication.com
www. odishaestore.com
www. odikart.com
www. odiabookbazar.com

ଭୋପାଳ ରହଣୀ କାଳରେ ମୁଁ ପାଇଥିବା ଅଗଣିତ ବନ୍ଧୁ, ସହକର୍ମୀ, ଛାତ୍ରଛାତ୍ରୀ ତଥା ସମଗ୍ର ସହରବାସୀଙ୍କ ଲାଗି, ଯେଉଁମାନଙ୍କ ସହିତ ମୋ ଜୀବନର ଅନେକ ବର୍ଷ, ଅଜସ୍ର ଘଟଣା ଓ ଅପରିମିତ ଅନୁଭୂତି ବାଣ୍ଟି ହୋଇଛି, ଆଉ ଯେଉଁମାନେ ସବୁଦିନ ମୋ ସାଥୀରେ ରହିଥିବେ, ମୁଁ ତାଙ୍କ ପାଖରେ ଥାଏଁ ଅବା ଦୂରରେ ।

# ଓଦାମାଟିରେ ପାଦଚିହ୍ନ

ପିଲାବୟସର ପ୍ରେମ, ଅନ୍ଧ କରେଇଦିଏ । ସମସ୍ତେ ଥରେ ଅଧେ ଭୋଗିଥାନ୍ତି ସେ ପାଗଳାମୀ । ହେଲେ ସଭିଏଁ ପହଞ୍ଚିଯାନ୍ତି ସେ ଓସାରିଆ ସଡ଼କରେ, ଯେଉଁଠି ସହଜ ସୁଧାର ହେଇ ଆଉ ସମସ୍ତେ ବାଟ ଚାଲୁଥାନ୍ତି । ହେଲେ କିଛି ଲୋକ ଥାଆନ୍ତି ଯିଏ ଓସାର ଫର୍ଚ୍ଚା ରାସ୍ତାରେ ପହଞ୍ଚି ସାରିଲା ପରେ ବି ପାଦଚଲା ବାଟର ଡାକରେ ଟାଣି ହେଇ ଯାଉଥାନ୍ତି ଥରକୁ ଥର । ପୁଣିଥରେ ଦେହହାତରୁ ଧୂଳିଝାଡ଼ି ଦେଇ ଏଣିକି ନାକସିଧା ଚାଲିବେ ବୋଲି ପଣ କରନ୍ତି ହୁଏତ ବା । ଚେଷ୍ଟା କରୁଥାନ୍ତି ପଛରେ ଛାଡ଼ିଆସିଥିବା ଛାପିଛାପିକିଆ ଦୁବଘାସ ମିଶା ଚଲାବାଟଟିକୁ ମନରୁ ଘଉଡ଼ି ଦେବାକୁ । ସଫଳ ହୋଇପାରୁନଥାନ୍ତି ।

ନିଜ ବାଲକନିରେ ବସିଚି ଫାତିମା ଏକୁଟିଆ । ଚାହିଁଚି ପୁରୁଣା ସହରକୁ । ଛାଡ଼ିଆସିଲା ଜୀବନକୁ । ଉପରଓଳିର ଖରା ନଇଁ ଆସୁଚି ସାମ୍ନା ବଡ଼ତାଲ୍‌ର ପାଣିଉପରେ । ଅଦୂରରେ ନୂଆ ମଲ୍‌ର ଉଦ୍‌ଘାଟନ ଲାଗି ସାଜସଜ୍ଜା ଚାଲିଚି ଏବେବି । ବନ୍ଧୁ ପରିଜନ ନିକଟ ଆତ୍ମୀୟଙ୍କଠୁ ଆରମ୍ଭ କରି ସହରର ସବୁ ଗଣ୍ୟମାଣ୍ୟ ଲୋକ, ମୁଖ୍ୟମନ୍ତ୍ରୀଙ୍କ ଯାଏ ଆସିବେ । ଘର ଲୋକେ ଲାଗିଚନ୍ତି କାମରେ । ହେଲେ ଫାତିମା ନିଜ ପାଗଳାମୀକୁ କ'ଣ କହିବ, ବାଟ ଦେଖୁଚି ନ ଆସିବା ଲୋକ କିଏ କାଳେ ଆସି ପହଞ୍ଚିଯିବ ବୋଲି । ସେତିକିବେଳକୁ ଭେଁ ଭେଁ ବୋବାଳି ଛାଡ଼ିଥିବା ଛୁଆକୁ ଆଣି ଫାତିମା କୋଳରେ କଚିଦେଉଚି ଝିଅ ପରବୀନ, ମାଆକୁ ଜିମା ଦେଉଦେଉ କହୁଚି, "ଅମ୍ମି, ତମ ଅସଲମ ଚାଚା ଆସିଚନ୍ତି, ଉପରକୁ ଆସୁଚନ୍ତି ଭେଟିବେ ବୋଲି ।" ତା'ପରେ ମୁହଁ ଚାପି ହସି କହୁଚି, "ବୁଢ଼ାର ବେଶ ଦେଖିବ କ'ଣ, ବାଳକୁ ଦାଢ଼ିକୁ ପୂରାପୂରି କଳା କରି ଡାଇ କରିଚି । ଏଣିକି ଆଉ ମେହେନ୍ଦୀ ରଙ୍ଗ ଚଳୁନି ତା'ର ।" ପରବୀନ ନିଜ ନୂଆ ଡ୍ରେସ୍‌କୁ ସଜାଡୁ ସଜାଡୁ ଚାଲିଯାଉଚି । ନାତୁଣୀକୁ ତୁନି କରାଉ କରାଉ ଆକାଶରେ ଉଡୁଥିବା ଗୁଡ଼ିକୁ ଆଙ୍ଗୁଠି ଦେଖାଇ ଫାତିମା କହୁଚି, "ହେଇ ଦେଖ୍ ଦେଖ୍ ଗୁଡ଼ି ଉଡୁଚି କେମିତି । ଡାକିଲୁ ତାକୁ, ଆ ଆ..."

ଫାତିମା ମନରେ ଦିଶିଯାଉଚି କାହିଁ କେବର କଥା । ସତେକି ଏଇ ଦେଖୁଚି ସେ ଦୃଶ୍ୟଟି । ଆକାଶରେ ଏମିତି ଗୁଡ଼ି ଉଡୁଥାଏ, ଲଟେଇ ହାତରେ ଦଳେ ପିଲା ପାଟିତୁଣ୍ଡରେ

ମାତିଥାନ୍ତି ସେଇ ବରଗଛ ତଳେ । ଚଉତରାରେ ଗୋଟିଏ ପିଲା କଡ଼ିକିଆ ହେଇ ବସିଥାଏ, କ'ଣ ଭାବିଲା ଭଳି ଅନେଇଥାଏ ଆକାଶଆଡ଼େ । ବରଗଛଟାର ଗୁଡ଼ାଏ ଡାଳ, ଓହଳ ଚାରିପାଖୁ କଟାହେଇଯାଇଚି, ତେବେବି ଅଛି ଗଛଟା, ଚଉତରା ସହିତ । ଆଖପାଖ ଆଉସବୁ କିନ୍ତୁ ବଦଳିଯାଇଚି । ସେଇ ପଥରବସା ଆବୁଡ଼ା ଖାବୁଡ଼ା ଗଳି ରାସ୍ତା, ପୋଚରା ନାଳ, ଭଙ୍ଗାରୁଜା ଘର ସବୁ ଆଉ ନାହିଁ । ଆଖି ପାଉନଥିବା ନୀଳ ହ୍ରଦ କୂଳ ପ୍ରଶସ୍ତ ରାଜପଥ ଉପରେ ହୋଟେଲ୍ ନବାବ ମଞ୍ଜିଲ୍, ସହର ଗୋଟାକରେ ଗୋଟିଏ ବୋଲି ଏଭଳି ସୌଖୀନ ହୋଟେଲ ଏଇଟି । ଏପାଖେ ଖଣ୍ଡମଣ୍ଡଳକୁ ଆବୋରି ଉଭା ହେଇଚି ନୂଆ ମଲ୍, ତା' କାଚକାନ୍ଥ ଗୋଟାଯାକରେ ସଞ୍ଜର ନାଲି ଖରା ଝଲମଲ ହେଉଚି । ନାଆଁଟା ମଲ୍ ନବାବ ମଞ୍ଜିଲ୍ ରଖାଯାଉ ବୋଲି ଫାତିମା ଚାହୁଁଥିଲା । ପୁଅ ଝିଅ ଦିହେଁ ମାନିଲେନି, କହିଲେ ନୂଆ ଧରଣର କିଛି ନାଁଟାଏ ବାଛିବା । ଆଜିକାଲି ନାଁ ସବୁ ଭିନ୍ନ ରକମର ହେଉଚି, ନବାବ ସାଙ୍ଗକୁ ପ୍ଲାଜା କି ଓ୍ୱାର୍ଲଡ୍ ଭଳି କିଛି ଗୋଟେ ଯୋଡ଼ିଦେଲେ ହୁଅନ୍ତା । ଫାତିମା କହିଲା, "ଦେଖୁଚି ମ, ଆଜିକାଲି ଦି ବଖୁରିଆ ଫ୍ଲାଟ୍ କେଇଟାର ନାଁରେ ଯୋଡ଼ାଯାଉଚି ପ୍ଲାଜା, ଭିଲ୍ଲା । ତାଙ୍କ ଦେଖାଦେଖି ଆମେ ବି କାମ କରିବା ବୋଲି କଥା ଅଛି ।" ଯା'ହେଉ କେତେ ବିଚାର ବିମର୍ଶ ପରେ ନାଆଁଟି ରଖାଗଲା ନବାବ ମଲ୍ । ଏଠିକା ଲୋକଙ୍କ ମନକୁ ପାଇବ, ନବାବଙ୍କ ସହର ବୋଲି କହନ୍ତି ପରା ୟାକୁ ।

ଏତେବେଳେ ତା' ନାଁ ଧରି ଡାକୁ ଡାକୁ ପଶିଆସିଲା କିଏ ଜଣେ ବାଲକନିକୁ । ଫାତିମା ଚିହ୍ନିଲା, ଅସଲମ ଚାଚା । ବୁଢ଼ା ହେଇଗଲେଣି, ତଥାପି ସେମିତି ଦାଢ଼ିଆ ଥୋଡ଼ି ଟେକି ଛାତି ଡେରି ଚାଲିବାର ଢଙ୍ଗ । ଫାତିମାର ସଲାମର ଉତ୍ତର ଦେଉଦେଉ ଗଦଗଦ କଣ୍ଠରେ କହିଲେ ସେ, "କୋଉଠି ଆସି ପହଞ୍ଚିଲାଣି ଏ ଜାଗାଟା, ଆରେ ବାପ୍ ରେ, କିଏ ବିଶ୍ୱାସ କରିବ, କ'ଣ ଥିଲା ଇଏ ବର୍ଷ କେତେଟା ତଳେ ଏଁ ପୋଚରା ନାଳ ନର୍ଦ୍ଦମା ଛଡ଼ା କ'ଣ ଥିଲା ଏଠି । ସରକାର ପାଣି ଉପରେ ସଡ଼କ ତିଆରି କରିଦେଲାଠୁ ସମସ୍ତଙ୍କର ଭାଗ୍ୟ ଖୋଲିଗଲା, ଆଉ କ'ଣ ।"

ଏଇ ଅସଲମ କ'ଣ ହଇରାଣ କରିଥିଲେ ନବାବ ମଞ୍ଜିଲ୍ ହୋଟେଲ୍ ତିଆରି ହେଲାବେଳେ । କେବେଠୁ ସେମାନେ ଦି'ଭାଇ କି ବ୍ୟବସାୟରେ ସିଙ୍ଗାପୁର ଯାଇସାରିଥିଲେ । ତାଙ୍କର ଏଠିକାର କେଇପୁରୁଷ ପୁରୁଣା ଘରର ଭାଗ ବଖରା ମାନ ତାଲା ପକେଇ ରଖିଥିଲେ । ହେଲେ ଅଧାଅଧି ଖାଲି ପଡ଼ିଥିବା କୋଠାଟା ହୋଟେଲ୍ ହେବ ବୋଲି କଥାଟା ତାଙ୍କ ଦେହରେ ଗଲା ନାହିଁ । କହିଲେ ଆମ ପୁସ୍ତୈନି ଘର, ବଂଶ କୁଟୁମ୍ବ ଏକାଠି ରହୁଚୁ । ଟଙ୍କା କେଇଟା ଲାଗି ଛାଡ଼ିଦେବୁ କେମିତି । ଫାତିମା ନିଜେ ଯାଇ ତାଙ୍କୁ ଭେଟିଥିଲା । ଚାଚା ବୋଲି ଡାକି କୋଉ ପୁରୁଣା ସମ୍ବନ୍ଧର ଦୁହାଇ ଦେଇ ନେହୁରା ହେଇଥିଲା । ତଥାପି କୋର୍ଟରେ

କେସ୍ ଠୁକି ଦେଲେ । ଫାତିମାକୁ ଜଣାଥିଲା ଯେ ସେଇ ହଓ୍ୱେଲୀରେ ରହୁଥିବା ତଥାକଥିତ ଗୋଟିଏ କୁଟୁମ୍ବର ଲୋକେ ଭାଗ ଭାଗ ହେଇ ସାରିଥିଲେ, ଅନେକଙ୍କ ଭିତରେ ଯା ଆସ କଥାବାର୍ତ୍ତା ସୁଦ୍ଧା ନଥିଲା । ଯେତିକି ଖର୍ଚ୍ଚାନ୍ତ କଲେ, ହଇରାଣ କଲେ ତା'ଠୁ ବେଶୀ ।

ଫାତିମା ଚାକରକୁ ଚା' ଆଣିବାଲାଗି ଡାକ ଦେଲା । ଅସଲମ ଚମକ ଉଠିଲା ପରି ହେଇ କହିଲେ, "ଏଇ ପରା ତଳେ ଚା' ପିଇ ଆସିଲି । ଖାଲି ଟିକେ ଦେଖା କରିବି ତମ ସାଙ୍ଗେ ବୋଲି ଆସିଲି । କ'ଣ ନହେଇଚି ଏ ମଲ୍‌ଟା, ସିଙ୍ଗାପୁର ମଲ୍‌କୁ ସବୁ ଟକ୍କର ଦେବ ।"

ଟ୍ରେରେ ଦାମୀକା ଗିଲାସରେ ପାଣି ନେଇ ଚାକରାଣୀ ଆସିଲା । ଫାତିମା କହିଲା, "ନିଅନ୍ତୁ, ପାଣି ଟିକେ ନପିଇ ଯିବେ ନା ।"

ଗିଲାସଟା ହାତରେ ନେଇ ବୁଲେଇ ଦେଖୁଦେଖୁ ଅସମଲ କହିଲା, "ଏଇ ଗିଲାସ, ଭୋପାଲରେ ଦେଖିବାକୁ ମିଳୁଥିଲା କେବେ ? ମୁଁ ତ ପ୍ରଥମେ ଯାଇ ସିଙ୍ଗାପୁରରେ ଦେଖିଲି କ୍ରିଷ୍ଟାଲ୍ ଗ୍ଲାସ୍ । ଏଠି ଆମ ଆଖପାଖ ଲୋକେ କେମିତି ଫଟେହାଲ ହେଇ ରହୁଥିଲେ ମନେଅଛି ନା ?"

ଫାତିମା ଚାକରାଣୀକୁ କହିଲା, "ଯା, ଜଳଖିଆ ଟିକେ ଆଣ ଯା ।"

ଅସଲମ ହାତ ହଲେଇ ନାହିଁ କଲେ, କହିଲେ, "ଖାଲି ତମକୁ ଦେଖା କରିଯିବି ବୋଲି ଆସିଚି ବେଟୀ । ତମ ହୋଟେଲ୍, ତମ ମଲ୍ କଥା ସବୁ ଶୁଣି ସିଙ୍ଗାପୁରରୁ ଧାଇଁଆସିଚି ମୁଁ ଦେଖିବାକୁ, ବିଶ୍ୱାସ କରିବ ?"

ଫାତିମା କୋଳର ନାତୁଣୀର ପାପୁଲିରେ ଖେଳୁଖେଳୁ କହିଲା, "ସବୁ ସେଇ ଉପରବାଲାର ଦୟା ।"

"ହେଲେ ତମେ ନାଁ କମେଇଲ ଝିଅ, ତମ ବାପ ଦାଦା ଯାହା କରିନଥିଲେ, ତମେ ସେକଥା କରିଗଲ । ସାତପୁରୁଷରୁ ଶୁଖାଶୁଖା ଖାଇ ପେଟ ପୋଷିଥିଲେ ତମ ପୂର୍ବଜ, ଏବେ ତମେ ଆସି ନବାବଙ୍କଠୁ ଅଧିକରେ ପହଞ୍ଚିଗଲ । ହଉ ଆଲ୍ଲା ଭଲରେ ରଖନ୍ତୁ ତମକୁ ।"

ଜଳଖିଆ ଆସିଯାଇଥିଲା, ପ୍ଲେଟ୍‌ରୁ ଲୁଣିଭଜା ଚେବଉ ଚେବଉ ଅସଲମ କହିଚାଲିଲେ, "ଏଇ ତାଲ କୂଳଟା ସେମିତି କାଦୁଆ ଅସନା ପଙ୍କ ପଚପଚ ହେଇ ରହିଥାନ୍ତା ଯଦି, କ'ଣ ହେଇଥାନ୍ତା ? ପୋତାହେଲା, ଝୁପୁଡ଼ି ବସ୍ତିର ଗରିବ ଲୋକଙ୍କୁ ଉଠାଗଲା, ତା' ଉପରେ ସଡ଼କ ହେଲା, ତମର ଭାଗ୍ୟ ଖୋଲିଗଲା ନା ଆଉ କ'ଣ ?"

ତାଙ୍କ ମନର ବାମ୍ଫସବୁ ବାହାରିଯିବାକୁ ଦେଲା ଫାତିମା । ନାତୁଣୀ ସାଙ୍ଗେ ଖେଳିଲାଗିଲା କେବଳ । ପିଲାଟିର ହାତ ପାପୁଲିରେ ବାଲକନି କାନ୍ଥର ବେଟପଟି-ପର୍ଦ୍ଦା ଫାଙ୍କ ଦେଇ ଚେନାଏ ଗୋଲ୍ ଖରା ପଡୁଥିଲା, ସେ ତା' ଟିକି ପାପୁଲିକୁ ମୁଠା କରୁଥିଲା

ଖୋଲୁଥିଲା ଥରକୁ ଥର, ଧରିବାକୁ ଗଲାକ୍ଷଣି ତାକୁ ଚମକାଇ ଦେଇ ମୁଠା ବାହାରେ ଉଭାହେଉଥାଏ ଆଠଣି ଆକାର ଆଲୁଅଟି, ହାତ ଖୋଲିଦେଲେ ପୁଣି ଆସି ପାପୁଲି ମଝିରେ ପଡ଼େ । ଗାଲରେ ଲୁହ ଧାର ଶୁଖିନଥାଏ, ପିଲାଟି ଏଣେ ଖେଳ ନିଶାରେ କାନ୍ଦ ଭୁଲିଯାଇଥାଏ ।

ଅସଲମ ପ୍ଲେଟ୍ ଥୋଇ ଉଠିଲାବେଳକୁ ଫାତିମା କହିଲା, "ଘରେ ସମସ୍ତେ ଭଲ ଅଛନ୍ତି ତ ଗରୁ ? ଆପଣଙ୍କୁ ବି କ'ଣ କିଛି କମ୍ ଦେଇଚି ଉପରଓ୍ୱାଲା । ଯାହାକୁ ଯାହା ଦେବା କଥା ସିଏ..."

ତାକୁ କଥା ପୂରା କରିବାକୁ ନଦେଇ ଅସଲମ କହିଲେ, "ଆମେ ? ଆମେ ତ ଏଠି ରଜା ଲେଖେଁ ଥିଲୁ, ନବାବ ଥିଲୁ । ଆମ କଥା ଭିନ୍ନ । ଏଇ ଯେ ନବାବ ମଞ୍ଜିଲ୍, କାହାର ଥିଲା କହୁନା ?"

ଫାତିମା ଅଳ୍ପ ହସି କହିଲା, "ଆପଣଙ୍କର ଥିଲା । ସେଇ ନାଁ ତ ରହିଚି, ଖାଲି ଏ ହାତରୁ ସେ ହାତକୁ ଦେଉଥାଏ ନେଉଥାଏ ଆଲ୍ଲା ମିଆଁ ।"

ଯିବାକୁ ପାଦ ବଢ଼େଇ ଅସଲମ କହିଲେ, "ହଉ, ସେତିକି ଯେମିତି ମନେ ରହେ । ପାଣି ଉପରେ ଗାର ବୋଲି ଜାଣ, ଏଇ ଯୋଉ ସବୁ କାଣ୍ଡ କାରସାଦି କରି ଧନ କମେଇବା । ବଡ଼ଲୋକ ବୋଲି ଦେଖେଇହେବାକୁ ଡେଙ୍ଗୁରା ପିଟି ତାମସା ମଉଛବ କରିବା । ଆଜି ଅଛି କାଲି ନାହିଁ । ବାଲି ଉପରେ ପାଦଚିହ୍ନ, ହାବୁକାଏ ପବନରେ ଲିଭିଯାଏ ସବୁ ।"

ଏତେବେଳକୁ ତରବର ହେଇ ପଶିଆସିଲା ଟୋକାଟିଏ, ତଳେ କିଏ ଡାକୁଚନ୍ତି କହି ଅସଲମଙ୍କୁ ଡାକିନେଇଗଲା । ପଛରୁ ଫାତିମା ତାଙ୍କୁ ସାକୁଲେଇଲା ଗଳାରେ କହିଲା, "ପ୍ରୋଗ୍ରାମ ଦେଖିବାକୁ ରହିବେ ନିଶ୍ଚେ ଗରୁ, ରାତିରେ ଖାଇକି ଯିବେ ।"

ଯାଉଯାଉ ବୁଢ଼ା କହିଲେ, "ହଉ ରହିବି ଯେ, ବୟସରେ ବଡ଼ ବୋଲି କହିଗଲି କେତେକଥା, ମନେ ରଖିଥିବ ।"

ନିଜ ପାପୁଲି ମଝିରେ ନାତୁଣୀର କଅଁଳ କୁନି ପାପୁଲିକୁ ମୁଠାକରି ଖୋଲି ସନ୍ଧ୍ୟାର ନାରଙ୍ଗୀ ଖରାର ବୃତଟିକୁ ଧରିବାର ହଜେଇବାର ମିଛ ଖେଳରେ ଫାତିମା ବି ମିଶିଯାଇଥିଲା । ତାଆରି ଭିତରୁ ଗୁଣୁଗୁଣୁ ଉତ୍ତର ଦେଲା, "ମନେ ରଖିଚି । ବାଲି ଉପରେ ପାଦଚିହ୍ନ । ହାତ ପାପୁଲିରେ ଖରା ।"

ଅସଲମ୍ ବାହାରିଯାଇ ସିଡ଼ିରେ ଓହ୍ଲାଉଥିବାର ପାଦଶବ୍ଦ ଶୁଭୁଥିଲା । କୁନି ପାପୁଲିର ଖେଳରୁ ଫାତିମା ମୁହଁ ଟେକିଲା, ସେଇ ପାଦଶବ୍ଦ ଆଡ଼େ ଅନେଇ ଭାବି ଭାବି କହିଲା, "ହେଲେ ଖାଲି ବାଲି ଉପରେ କାହିଁକି ? ପଥର ଉପରେ ବି କାଳେ ପାଦଚିହ୍ନ ରହିଚି । ଅନ୍ତତଃ ଓଦାମାଟିରେ ଯଦି ପାଦଚିହ୍ନ ପଡ଼େ ?"

# ରୂପେଲୀ ପର୍ଦ୍ଦାରେ ନିଜ ଛବି

ନବାବ ମଞ୍ଜିଲ୍ ଥିଲା ଏଇ ଗଳିର ନାଆଁ । ପୁରା ସାହିଟା ଗୋଟିଏ ଘର, ଗୋଟିଏ ହଓ୍ୱେଲୀ । ସବୁ ସାହିଠୁଁ ଭିନ୍ନ । ଗୋଟିଏ ପାଖେ ଉଚ୍ଚ ପାଚେରୀ ଚାଲିଯାଇଚି ଏ ମୁଣ୍ଡରୁ ସେ ମୁଣ୍ଡ, ଆରପାଖରେ କିଛି ନାହିଁ ପ୍ରାୟ, ଢାଲୁହେଇ ବିସ୍ତୃତ ହ୍ରଦ ବଡ଼ାତାଲ୍‌ରେ ମିଶିଯାଇଚି ଯେଉଁ ଜମି, ସେଇଠି କୂଳେ କୂଳେ ଥିଲା କିଛି ଛୋଟମୋଟ ଦୋକାନ, ଝୁପୁଡ଼ି ବସ୍ତି, ଆବର୍ଜନା କୂଢ଼ । ବଡ଼ ରାସ୍ତାର ପୋଲପାଖରୁ ଗଡ଼ିଆସିଲେ ପୁରୁଣା ବସ୍ତିର ହାଉଯାଉ ଭିତରକୁ ଚାଲିଯାଇଥିବା ଅନେକ ଗଳିରୁ ଗୋଟିକରେ ଥିଲା ଫାଟିମାର ଘର, ଅନାମଧେୟ କେଇପୁରୁଷର ଭାଙ୍ଗିରୁଜି ପଡୁଥିବା ବଖରା କେଇଟି । ନଇଁଆସୁଥିବା ସଂଜ୍ଞ ଅନ୍ଧାରରେ ଆଜି ବି ଆଗଭଳି ଜକାଜକି ଦିଶୁଚି ଦୂର ସହରତଳି ବସ୍ତିସବୁ, ଯେଉଁଠିକି ଆଜିବି ନୂଆ ନଗରୀର ହାଲୋଳ ଛୁଇଁନାଇଁ ।

ଚାକରାଣୀକୁ ଡାକଦେଇ କହିଲା ଫାଟିମା । "ଯିବୁଟି ଦେଖିବୁ ଯା ମା' କୁଆଡ଼େ ଗଲା, କହ ଦୁଧ ବୋତଲଟା ଆଣି ଦେଇଯାଉ । ସାଙ୍ଗମେଳରେ ମାତିଥିବ ମୋତେ ଛୁଆଟାକୁ ଧରେଇଦେଇ..."

ଆକାଶର ଛାଇଆସୁଥିବା ସଞ୍ଜ ଲିଭେଇଦେଲାଣି ପାପୁଲିର ଖରାକୁ । ଅନ୍ଧାରକୁ ବେଖାତିର କରି ଉଡୁଚି ଗୋଟିଏ ଲାଇଟ୍ ଲଗା ଗୁଡ଼ି । ଜଳୁଚି ଲିଭୁଚି । ଲହରେଇ ଲହରେଇ ଖେଳୁଚି । ସେଇଟିକୁ ଆଙ୍ଗୁଠି ଦେଖାଇ ଫାଟିମା ତୁନି କରାଉଚି ନାତୁଣୀକୁ, "ହେଇ ଦେଖ୍, ଦେଖିଲୁଣି କେମିତି ଝକ୍‌ଝକ୍ ଗୁଡ଼ି । ଡାକିଲୁ ତାକୁ, ଆ ରେ ପତଙ୍ଗ୍, ମୋ' ହାତକୁ ଚାଲିଆ..." ପୁଣି ଭୁଲିଯାଉଚି କାନ୍ଦ ପିଲାଟି, ଆକାଶରେ ଗୁଡ଼ି ଦେହରେ ମିଟିମିଟି ହେଉଥିବା ନାଲି ସବୁଜ ଲାଇଟ୍‌କୁ ଦେଖି । ଆକାଶରେ ଗୋଟି ଗୋଟି କରି ଫୁଟୁଥିବା ତାରାଙ୍କୁ ଦେଖିଲାବେଳେ

ପୁଣି ଛୁଇଁଯାଉଚି ସେଇ କଥାମାନ ଆଜି ।

ଦିଶିଯାଉଚି କୋଉ ଗଲାଦିନର ଦୃଶ୍ୟଟିଏ । ସେଦିନ ଦଳଟିଯାକ ଫେରୁଥାନ୍ତି ମ୍ୟାଟିନି ଶୋ ଦେଖିସାରି । ଅପା, ମାଉସୀ, ପିଇସୀ, ସାଙ୍ଗଝିଅ ସବୁ ଏକାଠି ମିଶି ସିନେମା ଦେଖା ମଉଛବ । କିଛି ଏମିତି ସେମିତି ଫିଲିମ ନୁହେଁ ସିଏ । ଆଜିର ସିନେମାଟା ଥିଲା ଶୋଲେ । ସାହିର ମୁନ୍ନା ବ୍ଲାକ୍‌ରେ ଟିକଟ ଆଣିଦେଇଥିଲା, କହିଲା ଯା'ର ଚାରିଗୁଣ ଦାମରେ ବିକ୍ରି ହେଉଥିଲା, ଶସ୍ତାରେ ଆଣିଲି । ଜବୀନାର ବଡ଼ ଭାଇ ମୁନ୍ନା, ତା' ବେଗମ୍‌ର ପାଖେ ପାଖେ ଚାଲୁଥାଏ । କହୁଥାଏ, "ଶୋଲେ ସିନେମା ଜାଣ ଆମ ଭୋପାଳର ସିନେମା । ଜାବେଦ୍ ଭାଇ ପରା ଲେଖିଚନ୍ତି ସ୍କ୍ରିପ୍‌ଟ, ଆମରି ଜାବେଦ୍ ଭାଇ ।"

ସବନମ ପିଇସୀ କହିଲେ, "ହେଲେ ଏମିତି ଗପଟାଏ କାହିଁକି ଲେଖିଲା ଜାବେଦ୍, ପଚାରିବୁ ତ ତାକୁ । ଯିଏ ମରିବା କଥା ସିଏ ତ ମଲାନି, ଅମିତାଭ ବଚ୍ଚନକୁ ମାରିଦେବା କି ଦରକାର ଥିଲା ?"

ସିନ୍‌ଟା ମନେପକେଇ ପୁଣି ସୁଁ କିନି ଦୁପଟ୍ଟା କାନିରେ ଲୁହ ପୋଛିଲେ ସବନମ ଫୁଫୀ । ମୁନ୍ନା କହିଲା, "ଅମିତାଭଜୀଙ୍କ ଲାଗି ତ ଖାସ୍ କରି ରୋଲ୍‌ଟା ଲେଖିଲେ ଜାବେଦ୍ ଭାଇ । ଅମିତାଭଜୀ ଆମ ଭୋପାଳର ଜୋଇଁ କିନା, ଆରେ ଆମ ଜୟାଦିଙ୍କୁ ବାହା ହେଲେ ପରା ସେ ଏଇ ଗଲା ବର୍ଷ ।"

ତେଣୁ ଫରିଦା ଦିଦି କହିଲେ, "ହଁ ରେ ମୁନ୍ନା, ତୁ ଆଉ ମୋ' ଆଗରେ ସେସବୁ ବଢ଼େଇ କରନା । ଜୟା ଦି'ଙ୍କ ସାଙ୍ଗେ ପରା ସେଣ୍ଟ୍ରାଲ୍ ସ୍କୁଲକୁ ଯାଇଚି ମୁଁ ଏକାସାଙ୍ଗେ, ମୋ' ଉପର କ୍ଲାସ୍‌ରେ ପଢୁଥିଲେ । ସବୁଦିନେ ସ୍କୁଲ୍ ବସ୍‌ରେ ଦେଖା, ପ୍ରଫେସର କଲୋନୀରୁ ଚଢ଼ନ୍ତି ସେ । ତାଙ୍କ ବାହାଘରକୁ ଆମର କେତେ ସାଙ୍ଗ ଯାଇଥିଲେ, ମୁଁ ସିନା ଯାଇପାରିଲିନି ।"

ସବନମ ପିଇସୀ ପୁଣି ଦୋହରେଇଲେ, "ଆମ ସହରର ଜୋଇଁକୁ ଏମିତି ମରେଇଦେବା ତା'ହେଲେ କି ଦରକାର ଥିଲା ? ପୁଣି ଆମ ଜୟା ବିଚାରୀକୁ ଡବଲ ବିଧବା କରେଇଦେଲା ଜୀଣ । ସେ ଡହରା ବୀରୁକୁ ମରେଇଲାନି ଜାବେଦ୍ ?"

କଥା ନ ସାରୁଣୁ ତାଙ୍କ ସ୍ୱର ପୁଣି ଭାଙ୍ଗି ଭାଙ୍ଗି ଯାଉଥିଲା ।

"ଆରେ, ବୀରୁ ତମର ବି ଦୋଷ କଲା ଖାଲା ? କେଡ଼େ ଖୁସିବାସିଆ ପାର୍ଟ କରିଚି ଧରମେନ୍ଦର, ମତେ ତ ତାକୁ ସବୁଠୁ ଭଲ ଲାଗିଲା ।"

"ଅସଲ ଜମେଇଚି କିନ୍ତୁ ସୁରମା ଭୋପାଲୀ, ନା କଣ କହୁଚୁ ମୁନ୍ନା ? ଗୋଟିପଣେ ଆମ ଭୋପାଲୀ ବୋଲି ତ ଉଠେଇଆଣିଚି ।"

"ଆଉରି କିଛି ନା, ଏମିତି ଜୋକର ପରି କଥା କହନ୍ତି ସବୁ ଆମ ଭୋପାଳର

ଲୋକେ ? ବମ୍ବେଇଆ ବାଲା ତ ଖାଲି ଭାରୀ ବୁଦ୍ଧିଆ ?"

ଶୋଲେ ସିନେମା ତ ନୁହେଁ, ନିଜ ନିଜର ମୁହଁ ସତେକି ଦର୍ପଣ ଦେହରେ ଦେଖୁଆସିଥିଲେ ସମସ୍ତେ ।

ସନ୍ଧ୍ୟା ଓହ୍ଲେଇ ଆସୁଥାଏ ବଡ଼ ତାଲ୍ ଉପରକୁ, ମିଞ୍ଜିମିଞ୍ଜି ବତୀସବୁ ଦିଶିଆସୁଥାଏ ଏଠିସେଠି ହ୍ରଦ ଆରପାଖ ବସ୍ତି ମାନଙ୍କରୁ । ନୂଆନୂଆ ପିନ୍ଧୁଥିବା ବୁର୍ଖାର ପର୍ଦ୍ଦାଟା ମୁଣ୍ଡ ଉପରକୁ ଛାଟିଦେଇ ଥଣ୍ଡାପବନ ଶୋଷିନେଉଥାଏ ଫାତିମା । ଏ ସିନେମା ବିଷୟଟା ଆଉ ତାକୁ ସୁହାଉ ନଥାଏ । ସେତିକି ବେଳେ, ଫାତିମାକୁ କହୁଣୀମିଶା ଠାରରେ ଦେଖେଇଦେଲା ସାଙ୍ଗ ଜବୀନା, ତିନିଛକି ଗାସ୍ତା ବରଗଛ ଚଉତରା ଉପରେ ଏକାଟିଆ ହେଇ ବସିଚି ଟୋକାଟିଏ । କପାଳ ଉପରକୁ କେରାଏ ଝାମ୍ପୁରା ବାଳ, ସଞ୍ଜର ନାଲି ଆକାଶ ଆଡ଼କୁ ଅନେଇଚି । ଦଳର ପୁରୁଷ ଦି'ଜଣ ସେଇଠି ରହିଗଲେ ଗୁଡ଼ି ଉଡ଼ାଳିଙ୍କ ପାଖେ ।

ଜନାନା ଦଳ ଗଳି ବାଟକୁ ମୋହିଁବା ଆଗରୁ ଜବୀନା ଫୁସୁରୁ ଫୁସୁରୁ କହିଲା, "ଆହା, ଇଏ ତ ଖାଣ୍ଟି ବୀରୁ ନା କ'ଣ, କିଏ ମ ଏ ହୀରୋ... ।" ଶୁଣିବା ପହଞ୍ଚରେ ନଥିଲେ ବି ମୁଣ୍ଡାର ଆଖି ଫେରେଇ ରହିଁଲା । ଏଡ଼େବଡ଼ ଦଳଟା ଭିତରୁ ଫାତିମା ଆଖିରେ ହିଁ ସେ ଆଖି ମିଶିଯାଇଥିଲା । ମିଶି ବି ନଥିଲା ଠିକ୍, ତା' ଦୃଷ୍ଟି ଅଟକିଯାଇଥିଲା ଅଧା ଦେଖୁଥିବା ଅଧା ଭାବୁଥିବା ଭଳି, କିଛି ଗୋଟାଏ ଆଶ୍ଚର୍ଯ୍ୟ ଲାଗୁଥିବା ଭଳି, ଚିହ୍ନି ଅଚିହ୍ନା ବାରିହେଉନଥିବା ଭଳି ।

ଆଖି ଫେରେଇନେବା କଥା ମନେ ନଥିବା ଭଳି ଅବିକଳ ସେମିତି ଅନେଇଥାଏ ଫାତିମା ବି । ବଡ଼ ପିଇସୀ ଫାତିମାର ମୁହଁ ଉପରକୁ ବୁର୍ଖା ପର୍ଦ୍ଦାଟା ଫଟ୍‌କିନି ଟାଣିନେଇ କହିଲେ, "କେଡ଼େ ବେଆଦବ୍ ଟୋକା କିଏ ମ ଇଏ ।" ମନେ ଅଛି, ଚାପା ଚାପା ହସ ଓ କଳରୋଳ ଭିତରେ ଏଣିକି ବେପରୁଆ ଚାଲୁଚାଲୁ ସେମାନେ ବାଣ୍ଟି ହେଇଯାଇଥିଲେ ନିଜ ଗଳିର କବାଟ ମାନଙ୍କରେ ।

ପିଇସୀ କିନ୍ତୁ ଘରେ ପହଞ୍ଚିଲା ପରେ ବି ଥଣ୍ଡା ପଡ଼ିଲେନି । ଫାତିମାର ମାଆଙ୍କୁ କଥାଟା ବୟାନ କରୁକରୁ ଆଲଣାରେ ରଖିଦେଇଥିବା ବୁର୍ଖାଟାକୁ ପୁଣିଥରେ ଟାଣିଆଣି କହିଲେ, "ଭାବୀ, ଆଜି ଯାଉଚି ନାଲିଶ କରିବି ତା' ମାଆ ଆଗରେ, କରିମ ନବାବ ଘର ପିଲା ହେଇ ଏଡ଼େ ବଦତମିଜ ? ଡଗଡ଼ଗ ଅନେଇଚି ଝିଅଙ୍କ ମୁହଁକୁ ସମସ୍ତଙ୍କ ଆଗରେ ? ଶୁଣୁଚ ନା ଅମ୍ମି, କ'ଣ ହେଲା ଆଜି ?"

ତାଙ୍କ ବୁଢ଼ୀ ଅମ୍ମି ବାରଣ୍ଡା କଣରେ ବସି ପାନ ମଳୁଥିଲେ । ଜମା ନ ରାଗି ଓଲଟି କହିଲେ, "ହଉ ହେଲା, ନୂଆ ବୟସ ତ, ନଜର ଉପରେ ଅକ୍ତିଆର ଆସିନି । ତାଙ୍କ

ଖାନଦାନର ପିଲା ଆମ ଝିଅକୁ କେବେ ଖରାପ ନଜରରେ ଦେଖିବେନି ।"

ପିଇସୀଙ୍କର ରାଗ ଚଢ଼ିଗଲା । କହିଲେ, "କି ଖାନଦାନ ଆଉ ଅଛି ଯେ ତାଙ୍କର ? ଖାନଦାନ ନା ଆଉରି କିଛି ?"

ସେଇଠୁ କଥା ଯାଇ ମୁକ୍ତାର ଘର ସାଙ୍ଗେ କେଇ ପିଢ଼ୀ ଧରି ଚାଲି ଆସିଥିବା ସମ୍ପର୍କ ଆଡ଼କୁ ଗଲା । କେତେ ବଡ଼ ନାଁ କରା କରିମାବାଦ ନବାବଙ୍କ ଘରଲୋକ କୋଉଠୁ ଆସି କୋଉଠି ପହଞ୍ଚିଲେଣି ବୋଲି ଆହା ଚୁ ଚୁ କରାଗଲା । ଖାଉ ଖାଉ ଫାତିମାର ବାପା ବି ମିଶିଗଲେ ତାଙ୍କ ଗପରେ, କହିଲେ ତାଙ୍କ ପିଲାଦିନେ ନବାବ ମଞ୍ଜିଲ୍ ଭୋଜିଭାତ କଥା । ସ୍ତ୍ରୀଲୋକ ଖାଇଲାବେଳକୁ ବି ସେ ପାନ ଭାଙ୍ଗୁ ଭାଙ୍ଗୁ ଗପିଲାଗିଲେ, ବୁଢ଼ୀ ମାଆଙ୍କ ଲାଗି ପାନ କୁଟିଦେଲେ । ସଭିଏଁ କାମ ସାରି ଶୋଇବାକୁ ଯିବା ବେଳକୁ ବି ସେଦିନ କଥା ଛିଡ଼ୁ ନଥିଲା ।

ପିଇସୀଙ୍କର କୋଉ ପୁରୁଣା ଅଛିଣ୍ଡା କଥାଟାଏ ଥିଲା ବୋଧେ ମନ ଭିତରେ । ବଡ଼ଭାଇ ଶୋଇବାକୁ ଯିବାଯାଏଁ ସେ ଅପେକ୍ଷା କରିଥିଲେ ସତେକି, ସେହିକ୍ଷଣି କହିଲେ, "ତମେ କିନ୍ତୁ ସେ ଟୋକାକୁ ଫାତିମାର ପାଖ ପୁରେଇଦେବନି ଭାଭୀ, କହିଦେଉଚି । ଖାଲି ପାଚେରୀ ଦିଆ ହୱେଲୀଟା ସିନା ଅଛି ନାଆଁକୁ, ତାଙ୍କଠୁ ଆମେ ଆଉରି ଯଥେଷ୍ଟ ଭଲରେ ଅଛୁ ଏବେ ।"

ଫାତିମା କାନରେ ତାଙ୍କ କଥା କେଇପଦ କିନ୍ତୁ ଓଲଟି ପୁଷ୍ଟ କରିଚାଲିଲା ସେ ଚେହେରା ଟୋରିଟିକୁ, ଯାହାକୁ ସେଦିନ ସନ୍ଧ୍ୟାର ଖରା ଝଲସାଇ ଦେଇଥିଲା ସଭିଙ୍କ ଆଗରେ । ସବୁଦିନେ ଆଖିପିଛୁଳାକେ ପାହିଯାଉଥିବା ରାତିଟା ଯେ ଏମିତି ଲାଗେ ଆଖି କଷା ପଡୁନଥିବା ବେଳେ, ସେ ପ୍ରଥମକରି ଜାଣିଲା । ପରଦିନ ସ୍କୁଲଯିବା ବାଟରେ ଜବୀନାକୁ ଭେଟୁଭେଟୁ କାନରେ ପଚାରିଲା ଫାତିମା, "ସତକହିଲୁ, ସେ ତୋତେ ଧର୍ମେନ୍ଦର ପରି କେମିତି ଦିଶିଲା ? ମୋତେ ତ ଆଖି ଦିଇଟା ପୁରା ଲାଗିଲା ଅମିତାଭ ବଚ୍ଚନ ପରି ।"

ଜବୀନା ଆଶ୍ଚର୍ଯ୍ୟରେ ତାକୁ ଅନେଇଲା, "ମଲା, ଆଜିଯାଏ ତୁ ସେ ମୁକ୍ତାର ଟୋକାକୁ କେବେ ଦେଖିନଥିଲୁ କି ? ଏମିତି କହୁଚୁ ସତେକି ଶୋଲେ ଫିଲିମ୍‌ରୁ ସାକ୍ଷାତ୍ କିଏ ହିରୋ ଖସିଆସିଚି..."

# ଓଢ଼ଣୀତଳର ଦର୍ପ

ଇଏ ଯା ବର୍ଣ୍ଣିତ ହେଉଚି ତା' ହେଲା ଫାତିମାର କାହାଣୀ । କୁହାଯାଉଚି ମୋ' କଲମରୁ । ଫାତିମା ତା' କୈଶୋରର ଯୋଉ ବେଳଟା କଥା ମନେପକଉଚି, ବୋଧେ ଛଅସ୍ତରୀ ଆଡ଼ର ହେବ । ତେବେ ସେତେବେଳେ ମୁଁ ଫାତିମାକୁ ଆଉରି ଜାଣିନଥାଏ । ତା'ର କେତେବର୍ଷ ପରେ ଯେତେବେଳେ କଲେଜରେ ଫାତିମା ମୋ' ଛାତ୍ରୀ ଥିଲା, ଉଣେଇଶ ଅଶି ଏକାଅଶୀ ହେବ ବୋଧେ, ଆଖିରେ ପଡ଼ିଲା ଭଳି ଚେହେରା ଥାଏ ତା'ର । କ୍ଲାସ୍ ଭିତରକୁ ମୁଁ ଗୋଡ଼ ଦେଉଣୁ ତା' ମୁହଁଟି ଚମକି ଯାଏ କୋଉ ପଛ ବେଞ୍ଚରୁ । ଯାହାକିଛି ମୁଁ ପଢ଼ାଇଯାଏ ସେହିକ୍ଷଣି ଦର୍ପଣ ପରି ଫୁଟେ ସେ ମୁହଁରେ, କେବେ ଏକାଗ୍ର ଦୃଷ୍ଟିରେ, କେବେ ବା ସବୁ ଗ୍ରାହୀନେଉଥିବା ମୁଗ୍ଧ ଭାବଟିଏରେ । ଭଲ ପାଠ ପଢୁଥିଲା, କ୍ଲାସରେ ଚଟପଟ ଉତ୍ତର ଦେଉଥିଲା । ପ୍ରଶ୍ନ ପଚାରୁଥିଲା ଏମିତି ଯେ ତାଆରି ପ୍ରଶ୍ନ କଥା ଭାବିବାକୁ ପଡୁଥିଲା ମୋତେ କ୍ଲାସ ଲାଗି ପ୍ରସ୍ତୁତ ହେଲାବେଳେ । ତଥାପି ତା' ପାଠ ଲାଗି ଯେତେ ନୁହେଁ, ଆଉ କେତେଟା କଥା ଲାଗି ମୋର କ'ଣ ଅନ୍ୟ ସମସ୍ତଙ୍କ ଦୃଷ୍ଟିରେ ପଡୁଥିଲା ସେ ବେଶୀ । କଲେଜର କ'ଣ ସବୁ ପ୍ରତିଯୋଗିତା ଥିଲା ସେ କେଜାଣି, ଧାଁ ଦଉଡ଼ କରି ଖୁବ୍ କାମ କରୁଥାଏ । ମୋ' ଦାୟିତ୍ୱରେ ଥିଲା ପ୍ରୋଗ୍ରାମଟା ବୋଲି ମନେରହିଯାଇଚି ।

ସେତିକିବେଳେ ଆଉ ଗୋଟାଏ କାମ କରି ବି ସିଏ ବାରି ହେଇପଡ଼ିଥିଲା ଗୋଟା କଲେଜ ସାରା । ଗୋଟାଏ ସ୍କୁଟର ଚଢ଼ି ସେ ଆସିବାକୁ ଆରମ୍ଭ କରିଥିଲା କଲେଜକୁ । ଏତେବେଳକୁ ଭୋପାଲ ସହରରେ ଝିଅମାନେ ଯେ ଦିଚକିଆ ବାହନ ଚଲାଉ ନଥିଲେ ତା' ନୁହେଁ । ତେବେ ପୁରୁଣା ସହରର ଏଇ କଲେଜକୁ, ପୁଣି ବୁର୍ଖାପିନ୍ଧା ଝିଅଙ୍କ କଲେଜ ବୋଲି ଜଣାଶୁଣା ଅନୁଷ୍ଠାନକୁ ସ୍କୁଟୀରେ ଝିଅ ଜଣେ ଆସିବ । ତା' ପୁଣି କଳା ପର୍ଦ୍ଦାରେ ଘୋଡ଼ି

ହେଇ । ସେଦିନ କଲେଜ ଭିତରେ ତାକୁ ପଚାରିଦେଲେ ମୋ' ସାଙ୍ଗ ଜଣେ ଅଧ୍ୟାପିକା, "କ'ଣ ଫାତିମା, ଶୁଣୁଚୁ ତମେ ବୁର୍ଖା ଓଢ଼ି ସ୍କୁଟର ଚଢୁଚ ?"

ଜିଭ କାମୁଡ଼ି ଫିଁ କିନି ହସିପକେଇଥିଲା ଝିଅଟି । କହିଲା, "କ'ଣ କରିବି ମାଡ଼ାମ, ଲୋକେ ଆମ ଝିଅଙ୍କ ଅସୁବିଧା କଥା ବୁଝିଲେ ସିନା ।"

ମୁଁ ଶୁଣି ହସିଦେଲି, ହେଲେ ଶାସ୍ତ୍ରୀ ମାଡ଼ାମ୍ ଯେତେବେଳେ ମାମଲତକାର ଢଙ୍ଗରେ କହିଲେ, "ତମ ଭଳି ଆଉରି କେତେଜଣ ସ୍କୁଟୀ ଚଢ଼ିବା ଦରକାର, ବିନା ପର୍ଦ୍ଦାରେ । ତେବେ ସିନା ତମ ଲୋକେ ଶିଖିବେ ।"

କଥାଟା ଫାତିମା ସେତେ ସହଜରେ ନେଇପାରିଲାନି ବୋଧେ । ଧୀରେ କରି କହିଦେଇଥିଲା, "ଏଠି ଭୋପାଳର ବେଗମ୍ ମାନେ ତ ବୁର୍ଖା ପିନ୍ଧି ରାଜଗାଦି ଚଳାଉଥିଲେ ମାଡ଼ାମ୍ । ସ୍କୁଟୀଟାଏ କି ବା କଥା ।"

ସେଇ ତା'ର ଫାଷ୍ଟ ଇଅର ଶେଷଆଡ଼କୁ ଥରେ ସେ କ'ଣ ଗୋଟାଏ କଥା ଲାଗି ଭେଟିଥିଲା ମୋତେ, ବୋଧେ ପରୀକ୍ଷା ପ୍ରସ୍ତୁତି ବିଷୟ ନେଇ କି ତା'ର ଆଟେଣ୍ଡାନ୍ସ ବିଷୟରେ, ଠିକ୍ ମନେ ପଡୁନି । ପାଠରେ କେତେଟା ବିଷୟ ବି ବୁଝେଇଦେବାଲାଗି ଅନୁରୋଧ କରିଥିଲା, କାରଣ ଘର କାମ ଯୋଗୁଁ କଲେଜ ଆସିବାରେ ଖୁବ୍ ନିୟମିତ ହୋଇପାରୁନଥାଏ ସେ । ପାଠ ବୁଝେଇଦେବାଲାଗି ଟିଉସନ କିମ୍ବା କେହି ଆତ୍ମୀୟଙ୍କଠାରୁ ସାହାଯ୍ୟ ନେବାର ବି ପ୍ରଶ୍ନ ଉଠୁନଥିଲା ତା' ଲାଗି । କଲେଜରେ ଖାଲି କ୍ଲାସ୍ ରୁମ୍ ଦେଖି ମୁଁ ଏମିତି ଛାତ୍ରୀଙ୍କୁ ପଢ଼େଇଦିଏ ପ୍ରାୟ । ତେବେ ଫାତିମା ଖାଲି ମୋଠୁ ପାଠ ପଢୁନଥିଲା, ନିଜ କଥା ବି ଶୁଣାଉଥିଲା ଅନାୟାସ । ତା' କହିବା ଢଙ୍ଗ ବି ଏମିତି ଥିଲା ଯେ ମୋତେ ଆଉରି ପଚାରିବାକୁ, ତା' କଥା ଜାଣିବାକୁ ଆଗ୍ରହ ଆସୁଥିଲା । ମୋତେ ପ୍ରଶ୍ନ ବି ପଚାରେ ସେ ପିଲାଙ୍କ ଭଳି, "ଆପଣଙ୍କ ଓଡ଼ିଶାରେ ସମୁଦ୍ର ଅଛି, ନୁହଁ ମାଡ଼ାମ୍ ? ଆଉ ନଡ଼ିଆ ଗଛ ବି ? ଦୁଇଟାଯାକ ମୁଁ ଦେଖିନାଇଁ ଏ ଯାକେ । ଇସ୍, ଆପଣ କେତେ ମିସ୍ କରୁନଥିବେ ନିଜ ମାଟିକୁ!"

ମୁଁ ତାକୁ କହେ, "ଆଗ ମନ ଦେଇ ପାଠ ପଢ଼ । ତା'ପରେ ଦୁନିଆଁକୁ ବାଟ ଖୋଲିଯିବ ତମ ଆଗରେ ।" ତା' ଭଳି ପୁରୁଣାକାଳିଆ ସଂସ୍କାରଶୀଳ ଘର ଝିଅମାନଙ୍କୁ ମୁଁ ଏଭଳି କଥା ସବୁ କହେ, ଯେମିତି ହେଉ ସେମାନେ ପାଠ ପଢ଼ିବା ଜାରୀ ରଖନ୍ତୁ ବୋଲି ।

ହେଲେ ପରୀକ୍ଷା ନ ଆସୁଣୁ କଲେଜରୁ ଉଭେଇ ଗଲା ସେଇ ଝିଅଟି । ହୁଏତ ମୋର ମନେ ବି ରହିନଥାଆନ୍ତା ତା' କଥା, ଯଦି ଗୁଜବଟି କମନ ରୁମ୍‌ରେ ଚର୍ଚ୍ଚିତ ହେଇନଥାନ୍ତା ଯେ ସାରା କଲେଜର ଏଡ଼େ ଜଣାଶୁଣା ଫାତିମା ବୋଲି ଝିଅଟି କୋଉ ଲଫଙ୍ଗା ସାଙ୍ଗରେ ପଳେଇଯାଇଚି । ମନଟା ଖରାପ ହେଇଯାଇଥିଲା ମୋର କେତେଦିନ ଧରି । ଆଃ, କେହି

ରୋକି ପାରିନଥାନ୍ତେ ଝିଅଟାକୁ! ଅଧପାଠରେ ଏମିତି ଅବାଟରେ ଗୋଡ଼ ଦେବାକୁ ଥିଲା ତା'ର! ଦେଖିଲେ ଅବଶ୍ୟ ଜାଣିହୁଏ, ଏଠା ଆଖପାଖର ବେଶୀ ଝିଅ କଲେଜ ପାଠଯାକେ ଆସିପାରନ୍ତିନି। ତା'ପରେ ପୁଣି ଏମିତି କାଣ୍ଡଟାଏ କଲାପରେ ଆଉ କ'ଣ ବା ଆଶା କରାଯାଇପାରେ ତା' ଭବିଷ୍ୟତ ଲାଗି।

ପ୍ରାୟ ଭୁଲିଯାଇଥିଲି ତାକୁ। ପୁଣି ଦେଖା ହେଇଗଲା ତା' ସାଙ୍ଗେ କେଇବର୍ଷ ପରେ। ଥରେ ନୁହେଁ, ଗତ ତିରିଶ ବର୍ଷ ଭିତରେ କାଁ ଭାଁ କେଇଥର ଦେଖା ହେଇଯାଇଛି ମୋର ଫାତିମା ସାଙ୍ଗରେ। ଆଖପାଖ କଲେଜ ମାନଙ୍କରେ ଅଧ୍ୟାପନା କରି ମୋର ପ୍ରାୟ ସାରା ଜୀବନ ବିତିଚି। ଏ ଅଞ୍ଚଳଟି ଓଡ଼ିଶାଠୁ ଖୁବ୍ ବେଶୀ ଦୂର ବୋଲି କହିବିନି। ଚଳଣୀ ବି ଏତେ ବେଶୀ ଭିନ୍ନ ନୁହଁ ଯେ ବିଦେଶ ଭଳି ଲାଗିବ। ଆରମ୍ଭର କିଛି ଦିନ ପରେ ଏ ଜାଗା ମୋତେ ଆଉରେଇ ଯାଇଥିଲା। ସାଇ ପଡ଼ିଶା, ବିଶେଷ କରି ମୋ' କର୍ମକ୍ଷେତ୍ର ବି ମୋତେ ଆପଣେଇ ନେଇଥିଲା।

ଏ ଭିତରେ କାହିଁ କେତେ ଝିଅ ମୋ' କ୍ଲାସରେ ଦେଖା ଦେଇ ଚାଲିଯାଇଚନ୍ତି। ତଥାପି ତାଆରି କାହାଣୀ ଲେଖିବାର ଯୋଗ ଥିଲା ମୋର। ମନ ବଳିଲା ବୋଲି ନ କହି ମୁଁ କହିବି, ମୋ' ହାତରେ ଏକ ପ୍ରକାର ଲେଖେଇନେଲା ସେ ଏଇ କାହାଣୀଟି। ମାନେ ଫାତିମା ନୁହେଁ, ତା' ଜୀବନ। ଏଇଟି ବୋଧେ କାହାଣୀର ଉପକ୍ରମଣିକା ହେବାର ଥିଲା। ସେ ଯା ହେଉ।

# ବରଗଛ ଚଉତରାର କବି

ମୁନ୍ତାର ପାଖକୁ ଟାଣିହେଇଗଲା ବେଳେ କିନ୍ତୁ ଫାତିମାକୁ ଜମାରୁ ଜଣା ନଥିଲା ଯେ ମୁନ୍ତାରର ଚେହେରାରେ ନୁହେଁ, ମୁଣ୍ଡ ଭିତରେ ଯାଇ ଫିଲିମ୍ ବସା ବାନ୍ଧି ରହିଚି ବୋଲି । କୁଆଡୁ କେଜାଣି ତା' ବିଷୟରେ ଏଣିକି ଖବର ସବୁ ଉଡ଼ି ଉଡ଼ି ଫାତିମାର କାନରେ ପଡ଼େ । ଅକାରଣ ଗର୍ବ ଲାଗେ ତାକୁ । ସୈଫିୟା କଲେଜରେ ପଢୁଚି ମୁନ୍ତାର । ପୁଣି କବିତା ବି ଲେଖେ । କଥା କଥାରେ ଶାୟରୀ କହେ । ସହରର କେଉଁ ଡ୍ରାମା ଗ୍ରୁପରେ ବି ମିଶିଚି କାଳେ ଏବେ । ସ୍କୁଲରୁ ଫେରିବା ବେଳେ ପ୍ରାୟ ତାକୁ ଦେଖେ ଫାତିମା । ସେଇ ଚଉତରା ଉପରେ ବସିଥାଏ, କେବେ ହାତରେ ବହି କି ଖାତାଟାଏ ଥାଏ, କେବେ କିଛିନାହିଁ । ଅନେଇଥାଏ ଆକାଶକୁ । ଫାତିମାକୁ ଭଲ ଲାଗେ ଯେ ମୁନ୍ତାର ପାଖଆଖ ମୋହଲ୍ଲାର ଅନ୍ୟ ପିଲାଙ୍କ ପରି ନୁହେଁ । ବେଶବାସରେ ବି ତା'ର ଥାଏ କିଛି ଗୋଟାଏ ଅଲଗାପଣ । ତହିଁରେ ପୁଣି ମୁନ୍ତାରର ଆଖି ବି ଯେ ତାକୁଇ ଖୋଜୁଥାଏ, ସେକଥାର ପ୍ରମାଣ ବି ତାକୁ ଲୋଡ଼ିବାକୁ ହୁଏ ନାହିଁ ।

ଦିନେ ଦି ସଖୀ ହସାହସି ହେଇ ବାଟ ଚାଲୁଚନ୍ତି, ସ୍କୁଲ୍ ଡ୍ରେସ୍ ନୀଳ କୁର୍ତ୍ତା, ଧଳା ସଲଓ୍ବାର ଆଉ ଧଳା ଓଢ଼ଣୀରେ । ବରଗଛ ଚଉତରା ପାରି ହେଉଣୁ ମୁନ୍ତାର ଉଠିଆସିଲା ବସିବା ଜାଗାରୁ, ଫାତିମା ପାଖକୁ ଚାଲିଆସି କହିଲା, "କାଲି ମୁଁ ଆସିବି ତୁମ ଘରକୁ, ଚାଚାଙ୍କୁ କାର୍ଡ଼ ଦେବାକୁ ।"

କେତେବଡ଼ ଘଟଣାଟାଏ ଥିଲା ଫାତିମା ଲାଗି ସେତକ । ସେ ଆସିବ ତା' ଘରକୁ ? ନିଜେ ମୁନ୍ତାର ? କାହିଁ କେବେ ନାହିଁ, କାଇଁକି ? କି କାର୍ଡ଼ ? ଡର ବି ମାଡୁଚି, କିଛି ଏଣୁ ତେଣୁ ଘଟିବାକୁ ଯାଉନାଇଁ ତ ।

ରବିବାର ଥାଏ, ସକାଳୁ ଅନେଇଥାଏ ଫାତିମା ଝରକାରୁ ଦାଣ୍ଡକୁ । କଥାଟା ଘଟିବାକୁ କିନ୍ତୁ ମିନିଟେ ବି ଲାଗିଲା ନାଇଁ, ମୁନ୍ତାର ଆସିଲାବେଳକୁ ଦାଣ୍ଡରେ ଠିଆହେଇଥିଲେ ଫାତିମାର ବାପା, କ'ଣ ଦି'ପଦ କଥାବାର୍ତ୍ତା ହେଲା ଫାତିମାକୁ ଶୁଣାଗଲା ନାହିଁ । ହାତରେ

କାର୍ଡ ଧରି ଭିତରକୁ ଆସୁ ଆସୁ ଫାତିମାର ବାପା ବଡ଼ପାଟିରେ କହିଲେ, "ଆରେ ସେ ରହିମ ମିଆଁର ପୁଅ ଆସିଥିଲା, ମୁକ୍ତାର । କବିତା ପଢ଼ିବ ସଭାରେ । ବାଃ । ନିଜେ ଆସିଥିଲା ମୋତେ ଡାକିବାକୁ, କେଡ଼େ ସୁଧାର ପିଲା । ଯାହେଉ ଗାଁ ଘରେ ଏତେ ଦିନକେ..."

ନିଜେ ଫାତିମା ବି ଆଚମ୍ବିତ ହେଇଯାଇଥିଲା ପୋତାମୁହାଁ ଜଣାଯାଉଥିବା ଟୋକାର ସେ ନୂଆରୂପରେ ।

ରବୀନ୍ଦ୍ର ମଣ୍ଡପ ଭିତରକୁ ଗଲା ଫାତିମା ସେଇ ପ୍ରଥମ । ସ୍କୁଲ୍ ଛଡ଼ା ଅନ୍ୟ କୋଉଠିକି ଗଲେ ଆଜିକାଲି ପ୍ରାୟ ବୁର୍ଖାରେ ଯିବାକୁ ହୁଏ ତାକୁ, କିନ୍ତୁ ସେଦିନ ସୁନ୍ଦର ନୂଆ ଡ୍ରେସ୍‌ଟିଏ ପିନ୍ଧିଥିଲା, ମା' କି ଜେଜେମା ମନା କରିନଥିଲେ । କୋଉ ସାହସରେ କେଜାଣି ଗେଲେଇ ହେଇ ସେ ବାପାଙ୍କୁ କହିପକେଇଥିଲା, "ଅବ୍ବୁ, ମୋତେ ବି ଶାଏରୀ ପ୍ରୋଗ୍ରାମକୁ ନେଇଯାଅ ନା !" ପୁଣି ଅବ୍ବାର ଗରଗର ମୁହଁକୁ ସାମ୍ନା କରିବା ପୂର୍ବରୁ କହିପକେଇଲା, "ମୋର ପଢ଼ା ବହିର ସବୁ କବିତା କେମିତି ମୁଖସ୍ଥ ଥାଏ ଜାଣିଚ ନା ଅବ୍ବୁ, ସ୍କୁଲ୍‌ର ଦିଦି ମାନେ ସେଥିଲାଗି ମୋତେ ଭଲ ପାଆନ୍ତି ।" ବାପା ତା'ର କେବେହେଲେ ପୁରୁଣାକାଳିଆ ନଥିଲେ, ପାଠରେ ଭଲ ନମ୍ବର ଆଣିଲେ ଖୁସି ହେଉଥିଲେ । ଭଲ ମିଜାଜରେ ଥିଲେ କହୁଥିଲେ, "ଭଲ ପଢ଼ନ୍ତୁ ଯଦି ହମିଦିଆ ମେଡ଼ିକାଲରେ ପଢ଼ାନ୍ତି ତତେ, ଡାକ୍ତରାଣୀ ହୁଅନ୍ତୁ, ଆମ ବଡ଼ ଡାକ୍ତରନୀ ସଲିମା ଖାନ୍‌ଙ୍କ ଭଳି ।"

ସଲିମା ଖାନ୍, ପୁରୁଣା ଭୋପାଲର ବରିଷ୍ଠ ଡାକ୍ତରାଣୀ । ବାହାହେଇନାହାନ୍ତି, କଟାସ ପରି ମୁହଁ । ତାଙ୍କ ପଦାଙ୍କ ଅନୁସରଣ କରିବାକୁ ମନ ବଳାଏ ନାହିଁ ଫାତିମାର । ପୁଣି ମୁକ୍ତାର ଏବେ ତା' ଜୀବନକୁ ଆସିଚି । ଜଣେ କବି । ମୁକ୍ତାରକୁ ଛାଡ଼ି ଏବେ ଭବିଷ୍ୟତ କଥା ଭାବି ବ ଭଲା କେମିତି ସେ ?

ସେଦିନ ଏଡ଼େ ବିରାଟ ସମାରୋହରେ କେତେ ପୋଖତ ବୟସ୍କ କବିଙ୍କ ମେଳରେ ମୁକ୍ତାର ଭଳି କଅଁଳ ବୟସର କବିଟିଏ । ସାଦାସିଧା କୁର୍ତ୍ତା ପାଇଜାମା ପିନ୍ଧି ମାଇକ୍ ଆଗରେ ସ୍ୱର ଧରି ଶାଏରୀ ଗାଇଗଲା ଗୋଟି ପରେ ଗୋଟି । ଫାତିମା ଆଁ କରି ଅନେଇଥାଏ । ଏଇ ସେ ଟୋକା ଚଉତରା ଉପରେ ଆଡ଼ିକିଆ ବସିଥାଏ ଯିଏ ଖାତା ଖଣ୍ଡେ ଧରି । ଆଜି ତା' ହାତରେ ଖାତା ଖଣ୍ଡିକ ସୁଦ୍ଧା ନାହିଁ । କେଡ଼େ ଅନାୟାସ ହାତ ହଲେଇ, ଖୋଲା ସ୍ୱର ଲମ୍ବେଇ, ଆଖିରେ ହସରେ ନାନା ଭାବ ଫୁଟାଇ ଶାୟରାନା ଅନ୍ଦାଜରେ କବିତା ବୋଲୁଥାଏ ମୁକ୍ତାର । ତାଳି ମାଡ଼ରେ ହଲ୍ କମ୍ପୁଥାଏ, ତୁହାକୁ ତୁହା ରୋଳ ଉଠୁଥାଏ ୱା ୱା, କ୍ୟା ଖୁବ୍ ! ଟିକିଏ ଶାନ୍ତ ପଡ଼ିଲାକ୍ଷଣି ଆଉରି ଥରେ ଲେଖାଁ ଦୋହରାଉଥାଏ ସେ କବିତା ଧାଡ଼ି ମାନ । କିଏ ବିଶ୍ୱାସ କରିବ ଏତେ ଲୋକ ତାକୁ ବାହାବା କରିବେ ବୋଲି । ବମ୍ବେ ଫିଲିମ ଦୁନିଆଁର ମଉଡ଼ମଣି

ନିଜେ ଜାବେଦ୍ ଜୀ ଷ୍ଟେଜ୍ ଉପରେ ମୁକ୍ତାରର ପିଠି ଥାପୁଡ଼ାଇଲେ, ମେଡ଼ାଲ ପିନ୍ଧାଇଦେଉ ଦେଉ କହିଲେ, "ତମରି କଲେଜର ବାରଣ୍ଡାରେ ଦିନେ ଶାଏରୀ କରୁଥିଲି ମୁଁ, ଡିବେଟ୍ କରୁଥିଲି । ସେଇ ସୈଫିୟା କଲେଜ ମୋତେ ଦେଇଚି ମୋର କଲମ । ତମର ଅପହଞ୍ଚ କିଛି ନୁହେଁ ଯୁବ କବି... ମୋର ସବୁ ଶୁଭେଚ୍ଛା ନେଇ ତମେ ଉଡ଼ାଣ ନିଅ..."

ତାଳିମାଡ଼ ଆଉ ବନ୍ଦ ହେବାର ନୁହେଁ । ଷ୍ଟେଜ୍ ତଳୁ ବିଜୁଳୀ ମାରିଲାପରି ଚମକି ଯାଉଚି କ୍ୟାମେରା ମାନ, ଆଖି ଜଳକା ହେଇ କିଛି ଦେଖାଯାଉନାହିଁ ଫାତିମାକୁ ।

ମୁକ୍ତାରକୁ କେମିତି ଲାଗୁଥିଲା ସେଇଠି ଛିଡ଼ାହେଇ କେଜାଣି, ଫାତିମା ଅନ୍ଦାଜ କରିବାକୁ ଚେଷ୍ଟା କରୁଥିଲା । ଭାବୁଥିଲା, ଫାତିମା କଥା କ'ଣ ତା' ମନକୁ ଆସିଥିବ କ୍ଷଣକ ଲାଗି ବି, ଏଡ଼େ ସାର୍ଥକ ମୁହୂର୍ତ୍ତରେ । ନିଜ ଚିନ୍ତାରେ ନିଜକୁ ନିଉନ ଲାଗିଥିଲା ଫାତିମାକୁ । ସିଏ ସିନା ମିଶେଇ ଦେଇଥିଲା ନିଜକୁ ମୁକ୍ତାରର ସାଫଲ୍ୟରେ । ସତ କହିଲେ ହଲରୁ ବାହାରିଲା ବେଳକୁ ଫାତିମାକୁ ନିଶାହେଲାପରି ଲାଗୁଥାଏ, ଗୋଡ଼ ଠିକ୍‌କରି ତଳେ ପଡୁନଥାଏ । ଫେରିବା ବାଟରେ ବାପା ଜଣ ସବୁ କହୁଥିଲେ ମୁକ୍ତାରରୁ ତାରିଫ କରି । ତା' ବଂଶଗାରିମା କଥା ବି କହୁଥିଲେ ନା କ'ଣ । ଫାତିମା କିନ୍ତୁ ତାଙ୍କ କଥା କିଛି ଶୁଣିପାରୁନଥିଲା । ଆଖପାଖରେ ପାଟିତୁଣ୍ଡ କରି ଫେରୁଥିବା ଲୋକେ, ଚିହ୍ନାଲୋକ କିଏ ବାପାଙ୍କୁ କଥା କହୁକହୁ ତାକୁ କିଏ ଫାତିମା ବେଟୀ ଆସିଚି କି ବୋଲି କହିବା, କିଛି ତାକୁ ସତ ପରି ଜଣାପଡୁନଥିଲା । ମୁକ୍ତାରର କବିତା ସବୁ ବି ତା' କାନରେ କେତେ ଭାଗ ପଡ଼ିଥିଲା, ସେଥିରୁ କେତେ ତାକୁ ବୁଝା ପଡ଼ିଥିଲା ସେ କହିପାରିନଥାନ୍ତା ।

ତାକୁ ବୁଝାପଡୁଥିଲା ଗୋଟିଏ କଥା । ଆଖପାଖ ଚିହ୍ନା ଦୁନିଆଁକୁ ଲଙ୍ଘିଯାଇ ମୁକ୍ତାରର ମୁଣ୍ଡଭିତରେ ଯେଉଁଭଳି ସଂସାରଟିଏ ଥିବାର ଝଲକ ଦିଶିଗଲା, ଫାତିମା ସେଭଳି ଗୋଟିଏ ଦୁନିଆଁର ଟେର ପାଇନଥିଲା ଆଜିଯାଏଁ । ତାକୁ ଘାରିଲାଗିଚି ଖାଲି କେତେଟା କଥା । କଅଣ ବୋଲି ଭାବି ମୁକ୍ତାର ପାଖେଇ ଆସୁଚି ତା' ଆଡ଼କୁ ? ସିଏ ନିଜେ ବା କାଇଁକି ଏମିତି ଟାଣିହେଇଯାଉଚି ଜଣକ ପାଖକୁ ଯାହା ବିଷୟରେ ସେ କିଛି ଜାଣେନାଇଁ । ମୁକ୍ତାର କ'ଣ ଜାଣିଥିବ ଯେ ଫାତିମା ଜମାରୁ କେବେ ତା' ଯୋଗ୍ୟ ହେଇପାରିବ ନାଇଁ ବୋଲି । ପୁଣି ଏକଥା ଜାଣିବା ପରେ ଫାତିମାର ଏଣିକି କ'ଣ କରିବା ଉଚିତ ହେବ ? ନିଜ ପରିଧି ଭୁଲି ସାମିଲ ହେଇଯିବ ମୁକ୍ତାରର ଦୁନିଆଁରେ ? ସେଠି ତା'ର ଜଣାଶୁଣା ଘରସଂସାର ଲାଗି ଜାଗା ଥିବ ତ ? ତା'ର ଆଉ ପାଞ୍ଚଜଣ ସାଙ୍ଗସାଥି ଜାଣିଥିବା ବୁଝିଥିବା ସଂସାରଟିଏ ଗଢ଼ିବାର ଆଶା ଥିବ ? ହେଲେ ଏବେ ଆଉ ନିଜ କଥା ଭାବିବାଲାଗି, ଆଗପଛ କଥା ଭାବିବା ଲାଗି ତା' ପାଖେ ବେଳ ଭଲା ଅଛି ?

# ବାଲକନିରୁ ପିଛିଲା ଦିନ

ଆଜି ବାଲକନିରୁ ଦିଶୁଚି ଯାହା କିଛି, ତା' ଭିତରେ ଫାତିମାର ପୁରୁଣା ଗଳିଟି ଅଛି, ତେବେ ଏତେ ନୂଆ ଘରଦ୍ୱାର ହେଇଗଲାଣି ଯେ ଘରଟି ଆଉ ଠଉର କରିବା ଅବସ୍ଥା ନାହିଁ। ଫାତିମାର ସାହି ଲୋକେ ଏଠି ସେଠିକି ଉଠିଗଲେଣି, ସହରତଳି ନୂଆ ଅଞ୍ଚଳରେ ଫ୍ଲାଟ୍‌କୁ, ଅନ୍ୟ ସହରକୁ।

କୋଳରେ ବସିଚି ଦେଢ଼ ବର୍ଷର ନାତୁଣୀ, ନୂଆ ଫ୍ରକ୍ ପିନ୍ଧି। କେତେ ଦାମ୍ ଦିଆଯାଇଥିବ ଏ ଫ୍ରକ୍ ଲାଗି, ନ ଜାଣି ବି ଅନୁମାନ କରିପାରୁଚି ଫାତିମା। ୟା'ଠୁ ବି ଭଲ ଫ୍ରକ୍ ତିଆରି କରିପାରନ୍ତା ସିଏ, କରୁଥିଲା ଦିନେ। ମା' ପାଖରେ ବସି ବସି ଫାତିମା ସିଲେଇ କାମ, ଛୁଞ୍ଚିକାମ ଶିଖିଥିଲା ପିଲାଟିଦିନୁ।

ଗଳିରୁ କବାଟ ଡେଇଁ ଘରେ ପଶିଲେ ଛୋଟିଆ ଅଗଣାର ସାମ୍ନାରେ ଦିଶେ ଅଣଓସାରିଆ ବାରଣ୍ଡାଟି, ତାଆରି ଗୋଟିଏ ପାଖେ ପର୍ଦ୍ଦାଦିଆ କଡ଼ଟିଏରେ ଥାଏ ମା'ର ସିଲେଇ ଜାଗା। ସାନ ଓସାରିଆ କାଠ ଷ୍ଟୁଲ ଉପରେ ହାତ ମେସିନ୍‌ଟି, ଷ୍ଟୁଲ ଡ୍ରୟାରରେ ନାନା ରଙ୍ଗର ସୁତା, ବୋତାମ, ମେସିନର ଛୋଟ ଛୋଟ ସରଞ୍ଜାମ। ପୁରୁଣା ସତରଞ୍ଜି ଉପରେ ମେଞ୍ଚା ମେଞ୍ଚା ହେଇ ପଡ଼ିଥାଏ ବରାଦ ଦିଆ ଅଧାତିଆରି ଜାମା, କନା, ଛୁଞ୍ଚିକାମ ଯାକ। ସିଲେଇ କାମ ଟିକିଏ ଅଧେ ଏଠି ସମସ୍ତେ ଜାଣନ୍ତି, ହେଲେ ଫାତିମାର ମାଆଙ୍କ ହାତକାମ ନିଆରା। ଆଖପାଖ ମୋହଲ୍ଲାରେ ବାହାଘର ହେଲେ ଝିଅର ଯୌତୁକ ଲାଗି ଚଦର, ତକିଆଖୋଳ, ଝିଅର ନିକାହ ପୋଷାକ, ଓଢ଼ଣୀ ଆଦି ତିଆରି ପାଇଁ ସବୁଠୁ ବେଶୀ ବରାଦ ମିଳେ ତା' ମା'କୁ।

ଫାତିମା ଆଉ ଭଉଣୀ ଦିହେଁ ଜୁଟିଯାନ୍ତି ମା' ସାଙ୍ଗରେ। ଟିକିଏ ଅଲଗା ଅସନା କାମହେଲେ ହାତ ଉପରେ ଠାଇକିନି ପଡ଼େ ମାଆର ଚପୁଡ଼ା। ଫ୍ରକ୍‌ଟିଏ ସୁନ୍ଦର ହେଲେ

କେତେ ବାଗରେ ଦେଖି ଦେଖି ଖୁସି ହୁଏ ତା' ମା', ନିଜ ଝିଅଟିର ଦେହରେ ଲଗେଇ, କେବେ ବା ପିନ୍ଧେଇ ଦେଖେ । ତେବେ ସେଇ ଫ୍ରକ୍ ତାକୁ କି ଭଉଣୀ ଦିହିଙ୍କୁ କେବେ ପିନ୍ଧିବାକୁ ଜୁଟୁ ନଥିଲା । ବାପା ଆଣନ୍ତି ଛିଟ ଥାନ, ପୁରୁଣା ସହର ଚଉକ ବଜାରରୁ । ସେଇ କନାରେ ସହଜିଆ ଫ୍ରକ୍ କେଇଟା ସିଲେଇ କରିପକାଏ ତା' ଅମ୍ମି । ଲମ୍ବ ହେଇ ଆଣ୍ଠୁ ତଳକୁ ଗଣ୍ଠିଏ ଲମ୍ବକରି ସିଲେଇ ହେଇଥାଏ । ସେ କହେ, "ଘୋଡ଼ୀ ଭଳି ତ ବଢ଼ିଚାଲିଚ ସବୁ, ଦିଇଟା ମାସରେ ଫ୍ରକ୍‌ଯାକ ଛୋଟ ହେଇଯିବ । ବଡ଼ କରି ତିଆରି କରିଥିଲେ ଆଉରି କିଛିଦିନ ଚାଲିଯିବ । ନହେଲେ କନାର ରଙ୍ଗ ନଛାଡ଼ୁଣୁ, ନ ଚିରୁଣୁ, କିଏ ମୋର ନୂଆ ଫ୍ରକ୍‌ରେ ପଇସା ଖର୍ଚ୍ଚ କରିବ ?"

ମୋଡ଼ା ଧଡ଼ି ଖୋଲିଦେଇ ବି ପୁରୁଣା ଫ୍ରକ୍‌କୁ ଲମ୍ବ କରାଯାଏ, ତେବେ କେମିତି କେଜାଣି ଉପର କନାର ଛଡ଼ାରଙ୍ଗରୁ ସେତକ ଅଂଶ ବାରିହେଇଯାଏ, ଫାତିମାକୁ ଲାଜ ମାଡ଼େ ।

ସୁନ୍ଦର ଫ୍ରକ୍‌ଯାକ କାଗଜରେ ଗୁଡ଼ାହେଇ ରହେ, ନାଁ ଲେଖି ରଖିଦେବା ଫାତିମାର କାମ । ସ୍ତ୍ରୀ ଲୋକେ ସାନ ପିଲାଙ୍କୁ ନେଇ ଆସନ୍ତି ମାପ ଦେବାକୁ, ପର୍ଦ୍ଦା ଆଡ଼ରେ ପିନ୍ଧି ଫିଟିଂ ପରଖିବାକୁ । ଦାମ୍‌ଦେବାରେ ଦର କଷାକଷି ବି କରନ୍ତି ।

ଫାତିମାର ବାପା ଛୋଟିଆ ଦୋକାନଟିଏରେ ମୁନିମ ଥାଆନ୍ତି । ପୂର୍ବେ ନବାବଙ୍କ ପାଖେ କାମ କରୁଥିଲେ ତାଙ୍କ ବାପ ଗୋସବାପ । ଏବେ କକେଇ ସରକାରୀ ବସ୍‌ର ଡ୍ରାଇଭର । ଭାଗ୍ୟବାନ୍ । ଗାଁରେ ଅଳ୍ପକିଛି ଜମିବାଡ଼ି ଥିଲା ଏବେବି । ତଥାପି ପରିବାରକୁ ଆୟ ପୋଷାଏ ନାହିଁ ।

ଫାତିମାର ମା' ସିଲେଇ କାମରୁ ଆୟ କଲେ ବି ସେ ବିଷୟରେ ବେଶୀ କେହି କଥାବାର୍ତ୍ତା କରନ୍ତି ନାହିଁ ବାପାଙ୍କ ଆଗରେ । ଏମିତି କି ବାପାଙ୍କ ଆଗରେ ସିଲେଇ କରୁଥିବା ବେଳେ ଧରା ପଡ଼ିବାକୁ ବି ଚାହାନ୍ତି ନାହିଁ ଝିଅ ତିନିହେଁ । ଫାତିମାର ସାନ ଭଉଣୀ ଦିହେଁ ସମୟ ପାଇଲେ ସାହି ଝିଅଙ୍କ ସାଙ୍ଗେ ଚୌସର କି ଷ୍ଟାପୁ ଖେଳ ଆରମ୍ଭ କରିଦିଅନ୍ତି, ବାପା ଦେଖିଲେ ବି ସେତେ ଡରନ୍ତି ନାହିଁ ।

ଫାତିମା ବୁଝିପାରେ, ଘରର ସ୍ତ୍ରୀ କି ଝିଅମାନେ ଛୋଟମୋଟ ଆୟ କରିବା କଥାଟା ବାପାଙ୍କୁ ନିଜ ଅପାରଗପଣିଆ ପରି ଲାଗେ । ଯଦିଓ ସେ ପଚାରନ୍ତିନି ଘରର ପାନ ଡାଲାର ଗୁଆ, ଜର୍ଦ୍ଦା ସରଞ୍ଜାମ କେବେ ସରୁନାହିଁ କେମିତି, କି ଅଦିନରେ ଘରେ ମାଂସ ତରକାରି ତିଆରି ହେଲା କୁଆଡୁ । ଏମିତି କି ପିଲାଙ୍କ ନୂଆ ଲୁଗାଜାମା କରିବାର ଦାୟିତ୍ୱ କ୍ରମେ ଆଉ ସେ ନିଅନ୍ତିନି । କେମିତି ନେବାକୁ ପଡୁନାହିଁ ସେ ବିଷୟରେ ପଚାରିବା ବି ଦରକାର ମଣନ୍ତିନି ।

ସତେ କି ସିଲେଇ ମେସିନ୍ ଥିବା କୋଣରୁ ଆପେ ବାହାରିଆସୁଥାଏ ଅଧିକା ଜାମା ଖଣ୍ଡେ ଅଧେ ଲେଖାଁ ମଝିମଝିରେ ।

ସ୍କୁଲ ପଢ଼ାକୁ ଖୁବ୍ ଗୁରୁତ୍ୱ ଦିଏନାହିଁ ଅମ୍ମି । ତା'ର ଚିନ୍ତା ହେଲା ପିଲାଏ ଟିକିଏ ଭଲରେ ରହନ୍ତୁ, ପୁଣି ଆସନ୍ତାକାଲି ସଂସାରରେ ଚଳିଯାଇପାରିବା ଭଳି ଦମ୍ଭ ରଖନ୍ତୁ, ସେ ଯେମିତି ହେଉ ।

ଅବ୍ବୁଙ୍କର ନଜର ଥାଏ ନିଜ ରହିଥିବା ଜାଗାର କେଇ ପାହାଚ ଉପରେ, ସେଠିକି ପହଞ୍ଚିବାଲାଗି କି ସେଠି ଠିକି ରହିବାଲାଗି ଶକ୍ତି ବିଷୟରେ ଭାବିବାକୁ ବୋଧେ ତାଙ୍କର ସାହସ କୁଳାଏ ନାହିଁ । କହନ୍ତି, "ଦିନ ଥିଲା ଆମରି ଲୋକେ ରାଜୁତି କରୁଥିଲେ । ଦେଶର ଭାଗ୍ୟ ବାମ ହୋଇନଥିଲେ ଏତେବେଳକୁ ଆମେ କେଡ଼େ ଅଯ୍ୟସରେ ଦିନ କାଟୁଥାନ୍ତୁ । ଆମ ପିଲା ଚାହିଁଲେ କାଲିକି ଉଚ୍ଚ ପାହ୍ୟାକୁ ଯିବେ, ଆଜିଭଳି ହୀନିମାନିଆ ଜୀବନ କ'ଣ ଆମର ଜୀଇଁବା ଯୋଗ୍ୟ ?" ତା'ପରେ ସେ ପିଲାଙ୍କୁ ଭଲ ପାଠ ପଢ଼ିବାର, କଲେଜକୁ ଯିବାର, ବଡ଼ଲୋକ ହେବାର ସପ୍ନ ଦେଖାନ୍ତି । ପୁଣି ପିଲାଙ୍କ ମାଆଙ୍କ ଉଦ୍ଦେଶ୍ୟରେ କହନ୍ତି – "ତମ ଅମ୍ମିର ତ କେମିତି ଖାଲି ଆଜିର ରୋଷେଇଟା ସାରିଦେଲେ ହେଲା ।"

ଅମ୍ମି ନିଜ ପାନବୋଳ ଓଠକୁ ମୋଡ଼ିଦିଏ । ଶୁଣେଇଲା ଭଳି କହେ, "କାଲିକି କିଏ ଦେଖିଛି ? ଦିନ କଟେଇନେଉ ଉପରଓ୍ୱାଲା ! ଆଜିକ ଲାଗି ଦାନାକନାର ଅଭାବ ନହେଉ, ଇନ୍‌ଶାଆଲ୍ଲା !"

# ସଭାମଝିରୁ ଗୋଟେଇଲା ସ୍ୱପ୍ନ

ଏ ଭିତରେ ମୁନ୍ନାର ଆହୁରି ଦି'ଥର କାର୍ଡ ନେଇ ଆସିଥିଲା । ଗୋଟିଏ ଥିଲା କଳାମଣ୍ଡପରେ ତାଆରି ଲେଖା ଡ୍ରାମା ଲାଗି । ଆରଟି ପୁଣି ଗୋଟିଏ ବଡ଼ ସଂସ୍ଥା ତରଫରୁ କବିତା ପାଠୋତ୍ସବରେ ତା' ନିଜ କବିତା ପାଠ ଲାଗି । ପ୍ରତିଥର ତା' ହାତରୁ କାର୍ଡ ପାଇ ଫାତିମାର ବାପା ଫାରୁକ୍ ମିଆଁ କୃତାର୍ଥ ହେଉଥିଲେ । ତାଙ୍କ ସମୟରେ ମ୍ୟାଟ୍ରିକ୍ ପାସ୍ କରିଥିଲେ ବୋଲି ତାଙ୍କର ଗର୍ବ ଥିଲା । ଅଳ୍ପବୟସ ଥିଲାବେଳେ ଆଖପାଖରେ ଶାୟରୀ ପଢ଼ାହେଲେ ସେ କେବେହେଲେ ସଭାରୁ ବାଦ୍ ପଡୁନଥିଲେ । ଏକପ୍ରକାର ଆଦର୍ଶରେ, ସଂସ୍କୃତିରେ, ତାଙ୍କର ବିଶ୍ୱାସ ଥିଲା, ସେଇ ଢାଞ୍ଚାରେ ନିଜକୁ ଗଢ଼ିଥିବା ଲାଗି ଗର୍ବ ବି । ତା' ସହିତ କବିତା ଓ ଆନୁସଙ୍ଗିକ କଳା ଆଦି ଲାଗି ବି ତାଙ୍କର ଥିଲା ଗୋଟାଏ ଅହେତୁକ ସମ୍ମାନ ।

ବୟସ ବଢ଼ିଲା ପରେ କାମର ଚାପରେ ଫାରୁକ୍ ମିଆଁଙ୍କର ଅବଶ୍ୟ କବିତା ଶାୟରୀ ଆସରକୁ ଯିବା ଆଉ ହୋଇପାରିଲା ନାହିଁ । ତେବେ ଆରେକ ନିଶାଟି ତାଙ୍କର ଛାଡ଼ିନାହିଁ ଏବେଯାକେ । ଚେସ୍ ଖେଳର ।

ପ୍ରତିଦିନ ଖରା ନଇଁଆସିଲା ବେଳକୁ ସଦର ମଞ୍ଜିଲ୍ ପାଖରେ କିଛି ସମୟ ନିଶ୍ଚୟ କଟାନ୍ତି ସେ, ଯେଉଁଠି ସବୁଦିନେ ବସେ ଚେସ୍‌ର ଆସର । ମ୍ୟୁନିସିପାଲ୍‌ଟି ଅଫିସର ବାବୁମାନେ ସେଇ ଐତିହାସିକ କୋଠାମାନଙ୍କରୁ ବାହାରି ଘରମୁହାଁ ଚାଲିଲାବେଳର ଗହଳଚହଳ ଅଳ୍ପବେଳକେ ଭେକ ବଦଳାଏ । ସଞ୍ଜବେଳର ଛକ ଅଞ୍ଚଳକୁ ଟାଣିହୋଇଆସନ୍ତି ନାନାପ୍ରକାର ଲୋକ, କେଇପ୍ରକାର ଅବସର ବିନୋଦନ ଲାଗି । ଉଣାଅଧିକେ ସଭିଏଁ ମେହେନ୍ଦୀ ରଙ୍ଗାଇଥିବା ଦାଢ଼ୀ ଓ ମୁଣ୍ଡରେ ଲେସ୍ ଟୋପି ଥିବା ପୁରୁଣା ଭୋପାଳର ବାସିନ୍ଦା ହେଲେ ବି ଅନେକେ ବେଶ୍ ଶିକ୍ଷିତ ଆଧୁନିକ ଗୋଷ୍ଠୀର ବି ଥାଆନ୍ତି । ବଡ଼ାତାଲର ପଥର ଘାଟ କୂଳେ କୂଳେ ସାନ ସତରଞ୍ଜିଟି ମାନ ବିଛେଇଦେଇ ଚେସ୍ ଖେଳିବାକୁ ବସିଯାଆନ୍ତି ଯୋଡ଼ା ଯୋଡ଼ା ଖେଳାଳୀ, ଶ୍ରେଣୀ-ସମ୍ପ୍ରଦାୟ ନିର୍ବିଶେଷରେ ପ୍ରାୟ । ଚାରିପାଖଯାକ ଠିଆହୋଇ, ଆଣ୍ଠୁମାଡ଼ି,

ନଇଁପଡ଼ି ତାଙ୍କୁ ଘେରିଥାନ୍ତି ଦର୍ଶକ ଦଳ । ସାଙ୍ଗସାଥିଙ୍କ ସାଙ୍ଗେ ଦୁଆ ସଲାମ, ପାନ ଜର୍ଦ୍ଦା ଦିଆନିଆ, ସାରା ଦୁନିଆର ଖବର ବିଚାର ଆଦି ବି ହୁଏ ।

ଫାରୁକ୍ ମିଆଁଙ୍କର ସେଠି ପୁରୁଣା ଖେଳାଳୀ ଭାବେ ସତନ୍ତ୍ର ଇଜ୍ଜତ ଥାଏ । ଦପ୍ତରରୁ ଫେରିବା ବାଟରେ ଘଣ୍ଟେ ଦି'ଘଣ୍ଟା ତାଙ୍କର ସେଠି ନ ବିତାଇଲେ ନ ଚଳେ । ସେଥିରୁ କାଢ଼ି ଅନ୍ୟ କେଉଁଠିକି ସମୟ ଦେବା ତାଙ୍କ ଦ୍ୱାରା ହେଇପାରେନାହିଁ । କଦବା କେବେ ଭୋଜି କି ବନ୍ଧୁମିଳନକୁ ଯିବାକୁ ହେଲେ ସେ ତରତରରେ ଦି'ବାଜି ହେଉ ପଛେ ଖେଳିଦେଇ ଯାଆନ୍ତି ।

ବୋଧେ ଅନେକ ବର୍ଷ ପରେ ସେ ବ୍ୟତିକ୍ରମ କରିଥିଲେ ନିକଟରେ ଥରେ । ସେଦିନ ଖେଳକୁ ନଆସି ରବୀନ୍ଦ୍ର ମଣ୍ଡପର କବିତା ମହୋତ୍ସବକୁ ଯାଇଥିଲେ, ଯୁବକବି ମୁକ୍ତାରର ନିମନ୍ତ୍ରଣକୁ ଟାଳିନପାରି । ମୁକ୍ତାରକୁ ସେ ଏଇକଥାଟି କହିଥିଲେ ବି, ପରଦିନ ତାକୁ ବଧାଇ ଦେବାବେଳେ । ଉତ୍ତରରେ ମୁକ୍ତାର ମୁଣ୍ଡ ନୋଇଁ କହିଥିଲା, "ମୁଁ ବି ଏଣିକି ଆପଣଙ୍କ ଖେଳର ଦର୍ଶକ ହେବି ଚାଚା, ଆପଣ ଯଦି ଚାହିଁବେ । ହେଲେ ସର୍ତ୍ତ ହେଲା ଯେ ମୁଁ ନିମନ୍ତ୍ରଣ କଲେ ଆପଣ ବି ମୋ' କବିତା ଶୁଣିବାକୁ ଆସିବେ, ମୋତେ ଉତ୍ସାହ ଦେବାଲାଗି ।"

ଏତେ ମନକୁ ଛୁଇଁଗଲା ମୁକ୍ତାରର ସେ କଥା ଦି'ପଦ ଯେ କିଛି ନଭାବୁଣୁ ସେ ତାକୁ କୁଣ୍ଢେଇ ପକେଇଥିଲେ । କହିଲେ, "ପୁଅ, ତମେ ଯେବେ ଡାକିବ ତମର ଏ ଚାଚା ତମ କବିତା ଶୁଣିବାକୁ ଚାଲିଆସିବ, ତା'ର ଶହେ କାମ ପଛକୁ ପକାଇ ଚାଲିଆସିବ । ତମ ଶାୟରୀ ତା' ମୋଟା ମଗଜରେ ପଶୁ କି ନ ପଶୁ । ହେଲେ ତମେ କାଇଁକି ତା' ଖେଳ ଦେଖି ଫିଜୁଲ ସମୟ ନଷ୍ଟ କରିବ କହିଲ ?"

ତେବେ ତା' ପରଠୁ ମଝି ମଝିରେ ମୁକ୍ତାର ଆସେ ତାଙ୍କ ଚେସ୍ ଖେଳର ଦର୍ଶକ ହେଇ । ତାଙ୍କ ପାଖିଆ ହେଇ ତାଙ୍କୁ ସୁହେଇଲା ଭଳି ଟୀପଣୀ ପଦେ ଅଧେ ବି ଦିଏ । ଥରେ ସଞ୍ଜ ହେଇଗଲା ପରେ ଘର ଫେରନ୍ତି ରାସ୍ତାରେ ତାଙ୍କରି ସାଙ୍ଗରେ ଫେରିଲା ମୁକ୍ତାର । କେଉଁ କାଳରୁ ମୁକ୍ତାରର ପରିବାର ସାଙ୍ଗରେ ତାଙ୍କର ଆଉ ସମ୍ପର୍କ ନଥିଲା । ତାଙ୍କ ପିଲାଦିନେ ବାହା ଭୋଜି ଇଦ୍ ମିଳନରେ ଯିବାଆସିବା ଥିଲା ସେ କୋଉ ଯୁଗରେ, ମୁକ୍ତାରର ପୂର୍ବ ପୀଢ଼ିର କଥା ସେ । ସତ କହିବାକୁ ଗଲେ ନବାବ ମଞ୍ଜିଲ୍ ସାଙ୍ଗେ ସମ୍ପର୍କ ରଖିପାରିଲେ ଆଖପାଖ ମୋହଲ୍ଲା ଲୋକେ ଗର୍ବ କରୁଥିଲେ ସେତେବେଳେ ।

ଭୋପାଳରୁ ଇନ୍ଦୋର ଯିବା ବାଟରେ ପଡ଼େ ଛୋଟିଆ ଜମିଦାରୀଟିଏ, କରୀମାବାଦ । ତାଆରି ଜମିଦାର ଥିଲେ ମହମ୍ମଦ ଅଫଜଲ ମିଆଁ, ମୁକ୍ତାରର ଜେଜେବାପା । ତେବେ ଅଫଜଲ ମିଆଁ ମଲାବେଳକୁ ତାଙ୍କ ସମ୍ପତ୍ତିବାଡ଼ି ପ୍ରାୟ ଶେଷ ହେଇସାରିଥିଲା । ବିରାଟ କୁଟୁମ୍ବର ଲୋକେ ହେଭେଲୀଟିକୁ ଭାଗବଣ୍ଟାକରି ବଖରା ଗୋଟିଏ ଦୁଇଟି ଲେଖାଁ କରି ରହିଲେ, ଆଉ ଟିକିଏ

ସମ୍ବଳ ଥିଲା ଲୋକେ ବାହାରିଗଲେ ଅନ୍ୟତ୍ର । କିଛି ଲୋକ ଦେଶ ବିଭାଜନ ବେଳେ ବି ପୁରୁଣା ଭିଟାମାଟି ଛାଡ଼ି ନୂଆ ଭବିଷ୍ୟତ ଆଶାରେ ଚାଲିଗଲେ । ଗାଁରେ ଜମିବାଡ଼ି କିଛି ତଥାପି ମୁକ୍ତାରର ବାପାଙ୍କ ଭାଗରେ ପଡ଼ିଥିଲା, ତାକୁ ଜଗିରଖି ଚଳିଥିଲେ ହୁଏତ ସେମାନେ ବି ଜୀବନଟା ଭଲରେ କଟାଇଦେଇ ପାରିଥାନ୍ତେ । ହେଲେ ସମୟକୁ ଦେଖିଚାହିଁ ସରଳ ସଂଯତ ଭାବେ ଦିନକାଟିବା ତାଙ୍କ ସଂସ୍କାରରେ ନଥିଲା । ଅଳ୍ପ ବୟସରେ ଚାଲିଗଲେ ସେ ।

ତାଙ୍କରି ଜକେଇପୁଅ ଭାଇ କଥା ଦେଇଥିଲା ଫାରୁକ୍ ମିଆଁଙ୍କ ଭଉଣୀ, ଫାତିମାର ଫୁଫୀକୁ ବାହାହେବ ବୋଲି । ବାହାଘର ଦିନ ଧରାଯାଇସାରିଥିଲା । ହେଲେ ବିନା ଶୋର ଶବଦରେ ଅନ୍ୟ କେଉଁଠି ବାହା ହେଇଗଲା ସେ ବରପାତ୍ରଟି, କେହି ଟେର୍ ପାଇଲେନି । ଫାରୁକ୍ ମିଆଁଙ୍କର ଏବେ ବି ଭଲକରି ମନେଅଛି ବିନା ଦୋଷରେ ପରିବାରର ମୁଣ୍ଡ ନଇଁଯିବାର ସେ ଘଟଣା, ଲାଜ ଅପମାନରେ କଟିଥିବା ସେ ଦିନମାନ । ସେଇଦିନଠୁ ନବାବ ମଞ୍ଜିଲ୍‌କୁ ଆଉ ଫାରୁକ୍ ମିଆଁଙ୍କ ଘରୁ କେହି ଯିବା ଆସିବା କରିନି । ହେଲେ ଆଜିର ପିଲା ମୁକ୍ତାରକୁ ସେସବୁରେ ଯୋଡ଼ି ଏବେ ଲାଭ କ'ଣ ?

ମୁକ୍ତାର ଆପେ ଆସିଥିଲା ତା' କବିତାପାଠ ଲାଗି ଫାରୁକ୍ ମିଆଁଙ୍କୁ ନିମନ୍ତ୍ରଣ କାର୍ଡ଼ ଦେବାଲାଗି । ସଲାମ କରି ନିଜ ପରିଚୟ ଦେଇ କହିଥିଲା, "ଚାଚା, ଆପଣ ଆମର ବଡ଼େ ବୁଜୁର୍ଗ, ଗୁରୁଜନ । ଆପଣଙ୍କ ଆଶୀର୍ବାଦ ପାଇବାକୁ ମୁଁ ଚାହିଁ ବସିଥିବି, ଆସିବେ ନିଶ୍ଚୟ ।"

ସତକଥା । ତା' ନିଜ ଘରର ଗୁରୁଜନ ସ୍ଥାନୀୟ କେହି ତ ଆଉ ନାହାନ୍ତି, ସେ ହଭେଲୀରେ ଯେଉଁ କେତେଜଣ ଅଛନ୍ତି ସବୁଯାକ ଅପଦାର୍ଥ, ନିକମ୍ମା । ଆଖପାଖର ସମ୍ମାନୀୟ ଲୋକଙ୍କୁ ନିଜେ ଯାଇ ଡାକିବା ମୁକ୍ତାର ଭଳି ବୁଦ୍ଧିମାନ୍, ପ୍ରତିଭାଶାଳୀ ପିଲା ପାଇଁ ଅସ୍ୱାଭାବିକ ତ ନୁହେଁ । ଏତେଦିନକେ ପୁଣି ଫାରୁକ୍ ମିଆଁଙ୍କୁ ଶେରୋ-ଶାୟରୀର ଆସରରେ ପାଦ ଦେବାକୁ ସୁଯୋଗ ମିଳିଲା । ସେ ତ ନିଜକୁ ଆଉ ସେଭଳି ପରିବେଶ ଲାଗି ଯୋଗ୍ୟ ବି ମଣୁନଥିଲେ ଆଜିକାଲି ।

# ନାହିଁ କରୁଥିବା ପରିଚୟ

ମନେଅଛି ନର୍ଗୀସ ବେଗମଙ୍କ ପାଖକୁ ସିଲେଇ କାମ ନେଇ ଯିବାର ଦିନମାନ । ପଡ଼ିଶାଘର ଝିଅଟିଏ ଫାତିମାର ହାତ ତିଆରି ଫ୍ରକ୍ ପିନ୍ଧିଥିଲା, ତାକୁ କୋଉଠି ସେ ଦେଖିଲେ କେଜାଣି, ନିଜେ ଖବର ପଠେଇଥିଲେ ତାଙ୍କ ଘରକୁ ନର୍ଗୀସ ବେଗମ୍ । ମା' ବେଶୀ ଘରୁ ବାହାରେନାଇଁ, ପୁଣି ଏତେ ବଡ଼ ଘରୁ ଡାକରା । ସାନ ଭାଇକି ନେଇ ଫାତିମା ଯାଇଥିଲା, ହାତରେ ଆହୁରି କେତେଟା ସିଲେଇ କାମ ବି ସାଙ୍ଗରେ ନେଇଯାଇଥିଲା । କିଏ ନ ଶୁଣିଚି ଶାହନଶାଁ ହୋଟେଲ କଥା । ଭୋପାଲର ପୁରୁଣା ରାଜୁତି କରୁଥିବା ନବାବ ପରିବାର ଲୋକେ ଚଳାନ୍ତି କାଳେ ତାକୁ । ସହରକୁ ଯେତେ ବଡ଼ବଡ଼ିଆ ଲୋକ ବାହାରୁ ଆସନ୍ତି, ଗୋରା ବିଦେଶୀ ଲୋକ ବୁଲିବାକୁ ଆସନ୍ତି, ସମସ୍ତେ ସେଇଠି ରହନ୍ତି । ଫାତିମାର ଜଣେ ସମ୍ପର୍କୀୟ କକେଇ ସେଠି କାମ କରନ୍ତି, ଧଳା ଜାମା କୋଟ୍ ପଗଡ଼ି ଭିଡ଼ି କୋଉ ମନ୍ତ୍ରୀ ନା କାହାକୁ ଟ୍ରେରେ ପରଶୁଥିବାର ନିଜ ଫଟୋ ତାଙ୍କ ଘରେ ଲଗେଇଚନ୍ତି, ଫାତିମା ଦେଖିଚି । ହୋଟେଲ୍‌ରେ ପଶିଲାକ୍ଷଣି କାଳେ ଆଖିରେ ପଡ଼େ କାଚ ଆଲମାରୀ ଭିତରେ ନିଶଫୁଲେଇ ଠିଆହେଇଥିବା ଧଳା ରଙ୍ଗର ମହାବଳ ବାଘ, ପ୍ରକୃତ ଦେହଟି ଭିତରେ ଭୁଷା ଭରାହେଇ ତାକୁ କୋଉକାଳୁ ଜୀବନ୍ତ ଭଳି ରଖାଯାଇଚି । କିଏ କେବେ ତାକୁ ଶିକାର କରିଥିଲା କୋଉ ବଣରେ, ସେ ବିଷୟରେ ବି ସବୁ ଗପ ଅଛି । ସେଇ ହୋଟେଲ ଭିତରେ ଖୋଲିଥିଲା ନର୍ଗୀସ ଜହାଁଙ୍କର ନୂଆ ଶୋରୁମ୍, ଗୋଟିଏ ଲେଖାଁ ସାଲୱାର କମୀଜ କି ଘାଗରାର ଦାମ କାଳେ ଏମିତି ଯେ ସେଥିରେ ସାଧାରଣ ଘରର ଚରିଟା ଝିଅଙ୍କ ଲାଗି ବାହାଘର ଜାମାଯୋଡ଼ ହେଇଯିବ । ସେଇଠୁ କାମ ଲାଗି ଡାକରା ଆସିବ ବୋଲି କିଏ ଭାବିଥିଲା ।

ନର୍ଗୀସ ବେଗମ୍ ଫାତିମାକୁ ପାଖ ଚଉକିରେ ବସେଇଥିଲେ । ଶୋରୁମ୍‌ର କାଚ କାନ୍ଥ ଦେଇ ଲାଉଞ୍ଜର ଧଳା ମହାବଳ ଦେଖାଯାଉଥିଲା । ଏଭଳି ସାଜସଜ୍ଜା, ଏଭଳି ପରିବେଶ ଫାତିମା ଦେଖିନଥିଲା କେବେହେଲେ । ନର୍ଗୀସ ବୀଙ୍କର ବି ଚେହେରା ବେଷପୋଷାକ ସବୁ ଏଭଳି ଅପୂର୍ବ ଯେ ଫିଲିମ୍ ଷ୍ଟାର ପରି ଲାଗୁଥାଆନ୍ତି ସେ । ନିଜେ ଫାତିମାର ସିଲେଇ କାମସବୁ ହାତକୁ ନେଇ ଦେଖିଲେ, ପଚରା ଉଚରା କଲେ, ଆଉ ସିଧାସଳଖ କାମ ବରାଦ ଦେଲେ, କେତେଟା କୁଶନ କଭର ଘରେ ତିଆରି କରି ଆଣିବା ଲାଗି । ଚ' ଜଳଖିଆ ପରେ ଫାତିମା ହାତରେ ଅଗ୍ରୀମ ଟଙ୍କା ଗୁଞ୍ଜିଦେଇ କର୍ମଚାରୀଟିଏକୁ କହିଲେ ଭାଇଭଉଣୀ ଦୁହିଙ୍କୁ ଦୂର ଫାଟକ

ଯାଏଁ ଛାଡ଼ିଆସିବାକୁ ।

ଗଡ଼ ଜିତିଗଲା ପରି ଲାଗୁଥାଏ ଘରକୁ ଫେରିଲା ବେଳକୁ । ହେଲେ ଘରେ ଯେମିତି ପ୍ରତିକ୍ରିୟା ଆଶା କରୁଥିଲା ସେତେ ବେଶୀ ମିଳିଲା ନାହିଁ । ମା' ଖୁସି ହେଲା ସିନା, କହିଲା ସାଇ ପଡ଼ିଶାରେ ନ କହିବାକୁ । ଘରେ ବସି ପଡ଼ୋଶୀଙ୍କ ଦରକାର ବେଳେ ସାହାଯ୍ୟ କଲାଭଳି କାମ କେତେଟା କରିଦେବା ଅଲଗା, ଆଉ ଜଣାଶୁଣା ହୋଟେଲ୍‌ରେ ଘର ଝିଅ ବୋହୂ ବେପାର ଲାଗି କାରିଗର ହେବା କଥା ଅଲଗା । ଫାତିମା ଯୁକ୍ତି କରିଥିଲା ଦି'ଚାରିପଦ, ମା' କଥାଟା ବେଶୀ ନ ବଢ଼େଇ କହିଲା, "ମୁଁ କ'ଣ ମନା କଲି କାମ କରିବାକୁ ? ସାହିଲୋକଙ୍କ କଥାକୁ ଜଗି ଚଳିବା ବୋଲି କହିଲି ସିନା ।"

ରାତିରେ ବାପା ଆସୁଆସୁ ରେହମାନ ବଡ଼ପାଟିରେ କହିପକେଇଲା, "ଅବ୍ବୁ, ଆଜି ଆମକୁ ଶାହନଶା ହୋଟେଲରୁ ନିମନ୍ତ୍ରଣ ଆସିଥିଲା, ମୁଁ ଆଉ ଅପା ନର୍ଗୀସ୍ ବୀଙ୍କ ସାଙ୍ଗେ ନାସ୍ତା କରି ଆସିଲୁ ।"

ପୂରା କଥାଟା ଭାଇ ଭଉଣୀଙ୍କଠୁ ବିସ୍ତାରରେ ଶୁଣିଲା ବେଳକୁ ବାପାଙ୍କ ମୁହଁ ଉଜଳି ଉଠିଥିବା କଥାଟା ଫାତିମା ଆଖିରୁ ବାଦ୍ ଯାଇନଥିଲା । ତଥାପି ତାକୁ ଜାଣିଶୁଣି ଚପାଇଦେଇ ସେ କୋଟ୍ ଜାମା ବଦଳିଲେ ଚୁପ୍‌ଚାପ । ହାତ ମୁହଁ ଧୋଇସାରି ଖାଇବାକୁ ବସିଲା ପରେ ଫାତିମାକୁ କହିଲେ, "ହଉ ହେଲା ସେମାନେ ତୋ' କାମକୁ ପ୍ରଶଂସା କଲେ । ତେବେ ଏସବୁ କାମ କରିବୁ ଯଦି ପଢ଼ାପଢ଼ି କେବେ ହେବ ? ତୋ'ର ପରା ପାଠ ପଢ଼ି ଡାକ୍ତରାଣୀ ହେବା କଥା ଥିଲା ?" ପୁଣି ମା'କୁ କହିଲେ, "ସିରାଜ କି ରେହମାନକୁ ପଠେଇବ ସେ ହୋଟେଲ୍‌କୁ, ଝିଅମାନଙ୍କୁ ପଠେଇବା ଦରକାର ନାହିଁ ।" ଏମିତି ଗୋଳିଆଗୋଳି କରି ମୁହଁରେ ଗୋଟେ କଥା ପେଟରେ ଗୋଟେ କଥା ରଖୁଥିବା ବଡ଼ମାନଙ୍କ ସଂସାର ସହିତ ଫାତିମା ପିଲାଦିନୁ ପରିଚିତ । ତେଣୁ ବାପା ମା' ଉଭୟଙ୍କ କହିଲା କଥା ତଳେ ନିଜ ବୁଦ୍ଧି ମତେ ଯାହା ବୁଝିବା କଥା ସେ ବୁଝିନେଲା ।

ଏଡ଼େବଡ଼ ଖୁସିର କଥାଟା କାହାକୁ ଟିକିଏ କହିବାକୁ ଖଜବଜ ଲାଗୁଥିଲା । କାହିଁକି କେଜାଣି ତା' ମନକୁ ମୁକ୍ତାର ଆସିଲା, ଜାଣନ୍ତା କି ସେ ଯେ ଫାତିମା ବି ଏଡ଼େ ନିଉଛୁଣା ନୁହେଁ, ତା'ର ବି ଗୁଣ ଅଛି କିଏ ଚିହ୍ନି ପ୍ରଶଂସା କଲାଭଳି ବୋଲି । ହେଲେ କଥାଟା ଭିତରେ ଭିତରେ ଗୋଳେଇ ପରଖିଲା ସିନା, ସେ ଠିକ୍ ବୁଝୁଥିଲା ମୁକ୍ତାର କାନରେ କଥାଟା ପଡ଼ିଲେ ବି କ'ଣ ହେବ । ମୁକ୍ତାରର ପ୍ରତିକ୍ରିୟା ବି ବୋଧେ ବାପାଙ୍କ ଭଳି ହିଁ ହେବ, କି ହୁଏତ ତାଙ୍କଠୁ ବି ଆହୁରି ବେଖାତିରିଆ । ସତକଥା, କାହିଁ ମୁକ୍ତାରର କବିତା, ଶାୟାରୀର ଦୁନିଆଁ, ଆଉ କାହିଁ ବିଚାରୀ ଫାତିମାର ମାଇପି ହାତକାମ । ତେବେ ଜବୀନା ଥିଲା ଗୋଟିଏ ମଣିଷ ଯିଏ

ତା' ଆଶା ମତେ ପ୍ରତିକ୍ରିୟା ଦେଖାଇଥିଲା । କଥାଟା ଶୁଣି ଦୁଇଆଖି ଏଡ଼େ ବଡ଼ ବଡ଼ କରି ପାଟି ଆଁ କରି ରହିଗଲା ସେ । କେତେବେଳେ କହିଲା, "ସତରେ ତୋ'ର ଏତେ ଭାଗ୍ୟ ଫାତିମା ? ତୋ'ର ତ କପାଳ ଫିଟିଗଲା ଜାଣ । ମୋତେ ବି ଟିକେ ଦିନେ ନେଇ ଯିବୁ ଲୋ, ନର୍ଗୀସ ବୀଙ୍କୁ କହି ମୋତେ ବି କିଛି କାମ ଦେବୁ ।"

ବାଟରେ ଚାଲୁ ଚାଲୁ ଫାତିମା ତା' କାନ୍ଧରେ ହାତ ପକେଇ ପାଖକୁ ଜାକିନେଲା, କହିଲା, "ତୁ ବି କାମ କରିବୁ ମୋ' ସାଙ୍ଗେ । ତୋତେ ମୁଁ ସବୁ ଛୁଞ୍ଚି କାମ ଶିଖେଇଦେବି, ଆମେ ଏକାଠି ତିଆରି କରିବା ଏଣିକି । ଆରଥରକୁ ନେଇଯିବି ତୋତେ ଶାହାନଶାକୁ, ହେଲା ତ ?"

ହୋଟେଲ୍‌ର ସେଇ ଜାକଜମକ ଦୋକାନଟିର ଦାୟିତ୍ୱରେ ଥାଆନ୍ତି ନିଜେ ନର୍ଗିସ୍ ବେଗମ୍ । ଫାତିମା ବରାଦ ମିଳିଥିବା ହାତ ତିଆରି କାମସବୁ ଦେବାକୁ ଗଲାବେଳେ କେବେ ସେ ସେଠି ଥାଆନ୍ତି, କେବେ ବା ହୋଟେଲ୍ ପଛପାଖ ନିଜ ବଙ୍ଗଳାରେ । ତା' ଆଣିଲା ଜିନିଷମାନ ନର୍ଗୀସ ବେଗମ୍ ପ୍ରାୟ ନିଜେ ଦେଖନ୍ତି, ଭିନ୍ନ ଭିନ୍ନ ରଙ୍ଗ ଓ ନକ୍ସା ଦେଇ ଆପେ କରିଥିବା ନୂଆ ଡ୍ରେସ ଡିଜାଇନ ମାନ ବି ତାକୁ ଦେଖାନ୍ତି । କାମ କଥା ସାରିଦେଇ ଏଣୁତେଣୁ ଗପ ବି କରନ୍ତି, ଫାତିମାର ଘର କଥା, ପାଠ କଥା ପଚାରନ୍ତି । ହୋଟେଲ୍‌ର ଲାଉଞ୍ଜରେ ଧଳା ବାଘ ସଜା ହୋଇଥିବା କାଚ ଜନ୍ତାକୁ ଲାଗି କାନ୍ଥ ଦେହରେ ଥାଏ ବଡ଼ ବଡ଼ ସୁନେଲୀ ଫ୍ରେମକରା କେତେଗୁଡ଼ିଏ ଫଟୋ । ଏଇ ପ୍ରାସାଦର ପୂର୍ବ ମାଲିକାଣୀଙ୍କ ବୁର୍ଖା ଓଢ଼ା ଫଟୋଥାଏ ଅନେକ ଗଣ୍ୟମାନ୍ୟ ପୁରୁଷଙ୍କ ଗହଣରେ । ଟିକିଏ ହେଲେ ମୁହଁ କି ଦେହ ନଦିଶୁଥାଇ ବି ସେ ଦିଶୁଥାନ୍ତି ସମସ୍ତଙ୍କ ଭିତରେ ବିଶିଷ୍ଟ, ପ୍ରତାପଶାଳୀ । ଥରେ ନର୍ଗୀସ ବୀ ଶୋ ରୁମ୍‌ରୁ ବାହାରି କଥାବାର୍ତ୍ତା କରୁକରୁ ଫାତିମାକୁ ସେ ଫଟୋଗୁଡ଼ିକ ପାଖକୁ ନେଇଯାଇଥିଲେ, ସେଥିରୁ କିଏସବୁ ତାଙ୍କର କିଭଳି ସମ୍ପର୍କୀୟ କହିଦେଇଥିଲେ । ତା'ପରେ ଅଳ୍ପ ହସି କହିଲେ, ଅସଲରେ ଭୋପାଳର ରାଜପରିବାରର ମହିଳାମାନେ ପର୍ଦ୍ଦା ଛାଡ଼ିସାରିଥିଲେ କୋଉକାଳୁ । ଇଏ ଖାଲି ଲୋକଦେଖାଣିଆ ।

ମଧ୍ୟମ ଧରଣର ପ୍ରାସାଦଟିଏ, କୌଣସି ଇତିହାସ ବହିରେ ନାହିଁ ତା'ର ନାମୋଲ୍ଲେଖ । ତଥାପି ଫାତିମାକୁ କୃତକୃତ୍ୟ ଲାଗେ ସେଥି ଭିତରକୁ ଗୋଡ଼ ଦେଲେ । ପୁଣି ସହରସାରା ଜାଣିଥିବା ଏଡ଼େ ଅଭିଜାତ ମହିଳାଙ୍କ ସାଙ୍ଗେ କଥାବାର୍ତ୍ତା କଲେ । ତାକୁ ଏକଥା ଜଣା ଥାଉ ପଛକେ ଯେ ତାଙ୍କ ନାଁ ସହିତ ତାଙ୍କରି ଶ୍ରେଣୀର ଲୋକଙ୍କ ଅସମ୍ମାନ ବି ଥାଏ । ଆଉରି ବି ଶୁଣାଥାଉ ଯେ ଜନସାଧାରଣଙ୍କ ତାଙ୍କ ପ୍ରତି ଏକରକମ ସନ୍ଦେହର ଦୃଷ୍ଟି ବି ଥାଏ । ନର୍ଗୀସ ଜହାଁ ନିଜ ସ୍ୱାମୀକୁ ଛାଡ଼ି, ପାକିସ୍ତାନରେ ନିଜ ଧନାଢ୍ୟ ଶାଶୁଘର ପରିବାରଙ୍କୁ

ଛାଡ଼ି ବାପଘରକୁ ଫେରିଆସିଚନ୍ତି କାଳେ । ସେଥିରେ ପୁଣି ଚେହେରା, ବେଶବାସରେ ବମ୍ବେର ଫିଲ୍ମଷ୍ଟାରଙ୍କୁ ବଳିଯାଆନ୍ତି । କିଏ କହନ୍ତି ସେ ନବାବ ପଟୌଦୀଙ୍କ ନିଜ ମାଉସୀ କାଳେ, ଲଣ୍ଡନରେ ପାଠ ପଢ଼ିଚନ୍ତି । ଏସବୁରେ ଅବିଶ୍ୱାସ କରିବାର କିଛି ନାହିଁ । ଧନ, ପ୍ରତିପତ୍ତି ତ କେହି ନା କେହି ଠୁଳ କରି ଭୋଗ କରନ୍ତି ସବୁଠି । ନଥିଲା ଲୋକେ ଅନେଇ ରହନ୍ତି ଦୂରରୁ । ଫାତିମାର ଏମିତି ବଡ଼ବଡ଼ିଆଙ୍କୁ ନେଇ ଗୁଜବରେ ଆଗ୍ରହ ନଥାଏ । ତଥାପି ନର୍ଗୀସ ଜହାଁଙ୍କ କଥା ନିଆରା । କେବେ କେଉଁ ଜଣାଶୁଣା ଆସରରେ ବୁର୍ଖାରେ ଦେଖାଦିଅନ୍ତି ତ ଆଉ କେବେ ସହରର ବଡ଼ ପାର୍କରେ ସକାଳୁଆ ଦଉଡ଼ୁଥାନ୍ତି ଜଗିଂ ସୁଟ୍‌ରେ । ଅଥବା ନିଉ ମାର୍କେଟ୍ ଭିତରକୁ ନିଜେ କାର୍ ଚଲାଇ ଆସି ଲୋକଭୀଡ଼ ଭିତରେ ଓହ୍ଲାନ୍ତି ଜିନ୍‌ସ ଆଉ ଟୀ ଶାର୍ଟରେ ।

ସେଇ କହନ୍ତି, "ତମେ ଫାତିମା ଟିକିଏ ଆଗୁଆ ହୁଅ, ମୋତେ କାମରେ ସାହାଯ୍ୟ କର । ଆମକୁ ଆଗକୁ ବଢ଼ିବାକୁ ଅଛି ବହୁତ ।"

କଥା ପୂରା ନ ବୁଝୁଣୁ ଫାତିମା ହସହସ ହେଇ ମୁଣ୍ଡ ଟୁଙ୍ଗାରି ପକାଏ । ବିନା ସର୍ତ୍ତରେ ଅନୁଗମନ କରିପାରିବା ଭଳି ଜଣେ ଆଦର୍ଶ ମିଳିଯାଇଥିବା ପରି ତାକୁ ପ୍ରାୟ ଆଶ୍ୱସ୍ତ ଲାଗେ ତାଙ୍କ ପାଖେ ଥିଲାବେଳେ । ଯଦିଓ ନିଜ ତରଫରୁ ମୁହଁ ଖୋଲି ପଦଟିଏ କଥା ତାଙ୍କୁ କହିବାକୁ ତା'ର ସାହସ ନଥାଏ । ବେଳେବେଳେ ଚ଼' ପିଉ ପିଉ କ'ଣ ଗୋଟାଏ ଭାବିଲାଭଳି କହନ୍ତି ସେ, "ଗୋଟିଏ କଥା ମନେ ରଖିଥିବ ଫାତିମା, ଜନାନା ମହଲରେ ଥାଇ ବି ଏଭଳି କିଛି କାମ ନାହିଁ ଯାହା ଆମେ କରିପାରିବାନି । ଆମକୁ ସବୁ କାମ ଜଣା, ଏମିତି ବୁର୍ଖା ଭିତରୁ ଆମେ ସବୁ କାମ କରିଆସିବୁ ଚିରଦିନ, ଆଜି ନୂଆ କିଛି ନୁହଁ, ବୁଝିଲ । ପୁଣି ଯେତେବେଳେ ନିଜ ହାତମୁଠାକୁ ବଳ ଆସିଯାଏ, ପର୍ଦ୍ଦାକୁ ଫୋପାଡ଼ି ଦିଆଯାଏ ବି । କଥା କ'ଣ ଜାଣ, ପୁରୁଷ ଲୋକଙ୍କର ଆପତ୍ତି ଆମ କାମକୁ ଯେତେ ନୁହେଁ, ତା' ସାଙ୍ଗେ ଆମ ଚେହେରା କେମିତି ପଦାକୁ ଦିଶିଯିବ ତାଆରି ଲାଗି ବେଶୀ । ଯଦି କାମତକ ଆମେ ପଛରେ ରହି କରିଯିବା ଆଉ ତାଙ୍କରି ଚେହେରା ପଦାକୁ ଦିଶୁଥିବ, ସେଥିରେ ସେମାନେ ଖୁସି ।"

ଫାତିମା ପଚାରିବ ପଚାରିବ ହେଇ ଯେଉଁ ପ୍ରଶ୍ନକୁ ଢୋକିପକାଇଲା, ତାକୁ ସେ ଅନୁମାନ କରିନେଇ ଉତ୍ତର ଦେଲେ, "ହଁ, ବେଳେବେଳେ ଆମର କାମକୁ ବି ତାଙ୍କରି ଆପତ୍ତି ହୁଏ । ଯେବେ କୃତିତ୍ୱଟି ବି ପୂରା ଆମକୁ ମିଳିଯିବାର ଭୟ ହୁଏ ତାଙ୍କୁ । ଯଦି ଆମକୁ ନାଁ କି ଧନଦୌଲତ ସିଧାସଳଖ ମିଳିଯାଏ ।"

ଫାତିମା ବୁଝିଲା ତାଙ୍କ କଥାର ପଛପାଖେ ଥିବା ଅଙ୍ଗେନିଭା କଥାକୁ, ତମତମ ହେଇଆସିଥିବା ତାଙ୍କ ଚେହେରାକୁ । ହାତର ବ୍ୟାଗଟାକୁ ପାଖ ଟେବୁଲରେ ବାଡ଼େଇ ରଖିଦେଲେ ସେ । କହିଲେ, "ଏଇ ଆମ ଘରଲୋକଙ୍କ ସବୁ କଥା କହୁଚି ମ, ଯାହାର ସମ୍ପତ୍ତି

ହେଇ ଆମେ ରହିଥାଉ । ସେଇମାନେ ସବୁଠୁ ବେଶୀ ଡରିଯାଆନ୍ତି ଆମ ସଫଳତାକୁ । ଆଉ ଡରିଯାଆନ୍ତି ବୋଲି ଆମକୁ କାବୁ କରି ରଖିବାକୁ ଚାହାନ୍ତି । ଆମ ଜନାନା ମାନଙ୍କୁ ଡରେଇ ଧମକେଇ ରଖିବାକୁ ଲୋଡ଼ା ପଡ଼େ ତାଙ୍କୁ ।"

କ'ଣ ଗୋଟାଏ ଚିହ୍ନା ଚିହ୍ନା କଥା ଥିଲା ଯେମିତି ତାଙ୍କ କଥାରେ । ଗୋଳିଆଗୋଳି ପରି ଶୁଭୁଥିଲେ ବି ବୁଝିପାରୁଥିଲା ଫାତିମା । ପଚାରିଲା, "ଘର ଲୋକଙ୍କ ପସନ୍ଦ ଅନୁସାରେ କାମ କରିବା କଥା, ଏଇଆ କହୁଚନ୍ତି ତ ବୀ ? ମାନେ ସେମାନେ ଯଦି ମନା କରିବେ କୌଣସି କାମ କରିବାକୁ, ସେଭଳି କାମ ଛାଡ଼ିଦେବା କଥା, ନୁହେଁ ?"

ଲମ୍ବା ନିଶ୍ୱାସଟାଏ ପକେଇ ନର୍ଗୀସ କହିଲେ, "ହଁ, ବେଳ ଥାଉ ଥାଉ ଛାଡ଼ିଦେବାକୁ ହୁଏ । ନଇଲେ ବିପଦ ଘୋଟି ଆସିବ ଆମଉପରକୁ । ଯଦି କାମକୁ ଛାଡ଼ିନହେଲା ତେବେ ନିଜ ଜୀବନ ବଞ୍ଚେଇ ପଳେଇଆସିବା କଥା, ବୁଝିଲ ?"

ବୁଝୁନବୁଝୁ ମୁଣ୍ଡ ଟୁଙ୍ଗାରି ପକାଏ ଫାତିମା ଏମିତି ବେଳେ । ନର୍ଗୀସ ବେଗମଙ୍କ ଚେହେରା ଶାନ୍ତ ପଡ଼ିଆସେ । ତା' ପିଠି ଥାପୁଡ଼ାଇ ହସନ୍ତି ସେ, "ମୁଁ ଜାଣିଚି ଯେ, ଆଉ ଦଶଟା ଝିଅଙ୍କ ପରି ଘରକଣରେ ଚୁପ୍ ହେଇ ବସିରହିବା ଭଳି ଲୋକ ତମେ ନୁହଁ ।"

ଫାତିମାର ପିଲାଦିନୁ ଅଙ୍କ ଭଲ ହୁଏ, ବାପାଙ୍କୁ ବି ସେ ସାହାଯ୍ୟ କରିଆସିଚି ତାଙ୍କ ହିସାବ କିତାବରେ । ତେବେ ପୁରୁଷ ଲୋକଙ୍କ ସାଙ୍ଗେ ମିଶି କାମ କରିବାରେ ତାଙ୍କର ଆପତ୍ତି ଥିବା କଥାକୁ ସେ ବୁଝେ । ତା' ଅବ୍ବୁ ଭାବନ୍ତି, ପାଠ ଗୁଡ଼ିଏ ପଢ଼ିଯାଇ ଡାକ୍ତରାଣୀ ଭଳି କିଛି ଗୋଟାଏ ବଡ଼ କାମ କଲେ ଆଉ କିଛି ଚିନ୍ତା ନଥିବ । ତେଣିକି ପୁରୁଷଙ୍କ ସାଙ୍ଗେ ବସାଉଠା କଲେବି କିଛି କଥା ନାହିଁ । କିନ୍ତୁ ଘର ଝିଅ ହେଇ ଏଣୁ ତେଣୁ ଛୋଟକୋଟିଆ କାମ କଲେ ମାନମହନତ ଯିବ । ସାଇପଡ଼ିଶାରେ ଚଳିବା କଷ୍ଟ ହେବ ।

ଫାତିମା ପିଲାଦିନେ ଯେତେ ଭଲ ପଢୁଥିଲା, ଆଜିକାଲି ଆଉ ତା' ଦେଇ ସେମିତି ହେଉନାହିଁ । କ୍ଲାସରେ ଭଲ ମାର୍କ ରଖୁଥିବା ଝିଅମାନେ, ଫାଷ୍ଟ ହେଉଥିବା ପୁଷ୍ପା ଶ୍ରୀବାସ୍ତବ କି ସେକେଣ୍ଡ ହେଉଥିବା ଅମିନା ଖାନ୍‌ଙ୍କ କଥା ଭିନ୍ନ । ସେମାନେ ପ୍ରତି ବିଷୟରେ ଟିଉସନ ପଢ଼ନ୍ତି । ଡାକ୍ତର ଇଞ୍ଜିନିୟରଙ୍କ ଝିଅ ସେମାନେ । ଏଣିକି ସ୍କୁଲରେ ଗୋଟିଏ ଗୋଟିଏ କରି କ୍ଲାସ ଉଠିଯିବା ହିଁ ତା' ଲାଗି ଭାଗ୍ୟର କଥା । ଯଦାକଦା ବାପାଙ୍କ ଦି'ପଦ ଉତ୍ସାହ ସତ୍ତ୍ୱେ ନିଜର କିଛି ବିଶେଷ ଗୁଣ ଅଛି ବୋଲି ବା ଭିନ୍ନ ଧରଣର ଭବିଷ୍ୟତ ଥାଇପାରେ ବୋଲି ସେ କେବେ ଭାବୁନଥିଲା, ନର୍ଗୀସ ବେଗମ୍‌ଙ୍କୁ ଭେଟିଲା ପର୍ଯ୍ୟନ୍ତ । ଆଜିକାଲି ବେଗମ୍ ନର୍ଗୀସ ଜହାଁଙ୍କ ହାବଭାବ ଅନୁକରଣ କରେ ସେ ଦର୍ପଣ ଆଗରେ, ଅନ୍ୟମାନଙ୍କ ସାଙ୍ଗେ କଥାବାର୍ତ୍ତା କଲାବେଳେ, ଉଠାବସାରେ ।

# ମିଠା ମୁହଁ

ସ୍କୁଲ୍ ଜୀବନର ଶେଷ ଦିନ ମାନ । ହାତରେ ବହି ନେଇ ଜବୀନା ସାଙ୍ଗରେ ଫେରୁଥାଏ ଫାତିମା । ଗଳିମୁଣ୍ଡ କାନ୍ଥ ପାଖେ ହେଇଚି, ପଛରୁ ତା' ନାଁ ଧରି ଡାକିଲା କିଏ । ଫାତିମା ଜାଣିଲା । ଇଏ ମୁକ୍ତାର । ତା' ମୁହଁରୁ ନିଜ ନାଁ ଶୁଣିବା ଏଇ ପ୍ରଥମ ଥିଲା । ବୁଲି ଚାହିଁବା ପୂର୍ବରୁ ଭାବିଲା ଭୁଲ୍ ଶୁଣିଥିବ କାଳେ । ମୁକ୍ତାର ଶିଘ୍ର ପାହୁଣ୍ଡରେ ପାଖେଇଆସି ଏକ୍ସରସାଇଜ ଖାତାଟିଏ ବଢ଼େଇ ଦେଉଦେଉ ତା' ହାତରୁ ତଳେ ପଡ଼ିଗଲା ସେଇଟି । ନଇଁପଡ଼ି ଗୋଟେଇ ନେଲାବେଳକୁ ମୁକ୍ତାରର ବଢ଼ିଥିବା ହାତ ଦେହରେ ଛୁଇଁଗଲା ଫାତିମାର ଆଙ୍ଗୁଳି । ମୁକ୍ତାର ଆଖିମିଳେଇ କହିଲା – "ମୋର କବିତା ଅଛି ଏଥିରେ । ପଢ଼ିବ ।"

ସେଇ ମୁହୂର୍ତ୍ତକ ପରେ ପୁଣି ଆଖି ଉଠେଇବାର ସାହସ ବି ହେଲାନାଇଁ ଫାତିମାର । ମୁହଁ ପୋତି ଚାଲୁଚାଲୁ ତା' ଲାଗି ଆଖପାଖର ଦୁନିଆଁଟା ଲିଭିଯାଇଥିଲା ପୂରାପୂରି । ପାଖରେ ଚାଲୁଥିବା ଜବୀନା ଏତେବେଳେ ଦାଉଁକିନି ତାକୁ ଚମକାଇ ଦେଇ କହିଲା, "ଜାଣିଚି । ମେରେ ମେହେବୁବ୍ ସିନେମାର କପି ଥିଲା ଇଏ । ପୂରାପୂରି ପ୍ରଥମ ଲଭ୍ ସିନ୍‌ଟାତ । ଖାଲି ଗୀତଟା ବାକିଥିଲା । ଦେଖିଚୁ ନା ତୁ ଫିଲିମ୍‌ଟା ଫାତିମା ?"

ଫାତିମା ଦେଖିଥିଲା । ଜବୀନା କହିଲା, "ଚାଲ୍ ତମ ଘରକୁ, ପଢ଼ିବା କ'ଣ ସବୁ ଲେଖିଚି ସିଏ ।" ଯାଉଯାଉ କହିଚାଲିଥାଏ ଜବୀନା, "ତୋ ହିରୋ ଫିଲିମ୍‌ରେ ମିଶିବ ଦେଖିବୁ । ଠିକ୍ ଏମିତି ବହି ଖସିପଡ଼ିଥିଲା ପରା, ଆଉ ଗୋଟେଇ ନେଉନେଉ ସାଧନା ଆଉ ରାଜେନ୍ଦ୍ର କୁମାର ଦିହିଁଙ୍କ ଆଖେଁ ଚାର୍ ହେଇଗଲା । ସେଇଠୁ ସେଇ ଲାଜବାବ୍ ଗୀତଟା, ମେରେ ମେହେବୁବ୍ ତୁଝେ..."

ଚାପା ଗଳାରେ ବେସୁରା ଗାଇବାକୁ ଚେଷ୍ଟାକଲା ଜବୀନା । ଫାତିମା ଜିଭକାମୁଡ଼ି ତାକୁ ଚିମୁଟି ସେଥିରୁ ନିରସ୍ତ କଲା । ଦିହେଁ ସେଇଠୁ ଫାତିମା ଘର ଛାତକୁ ଯାଇ ସଞ୍ଜ ଆଲୁଅରେ ଖାତାଟା ଖୋଲିଲେ । ପୂରା ପୃଷ୍ଠାଟାଏ ବି ପଢ଼ିବାକୁ ତର ନଥିଲା ଜବୀନାର, ଓଲଟେଇ ଦେଇଗଲା ଆରମ୍ଭରୁ ଶେଷଯାଏଁ, ଏଠୁ ସେଠୁ ଟିକିଏ ଲେଖାଁ ତରତରରେ ପଢ଼ି । ସେଇଠୁ ହତାଶ ହେଲାଭଳି ପଚାରିଲା, "କ'ଣ ଏସବୁ ଲେଖିଚି ମ ଏଣୁତେଣୁ । ପ୍ୟାର ମୋହବ୍ବତ କାଇଁ ? ତୋ' ନାଁ ସୁଦ୍ଧା ତ ନାଇଁ ଏଠି ।"

ଚିଡ଼ିଯାଇ ଏଥର ଫାତିମା ଜବାବ ଦେଲା, "କ'ଣ ପ୍ରେମପତ୍ର ଲେଖିଚି ବୋଲି କହିଲା କି ସେ ? କବି ପରା ସିଏ, ଜାଣିନୁ କି ?"

ମୁକ୍ତାରର କବି ସମ୍ମେଳନ କଥା ଜବୀନା ଶୁଣିଥିଲା, ଫାତିମା ସେଠିକି ଯାଇଥିବାରୁ ତା' ମନରେ ଟିକେ ବୋଧେ ଈର୍ଷା, ସମ୍ମାନ ଭଳି କିଛି ବି ଆସିଥିଲା । ତଥାପି ଏ ଖାତାଟାରୁ ତାକୁ ଟିକେହେଲେ କିଛି ମିଳିଲାନାହିଁ ।

ଜବୀନା ଗଲାପରେ ଶୋଇଲାଘର କଣରେ ପାଠବହି ଖାତା ଭିତରେ ଲୁଚେଇ କବିତାମାନ ପଢ଼ିଲା ଫାତିମା । ମେଘ, ସପ୍ନ, ଚାନ୍ଦିନୀ ରାତି, ପ୍ରେମିକାଲାଗି ମରଣାନ୍ତକ ବିରହ ଆଦି କଥାସବୁ ସେଥିରେ ଥିବା ତାକୁ ଜଣାପଡ଼ିଲା, ହେଲେ ବି ବିଶେଷ କିଛି ବୁଝାପଡ଼ିଲା ନାହିଁ ତାକୁ । କି ମଜା ଥାଏ ଏଭଳି ଲେଖାର, କ'ଣ ଲାଗି ଏତେ ବାହାବା ମିଳେ ? ତଥାପି ପୂରା ଘଟଣାଟା ତା' ଲାଗି ଥିଲା ସେ ଖାତାର ସବୁଯାକ କବିତାଠୁ, ମୁକ୍ତାରର କବିପଣିଆଠୁ ବେଶୀ ଓଜନିଆ ।

ଫାତିମା ଭାବେ, ସରକାରୀ ଗାର୍ଲ୍‌ସ ସ୍କୁଲର ସବୁଝିଅ ସ୍କୁଲ ଡ୍ରେସରେ ଏକାଭଳି ଦେଖାଯାଉଥିବେ ଦଳ ହେଇ ଫେରିଲାବେଳେ । ଯେମିତିହେଉ ଟିକେ ବାରି ହେଇପଡ଼ିବାକୁ ମନହୁଏ ଫାତିମାର । ଆଗପଛ ହେଇ ଜଣକ ସାଙ୍ଗରେ ପଛକୁ ରହିଯାଏ ଏଣିକି ସେ, ପୁଣିଥରେ କାଳେ ମଉକା ଜୁଟିବ । ମୁକ୍ତାର ଦିଶିଗଲେ ପାଦ ଧୀମେଇ ଯାଏ । ନ ଦିଶିଲେ ଆଖି ଖୋଜୁଥାଏ ଚାରିଆଡ଼ ।

ମିଠା ଇଦ୍ ଥାଏ ତା' ପରଦିନ । ଚଉତରା ଉପରୁ ଉଠିଆସି ତା' ପଛେପଛେ ଚାଲୁଚାଲୁ ମୁକ୍ତାର ପଚାରିଲା, "ଇଦ୍‌ର ସିମେୟା ଖାଇବାକୁ ମିଳିବ ନା ନାହିଁ ?"

ଫାତିମା ଧିମେଇଦେଲା ତା' ପାଦ । ଜବୀନା ଆଗେଇଗଲାପରେ ଅନେଇଲା ମୁକ୍ତାରକୁ, ଓଠଚାପି କହିଲା, "ଆମ ଘରକୁ ଆସିବ, ଇଦ୍ ମିଠେଇ ଖାଇକି ଯିବ ।"ପାଖଦେଇ ଆଗକୁ ଚାଲିଗଲାବେଳେ ଧୀମା ସ୍ୱରରେ ମୁକ୍ତାର କହିଲା, "ଆମ ଘରକୁ ଆସି ମିଠେଇ ଦେଇଯିବ ଯଦି ଖାଇବି ।"

ଇଦ୍ ଦିନ ମିଠା ସିମେଇ ଆଉ ଶାହୀ ଟୁକ୍‌ଡାର ମିଠେଇ ଥାଳିରେ ସଜେଇ ସାଇ ପଡ଼ିଶାଙ୍କ ଘରକୁ ପଠେଇଲା ବେଳେ ନିଜେ ଆଗଭର ହେଇ ଫାତିମା କହିଲା ମା'କୁ, "ମୁଁ ଚାଲିଯାଉଚି ଅମ୍ମି, ରହମାନ ସାଙ୍ଗେ ।" ଫାତିମା ଜାଣେ, ପ୍ରତି ଘର ଲାଗି ଆଗରୁ ଠିକଣା ହେଇଥାଏ, କାହା କାହା ଘରକୁ ମିଠେଇ ଯିବ, ପୁଣି ମିଠେଇ ଆସିବ । ନବାବ ମଞ୍ଜିଲ୍‌କୁ ତାଙ୍କର ମିଠେଇ ଯାଉନଥିଲା ତା'ର ହେତୁ ହେଲାଦିନୁ, ହେଲେ ଫାତିମା କାହାକୁ ନକହି ନିଜେ ସଜାଡ଼ିଦେଲା ଥାଳିଟିଏ ଏଥର । ଆଉ ସାନ ଭାଇକି ନେଇ ଚାଲିଗଲା ସେଠିକି, ଯେଉଁ ଘର ଭିତର ଗମ୍ଭିରୀ ଯାଏଁ ବାଟ ଖୋଲିଯାଏ ତା' ସପ୍ନରେ ଆଜିକାଲି । ଅଧିକା ଥାଳିଟିକୁ ଅନ୍ୟ କେଇଟି ଥାଳି ସାଙ୍ଗେ ମିଶେଇ ଘୋଡ଼େଇଦେଲା ସେ । ପଡ଼ିଶା କେଇଘରକୁ

ଦେବାପରେ ଗଳିମୁଣ୍ଡ ଆଡ଼କୁ ମୁହେଁଇଲା ଯେବେ, ଛଅ ସାତ ବର୍ଷର ଭାଇ ରେହେମାନ ପଚାରୁଥିଲା, "କୁଆଡ଼ିକି ଯାଉଚୁ ଆମେ ? ଆମ ମୁହଲ୍ଲା ତ ନୁହେଁ, ମୁଁ ବାଟ ଦେଖିନି ।"

ଫାତିମା ତାକୁ ଚୁପ୍ କରେଇଲା, "ସବୁ ଜାଗାର ବାଟ ତତେ ଜଣାଥିବ ନା କ'ଣ ? ଚୁପ୍‌ଚାପ ଚାଲିଲୁ ମୋ' ସାଙ୍ଗେ ।" ତା'ପରେ ଫାତିମା ଥାଳି ଉପର ଲେସ୍ ଝାଲର ଘୋଡ଼ଣୀ ଟେକି ଛୋଟିଆ ମିଠେଇଟିଏ ନେଇ ରେହମାନର ପାଟି ପାଖକୁ ନେଲା । ରେହମାନ ମୁହଁ ବୁଲେଇନେଇ କହିଲା, "ଅମ୍ମି ଗାଳିଦେବ ସେଥିରୁ ନେଲେ । ମୁଁ ଖାଇଚି ଘରେ ।"

ଫାତିମା ଧମକେଇଲା, "ଚୋପ୍, ଖୋଲ ପାଟି । ମୁଁ ତ ଦେଉଚି, ଅମ୍ମିକୁ କହିବାକୁ ଯିବୁ କାହିଁକି ?"

ଗଳିରେ ଯାଉଥିବା ଲୋକଙ୍କ ଆଡ଼େ ଅନେଇ ରେହମାନ ପାଟି ଆଁ କଲା । ଅନ୍ୟ ଦିନ ଅପେକ୍ଷା ଆଜି ଗଳିରେ ଝିଅବୋହୂଙ୍କ ଗହଳ ଚହଳ ବେଶୀ । ନୂଆ ଜାମା ପିନ୍ଧି ମୁଣ୍ଡରେ ଓଢ଼ଣୀ ଦେଇ ପରସ୍ପର ଘରକୁ ମିଠେଇ ଥାଳି ଦିଆନିଆ ଲାଗି ଯାଉଚନ୍ତି । ପୁରୁଷ ଲୋକେ ମସଜିଦ୍‌କୁ ଯାଇ ସେଠୁ ଭେଟାଭେଟି ହେଇ ଯିବେ । ଫାତିମା ଭାଇର ହାତଧରି ମୁଣ୍ଡପୋତି ଗୋଡ଼ ବଢ଼େଇଥିଲା ନବାବ ମଞ୍ଜିଲ୍‌କୁ । ନିଜ ଗଳି ମୁଣ୍ଡରୁ କେଇ ଖୋଜ ବୋଲି ବାଟ, ତଥାପି ଦାନ୍ତଚାପି ନିଶ୍ୱାସ ରୋକି ନେଇଥିଲା ସେ । ମୁହଁ ଉପରଯାଏଁ ଟାଣିଦେଇଥିଲା ଝଲମଲ ଓଢ଼ଣୀ ଟିକୁ ।

ଗଳିଟା ଆଜିବି ଶୂନଶାନ୍ କହିଲେ ଚଳେ । କାଁ ଭାଁ ଲୋକଙ୍କ ଆଡ଼େ ନ ଚାହିଁ ଲମ୍ବ ପାଚେରୀ କଡ଼େ କଡ଼େ ମଝି ଫାଟକ ଯାଏଁ ପହଞ୍ଚିବାକୁ ସତେକି ବାଟ ସରୁନଥିଲା । ଏତେ ବଡ଼ କଳଙ୍କିଲଗା ଲୁହା ଫାଟକଟା ଦରଆଉଜା ରକମ ଖୋଲାପଡ଼ିଚି, ବୋଧେ କେବେ ବନ୍ଦ ହେଉଥିବ କି ନାହିଁ । ଏଥର ଦୋଦୋପାଞ୍ଚ ରେହମାନର ହାତ ଟାଣି ଏକରକମ ଭିତରକୁ ନେଇଗଲା ଫାତିମା । ବିରାଟ ଚଉଖୁଣ୍ଟିଆ ଧଳା କୋଠାଟା ସାମ୍ନାରେ ଶୁଖିଲା ପଡ଼ିଆଟାଏ, ପୂର୍ବେ କେବେ ଏଠି ଗଛଲତା ଭର୍ତ୍ତି ବଗିଚା ଥିଲା କାଳେ । ଏବେ ଏଠି ସେଠି ଦିଚାରିଟା ପୁରୁଣା ବଡ଼ ଗଛ କେବଳ, ପାଚେରୀ ପାଖାପାଖି ଏଣୁତେଣୁ ବୁଦା । ହଭେଲୀର ମଝାମଝି ଭିତରକୁ ଥିବା ଖୋଲା କବାଟ ସାମ୍ନାରେ ଯାଇ ଛିଡ଼ାହେଲେ ଦୁହେଁ । ଭିତରେ ବିରାଟ ଚାରିକଣିଆ ଅଗଣାଟିଏ । ତାକୁ ଘେରି ଚାରିପାଖେ ଥିବା ଘରମାନଙ୍କରେ ଇଦ୍ ମଉଛବ ଚାଲିଚି । ସବୁ କବାଟରେ ଭିନ୍ନ ଭିନ୍ନ ପର୍ଦ୍ଦା, ଜରିଲଗା ଝାଲର । ଭିତରୁ ସବୁ ଆସୁଚି ପିଠାପଣାର ବାସ୍ନା । ଲୋକବାକ ବାହାର ଭିତର ହେଉଚନ୍ତି । ବୋଲହାକ ଚାଲିଚି । ଅଜଣା ଅଚିହ୍ନା ସାହିଟିଏ ତା' ଆଗରେ ସତେବା । ଗୋଟିଏ ହାତରେ ମିଠେଇ ଥାଳି, ଆରଟିରେ ମୁଠେଇଚି ଭାଇର ହାତକୁ । ମୁଣ୍ଡ ଉପରେ କି ଗୋଟାଏ ଲତାରେ ଫୁଲ ଫୁଟି ବାସୁଚି । ଚମେଲୀ ନା କ'ଣ । ରେହମାନର

ହାତ ଛାଡ଼ି ହାତ ପାଆନ୍ତାର ଡାଳଟିଏରୁ ଫୁଲକେଇଟା ତୋଳିନେଲା ଫାତିମା, କୁର୍ତ୍ତା ପକେଟରେ ରଖିଲା । ଆଉ ବୁଲିପଡ଼ି ପଳେଇବାକୁ ବସିଥିବା ରେହମାନର ହାତଧରି ଗୋଡ଼ ବଢ଼େଇଲା ଭିତରକୁ । ଅଗଣା ମଝି କୋଉକାଳର ପୁରୁଣା ଆମ୍ବ ଗଛଟି ତଳେ ଦଳେଝିଅ ଖେଳୁଚନ୍ତି କି ଗୋଟାଏ ଖେଳ, ଗୀତ ବୋଲି ବୋଲି । ଜଣେ ଚିହ୍ନିଲା, "ଆରେ ଫାତିମା ଦିଦି, ତମେ କେମିତି ?"ଫାତିମା ଇଦ୍ ମୁବାରକ କହିଲା, ଥଙ୍ଗେଇଲା ଭଳି କହିଲା, "ଖାଲାଙ୍କ ପାଖକୁ ଆସିଥିଲି, ସିମେୟା ଦେବାକୁ ।"

"ତମର ଖାଲା ଏଠି ରହନ୍ତି ? କିଏ ସେ ?"

"ମୁକ୍ତାର ଭାଇଙ୍କ ମା, ତମେ ଜାଣିନା ?"

ଓ, କହିଲା ଝିଅଟି, ଆଉ ଆଙ୍ଗୁଠିରେ ଗୋଟିଏ କୋଣକୁ ବାଟ ଦେଖାଇଦେଇ ନିଜ ଖେଳକୁ ଫେରିଗଲା । ରେହମାନର ହାତ ଟାଣିଲାବେଳକୁ ସେ ଓଟାରିହେଇ କହିଲା, "ନାଇଁ, ମୁଁ ଘରକୁ ଯାଉଚି ।" ଫାତିମା ଆଖି ଦେଖେଇଲା, ଚାଲୁଚୁ ନା ନାଇଁ । ମୋଟାମୋଟି ବୁଝିନେଇଥିଲା ସେ, ପିଲାଏ ଖେଳୁଥିବା ବଡ଼ ଅଗଣାଟିର ଚାରିପାଖଯାକ କୋଠରୀ ମାନଙ୍କରେ ଭିନ୍ନ ଭିନ୍ନ ପରିବାରସବୁ ରହନ୍ତି । କୋଉକାଳେ ସେମାନେ ଗୋଟିଏ ପରିବାର ହେଇଥିବେ ହୁଏତ । ଏବେ ଗୋଟିଏ ସାହିର ଲୋକ ଭଳି, ସମସ୍ତଙ୍କ ଭିତରେ ଏବେ ଇଦ୍ ମିଠେଇ ବଣ୍ଟାବଣ୍ଟି ବି ଆଉ ଚଳେନାଇଁ । ଫାତିମା ମନକୁ ଆଣୁନାଇଁ ଏକଥା, ଯେ କି ଉତ୍ତର ସବୁ ତାକୁ ଫାନ୍ଦିବାକୁ ହେବ ଯା'ପରେ । ଆଉଜା କବାଟରେ ଧୀରେ ହାତ ନ ମାରୁଣୁ ଖୋଲିଲା ମୁକ୍ତାର ନିଜେ । ଯାହା ଦେଖୁଥିଲା ତା' ଆଖି ବୋଧେ ବିଶ୍ୱାସ ହେଉନଥିଲା ତା'ର । ଫାତିମା କ'ଣ କହିବ ବୋଲି ମୁହଁ ଖୋଲିଲା, ପୁଣି ବୁଜିଦେଲା । ଦିହେଁ ଚୌକାଠ ଦି'ପାଖେ ଠିଆହେଇ ରହିଥାନ୍ତେ ସେମିତି, ଯଦି ରେହମାନ କହି ନଥାନ୍ତା, "ଅପା, ମିଠେଇ ଦେଇଦିଅ, ଯିବା ।"

ମୁକ୍ତାର ଏଥର ଉଛୁଳିପଡ଼ି ପଚାରିଲା, "ଆରେ ରେହମାନ ମିଆଁ, ତମେ କ'ଣ ଇଦ୍ ମିଳନକୁ ଯାଇନ ଆଜି, ଅପା ସାଙ୍ଗରେ ବୁଲୁଚ ଝିଅଙ୍କ ପରି ।"

ଫଟ୍‌କିନି ଜବାବ ଦେଲା ରହମାନ, "ତମେ ବି ତ ଘରେ ଅଛ ଭେୟା, ଝିଅଙ୍କ ପରି ।"

ଏତିକି କହିଦେଇ ଚଟ୍‌କିନି ବୁଲିପଡ଼ି ଏକା ଦୌଡ଼କେ ଅଗଣା ବାଟଦେଇ କବାଟ ପାରିହେଇ ପଳେଇଲା ରେହମାନ । ଫାତିମା କ'ଣ କରିବ ବୋଲି ଫେରିପଡ଼ିଲା ବେଳକୁ ହାତ ଉପରେ ହାଲୁକା ଛୁଆଁ ଦେଇ ମୁକ୍ତାର ଡାକିଲା, "ଆସ ଭିତରକୁ ।" ଫାତିମା ନିଜକୁ ଘୁଞ୍ଚେଇନେଇ ଅସହାୟ ହେଇ ପଚାରିଲା, "ସେ ପଳେଇଲା ଯେ !"

ମୁକ୍ତାର ଭିତରକୁ ବାଟ କଢ଼େଇ ନେଉ ନେଉ ହସିଲା, କହିଲା, "ପଳେଇଲା ତ

କଣ ହେଲା ? ତମେ ଫେରିବାକୁ ବାଟ ଭୁଲିଯିବ ନା କ'ଣ ?"

ଭିତରେ ଦି'ବଖରା ଘର, ପ୍ରଶସ୍ତ କିନ୍ତୁ ଅସଜଡ଼ା । କେହି ଦେଖାଯାଉନାହାନ୍ତି । କଡ଼ ଟେବୁଲ୍‌ରେ ଥାଳି ଥୋଇଦେଇ ଫାତିମା କହିଲା, "ମାଉସୀ ନାହାନ୍ତି କି ଘରେ ?"

ଚଉକିରେ ବସିପଡ଼ି ମୁକ୍ତାର କହିଲା, "ମିଠେଇ ବାଣ୍ଟିବାକୁ ଯାଇଥିବ, ଏଇଲେ ଆସିଯିବ । ବସ ଟିକିଏ, ଆମ ଘର ମିଠେଇ ଖାଇବନାଇଁ କି ?"

ଫାତିମା ବସୁବସୁ ବ୍ୟତିବ୍ୟସ୍ତ ହେଲା, "ଥାଳିଟା ଖାଲି କରିଦିଅ, ମୁଁ ଯାଏ, ଅମ୍ମି ଖୋଜିବ ।"

ମୁକ୍ତାର ହସିଲା ମୁଚୁମୁଚୁ । ଏଥର ଫାତିମା ଉଠିପଡ଼ି ଯିବାକୁ ବାହାରିଲା, "ହଉ ତେବେ, ଥାଳିଟା ପଠେଇଦେବ, ମୁଁ ଯାଏଁ ।"

ଉଠିଲା ସିନା, ଜାଣିଥିଲା ତା' ପାଦ ବଢ଼ିବା ଆଗରୁ ମୁକ୍ତାର ତାକୁ ଅଟକେଇଦେବ । ଅଟକିଯିବାକୁ ଆଳ ଖୋଜୁଥିଲା ସେ ସତେକି । ତଥାପି କହିଚାଲିଥିଲା ଏଣୁତେଣୁ, "ମୋତେ ଯିବାକୁ ହେବ, ଅମ୍ମି ବ୍ୟସ୍ତ ହେବ । କ'ଣ କହିବି ଘରେ ?"

"କାଇଁକି, ମୋ' ମା' ତମକୁ ଅଟକେଇଦେଲେ ବୋଲି କହିଦେଲେ ଚଳିବନି ? ସେ ତମ ମା'ଙ୍କର ଭଉଣୀ ହୁଅନ୍ତି ପରା ଲେଖାରେ ।" ଫାତିମାର ମୁହଁରୁ ଏକଥା ଫୁଟିଲାନି ଯେ ତା' ଅମ୍ମିକୁ ଜଣାନାଇଁ ଫାତିମା ଏଠିକି ମିଠେଇ ଦେବାକୁ ଆସିଚି ବୋଲି । ଚୁପ୍‌ଚାପ ଉଠି କବାଟ ଆଡ଼କୁ ଯିବାକୁ ଗୋଡ଼ ବଢ଼େଇଲା ସେ, ମୁହଁ ଟେକି ଦେଖିଲା ମୁକ୍ତାର ହାତ ବଢ଼େଇ ରୋକୁଚି ତାକୁ । ମୁକ୍ତାରର ହାତ ବାଜୁଚି ଦେହରେ । ଡାକୁଚି ସେ ଫାତିମାକୁ ଆସ୍ତେକରି, "ଚାଲ ଭିତରକୁ । ଏମିତି କ'ଣ ଫେରିଯାଆନ୍ତି ? ମୋ' ଶାୟରୀ ଶୁଣିବନି ?"

ଅଧା ଅଧା ଶୁଭୁଥିଲା ମୁକ୍ତାରର କଥା ତାକୁ, "ଚାଲ ଫାତିମା । ବସ ଟିକିଏ ବେଳ । ତମେ ନିଜେ ବାଛିଦେବ ମୋ' ଖାତରୁ, ମୁଁ ପଢ଼ିବି କବିତା ତମଲାଗି ।"

କଥା କହୁଥିବା ଓଠକୁ ଅନେଇଥାଏ ସେ, ଜାଣୁନଥାଏ ତା' ପାଦ କେମିତି ଆପଣାଛାଏଁ ବଢ଼ିଗଲା ସେ କୋଠରୀ ଆଡ଼କୁ । ମୁକ୍ତାରର ମୁହଁଉପରୁ ଦୃଷ୍ଟି ଫେରେଇ ଦେଖିଲା ଯେବେ ଚାରିପାଖକୁ, ଦେହ ତା'ର ନିଜର ହେଇ ଆଉ ନଥିଲା ଆଉ ସତେକି । ତାକୁ ବେଢ଼ିଧରିଚି ସେଇ ବାହୁଦୁଇଟି ଯାହା ପଶିଆସେ ତା' ସ୍ୱପ୍ନ ଭିତରକୁ ଯେତେ ନାହିଁ କଲେ ବି । ସ୍ୱରଟିଏ କହୁଚି ତା' କାନ ପାଖରେ, "ଦେଖୁଚ ଫାତିମା, ମୋ' ଚାହିଁବା ତମକୁ ନେଇଆସିଚି ମୋ' ପାଖକୁ । ଏଇଠି ମୁଁ ରହେ, ଆଉ ତମ କଥା ଭାବୁଥାଏ । ଅପେକ୍ଷା କରି ରହିଥାଏ କେବଳ ତମକୁ । ପ୍ରତି ମୁହୂର୍ତ୍ତ । ଦିନରାତି ।"

ନିଜକୁ ଅଲଗା କରିନେଲା ଫାତିମା, ଏକରକମ ଭୟରେ । କିଛି କହିଲାନି । ଚୁପ୍

ହେଇ ତା'ଠୁ ଅଲଗା ହୋଇଯାଇ ପାଖରେ ଛିଡ଼ାହେଇଚି ମୁକ୍ତାର । ଓଠରେ ଅଳ୍ପ ହସ କେବଳ । ଅନାଉଚି ତାକୁ ଗୋଡ଼ରୁ ମୁଣ୍ଡ ଯାକେ । ଅଲଗା ବିଛଣା ପାଖକୁ ଯାଇ ଟିକିଏ ସଜାଡ଼ି ଦେଉଦେଉ କହୁଚି, "ଏଇ ଦେଖ, ସବୁଠି ତମ ଛାପ ଏଠି । ତମେ ଅଛ ଏଇଠି ସଦାବେଳେ । ମୋ' ପାଖରେ । ଚିହ୍ନିପାରୁଚ ନା ? ତମ ହାତ ଛୁଆଁ ନ ବାଜିଲେ ମୁଁ କ'ଣ କିଛି ଲେଖିପାରେ ଫାତିମା ?"

ବିଛଣାର ଚଦରକୁ ହାତରେ ଆଉଁସି ଦେଇ ମୁକ୍ତାର କହିଚାଲିଚି, "ଏଇଠି ମୁଁ ଶୋଇଥାଏ ଆଖି ମେଲି, ଆଉ ତମକୁ ଭାବେ । ଭାବେ ପୁଣି ଲେଖେ । ଭାବେ ତମେ କେବେ ଆସିବ । ବାଟ ଚାହିଁଥାଏ ପ୍ରତିକ୍ଷଣ ।"

ଫାତିମା କଡ଼େଇ ଚାହୁଁଚି । ସବୁଠି ଏଣୁତେଣୁ ଜିନିଷ ଭର୍ତ୍ତି, ଚଉକି, ଟେବୁଲ୍ ସବୁଠି ବହି, ଲୁଗା, ଗାମୁଛା । ବିଛଣା ଉପରୁ ପାଲଟା ଲୁଗା କେଇଖଣ୍ଡ ଉଠାଇଦେଉଚି ମୁକ୍ତାର, ଖାତା କାଗଜ କଲମ ସବୁ କଡ଼କୁ ଘୁଞ୍ଚେଇଦେଇ ଜାଗା କରିଦେଉଚି । ତାକୁ ଅନେଇ ରହି ଅଧା ଶୁଭିଲା ଭଳି କହୁଚି, "ଆସ, ବସ ଫାତିମା ।"

ଭୂଇଁରେ ପାଦ ପୋତିହେଇଯାଇଥିବା ଭଳି ଛିଡ଼ା ହେଇଥିଲା ଫାତିମା, ଚାରିଆଡ଼କୁ ଚାହିଁ ନିଜକୁ ମନେପକେଇଦେବାକୁ ଚେଷ୍ଟା କରୁଥିଲା । ଯା' ବାହାରେ ଯେଉଁ ସଂସାରକୁ ଛାଡ଼ିଦେଇ ଆସିଚି ସେ କେଇକ୍ଷଣ ଆଗରୁ, ସେଠି କ'ଣ ଥିଲା, କେମିତି ଦିଶୁଥିଲା ସେ ? ଆସ୍ତେକରି ଟାଣିଆଣିଲା ତାକୁ ମୁକ୍ତାର, ତା' ଓଠ ତଳେ ହାତ ଦେଇ କାକୁତି କଲା, "ମୋ ମୁହଁକୁ ଚାହଁ, ପ୍ଲିଜ୍! ଚାହଁ ଟିକେ ମୋ' ମୁହଁକୁ ।"

ମୁହଁ ଖୋଲିଥିଲା ଫାତିମା କ'ଣ କହିବ ବୋଲି, ସ୍ପର୍ଶଟିଏ ଆସି ବୁଜିଦେଲା ତା' ଓଠ । ତା' ସହିତ ଆଜିଯାଏଁ ଚିହ୍ନା ଅଚିହ୍ନା ପୂରା ଜୀବନ ଗୋଟିପଣେ ପୋଛିହେଇଗଲା ଅବା । ଆଗତ ବିଗତ ସବୁକିଛିକୁ କ୍ଷଣକେ ଆଖି ବୁଜିଦେବାବେଳେ ଫାତିମା କାନପାଖେ ଶୁଣୁଥିଲା, ଅଧା କଥା ଅଧା ଅଧା କବିତା ଭଳି କିଛି କିଛି ।

"ମୋ କଥା ରଖି ତମେ ଆସିଚ ସତରେ ? ଏ ସତ ନା ମୁଁ ସପ୍ନ ଦେଖୁଚି ମୋ' ନୀଳପରୀ !"

ତା' ଦେହର ସୀମାରେଖା ସବୁ ମିଳେଇ ଗଲାବେଳେ ବି କେତେ କ'ଣ ସବୁ କହୁଥିଲା ସେଇ ସ୍ୱରଟି, ଫାତିମାକୁ କିଛି ବୁଝା ପଡୁନଥିଲା । ସେଇ କବିତାର ସନ୍ଧ୍ୟା ଭଳି ଶୁଭୁଥିଲା କିଛି ଶାୟରୀ, କୋମଳ ଗମ୍ଭୀର ମେଘ ମେଘ ସ୍ୱରରେ ଅଧା ଅଧା ବୁଝିହେଉଥିବା କେତେଗୁଡ଼େ ଶବ୍ଦ, ରହସ୍ୟମୟ କବିତାର ଧାଡ଼ି, ବିଚିତ୍ର ଉଚ୍ଚାରଣ ସଙ୍ଗେ ଗୁଞ୍ଜରି ଯାଉଥିବା ଧ୍ୱନି । ଓ ଏହାକୁ ଘେନିଯାଉଚି ଫାତିମା ସାରା ଦେହ ଦେଇ । ଓ ଫାତିମା ଚାହୁଁଚି ଏଇ

କବିଟିକୁ, ଏଇ ଶାୟରଟିକୁ ଗୋଟିପଣେ ପାଇବାକୁ । ତା'ର ଲହକା ତାଳ ଭଳି ଦେହଟିରେ ଗୋଟିପଣେ ମିଶିଯିବାକୁ । ତା' ଅଦ୍ଭୁତ ନିରର୍ଥକ କଥାସବୁ ତା' ଆଙ୍ଗୁଳିମାନ ଭଳି ଫାତିମାର ଦେହକୁ ଆଉଁସିଯାଉ, କେବଳ ସେତିକି ହିଁ ଲୋଡ଼ା ତା'ର । କେତେଦିନୁ ଦେଖି ଝୁରିହେଉଥିବା ଦୂର ଝିଲପାଣି ଗହୀରକୁ ଗୋଡ଼ ବଢ଼େଇଦେଉଚି ସେ । ତାର ଗାଢ଼ ଆବର୍ତ୍ତ ଭିତରେ ଥାଇ ଏଣିକି ପାଦ ତଳର ଭୂଇଁକୁ ବି ଛାଡ଼ି ଦୂରେଇଯିବାକୁ ଦେଉଚି ।

ସମୟ ଫେରିଆସିଲା ଯେତେବେଳେ । ନିଜ ଋରିପାଖକୁ ଋହିଁଲା ଫାତିମା । ବିଛଣାରୁ ଉଠିଲା ଆସ୍ତେକରି । ନିଜ ଲୁଗା ସଜାଡ଼ିନେଲା । କାନ୍ଥ ଦର୍ପଣରେ ନିଜକୁ ଋହିଁଲା ଫାତିମା । ତରବରରେ ମୁଣ୍ଡକୁ ସାଉଁଳିପକାଇଲା । ମୁଣ୍ଡ ଉପରକୁ ଓଢ଼ଣୀ ଟାଣିନେଇ ସ୍ୱର ଫୁଟୁନଥିବା ଗଳାରେ କହିଲା, "ମୁଁ ଯାଏଁ ।"

ନିଜ ଦେହ ଉପରକୁ ପୁଣିଥରେ ତାକୁ ଆଉଜେଇ ଆଣିଲା ମୁକ୍ତାର । ସେମିତି ସାଥିରେ ତାକୁ ଦାଣ୍ଡଘରକୁ ନେଇ ଆସୁଆସୁ କହିଲା, "ଏମିତି କ'ଣ ବ୍ୟସ୍ତ ହଉଚ ? ଅମ୍ମିକୁ ଭେଟିଦେଇ ଯାଅ, ନହେଲେ ଘରେ କହିବ କ'ଣ ?"

ଫାତିମାକୁ ବସେଇଦେଇ ଦାଣ୍ଡକବାଟ ଖୋଲିଦେଲାବେଳେ ଯାଇ ଫାତିମାକୁ ଜଣାଗଲା ଯେ ମୁକ୍ତାର କେତେବେଳେ ଛିଟିକିଣିଟା ଲଗେଇଦେଇଥିଲା ।

ଟିକିଏ ବେଳପରେ ମୁକ୍ତାରର ମା' ଆସିଲାବେଳକୁ ଫାତିମା କୋଳରେ କବିତା ବହିଟା ଧରି ଓଲଟାଉଥିଲା, ପାଖ ଟେବୁଲ୍‌ରେ ରଖା ପ୍ଲେଟ୍‌ରୁ ଗୋଟିଏ ଗୋଟିଏ କରି ମିଠା ଗଜା ଖାଉଥିଲା । ମୁକ୍ତାର ଅନାୟାସ କହିଲା, "ଅମ୍ମି, ଋଚୀ ସିମେୟା ପଠେଇଚନ୍ତି ଫାତିମା ହାତରେ । ଋଚୀ ମୋ' ଶାୟରୀ ଶୁଣିବାକୁ ଯାଇଥିଲେ ତ, ମୋତେ ବହୁତ ତାରିଫ କରନ୍ତି ସେ । ଫାତିମା ବି ଯାଇଥିଲା କବି ସମ୍ମିଳନୀକୁ ।"

ମୁକ୍ତାରର ମା' ମିଠେଇ ବାଣ୍ଟିବାକୁ ଯାଇନଥିଲେ । ତାଙ୍କୁ ଦେଖିଲେ ମନେହେଉନଥିଲା ଯେ ଇଦ୍ କଥା ତାଙ୍କର ମନେଥିବ । ପଛପାଖ କୂଅ ପାଖେ ଥିବା ଗାଧୁଆଘରକୁ ସେ ବୋଧେ ଯାଇଥିଲେ ଗାଧେଇବାକୁ, ହାତରେ ଚିପୁଡ଼ା ଲୁଗା ଧରିଚନ୍ତି ଶୁଖେଇବେ ବୋଲି । ଅକାରଣ ଦୁଃଖୀ, ରୁଗ୍ଣ ଦିଶୁଥିବା ମଣିଷଟିଏ । ଏତେବେଳକୁ ମୁକ୍ତାର ମିଠେଇ ଥାଳିଟିକୁ ଖାଲିକରି ସେଥିରେ ଶୁଖିଲା ଦି'ଋରିଟା ମିଠା ଗଜା ରଖି ନେଇଆସିଥିଲା । ମୁକ୍ତାରର ମା' ଟିକିଏବେଳ ସେମିତି ଠିଆହେଇ ଆଶ୍ଚର୍ଯ୍ୟ ହେଲାଭଳି ଅନେଇଲେ ସେ ଥାଳିକୁ, ପୁଣି ଫାତିମାକୁ । କ'ଣ ଭାବି ତା'ପରେ ପାଖକୁ ଆସି ତା' ମୁଣ୍ଡ ଆଉଁସି ପକେଇ କହିଲେ, "ଫାତିମା ବେଟୀ, ମୁଁ ଚିହ୍ନିପାରୁନଥିଲି । ଆସିଲୁ ଝିଅ ଆମ ଘରକୁ, ଆଲ୍ଲାତାଲା ଭଲରେ ରଖିଥାନ୍ତୁ । କେଡ଼େ ବଡ଼ ମନ ତୋ' ମାଆର! ମୁଁ ପିଲାଟିଦିନୁ ଜାଣେ ପରା ତାକୁ ।"

# ଢେଉ ଫେରିଯିବା ବେଳେ

ଆଜି ମନେ ପକେଇବାକୁ ଚେଷ୍ଟା କରେ ଫାତିମା, କେମିତି କଟିଥିଲା ତାପର ଦିନମାନ ତା' ଲାଗି ? ଏଭଳି ଦୁର୍ଦ୍ଦାନ୍ତ ଢେଉ କିଛି ଆସି ତାକୁ ଗୋଟାପଣେ ବୁଡ଼େଇ କୂଳର ମାଟିରୁ ଆକାଶରୁ କିଛିବେଳ ଲାଗି ବେପରୱା ଉଡ଼େଇ ନେବାପରେ ପୁଣି କେମିତି ଫେରିଆସି ଆରେଇଥିଲା ସେ ପୁରୁଣା ଜୀବନକୁ ? ଯେତେ ମନ ମୂନ ଲଗେଇଲେ ବି ସ୍ପଷ୍ଟକରି ମନେପଡ଼େନାଇଁ ଆଉ । କେବଳ ମନେପଡ଼େ ତା' ପରର ଦୁଶ୍ଚିନ୍ତା । ଏକପ୍ରକାର ଭୟ, ଦୁଶ୍ଚିନ୍ତାରେ ହିଁ କଟିଥିଲା ତାପର ଦିନ ପରେ ଦିନ । ମାସଟିଏ ଅନ୍ତତଃ ।

କାହାକୁ ହେଲେ କହିପାରିନଥିଲା ଫାତିମା ସେଦିନ କଥାଟା । ଜବୀନାକୁ ବି ନୁହେଁ । ଲହଡ଼ି ଭଳି ମାଡ଼ିଆସେ ସେତେବେଳର ସ୍ମୃତି । ବେଳ ନାହିଁ ଅବେଳ ନାହିଁ ବ୍ୟତିବ୍ୟସ୍ତ କରିପକାଏ । ପର ମୁହୂର୍ତ୍ତରେ କିନ୍ତୁ ସେ ଉଚ୍ଚାଟ ରହେନାହିଁ । ଓଲଟି ନାକ କାନ ରୁନ୍ଧିଦିଏ ଅନାହୂତ ଗୋଳିପାଣି । ଉର୍ଦ୍ଧ୍ୱଶ୍ୱାସ କରିଦିଏ ଅଦ୍ଭୁତ ଏକ ଭୟ । ଗହୀର ପାଣିର ଆଶ୍ଳେଷର କଥା ନୁହେଁ, ଢେଉ ଫେରିଯାଇ ବାଲିରେ ପଡ଼ିବା କଥା ହିଁ ମନକୁ ଘାରେ । ରାତିରେ ଘଣ୍ଟା ଘଣ୍ଟା ଧରି ଅନିଦ୍ରା ଆଖିରେ ଭାବୁଥାଏ ସେ, କ'ଣ ହେବ ? ଯଦି କିଛି ହେଇଯାଏ ? ବାସ୍, ଜୀବନଟା ହାରିଦେବାକୁ ହେବ । ଆଉ କିଛିହେଲେ ବାଟ ନାହିଁ ।

ରକ୍ଷା କଲେ କରିପାରେ ସେଇ ମୁକ୍ତାର । ନିଶ୍ଚୟ ବାଟ କିଛି ଖୋଜିବ ସେ ଯେମିତି ହେଉ । ବାହାହେବାକୁ ରାଜିହେଇଯିବ । ସେଇକ୍ଷଣି ସାଙ୍ଗେ ସାଙ୍ଗେ । କିନ୍ତୁ କେମିତି ହେବ ସେ କଥା ? ମୁକ୍ତାରର ତ ହାତରେ ଡିଗ୍ରୀଟାଏ ନାହିଁ, ଘରେ ଆୟ ବୋଲି କିଛି ନାହିଁ । ତା' ପୂର୍ବରୁ ଘରେ ଫାତିମାର ବାପା ମା' ଜାଣିବେ । ମୁକ୍ତାର ଯଦି ଚୁପ୍ ରହିଯାଏ, ସେଇଠୁ ? ଫିଲିମ୍‌ର ହିରୋଇନ୍ ଅନ୍ତଃସତ୍ତ୍ୱା ହେଲେ ରୋମାନ୍‌ସ ସରିଯାଇ ଟ୍ରାଜେଡ଼ିର ଆରମ୍ଭ ହେଲା ଭଳି ଜଣାଯାଏ । ସେଇଭଳି ହେବ କି ଜୀବନ ? ତାକୁ ଡାକ୍ତରଖାନାକୁ ଯିବାକୁ ହେବ ଲୁଚହେରାରେ କିଛି ଗୋଟେ କରିବା ଲାଗି ? ବାପା, ଜେଜେମା କେବେ ରାଜି ହେବେ ସେଥିଲାଗି ? ତାଙ୍କ ଆଖିରେ ପେଟ ଭିତରେ ପିଲାକୁ ମାରିଦେବା କେଡ଼େ ବଡ଼ ପାପ ! ସିଏ ନିଜ ଜୀବନ ହାରିଦେବା ତା'ଠୁ ବଡ଼ ନୁହେଁ ବୋଲି ଭାବିବା ଅସମ୍ଭବ ନୁହେଁ । କେମିତି ଏଭଳି କଥାଟିଏ ଘଟିଯିବାକୁ ଦେଲା ଫାତିମା ? ଆଲ୍ଲାତାଲା ବି ତାକୁ କ'ଣ ମାଫ୍ କରିବେ ?

ସେଦିନ ତୋଳିଥିବା ଗୟମେଲୀ ଫୁଲ କେଇଟି ତା' ବହିଥାକ ତଳେ ଥାଏ । ନିଜକୁ ଯେତେ ନାହିଁ କଲେ ବି ଯାଉଣୁ ଆସୁଣୁ ଦିନରେ କେଇଥର ସେ ଥାକ କାଗଜ ଟେକି

ଶୁଖିଲା ଫୁଲ କେଇଟିକୁ ଛୁଏଁ, ନାକ ପାଖକୁ ନିଏ, ପୁଣି ଥୋଇଦେଇ ଢାଙ୍କିଦିଏ । ଅକାରଣ ଭୟରେ ତା' ହାତ ପାପୁଲି ଝାଳେଇଯାଏ ପୁଣି । ମନହୁଏ ଫୁଲକେଇଟିକୁ ମକଚି ଫିଙ୍ଗିଦେବ । ହାତ ଯାଏନାହିଁ । ପୁଣି ରଖିଦିଏ ସନ୍ତର୍ପଣରେ ।

ଯେବେ ମୁକ୍ତାରକୁ ଦେଖେ, ଉଦ୍‌ବେଗ ଆଶଙ୍କାର ଲେଶମାତ୍ର ଚିହ୍ନ ନଥାଏ ତା' ମୁହଁରେ । ବରଂ ନୂଆ ରକମର ମୁରୁକି ହସ ଦିଏ ସେ ଫାତିମାକୁ ଚାହିଁ । ଆଗ ଅପେକ୍ଷା ଆଉରି ଏକପ୍ରକାର ଦମ୍ଭ, ଆତ୍ମବିଶ୍ୱାସ ଦିଶୁଥାଏ ତା'ଠି । କଥାବାର୍ତ୍ତା କରିବାର ସୁଯୋଗ ଖୋଜୁଥାଏ ସେ । ବାଟରେ ପାଖକୁ ଚାଲିଆସି ପଚାରେ, "ଫାତିମା, କେବେ ଆସୁଚ ? କାଲି ଆସନା ମୋ' ଜାନ୍ । କେମିତି ରହିପାରୁଚ ଏମିତି ଦୂରେଇକି ?"

ଫାତିମାକୁ ରାଗ ଲାଗେ । ଏକପ୍ରକାର ହତାଶା ଆଶେ । ତା' ଉଦ୍‌ବେଗର କାଣିଚାଏ ହେଲେ କ'ଣ ପାଉଣା ହେବାକଥା ନୁହେଁ ମୁକ୍ତାରର ? ତାକୁ ଲାଗେ ଓଲଟି ମୁକ୍ତାର ଆଗ ଅପେକ୍ଷା ମୁହଁ ଉଞ୍ଚେଇ ଚାଲୁଚି । ଦିଶୁଚି ଗଡ଼ ଜିଣିଥିବାପରି । ଫାତିମାକୁ ଅଚିହ୍ନା ଅଚିହ୍ନା ଲାଗେ ସେ ଚେହେରା ।

ଆଜି ସେକଥା ମନେପଡ଼ିଲେ ଲାଗେ, କେମିତି ଭଲା ପ୍ରେମର ଅନୁଭବ ସମାନ ହେଇପାରିବ ପୁଅ ଆଉ ଝିଅଙ୍କ ଲାଗି ? ଦେହର ସୀମାକୁ ଲଂଘିଦେବା ତ ସେତେ ବଡ଼ ଘଟଣା ହେବ ବୋଲି କଥା ନାହିଁ ପୁଅଙ୍କ ଲାଗି । କିଏ ଜାଣିଚି କାହା ହାତରେ ଗଢ଼ା ଏମିତି ଅଲଗା ଅଲଗା ନିୟମ । ସେ ସାଇ ପଡ଼ିଶା ଆତ୍ମୀୟ ସ୍ୱଜନଙ୍କ ସମାଜ ଗଢ଼ିଥାଉ ଅଥବା ତିଆରି କରିଥାନ୍ତୁ ନିଜେ ପରମ ମାଲିକ୍, ବିଶ୍ୱ ନିୟନ୍ତା ।

ଝିଅଟିଏ ଲାଗି ଦେହ ସାଙ୍ଗେ ଯୋଡ଼ିହେଇ ଥାଏ ତା'ର ଆସନ୍ତାକାଲି । ସେଇ ପରିଚିତ ଦେହ ଭିତରେ ଆଉ ଗୋଟିଏ ନୂଆ ଜୀବନ ଅଙ୍କୁରିତ ହେବାର ଆଶା ବା ଆଶଙ୍କା । ନୂଆ ଅଙ୍କୁରଟି ଅନୁମତି ନିଏନି, ତା' ପଦପାତ ବି ଶୁଣାଯାଏନି ମାଆକୁ ତା' ଦେହ ଭିତରକୁ ଆସିଲାବେଳେ । ଅଥଚ ଦେହଟି ସହିତ ଯୋଡ଼ିହେଇ ରହିଥାଏ ବିଚାରୀର ବଂଚିରହିବାର ଚିନ୍ତା । ଫାତିମାକୁ ବୁଝାପଡୁଥିଲା, ଯେ କାଇଁକି ପିଲାଦିନୁ ଦେହକୁ ଦୁର୍ଗଟିଏ ଭଳି ଜଗିବାଲାଗି ଶିଖାଯାଇଥିଲା । କାଇଁକି ଝିଅଟିଏ ଲାଗି ଜୀବନଠୁ ବଳି ବଡ଼କଥା ହେଉଚି ନିଦ ଦେହର ସରହଦର ସୁରକ୍ଷା ।

ହେଲେ ଏବେ ବି ଫାତିମା ଧନ୍ଦିହୁଏ, ସେ ଯାହା ଅଙ୍ଗେ ନିଭେଇଲା ଦିନ କେଇଟାରେ, ତା' କ'ଣ ସଭିଙ୍କ ଲାଗି ସତ ? ବୟସର ନୂଆ ପବନ ଯେବେ ବାଜେ, ନିଜଠି ନୂଆ ପତ୍ରଫୁଲ କଅଁଳିଆସେ କାହୁଁ । ପୁରୁଣା ଶିଖାଯାଇଥିବା କଥାସବୁ ଆପେ ପାଲଟିଯାଏ ଘଷରା, ମିଛ । ମଧୁର ସମ୍ଭାବନା ସବୁ ଉଚ୍ଚାଟ କରନ୍ତି, ଅନୁଭବ ଲାଗି ବାଟ କଢ଼ାନ୍ତି । ହେଉ ପଛକେ

ଅସାବଧାନତାରେ, ଯେଉଁ ବାଟ ତେଣିକି ଖୋଲିଯାଏ, କୋଉଠି ନେଇ ପହଞ୍ଚାଇବ କ'ଣ ଆଗରୁ ଠଉର କରିହୁଏ ? ସର୍ଗ ପରି ଲାଗିଥିବା ସ୍ୱର୍ଣ୍ଣର ସ୍ମୃତି ପରେ ଫେରିପାରେ ହଜାରେ କଣ୍ଟାର ମୁନ ଭଳି । ଆଜି ବି ମନେଅଛି ଫାତିମାର, ସେଇ ଘଟଣାର ପରେ ପରେ ଅନେକ ଦିନ ଯାଏଁ କଥାଟି ମନ ଭିତରକୁ ଆସିବା ମାତ୍ରେ ନିଜକୁ ସବୁମତେ ବୁଜିଦେଉଥିଲା ସେ । ଆଖି କାନ ବୁଜି ମନ ଗୋଟାକୁ କିଳି ପକେଇବାକୁ ଚାହୁଁଥିଲା ।

ମନେଅଛି, ଆତଙ୍କର ଦିନ ରାତିମାନ ବିତିଯିବାର କଥା ବି । ଯେଉଁଦିନ ତା' ଦେହରୁ ମିଳିଗଲା କିଛି ଘଟିନଥିବାର ଶୁଭ ସଙ୍କେତ, ନିଜ ଜୀବନ ଫେରିପାଇଲା ପରି ଲାଗିଥିଲା ଫାତିମାକୁ । ସେଦିନ ସ୍କୁଲ ଯିବା ବାଟରେ ଜବୀନାକୁ କହିଲା ସେ, "ଟିକିଏ କୋଉ ପୀରଙ୍କ ମଜାରକୁ ଯାଇ ଚାଦରଟିଏ ଚଢ଼େଇବାକୁ ମନ ହେଉଚି । ବାପା ମା'ଙ୍କ ବିଷୟରେ ଭାରୀ ଅଶୁଭ ସପ୍ନଟିଏ ଦେଖିଲି ।"

ଫେରିଆସିଲା ପୁଣି ପୂର୍ବ ଜୀବନ । ଦି'ସଖୀ ଆଖପାଖର ସବୁ ପୀର-ମଜାର କଥା ବୁଝି କେମିତି ଯିବାକୁ ହେବ, କାହାକୁ ସାଥିରେ ନେବାକୁ ହେବ ଆଦି ବିଚାର କଲେ କିଛିଦିନ । ହେଲେ ପରୀକ୍ଷା ପାଖେଇ ଆସୁଥିଲା, ଫାତିମା ତା' ଦୁଃସପ୍ନର କଥା ଭୁଲିଗଲା । ତେବେ ଏଣିକି ଦୁଃସପ୍ନର ପୂର୍ବବର୍ତ୍ତୀ ସେଇ ଅଧା ସତ ଅଧା ସପ୍ନର ଦି'ପହର କଥାବି ସେ ମନକୁ ନଆଣିବାକୁ ଚେଷ୍ଟା କରେ । ସ୍କୁଲ ଫେରନ୍ତି ବାଟରେ ବରଗଛ ଚଉତରା ତଳକୁ ଦେଖି ନ ଦେଖିଲା ପରି ରହେ, ଗଳିରୁ ବାହାରିବା ବାଟରେ ନବାବ ମଞ୍ଜିଲ୍ ଗଳି ଆଡ଼କୁ କଡ଼େଇ ଚାହିଁ ତରତରରେ ଆଖି ଫେରେଇନିଏ । କେବେ କେବେ ବାଟରେ ମୁକ୍ତାର ଦିଶିଯାଏ । ସେ ପାଖକୁ ଆସିବାକୁ ଆଳ ଖୋଜିଲେ, କବିତା ଆସର ନାଁରେ ଡାକିବାକୁ ଆସିଲେ ବି ଫାତିମା ବାଆଁରେଇ ହେଇ ଚାଲିଯାଏ । ଯଦି ପଦେଅଧେ କଥା ହୁଏ ବା, ନିଜ ଦୃଷ୍ଟିକୁ ଅନ୍ତିଆରରେ ରଖିଥାଏ ସେ । ମୁକ୍ତାରର ଆଖି ଛଡ଼ା ଅନ୍ୟ ସବୁଆଡ଼କୁ ଚାହିଁଲାଗିଥାଏ ।

ପରୀକ୍ଷା ପାଖଥାଏ ବୋଲି ଶାହନଶା ହୋଟେଲକୁ ଏବେ ଯାଉନଥାଏ ସେ । ଭାଇ ଦିହିଙ୍କ ହାତରେ ସିଲେଇକାମର ଅର୍ଡ଼ର ଓ ଦିଆନିଆ ଚାଲିଥାଏ । ସେମାନେ ଦିହେଁ ସାଇକେଲରେ ଚାଲିଯାଆନ୍ତି ଦି ତିନି କିଲୋମିଟର ବାଟ । ଟାଣ ଖରାରେ ଫାତିମା ଲାଗି ଚାଲିଚାଲି ଯିବା କଷ୍ଟକର ହୁଏ, ରେହମାନ ରାଜି ହୁଏନି ସାଙ୍ଗରେ ଯିବାକୁ । ହୋଟେଲରୁ ଫେରିଆସି ଫାତିମାକୁ କହେ, "ନର୍ଗୀସ ବି ତୋ' କଥା ପଚାରୁଥିଲେ ଅପା, କହିଲେ ଟୁ ଅଟୋରେ ଯା ସେଠିକି, ଅଟୋ ଭଡ଼ା ସେ ଦେଇଦେବେ ।"

# ତକିଆ ଟାପୁରେ ଝଡ଼

ପରୀକ୍ଷା ଫଳଲାଗି ପ୍ରତୀକ୍ଷାର ଦୀର୍ଘ ଖରାଛୁଟିରେ ସବନମ ପିଇସୀ ଲକ୍ଷ୍ନୌରୁ ଆସିଲେ ପୁଣିଥରେ । ବଜାର ବୁଲା, ସିନେମା ଦେଖା, ତାସ୍ ଆସର ଆଦି ଯାବତ ଚିତ୍ତ ବିନୋଦନ କାର୍ଯ୍ୟକ୍ରମରେ ଗଳିର ଆଉରି ଅନେକେ ଜୁଟିଯାଆନ୍ତି । ଦଳଟିଯାକ ହେଇ ବୁର୍ଖା ଓଢ଼ି ପାନ ଚୋବେଇ ସହର ଗସ୍ତରେ ଯିବାର ମଉଜ ପୁଣି ନିଆରା । ଫାତିମା ଜାଣେ, ମୁକ୍ତାରକୁ ଦି'ଆଖିରେ ଦେଖିପାରନ୍ତିନି ଫୁଫୀ । ସେଇ ଆଳରେ ନିଜେ ବି ମୁକ୍ତାରକୁ ମନ ଭିତରୁ ଦୂରରେ ରଖିବାକୁ ଚେଷ୍ଟା କରୁଥାଏ ସେ ।

ଜବୀନାର ବାହାଘର ଠିକ୍ ହେଇଯାଇଚି, ତାଆରି କେଉଁ ସମ୍ପର୍କୀୟ ସାଙ୍ଗରେ । ପିଲାଟା ଆସି ରହୁଚି ପାଖ କାହା ଘରେ । ଜବୀନାର ଭେଟାଭେଟି ଚାଲିଚି । ଜବୀନା ତାକୁ ଉସୁକାଏ, "ଚାଲ୍ ମୁକ୍ତାରକୁ ନେଇ ଆମେ ସଭିଏଁ ସିନେମା ଦେଖିଆସିବା । କହିବୁ ଯଦି ସୁଲେମାନ ହାତରେ ଖବର ପଠେଇବି । ଭାରୀ ଖୁସି ହେବ ତୋ' ହୀରୋ, ଦେଖିବୁ ।"

ବିରକ୍ତ ହୁଏ ଫାତିମା, "କହେ ତୋ' ଭଳି ମୋର କ'ଣ ସଗାଇ ହେଇ ସାରିଚି କି ? କିଏ ମତେ ଦେଖିଦବ ଯଦି ?"

ତଥାପି ମନଟା ତା'ର ଛଟପଟ ହୁଏ, କେତେଦିନ ଏମିତି ଆଢ଼େଇ ହେଇ ଚାଲିଥିବ ସେ । ଆଢ଼େଇ ନହେଇ କରିବ ବା କ'ଣ ଏବେ ! ସେଦିନ ଅଚାନକ ଫୁଫୀ କହିଲେ, "ବଡ଼ ତାଲ୍ ମଝି ତକିଆ ଟାପୁରେ ଯେଉଁ ମଜାରଟା ଥିଲା, ଆଜିକାଲି ଅଛି ନା ନାଇଁ ମ ?"

ବାପାଙ୍କୁ କଥାଟା ବାଧିଲା ଭଳି କହିଲେ, "ମଜାରଟା କୁଆଡ଼େ ଯିବ ଯେ ? ଆଗଠୁ ଆଉରି ଭଲରେ ଅଛି, ଡଙ୍ଗାରେ ଏତେ ଲୋକ ଯାଉଚନ୍ତି ଯେ ଟୁରିଷ୍ଟ ଜାଗା ହେଇଗଲାଣି ଜାଣ ।"

ଫୁଫୀଙ୍କୁ ବାହାନାଟାଏ ଜୁଟିଗଲା ଭଳି କହିଲେ, "ସେଇଆ ପରା, ଆମ ଜାଗା ସବୁକୁ ହେଫାଜତ କରିବା ନାଆଁରେ ସବୁ ଟୁରିଷ୍ଟ ସ୍ପଟ କରିଦେବେ ଏମାନେ, ମଉଜ ମଜଲିସର

ଜାଗା !"

ବାପା ଚିଡ଼ିଲା ସ୍ୱରରେ କହିଲେ, "ଆରେ ନାଇଁ, ଲୋକ ଯାଉଚନ୍ତି ଚଦର ଚଢ଼େଇବାକୁ, ମାନସିକ ରଖିବାକୁ । ବରଂ ଜାଗାଟାକୁ ଭଲକରି ତିଆରି କରିଦେଲେ କିଛି ଦିନରେ ଆଜମୀର ଚିସ୍ତି ଭଳି ପ୍ରସିଦ୍ଧ ହେଇଯାଆନ୍ତା । ଆମ ଲୋକଙ୍କର ଖାଲି ନିନ୍ଦା କରିବାକୁ ବାହାନା ଦରକାର ।"

ପାନ କୁଟୁକୁଟୁ ଜେଜେମା କହିଲା, "ବଡ଼ ପ୍ରତ୍ୟକ୍ଷ ମଜାର ସିଏ, ନ ମାନି କାହାର ଜୁ ଅଛି ? ହେଲେ ସତକଥା, ପୂର୍ବେ ଲୋକେ ଯାଇପାରୁନଥିଲେ । ଏବେ ବହୁତ ଲୋକ ଯାଉଚନ୍ତି କାଳେ । ମୋତେ ଟିକେ ନେଇ ଯାଆନ୍ତ ନାଇଁ ? ମୁଁ ଖାଲି ପିଲାଦିନେ ଦୂରରୁ ଦେଖିଚି, ଗଛ ଗହଳରେ ଟାପୁ ଭିତରେ ମଜାରଟାଏ ଅଛି ବୋଲି ଖାଲି ବାରିବା କଥା । ଭାଗ୍ୟରେ ଥିଲେ ଟିକେ ମୁଣ୍ଡ ନୋଇଁ ଆସନ୍ତି ।"

ନୂଆ ମେଘ ଘୋଡ଼େଇ ଏଇ ବର୍ଷିବ ପରି ହେଉଥାଏ ସେମାନେ ନାନା ମତେ ତିଆରି ହେଇ ଘରୁ ବାହାରିଲା ବେଳକୁ । ଶ୍ୟାମଳା ହିଲ୍‌ସର କଡ଼େ କଡ଼େ ଚାଲିଯାଇଥିବା ସରୁ ରାସ୍ତାରେ ଗଲାବେଳେ ବାଁ ପାଖ ପାହାଡ଼ରେ କାଁ ଭାଁ ଘର କେତେଟାକୁ ଛାଡ଼ିଦେଲେ ସବୁଜ ବଣ ଜଙ୍ଗଲ, ଡାହାଣ ପାଖକୁ ଆଖି ପାଉନଥିବା ହ୍ରଦର ବିସ୍ତାର । ଯାହେଉ ଇଂରେଜ ଅମଳର ବୋଟ କ୍ଲବଟାକୁ ପୁଣି ଚାଲୁ କଲେଣି ବୋଲି ଭଲ ଘାଟଟିଏ ତିଆରି ହେଇଚି, ଡଙ୍ଗା କେତେଟା ରହୁଚି ସବୁବେଳେ । ଆସିଲାବେଳୁ ସାଜିଦ୍ ଲଗେଇଚି ମଜାର ମସ୍‌ଜିଦ ନୁହଁ ଅବୁ, ଆଗ ବନବିହାରକୁ ଯିବା । କେତେ ଜୀବଜନ୍ତୁ ସେଠି ଛଡ଼ାହେଇଚନ୍ତି କାଳେ ଖୋଲା ବାଡ଼ ଆରପାଖେ । ସାଇବେରିଆର ଭାଲୁ ବି ଅଛି ପଥର ଗୁମ୍ଫାରେ ବୋଲି ତା'ର କୋଉ ସାଙ୍ଗମାନଙ୍କଠୁ ଶୁଣିଚି ସେ । ବାପା ବୁଝାଉଥାନ୍ତି, "ଆଜି ନୁହେଁ, ଆଉ କେବେ । ହେଇ ସେ ଦ୍ୱୀପକୁ ଯାଉଚେ ପରା ଆଜି, ପହଞ୍ଚିଲେ ଦେଖିବୁ କେତେ ସୁନ୍ଦର ଜାଗା ସିଏ । ତମ ସ୍କୁଲ ପିକ୍‌ନିକ୍ ଯାଇଥିଲ ଯୋଉଠିକି, ତା'ଠୁ ବଳି କେତେ ସୁନ୍ଦର ।"

ଡ଼ଙ୍ଗା ଛାଡ଼ିଲା ବେଳକୁ ଟୁପ୍‌ଟାପ ବର୍ଷା ପକଉଚି । ନାଉରୀ କହୁଚି, "ବ୍ୟସ୍ତ ହୁଅନ୍ତୁନି ଆଜ୍ଞା, ଇଏ ଖାଲି ହାଲୁକା ବୁନ୍ଦାବାନ୍ଦି । ଏଇଲେ ଚାଲିଯିବ ।" ଜବୀନା ବି ଆସିଚି ସାଥିରେ, ଡଙ୍ଗାରେ ଫାତିମା ପାଖକୁ ଲାଗି ଆକାଶର ମେଘକୁ ଅନେଇ କି ଗୋଟାଏ ଫିଲ୍ମୀ ଗୀତ ଗୁଣୁଗୁଣଉଚି । ଫାତିମା ତାକୁ ଆଖି ଦେଖେଇ ଚୁପ୍ କରେଇଲା ବେଳକୁ ସେ ଆହୁରି କୁରୁଳୁଚି । ଫାତିମା ଫୁସ୍‌ଫୁସ୍ କରି କହିଲା, "ତୋ ସଗାଇଟା ହେଲାଦିନୁ ତୋ'ର ଆଉ ସମ୍ଭଳା ପଡୁନି, ନୁହେଁ ? ତୋ' ହୀରୋ ସାଙ୍ଗରେ ଆସିଥାନ୍ତୁ ସିନା ।"

ଜବୀନା ତା' କାନରେ କହିଲା, "ମୋ ହୀରୋ ତ ଆସୁଚି । ତୋ' ହୀରୋ ବି ।"

ଚମକି ପଡ଼ିଲା ଫାତିମା, "କ'ଣ କହୁଚୁ ? ତୋ' ମୁଣ୍ଡ ଠିକ୍ ଅଛି ତ ?"

ମୁହଁରେ କାନି ଜାକି କୁରୁକୁରୁ ହସୁଚି ଜବୀନା, ଭୁରୁ ନଚେଇ କିଛି ଇସାରା କରୁଚି । ଫାତିମା ବୁଝି ବି ବୁଝିପାରୁନି ।

ଟାପୁରେ ଡଙ୍ଗା ଲାଗିଲା ବେଳକୁ କାଦୁଅ ମାଟିରେ ହାତ ଧରାଧରି ହେଇ ଓହ୍ଲଉଚନ୍ତି ସମସ୍ତେ । ସତରେ ବର୍ଷା ଆଉ ନାହିଁ, ସୁଲୁସୁଲିଆ ପବନ ଦଉଚି, ଗଛବୃଛ ଝାଙ୍କୁଚି । ଦୁପଟ୍ଟା ସମ୍ଭାଳିଲା ବେଳକୁ ଜବୀନାକୁ ଆଉରି ଫିଲ୍ମୀ ଗୀତ ମନେପଡୁଚି । ବାପା କହୁଚନ୍ତି, "ଆରେ ଦାଦୀମା'ଙ୍କୁ ସମ୍ଭାଳ ମୁନ୍ନୀ, ତାଙ୍କ ଗୋଡ଼ ଖସିବ ।" ଫାତିମାକୁ ଛାନିଆଁ ଲାଗିଲାଣି, ଦାଉଁଦାଉଁ ଛାତିରେ ଏଣିକି ତେଣିକି ଅନଉଚି । ପାଣିଘେରା ଛବି ପରି ସୁନ୍ଦର ଛୋଟିଆ ଟାପୁଟିରେ ପୀରଙ୍କର ସାନ ସବୁଜ ରଙ୍ଗର ଜରି-ଚଦର ଘୋଡ଼ା ଲମ୍ବାଳିଆ ପବିତ୍ର କବରଟି । ଚାରିପାଖରେ ଅଧା ଭାଙ୍ଗିପଡ଼ିଥିବା ମାର୍ବଲ ଜାଲିର କାନ୍ଥ । ମନରେ ପାଞ୍ଚୁଥିଲା ବୋଲି ଆଲ୍ଲାତାଲା ସୁଯୋଗ ଆଣିଦେଇଚନ୍ତି ବୋଲି ସେ କହୁଥିଲା ଫୁଫୀଙ୍କୁ ଘରୁ ବାହାରିବାବେଳେ । ହେଲେ ଏବେ ଯାଇ ଚଦର ଚଢ଼େଇବା କଥା, ତା' ଜୀବନ ବଞ୍ଚେଇଥିବା ଯୋଗୁଁ କୃତଜ୍ଞତାରେ ମୁଣ୍ଡ ନୋଇଁବା କଥା ମନରୁ ପାସୋରି ଗଲାଣି । ସାନ ପାହାଚ କେଇଟି ଠିକ୍ ଚଢ଼ିଲା ବେଳକୁ ଅଳ୍ପ ଦୂରରେ ଗଛଗହଳରେ କଥାବାର୍ତ୍ତା କରୁଥିବା କେଇଜଣ ଯୁବକଙ୍କ ଭିତରୁ ସେମାନଙ୍କ ଆଡ଼କୁ ଆଗେଇ ଆସିଲା ଫିଟଫାଟ ଟୋକାଟିଏ । ଫାତିମା ଦଳରେ ଥିବା ବଡ଼ମାନଙ୍କୁ ସମ୍ମାନରେ ସଲାମ କଲା । ଚିହ୍ନିଲେ ସମସ୍ତେ, ଜବୀନାର ଭାବୀ ପତି ସୁଲେମାନ । ଜବୀନା ମୁଣ୍ଡରେ ଓଢ଼ଣୀକୁ ଟାଣିଦେଇ ତଳକୁ ମୁହଁ ପୋତି ଲାଜଉଚି । ସୁଲେମାନ ତା'ପରେ ନିଜ ଦଳକୁ ଅନେଇ ଡାକ ଦେଲା, "ଆରେ ମୁକ୍ତାର, ଆଓ ୟାର । ଫାରୁକ୍ ଚଚା ହେରିକା ଆସିଚନ୍ତି ପରା ଦେଖୁନୁ ।"

ମୁକ୍ତାର ପାଖକୁ ଆସିଲା, ଦୁଆ ସଲାମ କୁଶଳ ସମାଚାର ଚାଲିଲା କିଛିବେଳ । ଫାତିମା ସାହସ କରି ଅନାଉନଥାଏ ତାକୁ କି ଆଉ କାହା ମୁହଁକୁ । କିନ୍ତୁ ଯେମିତି ଅନେଇଦେଇଚି, ମୁକ୍ତାର ସେହିକ୍ଷଣି ସଭିଙ୍କ ଆଗରେ ତାକୁ ଦେଖି ତୋଫା ହସଟାଏ ହସିଦେଲା । ଫାତିମା ସେ ହସର ଉତ୍ତର ଦେଲାନାଇଁ, ଆଖି ନୋଇଁଦେଲା ପାଦ ପାଖର ଘାସକୁ ।

ଫୁଫୀଙ୍କ ଆଖପାଖରେ ଯେତେ ନ ରହିବାକୁ ଚେଷ୍ଟା କଲେବି ଫେରିଲା ବାଟରେ ଡଙ୍ଗାରେ ସେ ତା' ପାଖରେ ବସିଗଲେ, ଆଉ ଚପା ଗଳାରେ ପଚାରିଲେ, "ଫାତିମା, ଏସବୁ କ'ଣ ହେଉଚି ? ତୁ ଭାବୁଚୁ ମୋ' ଆଖିକୁ ଫାଙ୍କି ଦେବୁ ନାଇଁ ? ସେ ରହିମ ମିଆଁର ପୁଅ ଆପେ ଆସିଥିଲା ନା ତୁ ଡାକିଥିଲୁ ଏଠିକି ?"

ଫାତିମା ମାଁ ମାଁ ହେଇ କହିଲା, "କ'ଣ ସବୁ କହୁଚ ଫୁଫୀ । ମୁଁ ତାକୁ କାଇଁକି ଡାକିବି ।"

ସେଦିନ ରାତି ଯାଏଁ ଗୁମ୍ ହେଇ ରହିଲେ ଫୁଫୀ । ଆଜି ଘର ଭିତରେ ଥିବା ମଉଚ୍ଛବ ପରିବେଶରେ ସତେକି ତାଙ୍କର ଭାଗ ନଥିଲା । ଗୋଟିଏ ବଖରାରେ ଶୋଇଥାନ୍ତି ସେମାନେ, ପଲଙ୍କ ଉପରେ ଫୁଫୀ ଆଉ ଜେଜେମା, ତଳେ ବିଛଣା ପାରି ଫାତିମା ଆଉ ଦି'ଭଉଣୀ । ସମସ୍ତେ ଶୋଇଗଲା ପରେ ଅନ୍ଧାରରେ ଡାକିଲେ ସବନମ୍ ପିଇସୀ, "ଶୋଇଗଲୁଣି କି ଫାତିମା ?"

ଫାତିମା ଶୋଇନଥିଲା, କିନ୍ତୁ ଉତ୍ତର ଦେଲାନି । କହିଲା ବେଳେ ପିଇସୀଙ୍କ ଗଳାରେ ଟିକିଏ ବୋଲି ରୋଗ କି ଶାସନ ନଥିଲା, "ଶୁଣ୍ ଝିଅ, ସେ ଘରର ଲୋକଙ୍କୁ ମୁଁ ଭଲକରି ଜାଣେ । ଭାରୀ କଅଁଳକୁହା ସ୍ୱାର୍ଥପର ସେ ବଉଁଶଟା ଯାକ । କଥା ଦେଇ ବେଇମାନୀ କରିବା ତାଙ୍କ ରକ୍ତରେ ଅଛି । ବିଶ୍ୱାସ କଲେ ନିଜେ କାନ୍ଦିବୁ, ତୋ' ବାପ ମାଆଙ୍କୁ କନ୍ଦେଇବୁ ।"

ଫାତିମା ଏଥର ବି ମାଁ ମାଁ ହେଇ କହିଲା, "ତମେ କ'ଣସବୁ କହୁଚ ଫୁଫୀ । ମିଛଟାରେ..."

ତା' କଥାକୁ ମଝିରୁ କାଟି ସେ କହିଲେ, "ମୋ ସୁନାଟି ପରା, ମୋ' ଆଖିଆଗରେ ଜନ୍ମ ତୁ, ତୋ' ଭଲମନ୍ଦ ଚିନ୍ତା ମୋର ନାଇଁ ? ଶୁଣ୍ କହୁଚି, ମୋର ପୁତୁରାଟିଏ ଅଛି, ହନିଫ୍ । ଭାରି ଗୁଣର ପିଲା, ସୁନ୍ଦର ଚେହେରା । ମୁଁ ଭାଉଜଙ୍କୁ କହିସାରିଚି, ସେ ରାଜି ଅଛନ୍ତି । ଖାଲି ତୋ' ବାପାଙ୍କ ଇଚ୍ଛା ଯେ ତୁ ଆଉରି ପଢ଼, ଏଇନା ତୋ' ବାହାଘର କରିବାକୁ ଚାହୁଁନାହାନ୍ତି ।"

ଫାତିମା ଖାଲି ଶୁଣିଗଲା କିଛିବେଳ । ପିଇସୀ ଏଥର ଆଉରି ଟିକିଏ ଉଚ୍ଚ ଗଳାରେ, ମିଠା ଆଦରରେ ବୁଝାଉଥିଲେ, "କେଡ଼େ ସୁନ୍ଦର ଚେହେରା ତୋର, ସେ ବାଳୁଙ୍ଗା କ'ଣ ଯିଏ ହେଲେ ଲୋଭେଇବ । ତୁ ପିଲାଦିନେ ଏଡ଼େ ଗୁଲୁଗୁଲିଆ ହେଇଥାଉ, ଆମ କୁଟୁମ୍ବ ଯାକ ଗେଲବସର କରି ମୁଣ୍ଡରେ ବସେଇଥାଉ ତତେ । ଭାଇଙ୍କ ପ୍ରଥମ ପିଲା ତ, ତୋ' ଜନ୍ମ ବେଳେ ଯାହାଯେମିତି ଧୂମ୍‌ଧାମ୍ ସବୁ ହେଇଥିଲା, ଆଉ କାହାବେଳେ ହେଇନି । ଆମେ ସବୁ ନୂଆଲୁଗା ପିନ୍ଧିଥିଲୁ । ତୋ' ବାହାଘର ବି ସେମିତି ଧୂମ୍‌ଧାମ୍‌ରେ ହେବ ତୁ ଦେଖିବୁ ।"

ଫାତିମା କଡ଼ ବୁଲେଇ ହାଇ ମାରିଲା । ମୁହଁର ହାଇ ନ ସରୁଣୁ ସ୍ୱର ଲମ୍ୱେଇ କହିଲା, "ମୋର ଏବେ ଜମାରୁ ବାହା ହେବାର ନାହିଁ ଫୁଫୀ । ମୁଁ କଲେଜରେ ପଢ଼ିବି, ଅନର୍ସ ନେଇ । ଲକ୍ଷ୍ମୀବାଈରେ ମୋର ସିଟ୍ ହେଇଗଲାଣି ।"

# କଲେଜ ଫଗୁଣ

ରାଣୀ ଲକ୍ଷ୍ମୀବାଈ ମହିଳା କଲେଜରେ ନାଁ ଲେଖାଗଲା । କଲେଜ ସାଙ୍ଗେ ଆରମ୍ଭ ହେଲା ଫାତିମା ଜୀବନର ନୂଆ ଅଧ୍ୟାୟଟିଏ । ଘରେ ଏଣିକି ତାଗିଦା ଥାଏ, ବୁର୍ଖା ପିନ୍ଧି ଯିବାକୁ ହେବ । କଲେଜ ଗେଟ୍‌କୁ ପଶିବା ମାତ୍ରେ ଓହ୍ଲେଇ ଦିଆଯାଏ କଳା ଘୋଡ଼ଣୀଟି, ଓ ଫାତିମାକୁ ଲାଗେ କେବଳ ବହି ଖାତା ନେଇ ପଢ଼ିବାକୁ ଆସିବା ଜାଗା ନୁହେଁ ତ ଇଏ । ପୁରୁଣା ମସିଆ ଗଳି ଆଉ ହାଉଜାଉ ସରକାରୀ ସ୍କୁଲ ଜୀବନରୁ ହଠାତ୍ ଏକ ଆଖି ପାଉନଥିବା ବିସ୍ତୃତ ଇଲାକା ଭିତରକୁ ଗୋଡ଼ ବଢ଼େଇଚି ସେ । କେବଳ ଗୋଟିଏ ଅଞ୍ଚଳର ଉଣାଅଧିକେ ଏକାଭଳି ବଢ଼ିଥିବା ପିଲା ଏଠି ରୁଣ୍ଡ ହେଇନାହାନ୍ତି । ପିଲାଦିନୁ ଏକାଠି ପଢ଼ିଥିବା ସ୍କୁଲ ଝିଅଙ୍କ ସହିତ ସହରର ରଇସ ପରିବାରର କନଭେଣ୍ଟରେ ପଢ଼ିଥିବା ଝିଅ ବି ଅଛନ୍ତି । ନୂଆ ସହରର ଅଫିସରଙ୍କ ଝିଅ ଅଛନ୍ତି ଯିଏ ନାନାପ୍ରକାର ଲେସ୍‌ଲଗା ଫ୍ରକ୍, ସ୍କାର୍ଟ ବ୍ଲାଉଜ୍ ପିନ୍ଧି ଆସନ୍ତି । ନିଜେ ଗାଡ଼ି ଚଲେଇ ଆସୁଥିବା କଲେଜର ମାଡ଼ାମ୍ ମାନଙ୍କୁ କାବା ହେଇ ଦେଖେ ଫାତିମା । ନୂଆ କରି ସାଙ୍ଗ ହେଇଥିବା ଶୋଭନାକୁ ପଚାରିପକାଏ ସିଏ, "ଏମିତି ମେମ୍‌ସାହେବାଣୀ ମାନେ ଏଠି ପାଠ ପଢ଼ାନ୍ତି ? ଏମାନେ ଆମକୁ ଶିଖେଇବେ କ'ଣ ?"

ଫ୍ରେଶର୍ସ ଡେ'ରେ ଏକାଠି ଶୋଭନା ଆଉ ଫାତିମା ତିଆର ହୋଇ ଗୋଟାଏ ଡୁଏଟ୍ ସିନେମା ଗୀତରେ ନାଚିଥିଲେ, ପ୍ରବଳ ତାଳି ମାଡ଼ ହେଲା । ପରେ କଲେଜ ଭିତରେ ନୂଆ ପୁରୁଣା ସଭିଙ୍କ ଭିତରେ ଏକରକମ ଜଣାଶୁଣା ହେଇଗଲେ ଦୁହେଁ । ସେଇଠୁ ଭଲ ସାଙ୍ଗ ହେଇଗଲେ ଆପେ । ଲିଜର ସମୟ ମିଳିଲା କ୍ଷଣି କେହି ନଥିବା ସାଇନ୍‌ସ ଲେବୋରେଟରୀ ପଛପାଖ ଆମ୍ବ ଗଛ ଛାଇରେ ଦିହିଙ୍କୁ ଘେରି ଜମିଯାନ୍ତି ଝିଅମାନେ, ବରାଦ ହୁଏ ଲେଟେଷ୍ଟ ହିଟ୍ ଗୀତରେ ନାଚିବାକୁ । ସାଙ୍ଗରେ ପାଦ ପକେଇବାକୁ ଉଠିଆସନ୍ତି ଆଉରି ଝିଅ, ସ୍ୱର ମିଶେଇ ଗାଆନ୍ତି ଆଉ କେତେକେ । ଦିନେ ଦିନେ ଶୋଭନା ଘରୁ ଆଣିଥାଏ ଛୋଟିଆ ଟେପ୍ ରେକର୍ଡ଼ରଟିଏ, କ୍ୟାସେଟ୍ ବଜାଇଦେଲେ ଯୋଉ ଗୀତ ମନ ସେଇ ଗୀତ । ଚମତ୍କୃତ ହେଇଯାନ୍ତି ଫାତିମା ସମେତ ଅନେକ ଝିଅ, ଯାହାଙ୍କ ଘରେ ରେଡ଼ିଓଠୁ ବଳି ମନୋରଞ୍ଜନର ଉପକରଣ ଆଉକିଛି ନଥାଏ ।

ଫାତିମାକୁ ଘର ଛାଡ଼ି କଲେଜ ଆସିବାକୁ ଡର ସହେନି । ଫାଟକ ଭିତରେ ପଶିଲେ ବାହାର ଦୁନିଆକୁ ମୁଣ୍ଡରୁ କାଢ଼ିଦେଇ ହୁଏ, ସେ ସୁଖଦୁଃଖ ଚିନ୍ତା ଜଞ୍ଜାଳ ଯାହା ହେଇଥାଉ । ତଥାପି ବେଳେବେଳେ ତା' ମନ ନାହିଁ କରେ ସବୁକଥା ମାନିନେବାକୁ ସେଠି । ଏମିତି କ'ଣ ଡ୍ରେସ୍ ହେଉଚନ୍ତି ବାହାସାହା ହେଲା ସ୍ତ୍ରୀ ଲୋକେ ? ପୁଣି କ'ଣ ନା ଆମ ଶିକ୍ଷୟିତ୍ରୀ ? ଫାତିମା ଟୀପ୍ପଣୀ କରିଥିବା ଅଧ୍ୟାପିକାମାନଙ୍କୁ ଅନାଏ ଶୋଭନା, ସହଜରେ ପଚାରିଦିଏ, "କାଇଁକି, କ'ଣ ଦୋଷ ଦେଖିଲୁ କି ତାଙ୍କଠି ?"

ଟିକେ ଅସମଞ୍ଜସରେ ପଡ଼ିଲାଭଳି ଫାତିମା କହେ, "ମାନେ ନିଜେ ସବୁ ଏମିତି ଛାତି ପିଠି ଦେଖା ଲୁଗା ପିନ୍ଧୁଚନ୍ତି, କଟା ବାଳକୁ ଚାହିଁଲୁ କେମିତି ଷ୍ଟାଇଲରେ ଛାଟୁଚନ୍ତି କପାଳରୁ । ମାନେ କ'ଣକି, ଏମାନେ ଆମକୁ କି ନୀତି ଶିକ୍ଷା ଦେବେ, ତାଗିଦ୍ କରିବେ ?"

ହସିଦେଇ ତା' ପିଠିରେ ମିଠା ଚାପୁଡ଼ା ପକେଇ ଶୋଭନା କହିଥିଲା, "ତୁ ମୋ' ଘରକୁ ଚାଲ, ଦେଖିବୁ ମୋ' ମା' ବି ଏମିତି ସ୍ଲିଭଲେସ ବ୍ଲାଉଜ ପିନ୍ଧେ । ୟାଙ୍କଠୁ ବେଶୀ ସୁନ୍ଦର ତା' ଫିଗର । ହେଲେ ନୀତି ନିୟମରେ ତା'ର ଟିକିଏ ହେଲେ ଦୟାମାୟା ନଥାଏ । ଟିକିଏ ଏପାଖ ସେପାଖ ହେଲ ସିଏ ମୋତେ ହାଣିଦେବ ।"

ସେଇ ପ୍ରଥମ ଜାଣିଲା ଫାତିମା, ଯେ ଅଲଗା ଅଲଗା ବଞ୍ଚିବା ଢଙ୍ଗ ଥାଇ ରହୁଥାନ୍ତି ଭିନ୍ନ ଭିନ୍ନ ଗୋଷ୍ଠୀର ଲୋକେ, ସେଇ ଏକା ସହରରେ ଏକାଭଳି ଦିଶୁଥିବା ପରିପାର୍ଶ୍ୱ ଭିତରେ । ତାଙ୍କ ଭିତରେ ଭଲ ମନ୍ଦ ବୋଲି ବିଚାର ସବୁ ବି କିଛିଟା ଭିନ୍ନ ଭିନ୍ନ ହୋଇପାରେ । ପୁଣି ଏତେ ଭିନ୍ନତା ଥାଇ ବି ହସ ଲୁହର କଥାମାନ ଅବିକଳ ଏକାଭଳି ହୋଇପାରେ । ନିଜ ଘରେ ବି ତ ଦେଖୁଚି ସିଏ, ବୟସ୍କ ମାନେ ଭଲ ବୋଲି କହୁଥିବା କଥା, କି ଖରାପ ବୋଲି କହୁଥିବା କଥାକୁ ଅକ୍ଷରେ ଅକ୍ଷରେ ସତ ବୋଲି ମାନିନେବାର ନୁହେଁ । ପିଲାଦିନେ ତାକୁ ସବୁଠୁ ଆଶ୍ଚର୍ଯ୍ୟ କରିଥିଲା ଘଟଣାଟିଏ, ଯେବେ ଥରେ ପାଖ ସାହିର ଝିଅଟିଏର ଗର୍ଭ ହେଇଯାଇଥିଲା । ସେଇନେଇ କେତେ ଲୁଚଛପା କଥା, କେତେ କାନ କୁହାକୁହି, କେତେ ନିନ୍ଦା ଦୁର୍ନାମ । ଜବୀନା ତାକୁ କହିଥିଲା କାନରେ, "ନୁରୀର ପେଟରେ ପିଲା ଅଛି, ହାଏ ଆଲ୍ଲା, କ'ଣ ହେବ ତା'ର ?"

ଖଡ଼ିଗାର ଟଣା ଚଉସର ଖେଳଘରର ଦିଇଟିକିଆ ଘାଟିକୁ ପାରିକରି କେମିତି ଡେଇଁବ ଭାବୁଭାବୁ ଫାତିମା ରହିଯାଇଥିଲା, ପଚାରିଲା, "କ'ଣ ହେବ କ'ଣ ? ତୁ କହିଲୁ ପରା ତା'ର ପିଲା ହେବ ବୋଲି ?"

"ଆରେ ଧୁତ୍ ବୋକୀ ! ସିଏ କ'ଣ ବାହାହେଇଚି ? ପିଲା ହେବ କେମିତି ? ମାନେ କେତେ ଖରାପ କଥା, ତୁ ଜାଣିନୁ କି ?"

ବହୁ ସାଧ୍ୟସାଧନ କରି ଜବୀନା ବୁଝାଇଲା ପରେ ବି ଫାତିମାକୁ ବୁଝାପଡ଼ିନଥିଲା ଯେ, ଯୋଉ କାମଟି କଲେ ପିଲା ହୁଏ, ବାହାହେଲା ପରେ ସେଇ କାମ କଲେ ଭଲକଥା, କିନ୍ତୁ ବାହା ନହେଇ କଲେ ନର୍କରେ ପଡ଼ିବା ସୁନିଶ୍ଚିତ । ତା'ପରେ ଯେବେ ବୟସ ଆଉରି ଲାଗିଆସିଲା ଦେହରେ, ପ୍ରେମ ମୋହବ୍ବତ କଥାଟା ତାକୁ କେବେହେଲେ ଠିକ୍ ବୁଝାପଡୁନଥିଲା । ଫିଲିମ୍‌ରେ କବିତାରେ ପ୍ରେମ ଉପରେ କେତେନାଇଁ କେତେ କଥା । ମୁଜ୍ରାଘର ତ କଥା କଥାକେ ଗାଲିବ ଝରନ୍ତି, ଇଶ୍କ ପର ଜୋର୍ ନହୀଁ...

ବେଶୀ ସେସବୁରେ ମୁଣ୍ଡ ନ ଖେଳାଇବା କଥା । ପାଠବହି କଥାଏ କହେ ତ ଜେଜେମା କହେ ଆଉ କଥାଏ । ପୁଣି ଶେରୋ ଶାୟରୀ ଆଦି ସବୁ ଏସବୁ ବିଷୟ ଭିତରକୁ ନ ଆଣିଲେ ମଙ୍ଗଳ । ମୁଣ୍ଡ ନ ଖେଳାଇଲେ ବି ବେଳେବେଳେ ଘଟିଯାଏ କଥା । ଅଘଟଣ ବୋଲି କାନମୁଣ୍ଡ ଆଉଁସି ତାକୁ ମୁଣ୍ଡ ଭିତରୁ କାଢ଼ିପକାଇବା, ଯଥାକଥା ମୁହଁ ପୋତି ବାଟଚାଲିବା ଭିନ୍ନ ଆଉ ଗତି ନାହିଁ । ହାତେ ମାପି ଚାଖଣ୍ଡେ ଚାଲିଲେ ବି ମନ କେଉଁ ବାଗରେ ଉଡ଼ି ଚାଲିଯାଏ ଆକାଶକୁ । କେହି ଜାଣିବା ଆଗରୁ ତାକୁ ଛାତି ଭିତରକୁ ଟାଣିଆଣି ଅକ୍ତିଆର କରିବାରେ ହିଁ ହୁସିଆରୀ । ଜେଜେମା ବୁଝାନ୍ତି ତାକୁ, ଯେବେ ସେ ଦର୍ପଣ ଆଗରେ ନିଜକୁ ଦେଖୁଥାଏ । ଆଖିରେ ସୁରମା ଲଗାଇ ମୁହଁକୁ ବାଁ କଡ଼ରୁ ଡାହାଣ କଡ଼ରୁ ଚାହୁଁଥାଏ । ପାଖ ଦଉଡ଼ିଆ ଖଟରେ ପାନ ଭାଙ୍ଗୁ ଭାଙ୍ଗୁ ଜେଜେମା ତାକୁ ନିଘା କରୁଥାନ୍ତି, ଆଉ କହିବସନ୍ତି, "ସୁହାନ ଆଲ୍ଲା, ଆମ ପରୀ ଝିଅକୁ କାହା ନଜର ନଲାଗୁ ! ହେଲେ ମନେରଖିଥିବୁ ବେଟୀ, ବାପା ମା'ଙ୍କୁ ଖୁର୍ସି ନ ଲାଗିଲା ଭଳି କାମ, ସାଇ ପଡ଼ିଶାରେ ଦୁର୍ନାମ ହେଲାଭଳି କାମଟିଏ କେବେ ମନକୁ ଆଣିବୁ ନାଇଁଟି !"

ଫାତିମା ଜବାବ ଦିଏନାଇଁ, ଦୁପଟ୍ଟାକୁ ଏକାନ୍ଧରୁ ଖସେଇ ସେ କାନ୍ଧରେ ସଜାଡ଼ି ଏକଲୟରେ ନିଜକୁ ଦେଖୁଥାଏ । ଜେଜେମା କହିଚାଲନ୍ତି, "ହେଲେ ସେମିତି କାମ କରିବାଲାଗି ଆମକୁ ଫୁସୁଲାଏ କିଏ ? ସ୍ୱୟଂ ଶୟତାନ । ତେଣୁ ଯୋଉ କାମଟା ଆମେ କରିବାକୁ ଯିବା, ଆଗ ନିଜକୁ ପଚାରିବା, ମୋ' ବାପା ମା' ଏକଥା ଜାଣିଲେ ଖୁସି ହେବେ ତ ? ଯଦି ନା, ତେବେ ଜାଣିବୁ ଏକଥା କରିବାକୁ ତୋତେ କହୁଚି ଶଇତାନ ।"

ଫାତିମା ମୁଣ୍ଡ ଟୁଙ୍ଗାରି ଜେଜେମା'ର କଥାରେ ପୂରାପୂରି ରାଜି ହେଇଯାଏ । ପାଖକୁ ଯାଇ ତାକୁ କୁଣ୍ଢାଇପକାଇ କହେ, "ଆଗ ତୁ କହିଲୁ, ମୁଁ ଆଜି କେମିତି ଦିଶୁଚି ?"

ଫାତିମାର ମୁଣ୍ଡ ଉପରୁ ଦୁଇ ହାତ ବୁଲାଇଆଣି ନିଜ ଦି କାନ ପାଖାପାଖି ଆଙ୍ଗୁଠି ଯାକ ଫୁଟାଇ ପକାଇ ଜେଜେମା ନାତୁଣୀର ନଜର ଉତାରିଦିଏ । ନିଜ ତୁଣ୍ଡରେ ତା'ର ପ୍ରଶଂସା କରେନାଇଁ । ତଥାପି ତା'ର ଘରୁ ବାହାରିବାଲାଗି, ପାଠ ପଢ଼ିବାଲାଗି କେବେ ମନା ନଥାଏ ଜେଜେମାଆର । ଫାତିମାକୁ ଲାଗେ, ଯେତେ ଶଇତାନର ଭୟ ଦେଖାଉଥାଉ

ପଛକେ, ଜେଜେମା ପରି ଖୋଲା ଦିଲ୍‌ଦାର ମନ ଆଉ ତା' ଘରେ କାହାରି ନାହିଁ ।

କଲେଜରେ ଝିଅଙ୍କ ଦଳରେ ନାଚଗୀତରେ ମାତିଥିବା ବେଳେ, ଫିଲିମ୍‌ଷ୍ଟାର କି କୋଉ ଅଧ୍ୟାପିକାଙ୍କ ନକଲ କରି ସାଥୀ ଝିଅଙ୍କୁ ହସେଇ ହସେଇ ବେଦମ୍ କରୁଥିବା ବେଳେ ଫାତିମା ମନକୁ ଖିଆଲ ଆସେ, ଏମାନେ ସବୁ ସେଇ ମୁଁ ଜାଣିଥିବା ବୁଝିଥିବା ଠିକ୍ ଠିକ୍ ବାଟକୁ ଭଲ ମନ୍ଦ ବୋଲି ଚିହ୍ନିଥିବେ ତ ?

ବଢ଼ିଆସୁଥିବା ବୟସର କଥା ସିଏ । ପ୍ରତିଟି ଦିନ ଆଉରି କେତେଟା ଲେଖାଁ ପର ଗଜୁରି ଆସୁଥିବାର ବେଳ । କଲେଜରେ ପାଦ ଦେଉ ଦେଉ ଯେଉଁ ଡେଣା ଦିଇଟା ଆପେ ବଲ ପାଇଯାଏ, ଟିକିଏ ବାଗ ପାଇଲାକ୍ଷଣି ଖାଲି ଉଡ଼େଇନେବ ବୋଲି ହୁଏ । ଘରେ ବାହାରେ ବାଟ ରୋକୁଥିବା ହଜାର କଟକଣା ଅବା କଳା ପରଦାର ଆଉ ଜୋର କାହିଁଥାଏ ସେ ପକ୍ଷ ଦିଇଟାକୁ ବୁଜି ରଖିବାଲାଗି ?

ଛୋଟୀ ତାଲ୍ କଡ଼ ଅଗନା ଅଗନି ବନସ୍ତ ପରି ଦିଶୁଥିବା ସବୁଜ ବିଶାଳ ହତା ଭିତର ନାଲି କୋଠାର କଲେଜ, କେବେ କେଉଁକାଳେ ନବାବଙ୍କ ଗ୍ରୀଷ୍ମକାଳୀନ ପ୍ରାସାଦ ଥିଲା । ଏବେବି ହତା ଭିତରେ ଗୋଡ଼ ଦେଲାକ୍ଷଣି ଲାଗେ ଭିନ୍ନ ଉପଗ୍ରହଟିଏ ଇଏ । ବାହାର ହାଉଜାଉ ପୁରୁଣା ସହର ଗଳିକନ୍ଦି ଭିତରେ ଅଦୃଶ୍ୟ ହେଇ ରହିଥାଏ ସତେକି ଶୂନ୍ୟରେ ଝୁଲନ୍ତା ବଗିଚଟିଏ । ଆସିଲାଦିନୁଁ ହତାର କନ୍ଦି ବିକନ୍ଦି ବୁଲି ବୁଲି ବି ଫାତିମାର ମନ ପୂରେ ନାଇଁ । ପ୍ରତିଦିନ ନୂଆ କିଛି ଥାଏ ଦେଖିବାକୁ, କାବା ହେବାକୁ । ଅଧାଅଧି କୋଠା ପ୍ରାୟ ହ୍ରଦର ପାଣି ଭିତରେ । କଡ଼ି ବରଗା ଦିଆ ଉଚ୍ଚ କ୍ଲାସ ରୁମ୍ ମାନ, ଦିନବେଳ ବି ଲାଇଟ ଲୋଡ଼ାହୁଏ । ବିଜୁଳୀ ଲାଇନ ଚାଲିଗଲେ ସ୍କାଇଲାଇଟ୍ ଭିତରୁ ବାହାରିଆସନ୍ତି ଗୋଲମୁହାଁ ସାନ ସାନ ପେଚାମାନେ । କମନ୍‌ରୁମ୍‌ର ଝରକା ବାଟେ ଝୁଙ୍କି ପଡ଼ିଲେ ପାଣିକୁ ଛୁଇଁହୁଏ, ନଇଁପଡ଼ି କାଗଜ ଡଙ୍ଗା ଭସେଇହୁଏ । ଏ କୋଠାରୁ ସେ କୋଠାକୁ ଯିବାଲାଗି ପାଦଚଲା ବାଟମାନଙ୍କରେ ଚାଲୁଚାଲୁ ଉପରକୁ ଅନେଇଲେ ଆମ୍ବ ପଣସ ଗଛଗହଳରେ ଝୁଲୁଥାନ୍ତି ପଞ୍ଝା ପଞ୍ଝା ବାଦୁଡ଼ି । ଦିନ ବେଳେ ବି ଫଡ଼ଫଡ଼ ହେଉଥାନ୍ତି, ଏ ଡାଳରୁ ସେଡ଼ାଳକୁ ଝୁଲିଝୁଲି ଚାଲୁଥାନ୍ତି । ଦଳକୁ ଦଳ ଝିଅ ଏଠି ସେଠି ଗପ ଯୋଡ଼ିଥାନ୍ତି, କ୍ୟାଣ୍ଟିନ୍ ସାମ୍ନାରେ ଚା' ସିଙ୍ଗଡ଼ା ଆସର ଜମେଇଥାନ୍ତି । ବସିଥାନ୍ତି ଘାସରେ, ଚାଲୁଥାନ୍ତି ସରୁ ଚଲାବାଟ ମାନଙ୍କରେ, ଖିଲିଖିଲି ହେଇ ଗୋଡ଼ିଆଗୋଡ଼ି ହେଉଥାନ୍ତି ଛାଇଛାଇକା ପଡ଼ିଆରେ । ଖେଳ ପଡ଼ିଆରେ ଡୁଡୁ, ଖୋଖୋ ଖେଳୁଥାନ୍ତି, ଦୁପଟ୍ଟା ମାନ ଟାଙ୍ଗିଦିଆଯାଇଥାଏ ଗଛଡ଼ାଳରେ, ସାଲୁଆର ଟେକିଦିଆଯାଏ ଆଣ୍ଠୁପର୍ଯ୍ୟନ୍ତ ।

କଲେଜ ଫାଟକରୁ ବାହାରିଗଲେ ଝିଅମାନଙ୍କ ଜୀବନ ଅଲଗା । ବିଶେଷକରି ଫାତିମା ରହୁଥିବା ଅଞ୍ଚଳର ଝିଅମାନେ, କଲେଜର ଆଖପାଖ ଗଳି ମୋହଲ୍ଲାରୁ ଆସୁଥିବା

ଝିଅମାନେ ସମସ୍ତେ କଳା ବୁର୍ଖା ପିନ୍ଧି ଶାନ୍ତ ଶିଷ୍ଟ ଛାଇମାନ ପରି ଆସନ୍ତି ଫାଟକ ଯାଏଁ । ଆଖପାଖ ଘର ଝିଅସବୁ ଦଳହୋଇ ଆସନ୍ତି, ନହେଲେ ଘରଲୋକ ଅଥବା ଚିହ୍ନା ରିକ୍ସାବାଲା କଲେଜ ଫାଟକ ଯାଏଁ ସେମାନଙ୍କୁ ଛାଡ଼ି ବାହୁଡ଼ିଯାନ୍ତି । ମୋଟୀ ଦରୁଆନ ହାତକୁ ନିଜ ନିଜ ବୁର୍ଖା ଖୋଲି ବଢ଼େଇ ଦିଅନ୍ତି ଝିଅମାନେ । କଳା କି ମାଟିଆ ରଙ୍ଗର ସାଦାସିଧା ହୁଗୁଳା ଖୋଳଟି ଭିତରୁ ବାହାରି ଆସନ୍ତି ସେମାନେ ଗୋଟି ପରେ ଗୋଟି । କୋଷା କାଟିଦେଇ ପ୍ରଜାପତି ବାହାରିଲା ପରି, ରଙ୍ଗ ବେରଙ୍ଗ ପୋଷାକରେ । ସୁନ୍ଦର ବାଗରେ ମୁଣ୍ଡବାଳ କୁଣ୍ଡେଇ, ଆଖିରେ କଳା ମୁହଁରେ ପାଉଡ଼ର ମାରି । ଗେଟ୍ ପାଖ କୋଠରୀଟିରେ ଧାଡ଼ି ଧାଡ଼ି ଥାକଥାଏ, ଏମୁଣ୍ଡରୁ ସେମୁଣ୍ଡ କାନ୍ଥଯାକ । କୋଠରୀଟିର ଦାୟିତ୍ୱରେ ଥାଏ ଦରୁଆନ ସାବୀନା ବେଗମ୍ । ମୁଣ୍ଡବାଳ ରଙ୍ଗେଇଥାଏ ମେହେନ୍ଦୀରେ ନିଆଁଭଳି ନାରଙ୍ଗୀ, ବାଳ ପଛକୁ କୋଟୀକମ ଲେସ୍‌ଦିଆ ନକାବ ସଜେଇଥାଏ । ଆଉ ଜର୍ଦା ପାନ ଚୋବେଇ ମହକାଇଦେଉଥାଏ ଖଣ୍ଡମଣ୍ଡଳ । ଠିକ୍ ଫାଟକ ଭିତରକୁ ଷ୍ଟୁଲ୍‌ଟିଏ ପାରି ବସିଥାଏ ସିଏ । କେବେ କୋଉ ଝିଅଟିର ବୁର୍ଖା ଫିତା ଖୋଲିଦେବାକୁ ନିଜେ ହାତ ବଢ଼େଇଦିଏ, କେବେ ତାରିଫ କରିଦିଏ ନୂଆ ଜରିକାମ ଚୁନ୍ନୀ ଖୋଲି ବେଢ଼େଇ ହୋଇପଡୁଥିବା ଝିଅଟିକୁ । ତା'ଠୁ କାଳେ ବିବାହ ଯୋଗ୍ୟା ଝିଅମାନଙ୍କ ଖବର ନିଅନ୍ତି ଥିଲାବାଲା ଲୋକେ । ବକସିସ୍ ବି ପାଏ ସେଥିଲାଗି । ତେବେ କଲେଜରେ ତା'ର ଡିଉଟି ସତନ୍ତ୍ର । କଲେଜ ଖୋଲିବା ପୂର୍ବରୁ ସେ ଆସି ବୁର୍ଖାଘର ବାହାର ଷ୍ଟୁଲଟିରେ ବସେ, ଆଉ ଝିଅମାନେ ଖୋଲି ତା' ହାତକୁ ବଢ଼େଇ ଦେଉଥିବା ବୁର୍ଖା ଗୁଡ଼ିକୁ ଥାକରେ ରଖିଦେଇ ଚିହ୍ନଟ ଚକତିଟିଏ ଲେଖାଁ ବଢ଼େଇଦିଏ ।

ବିନା ବୁର୍ଖାର ଝିଅମାନେ, ଆଉ ଅଧ୍ୟାପିକା ମାନେ ତାଙ୍କର ସିଧା ଚାଲିଯାନ୍ତି ଗେଟ୍ ଟପି କଲେଜ ହତା ଭିତରକୁ । ତାଙ୍କ ଭିତରେ ଥାଆନ୍ତି ଜରିନା ଖାନ୍ ମାଡ଼ାମ୍, ଜିନତ୍ ବେଗମ୍ ମାଡ଼ାମ୍ । ସେମାନେ ବୁର୍ଖା ଓଢ଼ନ୍ତି ନାହିଁ, କିନ୍ତୁ ସାବୀନା ତାଙ୍କୁ ଅଭିଯୋଗ କରେ ଯଦି କେହି ଝିଅ ତା' କଥା ନ ମାନିଥାଏ ବା ବୁର୍ଖା ଘରର ନିୟମ ଭାଙ୍ଗିଥାଏ ।

ଦିନ ଦିପହର ନଯାଉଣୁ ଦଳ ଦଳ ଝିଅ ଫେରନ୍ତି, ଚକତି ଫେରେଇଦେଇ ଘୋଡ଼ିହୋଇପଡ଼ନ୍ତି ପୁଣି କଳା ପର୍ଦ୍ଦାରେ । ସାବୀନା ବୀ କିନ୍ତୁ ଚକତିର ନମ୍ବର ଦେଖୁ ଦେଖୁ ଝିଅର ମୁହଁକୁ ବି ନିରେଖି ଚାହେଁ । କଦବା କେବେ ପାନବୋଳ ମୁରୁକି ଛଟା ଦେଇ କହିଦିଏ, "ଛୁଟି ହେବାକୁ ତ ବହୁତ ଡେରି ଅଛି ବେଟୀ! କ'ଣ ସିନେମା ବାହାରିଚୁ ନା ଆଉ କୋଉ ଗସ୍ତରେ ?" କାହାକୁ ଦେଖୁ ଦେଖୁ ଅବା ତମତମ ମୁହଁ ଟାଇଁଟାଇଁ ସ୍ୱର କରି ପାଟିକରେ, "କାହା ବୁର୍ଖା ଓଢ଼ି ଆଜି ସିନେମା ବାହାରିଚ ରସିକା ମାହାଜାବୀନ୍ ? ତମ ବାପା ସାକ୍ବେନା ସାହାବ ଆସିଲେ କ'ଣ କହିବି ତା' ବି ଟିକେ କହିଦେଇ ଯାଆ ।"

# ଭେଜିଟାରିୟାନ୍ ବୟଫ୍ରେଣ୍ଡ

ଫାତିମା ଦେଖେ ବିଚିତ୍ର କଥା । ବୁର୍ଖା ଖୋଲିଦେଇ ଟାକୁ ଏଠି ଏକରକମ ଶିକୁଳି ଫିଟିଗଲା ଭଳି ମୁକ୍ତ ଲାଗେ । ଆଉ ପ୍ରକାରେ ଲାଗେ ବୋଧେ ଅନ୍ୟ ଝିଅଙ୍କୁ, ଯେଉଁମାନେ ଘରୁ ମନଇଚ୍ଛା ଡ୍ରେସ୍ ପିନ୍ଧି ଆସନ୍ତି, ଭଳିଭଳିକା ଫେଶନରେ । କିନ୍ତୁ ବେଳେବେଳେ ସାଙ୍ଗ ଝିଅଙ୍କୁ ମାଗି ବୁର୍ଖା ପିନ୍ଧି ଫାଟକ ପାରିହେଇ ବାହାରିଯାନ୍ତି କୋଉ ପାର୍କକୁ କି ସିନେମା ହଲ୍‌କୁ । ବୁର୍ଖା ପିନ୍ଧିଦେଇ ଟାଙ୍କୁ ବି ସେମିତି ଆଉ କିଛି ପ୍ରକାରର ଶିକୁଳି କାଟି ମୁକ୍ତ ହେଇଗଲା ଭଳି ଲାଗେ ବୋଧେ ।

ନିଜ ମୁହଁ ହାତ ପୋଷାକକୁ ଘୋଡ଼ାଇ ନ ରଖିବା ଅପରାଧ ନୁହେଁ ଯେଉଁମାନଙ୍କ ଲାଗି, ଆହୁରି କେତେ କଥାରେ ବି ସେମାନେ ଭିନ୍ନ ହେଇଥିବେ କି ତା'ଠୁ ? ସିନେମା ପରଦାରେ ଯେଉଁ ଝିଅମାନେ ଦିଶନ୍ତି ଆକାଶର ପରୀ ଭଳି, ଫାତିମା ଟାଙ୍କ ବିଷୟରେ ବି ଭାବେ । ଦେହ ଲୁଚାଇବାର ଆଦୌ କିଛି ବାଧ୍ୟବାଧକତା ଯାହାଙ୍କଠି ନଥାଏ, ସବୁ ପୁରୁଷଙ୍କ କାମ୍ୟା ଯେଉଁମାନେ, ଟାଙ୍କ ଲାଗି ଭଲ ମନ୍ଦ, ଉଚିତ୍ ଅନୁଚିତ୍ ପୁଣି କ'ଣ ହେଇଥିବ ?

ଶୋଭନା କହେ, ଫେଶନ କରିବାକୁ ଦେଲେ କ'ଣ ହେବ, ଟିକିଏ ନୀତିନିୟମରେ ଏପାଖ ସେପାଖ ହେଲେ ତା' ମା' ତାକୁ ହାଣିପକେଇବେ କାଳେ । ଫାତିମା ପଚାରିବସେ, "ଏପାଖ ସେପାଖ ମାନେ, କୋଉଥିରେ ?"

"ଆରେ କୋଉଥିରେ ନୁହେଁ କହୁନୁ ? ତୋ' ଟିଫିନ୍‌ରୁ କବାବ ଖାଇଚି ବୋଲି ଜାଣିଲେ ମୋ' କଲେଜ ଆସିବା ବନ୍ଦ କରିଦେବ, ଅନ୍ତତଃ ପନ୍ଦର ଦିନ ।"

"ମାନେ ଆମ ଘରୁ ଖାଇଲୁ ବୋଲି ଦୋଷ ନା କବାବ ଖାଇଲୁ ବୋଲି ? ତମ ଘରେ କ'ଣ ଖାଅ କି ସବୁ ?"

"ଆମେ ପରା ଜୈନ ଲୋକ, ଏତିକି ଜାଣିନୁ କ'ଣ ଖାଉ ?"

ଫାତିମାକୁ ସୁହାଉନଥିଲା କଥାଟା । କହିଲା, "ହଁ ହଁ, ଜାଣିଚି । ଭେଜିଟାରିୟାନ୍ ତମେ ସବୁ । ତା' ବୋଲି କେବେ କେମିତି ମାଉଁସ ଟିକିଏ କ'ଣ ଖାଉନଥିବ ? ବଞ୍ଚିଛ କାଇଁକି ତେବେ, ଭଲ ମନ୍ଦ କିଛି ନ ଖାଇଲ ଯଦି ?"

ଶୋଭନା ହସି ହସି ଗଡ଼ିଗଲା । କହିଲା, "କେଡ଼େ ମୂର୍ଖ ଭଳି କଥା କହୁଚୁ ଦେଖିଲୁ । ଆମ ଘର ପାଖ ପଶେନି ସେସବୁ ଜିନିଷ । ମହାପାପ, ନର୍କରେ ପଡ଼ିବାକୁ ହେବ, ବୁଝିଲୁ ।"

ଫାତିମା ବୁଝିଲାନି । ଚୁପ୍ ରହିଲା । ଶୋଭନା ଧନ୍ଦି ହେଲା କଥାଟା କେମିତି ବୁଝେଇବ ବୋଲି । ଏଥର ଟିକିଏ ଭାବି କହିଲା, "ପୁଅମାନଙ୍କ ଲାଗି ଅବଶ୍ୟ ବେଶୀ କଟକଣା ନାହିଁ ଆଜିକାଲି, ତଥାପି ସେମାନେ ବି ଯାହା ଖାଆନ୍ତି ହୋଟେଲରେ । ସେମାନେ ବି ଘରେ, ସ୍ତ୍ରୀ ଲୋକେ ପାଖେ ଥିଲାବେଳେ ପିଆଜ ବି ଖାଆନ୍ତିନି । ମୁଁ ଯଦି କହିବି କବାବ, ପୁଣି ତମ ଘରୁ, ମୋ' ମା' ଭାବିବ ଗୋରୁ ମାଉଁସ ।"

ତା' କଥାରେ ଫାତିମା ଆଉଟିକେ ଭ୍ରୂରୁ କୁଞ୍ଚେଇଲା । ଆହୁରି ତୁହାଏ ହସିଲା ଶୋଭନା । କହିଲା, "ହଉ ହେଲା, ତା'ବୋଲି ମୋ' ଭାଗ କବାବ ବୁଡ଼େଇବୁନି । ଆମ ଘରକୁ ଚାଲ୍, କେତେ ପ୍ରକାର ରନ୍ଧା, ମଜା ତା'ର କେମିତି ଜାଣିବୁ ।" ଫାତିମା ନିଜ ମୁହଁକୁ ଟିକିଏ ହେଲେ ହସ ନ ଆଣି କହିଲା, "ମୋର ଦରକାର ନାଇଁ ଘାସ୍‌ଫୁଁସ୍ ଖାଇବା ଲାଗି କାହା ଘରକୁ ଯିବା । ପୁଣି ପରେ କହିବୁ ତୋ' ଘର ମାରା ହେଇଗଲା ।"

ତା' କାନ୍ଧରେ ହାତ ପକେଇ ଶୋଭନା କହିଲା, "ଜାଣିଚି, ବେଶୀ ମାଉଁସ ଖାଅ ବୋଲି ତମର ଏତେ ଗର୍ବ, ପୁଣି ସେଇକଥାରେ ମାଇଣ୍ଡ ବି କରିବ । ଚାଲ ତୋତେ ଅସଲି ଦେଶୀ ଘିଅର ଏମିତି ମିଠେଇ ଖୁଏଇବି, ଜୀବନରେ ଚାଖିନଥିବୁ ।"

କେତେବେଳକେ ଫାତିମା ପଚାରିଲା, "ସତରେ କେବେ ମାଉଁସ ନଖାଇ ଜୀବନଟା କେମିତି ବିତେଇଦିଅ ମ ତମେସବୁ ? କେବେ ମନ ବି ହୁଏନାଇଁ ?"

"ଆରେ ନାଇଁ ମ, ମୋ' ବାପା ବି ତାଙ୍କ ବେଷ୍ଟ ଫ୍ରେଣ୍ଡ ଖାନ୍ ଅଙ୍କଲଙ୍କ ଘରେ ଯାଇ ଖାଆନ୍ତି ମଝିମଝିରେ । ସେଇ ଖାନ୍ ସାହେବଙ୍କର ପୁଣି ଗାଁରେ ଆଉ ଜଣେ ସ୍ତ୍ରୀ ଅଛନ୍ତି ବୋଲି ମୋ' ମାଆର ବେଶୀ ରାଗ । କଥା କଣ କି, ମୋ' ଜେଜେବାପାଙ୍କର ତିନି ତିନିଟା ସ୍ତ୍ରୀ ଥିଲେ, ମୋ' ମା' ଭାବେ ସେଇଥିଲାଗି ମୋ' ବାପାଙ୍କର ବି ତାଙ୍କରି ଭଳି ଇଚ୍ଛା ସବୁ ମନରେ ଥିବ । ମୋ' ମା' ତତେ ଦେଖିଲେ ପଚାରି ଦେଇପାରେ, ବେଟୀ, ତୋ'ର କେତେଟା ମାଆ ?"

ଫାତିମା କହିଲା, "ପି ଜେ । ପୁଅର୍ ଜୋକ୍ । ମୋତେ ହସ ଲାଗୁନି ତୋ' କଥାରେ ।

କି ମୁଁ ତୋ' ଘରକୁ ଯିବିନି କେବେବି ।"

ଶୋଭନା ଆଉ ତା'ର ତଥାପି ଯୋଡ଼ି ହେଇ ରହିଥାନ୍ତି, ସବୁ କଳିଗୋଳ ପୁଣି ଭୁଲିହେଇଯାଏ ଟିକିଏ ବେଳକେ । ସେଦିନ ବି ଚାରି ପ୍ରକାର ଜଳଖିଆ ନେଇଆସିଥିଲା ଶୋଭନା । କହିଲା, "ଏଇଠି ନୁହେଁ, କେମିତି କୁଆଡ଼େ ବାହାରକୁ ଯାଇ ଟିକେ ଖାଆନ୍ତେ କୋଉ ପାର୍କରେ, ସିନେମାଟାଏ ଦେଖିଆସନ୍ତେ । ତୋ'ର ତ କେବେବି କେହି ବୟଫ୍ରେଣ୍ଡ ହେଇନଥିବେ ଏଯାଏଁ ? ବୁର୍ଖା ପିନ୍ଧି ବୁଲୁଥିବୁ, ତୋ' ମୁହଁ କିଏ ଦେଖିବ ଯେ ପ୍ରେମରେ ପଡ଼ିବ ?"

ଫାତିମା ପଚାରିଲା, "ହଉ ହେଲା, ତୋ'ର ତ ବାଳ କଟା ଚେହେରା ଦେଖି ବହୁତ ବୟଫ୍ରେଣ୍ଡ ମିଳୁଥିବେ । କ'ଣ ବୟଫ୍ରେଣ୍ଡ ବି ଭେଜିଟାରିୟାନ୍ ହେଇଥିବା ଦରକାର ?"

କେମିତି କେଜାଣି ଏଠି ପିଲାଦିନୁ ବକଳା ପଡ଼ିଥିବା ଧାରଣା, ସଂକୋଚର ଗଣ୍ଠିସବୁ ଆପେ କୋହଳ ହେଇଆସେ । ତୁହାକୁ ତୁହା ଆସି ଗୋଟିପଣେ ତାକୁ ଆବୋରି ପକାଉଥିବା ମୁନ୍ନାର ଲାଗି ପ୍ରେମର ଅବାଧ୍ୟ ସମୁଦ୍ରକୁ ବାନ୍ଧିବାର ଚେଷ୍ଟା ଆଗରେ ବି ଥକି ପଡ଼ିଥିଲା ଫାତିମା । କେତେବେଳେ ଭୁଷୁଡ଼ି ପଡ଼ିଥିଲା ମନ ଭିତରେ ସେ ମିଛ ବନ୍ଧ ।

ପୁଣି ଅନାୟାସ ଫେରିଆସିଲା ସେ ଫାତିମାର ଜୀବନର ମଝି ବିନ୍ଦୁକୁ । ଆଗ ଅପେକ୍ଷା କେଇଗୁଣ ବେଶୀ ଗଭୀର ଏକାଗ୍ର ଭାବେ । ତେବେ ନିଜକୁ ଆକଟ କରିବାର ଦାୟିତ୍ୱ ନେବା କଥା ବି ତାକୁ ଆଉ ଛାଡ଼େ ନାହିଁ ମୁହୂର୍ତ୍ତକ ଲାଗି । ନୀଳ ଗହୀର ଢେଉ ଭିତରକୁ ଗୋଡ଼ ବଢ଼େଇ ନିଜକୁ ହଜେଇବାର ତୀବ୍ର ଇଚ୍ଛା ସାଙ୍ଗେ ମନକୁ ଆସିଯାଏ ଧୂ ଧୂ ଶୁଖିଲା ବାଲିରେ ପଡ଼ି ଛଟପଟ ଅନିଦ୍ରା ହେବାର କଷ୍ଟ ।

# ଖଟା ମିଠା ଗୁଜବ

ଶୋଭନା ଗୁପ୍ତା ଫାତିମା ଆଖିରେ ଗୋଟାଏ ବିସ୍ମୟ । ଶୋଭନା ମୁଣ୍ଡକୁ ନାହିଁନଥିବା ବୁଦ୍ଧି ଜୁଟେ । କାହାକୁ ଡର ନଥାଏ ତା'ର । ଅଫିସର ଘର ଝିଅ ସେ, ଫାତିମାଠୁ ବେଶୀ ଭଲ ପଢ଼େ । ନିଜ ପଢ଼ା ନୋଟ୍ ଦେବାରେ କାର୍ପଣ୍ୟ କରେନାଇଁ । ସାଙ୍ଗ ମେଳରେ ଆସର ଜମାଇପାରେ, ଫିଲ୍ମୀ ଦୁନିଆଁର ସବୁ ମସଲାଦିଆ ଗୁଜବ ଥାଏ ଶୋଭନା ପାଖରେ । ତଥାପି ତା'ଠାରୁ ନିଜ ତଫାତ୍‌କୁ ଜଳଜଳ ଦେଖିପାରେ ଫାତିମା । ତେଣୁକରି କ୍ୟାଣ୍ଟିନ୍‌ରେ ବରା ସିଙ୍ଗଡ଼ା ଗରମ ଚା' ସାଙ୍ଗକୁ ଗୁଲିଖଟିର ମୋହ ଛାଡ଼ି ସେ ପ୍ରାୟ ଲଞ୍ଚ ବ୍ରେକ୍ ବେଳକୁ ଲାଇବ୍ରେରୀକୁ ଚାଲିଯାଏ ନଚେତ୍ କମନରୁମ୍‌କୁ । ସିଲେଇ କାମରୁ ଅଳ୍ପ କିଛି ପଇସା ସେ ହାତରେ ରଖେ ମାଆକୁ କହି, ତଥାପି ଏଣୁତେଣୁ ଖର୍ଚ୍ଚ କରି ସେତକ ଉଡ଼େଇ ଦେବାକୁ ତା'ର ମନ ଡାକେନାହିଁ । ତେଣୁ ସେ ଭାବି ନିଷ୍ପତ୍ତି କରିଥିଲା ନିଜେ ଖାପ୍‌ଖାଇପାରୁନଥିବା ଭଳି ଗୋଠରୁ ଟିକିଏ ଦୂରେଇ ରହିପାରିଲେ ହିଁ ଭଲ ।

ଶୋଭନାର ପ୍ରକୃତି ବି ତା'ଠୁ ଭିନ୍ନ ବୋଲି ଫାତିମା ଜାଣେ । ନିଜ ପ୍ରେମ ଜୀବନଟିଏ ଥିବା କଥା ସଭିଙ୍କ ଅଗୋଚରରେ ରଖିବା ଶୋଭନା ଦେଇ ହେଇପାରେ ନାହିଁ । ତଥାପି ତାହା ହିଁ ବୋଧେ ଅନ୍ୟ ଏକ କାରଣ ଥିଲା ତା' ପ୍ରତି ଆସୁଥିବା ଏକପ୍ରକାର ଆପଣାପଣ ଲାଗି । କଲେଜରୁ ଆସିବାର ଅଳ୍ପ କିଛିଦିନ ପରେ ଦେଖାଗଲା ଶୋଭନାର ପ୍ରେମିକ କଲେଜ ଗେଟ୍ ପାଖରୁ ମଟର ସାଇକଲରେ ବସେଇ ଶୋଭନାକୁ ନେଇ ଚାଲିଯାଉଚି କୁଆଡ଼େ ବାହାରକୁ । ଶୋଭନାର ସେଥିଲାଗି ଲାଜ ବା ଦୋଷୀ ଭାବ ଥିବା ଭଳି ଜଣାଯାଉନଥିଲା, ବରଂ ତା' ଦୁଃସାହସିକତା ଲାଗି ସେ ଅନ୍ୟ ଝିଅଙ୍କଠୁ ଏକପ୍ରକାର ବାହାବା ଆଶା କରୁଥିବାଭଳି ଫାତିମାର ମନେହେଉଥିଲା । ହେଲେ ବେଶୀଦିନ ସେ ଲୀଳା ଚାଲିପାରିଲା ନାହିଁ । କଲେଜରୁ ଅଭିଯୋଗ ଗଲା, ଶୋଭନାର ବାପା ଆସିଲେ । ସାବୀନା ବୁର୍ଖା ତଉଡି ରଖୁରଖୁ ଗର୍ବରେ ଘଟଣାସବୁ ବଖାଣିଲା ଝିଅମାନଙ୍କ ଆଗରେ । ଶୋଭନାର କଲେଜ ଆସିବା ବନ୍ଦ ହେଇଗଲା କିଛିଦିନ ଲାଗି । ପୁଣି ଯେତେବେଳେ କଲେଜ ଆସିଲା ମୁହଁ ଶୁଖେଇ ଏକୁଟିଆ ରହିଲା ଦିନାକେତେ ।

ଫାତିମାକୁ ପ୍ରଥମେ ବୁଝାପଡ଼ିଲାନି ତା'ର କୋଉ ପକ୍ଷ ନେବା ଉଚିତ୍ । ତଥାପି କଲେଜରେ ଶୋଭନାକୁ ନେଇ ଜମୁଥିବା ଖଟା ମିଠା ଗୁଜବରେ ଭାଗ ନେଇ ପାରିନଥିଲା ସେ । ଅଜାଣତରେ କେମିତି ଶୋଭନାର ଦୁଃଖରେ ସମଦୁଃଖୀ ହେଇପଡ଼ିଲା ଫାତିମା ।

ଘଟଣାଟା ସତେକି ଦୁହିଁଙ୍କୁ ଆହୁରି ପାଖେଇ ଆଣିଥିଲା । କ୍ରମେ କ୍ଲାସ ଭିତର ପଢ଼ାରେ, ଓ ସଭିଙ୍କ ସାଥିରେ ହସଖୁସିର ଆସରରେ ଆଗ ଭଳି ମିଶିଗଲେ ବି ଶୋଭନା ଓ ଫାତିମା କଲେଜ ସମୟରୁ କିଛି ଲେଖା ଅଲଗା ରଖି ନିଜ ନିଜ ଗୋପନ ଦୁଃଖ ବଣ୍ଟାବଣ୍ଟି ହେଉଥିଲେ ।

ତେବେ ନାହିଁନଥିବା ବୁଦ୍ଧି ଜୁଟେ ଶୋଭନା ମୁଣ୍ଡରେ । ଦିନେ ସେ କହିଲା, "ଫାତିମା, ମୋ' ଲାଗି ଅଧିକା ବୁର୍ଖାଟିଏ ଆଣନ୍ତୁ ନାଇଁ ।" ଫାତିମା କହିପାରିଲାନି ଯେ କଥାଟା ସେତେ ସହଜ ନୁହେଁ । ଘରେ ଅମ୍ମିର ଆଉ ତା'ର ଗୋଟିଏ ଲେଖାଁ ବୁର୍ଖା । ତଳ ଭଉଣୀଟି ବଡ଼ ହେଇଗଲାଣି, ତଥାପି ତା' ଲାଗି ଅଲଗା କରି ତିଆରି ହେଇପାରିନି । ସେମିତି କେବେ ଦରକାର ପଡ଼ିଲେ ମାଆର ରଙ୍ଗଛଡ଼ା ନକାବ ଖଣ୍ଡିକରେ କାମ ଚଳେଇନେଉଚି । ଫାତିମା କିନ୍ତୁ ଉପାୟ କାଢ଼ିନେଲା । କେତେ କାରସାଦି କରି, ମାଆର ଘଷରା ଜାମା ଖଣ୍ଡ ଘୋଡ଼ିହେବାକୁ ଜରୀନାକୁ ଲାଜ ମାଡୁଚି ବୋଲି କହି ଭଉଣୀ ଲାଗି ନୂଆ ଚିକ୍‌ଚିକ୍ ସାଟିନ୍ କନା କିଣେଇ ବୁର୍ଖାଟିଏ ସିଲେଇ କଲା ସେ ନିଜେ । ମାଆର ଡ୍ରୟାର୍‌ରୁ ବଳିଲା ଲେସ୍ ମାନ ଯୋଡ଼ାଯୋଡ଼ି କରି ତା'ର ଧଡ଼ିସବୁରେ ଲଗେଇଲା । ତାକୁ ଜରି କାଗଜରେ ଗୁଡ଼େଇ ସଭିଙ୍କୁ ଲୁଚେଇ ଶୋଭନା ପାଖକୁ ନେଇଗଲା । କଲେଜରେ ଆଉ କେହି ନ ଦେଖିଲାଭଳି ଶୋଭନାକୁ ଡାକିନେଇ ସନ୍ତର୍ପଣରେ ଖୋଲିଲା, ସତେକି କେତେ ଅପୂର୍ବ ଉପହାରଟିଏ । ଶୋଭନା ଆଖି ଗୋଲ୍ ଗୋଲ୍ କରି ଦେଖିଲା, ପଚାରିଲା, "ଇଏ କ'ଣ ? ଗୋଟେ ଡ୍ରେସ୍ ଆଣିଚୁ ମୋ' ଲାଗି ନା କ'ଣ ?"

ଫାତିମା ହସିଲା, କହିଲା, "ଡ୍ରେସ୍ ତ ତୋ' ପାଖେ ବହୁତ ଅଛି । ମୁଁ ଯାହା ଆଣିଚି ତୋ' ପାଖେ ନାଇଁ । ମୁଁ ଆଣିଚି ମ୍ୟାଜିକ୍ ଚଦେଇ । ୟାକୁ ଘୋଡ଼ିହେଇ ଉଡ଼ିଯିବୁ ତୁ ଯୋଉଠିକି ମନ, କେହି ଦେଖି ପାରିବେନାଇଁ ।"

ଶୋଭନା ଖୋଲିଦେଇ କିନ୍ତୁ ଖୁସି ହେଲାଭଳି ଜଣାଗଲା ନାଇଁ । ଓଲଟି ମୁହଁ ବିଚିକେଇ କହିଲା, "ଧେତ୍ ବେକୁଫ୍ କହିଁକୀ ! ଏଇଥି ଲାଗି ତୋତେ ଏତେ ଖୋସାମତି କରିଥିଲି ?" ତା'ପରେ ପ୍ରାୟ କାନ୍ଦ କାନ୍ଦ ଦିଶୁଥିବା ଫାତିମାକୁ ବୁଝାଇ କହିଲା ସେ, "ଏତେ ଝଲମଲ ପିନ୍ଧି ମୁଁ ବାହାରିବି ? କ'ଣ ଲୋକ ମୋତେ ଆଉରି ନିଠେଇ ନିଠେଇ ଦେଖନ୍ତୁ, ଆଉ ମୁହଁଟାକୁ ଦେଖି ଚିହ୍ନିପକାନ୍ତୁ ବୋଲି ?"

କିଛି ଆଲୋଚନା ଚର୍ଚ୍ଚା ବଚସା ପରେ ଠିକ୍ ହେଲା ଗୋପନ ଗସ୍ତ କାର୍ଯ୍ୟକ୍ରମ ଯେବେ କରାଯିବ ଫାତିମା ଏଇ ନୂଆ କୋଟୀକମ ବୁର୍ଖାଟା ପିନ୍ଧିବ, ଆଉ ଶୋଭନା ପିନ୍ଧିବ ଫାତିମାର ପୁରୁଣା ଖଣ୍ଡକ । ଶୋଭନା ଆଉରି ସାକୁଲାଉଥିଲା ଯେ ଫାତିମା ତା' ମାଆର ସେଇ ରଙ୍ଗଛଡ଼ା ବୁର୍ଖା କଥା ଯୋଉ କହୁଥିଲା, ସେଇଟା ଶୋଭନା ଲାଗି ହେଲେ ବରଂ ଆଉରି

ଭଲ ହୁଅନ୍ତା । ଫାତିମା ତା' କଥାକୁ କାନଦେଲା ନାହିଁ ।

ଦିଇଟା କ୍ଲାସ ମିସ୍ କରି ଫାତିମା ସାବୀନା ବୀଠୁ ନିଜ ବୁର୍ଖା ନେଇ କଲେଜ ଫାଟକ ପାରି ହେଲାବେଳକୁ ଶୋଭନା ଆଗରୁ ବାହାରିଯାଇ ଖଣ୍ଡେ ଦୂରରେ ଅପେକ୍ଷା କରିଥାଏ । ସେଇଠୁ ଦିହେଁ ରିକ୍ସାକରି ଚାଲିଲେ ସିନେମା । ହଲ୍ ବାହାରେ ମୁକ୍ତାର କେତେବେଳୁ ଆସି ଠିଆହେଇଥାଏ । ଟିକିଏ ଦୂରରେ ଶୋଭନାର ପ୍ରେମିକ ରାଜେଶ୍ ସମସ୍ତଙ୍କ ଲାଗି ଟିକଟ କିଣିସାରିଥାଏ ।

ଆଉରି ସେମିତିକା ଗସ୍ତକ୍ରମ କେଇଥର ତା'ପରେ । ବଡ଼ା ତାଲ୍ କୂଳର ଗଛବୁଦା ଘେରା ପାର୍କ, କଳାଭବନର ଖୋଲା ଛାତ । ବନବିହାର ପାହାଡ଼ କଡ଼ ନିଛାଟିଆ ରାସ୍ତା । ମାତ୍ର କେଇଫୁଟ ଦୂରରେ କୁଆଡ଼େ ଛପି ହଜି ଯାଇଥାଏ ବାହାରର ସଂସାର । ମୁକ୍ତାର ସାଙ୍ଗେ ଭେଟ ହେବା, ପାଖାପାଖି ଏମିତି ବସିବା ଫାତିମା ଲାଗି ଏଇ ପ୍ରଥମ । ସିନେମା ହଲ୍‌ରେ ପାଖାପାଖି ବସିଲା ବେଳେ ଫାତିମାର ଦାଉଁ ଦାଉଁ ଛାତି ପଡୁଥାଏ । ବିଶ୍ୱାସ ହେଉନଥାଏ ବର୍ତ୍ତମାନରେ । ପାର୍କରେ କି ତାଲ୍ କୂଳରେ ବସିଲାବେଳେ କେଉଁ ନାହିଁନଥିବା ଜଗତରେ ପହଞ୍ଚିଥାଏ ଫାତିମା । ପ୍ରଥମକରି ମୁକ୍ତାର ଆଗରେ ମୁହଁ ଖୋଲି ସେ ଏଣିକି କଥା କହୁଥାଏ । ଆଗରୁ ମୁକ୍ତାରକୁ ଯେମିତି ଜାଣିଥିଲା, ସତେକି ସେ କେଉଁ ଫିଲିମ୍‌ର ହିରୋଟିଏ । ସୁଦୂର, ହାତପାହାନ୍ତାରେ ଥାଇ ବି ଅପହଞ୍ଚ । ଆଜିକାଲି ତା' ପାଖରେ ବସି ଅନାୟାସ କଥା କହିଯାଏ ଫାତିମା । ଯେମିତି କଥା କହେ ସାଙ୍ଗ ସାଥିଙ୍କ ଆଗରେ, ଶୋଭନା ଆଗରେ । ନିଜ ଘର କଥା, କଲେଜର କେଉଁ ମଜା କଥା । ନିଜେ ଭାବୁଥିବା କଥା, ଘରେ ସବୁକଥା ଲୁଚେଇବାର କଷ୍ଟ କଥା । କେତେବେଳେ ମୁକ୍ତାର ମୁହଁ ଖୋଲେ, "ବାବାରେ, ତମେ ଏତେ କଥା କହିପାର । ମୁଁ ତ ଧରିନେଇଥିଲି ତମ ମୁହଁରୁ ଜମା କଥା ବାହାରେନାହିଁ ବୋଲି ।"

"କେବେ ସମୟ ମିଳିଲା ଯେ କଥା କହିଥାନ୍ତି ?"

"ଯେବେ ଟିକିଏ ସମୟ ମିଳିଲା ଖାଲି କରିବା କାମ ଆମେ କଲେ ନୁହେଁ? କଥା କହିବାକୁ କିଏ ପଚାରୁଚି ?"

କଥାଟା ଜମା ଭଲ ଲାଗିନଥିଲା ଫାତିମାକୁ । ଉତ୍ତରରେ କେବଳ ମୁକ୍ତାରର କାନ୍ଧକଡ଼ରେ ମୁହଁ ନୋଇଁଦେଲା ସେ । ମୁକ୍ତାର ଆଉରି ଉଷୁମ୍ ଗଳାରେ କହିଲା ତା' କାନ ପାଖରେ, "ଅସଲରେ ଆମ ଭିତରେ ତା'ଆଠୁ ବଳି ଆଉ ଅଛି କ'ଣ ଯେ କହିବା ଲାଗି ? ଆଉ କେବେ ତ ସେଭଳି କଥା ଲାଗି ମଉକା ବି ଦେଉନା ତମେ ।"

ସେ କେମିତି ବୁଝାଇ ପାରନ୍ତା ଯେ ମୁକ୍ତାର ଏବେ ତା'ର ଯେଉଁ ଭାବକୁ ବୁଝୁଚି କେବଳ ନାରୀଟିଏର ମଧୁର ଲାଜ ବୋଲି, ଫାତିମା ଲାଗି ତହିଁରେ ଆତ୍ମଗ୍ଳାନି ଭଳି ବି କ'ଣ

ଟିକେ ମିଶିଥାଏ ।

ଯେବେ ମୁକ୍ତାରକୁ ପଚାରେ ସେ, "ଆଉ ତମ କଥା କିଛି କହ ?"

ମୁକ୍ତାର କହିବା ପୂର୍ବରୁ ତା' ଦୃଷ୍ଟିରୁ ସତେକି ଉଛୁଳି ଆସେ କବିତା, "ଯୁଗ ଯୁଗ ହେଲା ମୋ' ମନରେ ତ ଖାଲି ଗୋଟିଏ କଥା ଅଛି ମୋ' ଜାନ୍! ତା'ଛଡ଼ା ଆଉ ଅଛି କଅଣ ଭଲା ମୋ' ଜୀବନରେ ?"

"କ'ଣ ସିଏ ଶୁଣେ ଟିକିଏ ?"

"ଖାଲି ତମେ ହିଁ । ଆଉ ମୁଁ ସବୁବେଳେ କହିଚାଲିଚି ଖାଲି ତମରି କଥା । ମୋ' କବିତାରେ । ତା'ଠୁ ଭିନ୍ନ ଆଉ କହିବି କ'ଣ ?"

ଫାତିମାକୁ କ'ଣ ଗୋଟାଏ ମାଡ଼ିପଡ଼େ । ନିଉନପଣ କି ଦୋଷୀଭାବ ଭଳି କଛି । କହେ, "ମୁଁ କ'ଣ ଖୁବ୍ ବେଶୀ ବୁଝେ ତୁମ କବିତା ବୋଲି ଭାବିଚ ? ମୁଁ ତ ନିହାତି ମାମୁଲି ଝିଅଟିଏ ।"

"ନା, ସେମିତି କହିବନି କେବେ ।" ଫାତିମା ଓଠରେ ଆଙ୍ଗୁଠି ଦେଇ ଚୁପ୍ କରେଇଦିଏ ସେ । ନିଜ କବିତାର ପଂକ୍ତିଟିଏ ଆବୃତ୍ତି କରେ । ଫାତିମାର ଆଖିରେ ଆଖି ରଖି ଶୁଣାଏ ତା'ର ଶାୟରୀ । ଗତକାଲି ଅନିଦ୍ରା ରହି ସେ ଯୋଡ଼ିଚି ଶବ୍ଦ ସାଙ୍ଗେ ଶବ୍ଦ ଯାହା ରୂପ ଦେବ ପ୍ରେମିକା ଲାଗି ତା' ଛାତି ଭିତରର ଆକୁଳ ଢେଉକୁ । ଫାତିମା କିଛି କିଛି ଧରିପାରେ, ପ୍ରେମିକାର ଆଖିକୁ, ଓଠକୁ ମିଶାଯାଇଥାଏ ଗଭୀର ସମୁଦ୍ର ଆଉ ଗୋଲାପ ପାଖୁଡ଼ା ସାଙ୍ଗେ ।

କେବେ ବା ଫାତିମା ମୁହଁଖୋଲି କହିପକାଏ, "ନାଇଁ । ତମ ବିଷୟରେ କିଛି ଜାଣିବାକୁ ଇଚ୍ଛା ହେଉଚି । ତମ ପିଲାଦିନ ବିଷୟରେ କିଛି କହ ମୋତେ ଆଜି । ସାଙ୍ଗ ସାଥୀଙ୍କ ବିଷୟରେ, ତମ କଲେଜ ଜୀବନ ବିଷୟରେ କହ ।"

ମୁକ୍ତାର ଯାହା କହେ ଏଥର, ସେଥିରେ ବି ଫାତିମା ସାମିଲ ହେଇପାରେନାହିଁ ସେତେ । ମୁକ୍ତାରର ଓଠରେ କଥାସବୁକୁ ଧରୁ ନଧରୁଣୁ ତା' ଅର୍ଥ ସବୁ ଫାତିମାର ପହଞ୍ଚରୁ ଖସି ଚାଲିଯାଆନ୍ତି । ଅବଶ୍ୟ ବୁଝାପଡ଼େ ତାକୁ ଯେ ମୁକ୍ତାର କହୁଚି ତା' ସପ୍ନ କଥା, ଭବିଷ୍ୟତ କଥା, ବମ୍ବେର ଫିଲିମ୍ ଦୁନିଆଁ ପଛପାଖର କଥା । ତେବେ ମୁକ୍ତାର ତାକୁ ମୁଗ୍ଧ ଆବେଶରେ ଯେବେ ଚାହିଁଥାଏ, ଫାତିମାକୁ ଲାଗେ ଏଇତ ପାଖରେ ଅଛି ମୋର ପ୍ରିୟ । ମୋଠୁ ବଳି କିଏ ଭଲା ଜାଣିଚି ତାକୁ ? ମୋ'ଠୁ ଆପଣାର ତା'ର କିଏ ଅଛି ? ଏତେ ପାଖାପାଖି ଆମେ ଦିହେଁ, ମଝିରେ ଆଉ କିଛି ବୋଲି ତ ନାହିଁ । ମୁକ୍ତାର ଯେବେ ମୁହଁ ଖୋଲେ, ତା'ର ଗଭୀର ସ୍ୱରର ନିଶା ଭିତରକୁ ଟାଣି ହେଇଯାଏ ସେ ଗହୀର ପାଣିର ଆବର୍ତ୍ତରେ ପାଦ ପଡ଼ିଗଲା ପରି । ତା'ର କହିଲା କଥା ସବୁ କିନ୍ତୁ ତା' ଚାରିପାଖେ ଘେରି ରହେ ମେଘୁଆ ବଳୟଟିଏ ଭଳି,

ତା'ର ଶାୟରୀ ଭଳି ମଧୁର । ତଥାପି ଅଚିହ୍ନା, ଅଦ୍ଭୁତ । ସେହିଭଳି ଦୂର ଆଉ ଅପହଞ୍ଚ ।

ହାତ ଉପରେ ମୁକ୍ତାରର ହାତ ଥାଏ । ଯେତେ ନାହିଁ କଲେବି ଫାତିମା ଟାଣି ହେଇଯାଏ କେଉଁ ସ୍ମୃତି ଭିତରକୁ । ଅନ୍ୟ କେଉଁ ଇଚ୍ଛା ଭିତରକୁ । ସେମାନଙ୍କଠୁ ଅଳ୍ପ ଦୂର ଛାଡ଼ି ବସିଥାନ୍ତି ଶୋଭନା ଆଉ ରାଜେଶ । ଶୋଭନା କାନରେ କ'ଣ ଗୁପ୍‌ଚୁପ୍ କହୁଥାଏ ରାଜେଶ । ଖିଲିଖିଲି ହସି ଗଡ଼ିଯାଉଥିବା ଶୋଭନାକୁ କଣେଇ ଚାହେଁ ଫାତିମା । ସେମିତି ଝରଣା ଭଳି ଫିଟିଯାଇପାରନ୍ତା କି ସେ ! ଉଠିଲା ବେଳେ ମୁକ୍ତାରକୁ କହେ ଫାତିମା, "ଜାଣ, ମୋତେ ଲାଗୁଛି ଏ ଦୁହେଁ ଅନ୍ୟ କୋଉଠି ବି ଭେଟୁଚନ୍ତି । ଶୋଭନା ଲୁଚଉଚି ମୋତେ ।"

ମୁକ୍ତାର ବୁଝୁଥିବା ଭଳି ଚାପା ହସ ହସେ । ହାତ ବଢ଼େଇ ଫାତିମାର ହାତକୁ ନିଜ ପାପୁଲି ଭିତରକୁ ନିଏ । କାନ୍ଥ କଡ଼ କି ଗଛବୁଦା ପଛକୁ ଟାଣିନିଏ । ଏଣିକି ତେଣିକି କଣେଇ ଚାହିଁ ଚଟ୍‌ପଟ୍ ଓଠ ମିଶେଇଦିଏ ।

ଛକ ପାଖରୁ ଶୋଭନାର ଗାଡ଼ିରୁ ଓହ୍ଲେଇ ରିକ୍ସା ନିଏ ଫାତିମା । ଘରକୁ ଫେରିଲା ବେଳକୁ ମନଟା ହୁତୁହୁତୁ କରୁଥାଏ । ସିଲେଇ କାମରେ ମନ ଲାଗେନାଇଁ । ବହିପାଠ କିଛି ଆଉ ଆଖି ଦେଇ ଉଠୁରେ ନାଇଁ ।

କେବେ ଅବା ମୁକ୍ତାର ପଚାରେ, "କୋଉଠି ଟିକିଏ ଭଲରେ ଭେଟ ହୁଅନ୍ତା ନାଇଁ ? ଆମ ଘରକୁ ଆସ ନା ଥରେ, କେହି ଜାଣିବେନି ମୁଁ କଥା ଦେଉଚି ।" ଫାତିମା ମୁହଁ ବୁଲେଇନେଇ ଚୁପ୍ ରହେ । ତା' କାନ୍ଧ ଉପରେ ମୁକ୍ତାରର ହାତପାପୁଲିର ଚାପ ଏଥର ନୂଆ କିଛି କହୁଥାଏ । ତାକୁ ଅବୁଝା ରହେନାହିଁ ସେକଥା । ନ ଶୁଭିଲା ଭଳି ସ୍ୱରରେ ମୁକ୍ତାର କହେ, "ଅମ୍ମିକୁ କୋଉ କାମରେ ବାହାରକୁ ପଠେଇଦେବି, ଯେବେ ତମେ କହିବ ଫାତିମା । ଆସିବ କାଲି ? ମୁଁ ଅପେକ୍ଷା କରିଥିବି ତମଲାଗି । ଆଜି, ଏଇ ମୁହୂର୍ତ୍ତରୁ ପ୍ରତିକ୍ଷଣ ତମ ବାଟ ଚାହିଁଥିବି । ଆସିବ ?"

ମୁଣ୍ଡ ପୋତି ନାହିଁ କରେ ଫାତିମା । ପୁଣି ଆଖି ଟେକି ଦେଖେ ମୁକ୍ତାର ଭୂରୁ କୁଞ୍ଚେଇଦେଲା କି । ତା' ପାଖକୁ ଲାଗିଆସି ଶେଷକୁ ନିଜ ମୁହଁକୁ କଥା ଆଣେ ଫାତିମା, "କେବେ ଆମେ ଏକାଠି ରହିବା ମୁକ୍ତାର ? ଆମ ବାହାଘର ହେବ କେବେ ?"

ମୁକ୍ତାରର ହାତ କୋହଳ ପଡ଼ିଯାଏ ସେତିକି କଥାରେ । ତା'ର ଦୃଷ୍ଟି ଚାଲିଯାଏ ଦୂରକୁ । ନିଶ୍ୱାସଟାଏ ଛାଡ଼େ ସେ ।

ଫାତିମା ମୁହଁ ଫେରେଇ ଦୂରେଇ ଛିଡ଼ା ହୁଏ । ନିଜ ନିରାଶା ସାଙ୍ଗେ ଯୁଝିବାକୁ ଚେଷ୍ଟାକରେ । ମୁକ୍ତାରର ପ୍ରେମକୁ ଅବିଶ୍ୱାସ କରେନାଇଁ । ତା'ର ଆତ୍ମସମ୍ମାନକୁ, ଉଚ୍ଚାକାଂକ୍ଷାକୁ ବୁଝିବାକୁ ଚେଷ୍ଟାକରେ ।

# ଦ୍ୱିପହରର ରଙ୍ଗମଞ୍ଚ

ଫାତିମା ଜାଣେ ଯେ ମୁକ୍ତାର ତା'ର କଳ୍ପନାଜଳ୍ପନା ଭିତରେ ବଞ୍ଚୁଥାଏ । ଆଉରି ବି ଯେ ଖାଲି କଳା କି କବିତା ନୁହେଁ, ମୁକ୍ତାରର ମୁଣ୍ଡ ଭିତରେ ତା' ଭବିଷ୍ୟତ ସାଙ୍ଗରେ ଅଭିନ୍ନ ହେଇ ରହିଥାଏ ସିନେମା । ମୁକ୍ତାର ସିନେମା ଜଗତରେ ରହିଥାଏ । ସିନେମା ପାଇଁ ହିଁ ବଞ୍ଚୁଥାଏ । ସେଥିଭିତରୁ ତାକୁ ଚମକାଇ ଦେଇଥିବାଲାଗି, ତା' ସ୍ୱପ୍ନ ଭାଙ୍ଗିଦେବା ଭଳି କଥା କହିଥିବା ଯୋଗୁଁ ଫାତିମାକୁ ଦୋଷୀ ଲାଗେ । ମନେ ମନେ କାନ ମୋଡ଼ି ଉପୁଡ଼ା ମାରିହୁଏ । ନାଇଁ, ଏଣିକି ନିଜେ ଆଉ ବାହାଘର କି ଘରସଂସାର କଥା ସେ ମୁକ୍ତାର ଆଗରେ କହିବ ନାହିଁ । ତେଲଲୁଣର ଶଗଡ଼ ଗୁଳା କଥା, ଘର ପାଖରେ ଥିବା ଅସନା ଗୁଜବର ଦୁନିଆଁଟା କଥା ମନେପକେଇବ ନାହିଁ ।

ମୁକ୍ତାରର ସାଙ୍ଗମାନେ ବି ମୁକ୍ତାରକୁ ସାଧାରଣ ବୋଲି ଭାବନ୍ତି ନାହିଁ, ଉଣାଅଧିକେ ତା' ସ୍ୱପ୍ନରେ ବିଶ୍ୱାସ କରନ୍ତି । ରାଜେଶ୍ ଥଟ୍ଟା କରେ, "କେବେ ଯାଉଚ ବମ୍ବେ, ମୁକ୍ତାର ମିଆଁ ? ଏଠି ଡ୍ରାମା ଫ୍ରାମା କରି କାହିଁକି ସମୟ ନଷ୍ଟ କରୁଚ ? ଏଥର ମାର ସିଧା ଡିଆଁଟାଏ ରୂପେଲୀ ପରଦାକୁ ।"

ଜବୀନାର ସ୍ୱାମୀ ସୁଲେମାନ କହୁଥିଲା ସେଦିନ, "ଆମେ ମୁକ୍ତାର ଭାଇ ଦିନେ ଏଇ ଅଞ୍ଚଳର ଆଉ ଗୋଟିଏ ବଡ଼ ଷ୍ଟାର ହେଇ ବାହାରିବେ ଦେଖିବ । ସେତେବେଳକୁ ଆମକୁ ଚିହ୍ନିଲେ ହେଲା ।"

ଫାତିମା ଚିମୁଟିଦେଇ କହେ ଜବୀନା, "ଏ ଷ୍ଟାର ଫାରଙ୍କୁ ବିଶ୍ୱାସ ନାଇଁ ଫାତିମା । ସେ ବମ୍ବେ ଯିବା ପୂର୍ବରୁ ବାହାହେଇଯିବୁ । ବାହାଘର କଥାଟା ଦିହେଁ ପକ୍କା କଲଣି ଟ ?"

ଫାତିମା ଚିଡ଼ିଲାପରି କହେ, "ନିଜେ କଲେଜ ନ ମାଡୁଣୁ ବାହାହେଇଗଲୁ ବୋଲି

ଆଉ ସମସ୍ତ ସେଇ ବାଟରେ ଯିବା ଦରକାର ନାହିଁ ? ମୋର ଆଗ ଡିଗ୍ରୀଟା ଦରକାର । ମୋ' କ୍ଲାସ୍‌ରେ ସମସ୍ତେ କହନ୍ତି ଫାଷ୍ଟକ୍ଲାସ୍ ଟାଏ ମୋର ହେବ, ଜାଣିଚୁ ? ଆମ ମାଡ଼ାମ୍ ମାନେ କହନ୍ତି, କିଛି ନହେଲେ ଲେକ୍‌ଚରର ଚାକିରୀ ତ ଥୁଆ ମୋ' ଲାଗି । ତେବେ ଆଜିକାଲି କେତେରକମ କ୍ୟାରିୟର ଝିଅଙ୍କ ଲାଗି ତୁ ଜାଣୁ ?"

"ଛାଡ଼ ମ, ଡିଗ୍ରୀ କ୍ୟାରିୟରରୁ କ'ଣ ପାଇବୁ ?" ଜବୀନା ଆଖି ମାରିଲା, ନିଜ ବଢ଼ିଆସୁଥିବା ପେଟରେ ହାତ ମାରିଦେଇ କହିଲା, " ଯା'ଠୁ ବଳି ଡିଗ୍ରୀ ଆଉକିଛି ନାହିଁ ଆମ ମାଇପିଙ୍କ ଲାଗି, ବୁଝିଲୁ । ଏଇଥିରେ ଫେଲ୍ ମାରିଲେ ଜାଣି ସବୁଥିରେ ଫେଲ୍ । ବେଳ ଥାଉଣୁ ନିକାହଟା କରିପକା । ନହେଲେ ଥରେ ବମ୍ବେରେ ଗୋଟେ ଫିଲିମ୍ ହିଟ୍ ହେଇଗଲେ ହଜାରେ ଝିଅ ତୋ' ହୀରୋ ପଛରେ ପଡ଼ିଯିବେ ବୁଝିଲୁ । ପସ୍ତାଉଥିବୁ ସେତେବେଳକୁ..."

ନିଜକୁ ପଚାରେ ଫାତିମା, କୋଉ ବାଟ ତା' ଲାଗି ବେଶୀ ଉଚିତ୍ ହେବ ଏବେ ? ପାଠପଢ଼ି ନିଜେ କ୍ୟାରିୟର କରିବ, ନା ନିଜକୁ ମୁକ୍ତାରର ଜୀବନରେ ସାମିଲ କରିଦେବ ? ତା' ସାଥୀର ବୋଝ କେମିତି ଟିକିଏ ଊଣା ହେବ, ଚଲାବାଟ ଟିକିଏ ସହଜ ସମତୁଲ ହେବ ସେଇ ଚେଷ୍ଟା କରିବା କଥା ନୁହଁ କି ତା'ର ? କେତେଥର ନିଜକୁ ତିଆରିଚି ସେ, ନିରୁତା କବିଟିଏ ପରା ଏ, ସାଧାରଣ ମଣିଷ ତ ନୁହଁ । ପଢ଼ିଥିବା ଗଳ୍ପ ଉପନ୍ୟାସ ମନକୁ ଆସେ ।

ପ୍ରିୟ ସିନେମାର ନାୟିକା ମାନେ ଦିଶିଯାନ୍ତି । ମନହୁଏ ମୁକ୍ତାରର ଜୀବନସାଥୀ ହେବାଲାଗି ସେ ଯୋଗ୍ୟ ହୁଅନ୍ତା । ତା' ମୁଣ୍ଡ ଭିତରେ ମେଘଭଳି କଳ୍ପନାରେ ଗଢ଼ିହେଉଥିବା ଛବି ସବୁକୁ ଫାତିମା ବି ଉଙ୍କି ମାରି ଦେଖନ୍ତା । ମୁକ୍ତାରର ଜୀବନର ଅବିଚ୍ଛେଦ୍ୟ ଅଂଶଟିଏ ହେଇଯିବାକୁ ବାଟ ପାଇଯାନ୍ତା କେମିତି । ସେ କହୁଥିବା କଥା ଭିତର ଦେଇ ନାହିଁନଥିବା ସେଇ ରାଜ୍ୟଟି ଭିତରେ ଫାତିମା କେମିତି ଟିକେ ପାଦ ପକାଇପାରନ୍ତା ।

ମୁକ୍ତାର ଗପକରେ କେତେ କଥା । କହେ ଯେ ଜାବେଦ ଭାଇ କହୁଥିଲେ ତା' କବିତା ସବୁରେ ଗୋଟିଏ ବିଶେଷତ୍ୱ ଅଛି । ରୋମାଣ୍ଟିକ୍ କବିତା ହେବା ସହିତ ଫିଲିମ୍ ଗୀତ ଲାଗି ବି ସେସବୁ ପୂରାପୁରି ଫିଟ୍ ହେବ । ମୁକ୍ତାର ବୁଝାଏ ତାକୁ, ଅଭିନୟ ଲାଗି ତା'ର ଯେତେ ସଉକ୍ ନାହିଁ, ଲେଖା ଲାଗି ତା'ଠାରୁ ବେଶୀ । ସିନେମା ଜଗତକୁ ଆସିଲାପରେ ଅତୀତରେ ଅନେକ ବିଖ୍ୟାତ କବି ନିଜ ଲେଖିବାର ଢଙ୍ଗକୁ ବଦଳେଇଚନ୍ତି, ପ୍ରଥମେ ଗୀତର ସ୍ୱର ଶୁଣିସାରିଲା ପରେ ସେଇ ସ୍ୱର ଲୟକୁ ଖାପ୍ ଖାଇଲା ଭଳି କବିତା ଲେଖିଚନ୍ତି, ସେଥିରେ ଅମର ହେଇଯାଇଚନ୍ତି ।

ଆହୁରି ଗପେ ସେ ତା' ଭବିଷ୍ୟତ କଥା, ନୂଆ ଗୋଟିଏ ଡ୍ରାମାର ରିହର୍ସାଲ ଲାଗି ଆଜିକାଲି ଯାଉଥିବା କଥା, ସିନେମା ଲାଗି ସ୍କ୍ରିପ୍‌ଟ ଲେଖି କାହାକୁ ସବୁ ଦେଖାଇଥିବା କଥା

ବି । ଏଇ ସେଦିନ କଳାମଣ୍ଡଳ ଥିଏଟର ଗ୍ରୁପର ନିର୍ଦ୍ଦେଶକ ତାକୁ ଚିହ୍ନା କରେଇଦେଲେ, "କାହା ସାଙ୍ଗେ କହିଲ ଦେଖି ? ଜୟା ଦିଙ୍କ ବାପାଙ୍କ ସାଙ୍ଗେ । ବୁଝୁତ ତ ଫାତିମା, କିଏ ସେ ?"

"ଜାଣିଚି ମ । ଖୋଦ୍ ଅମିତାଭ ଜୀଙ୍କ ଶଶୁର ପରା ।"

"ଆରେ ସେମିତି କହନି ମ, ସେ ନିଜେ ବି ବଡ଼ ଲେଖକ, ଜର୍ଣ୍ଣାଲିଷ୍ଟ । ସେ ମୋ' ଆକଟିଙ୍ଗ୍ ଭଲ ପାଇଲେ । କ'ଣ କହିଲେ ଜାଣ ? କହିଲେ ମୋତେ, ତମେ ଚାଲିଯାଅ ପୁନା ଫିଲ୍ମ ଇନ୍‌ଷ୍ଟିଚ୍ୟୁଟ୍‌କୁ । ମୁଁ ଲେଖିଦେବି ଚିଠି, ତମକୁ ସିଟ୍ ମିଳିଯିବ ।"

ଫାତିମା ଜାଣିଚି ପୁନା କଥା । ଜୟା ସେଇଠୁ ବାହାରି ବମ୍ବେ ଗଲେ, ସେକଥା ବି ଜାଣିଚି । ପଚାରିଲା, "କେତେ ଟଙ୍କା ଲାଗିବ ପୁନା ଇନ୍‌ଷ୍ଟିଚ୍ୟୁଟ୍‌କୁ ଗଲେ ? ତମ ଅମ୍ମି ରାଜି ହେବେ ତ ?"

"ଜାଣିନି । ଭାବିନି ସେକଥା । ଅମ୍ମିର ମନରେ ମୁଁ ଦୁଃଖ ବି ଦେଇପାରେ, ତାକୁ ଏକୁଟିଆ ଛାଡ଼ି ଗଲେ । ତେବେ ମୁଁ କରିବି କ'ଣ ? ତମେ କହ ଫାତିମା, ଏଇଠି କ'ଣ ବସିରହିଥିବି ସାରାଜୀବନ ?"

କେବେକେବେ କଳାଭବନର ବିରାଟ ଛାତରେ ଲେକ୍‌ମୁହାଁ କଡ଼ପାଖକୁ ଦିହେଁ ବସିଥାନ୍ତି, ମୁକ୍ତାରର ଗମ୍ଭୀର ମୁହଁ ଦେଖି ଫାତିମା ପଚାରେ, "କି ଚିନ୍ତା କରୁଚ ମ ଏତେ ? ପୁନା ଯିବା କଥା ଯଦି ଯିବ, ଏତେ ଭାବୁଚ କାଇଁକି ?"

ନିଶ୍ୱାସ ଛାଡ଼ି ମୁକ୍ତାର କହେ, "ଟଙ୍କା କୋଉଠୁ ଆସିବ ମୋ' ଜାନ୍ । ପୁନା ଯିବା ମୋ' ଭାଗ୍ୟରେ ନାହିଁ । ତା'ଛଡ଼ା ମୁଁ କ'ଣ ଭାବୁଚି ଜାଣ, ଦି'ବର୍ଷ ସେଠି କଟିଯିବ ଅକାରଣ । ସେଇ ଦି'ବର୍ଷ ବମ୍ବେରେ ରହିଲେ ବରଂ ଲାଭ ଅଛି ।"

ରହି ରହି ଢୋକ ଗିଳି ଫାତିମା ପଚାରେ, "ବମ୍ବେରେ ରହି କରିବ କ'ଣ ? ପୁଣି ଖର୍ଚ୍ଚ ତ ସେଠି ବି ହେବ ?"

"ଆରେ ବୋକୀ, ସେଠିକି କ'ଣ ଯିବି ମିଛଟାରେ ବସିବାପାଇଁ ? ଛୋଟମୋଟ ରୋଲ ମୋତେ ମିଳିଯିବନି ? ଏତେ ଚିହ୍ନା ଲୋକ ଅଛନ୍ତି, ଏଡ଼େ ବଡ଼ ବଡ଼ ଲୋକ ସବୁ ସେମାନେ । ପୁଣି ସମସ୍ତେ ମୋତେ ଏତେ ଭଲ ପାଆନ୍ତି । ସେଇଠି ରହି ଲେଖିବି, ଚେଷ୍ଟା କରିବି ।"

ଫାତିମା ନିଜ ମନର ସନ୍ଦେହ, ଦ୍ୱନ୍ଦ୍ୱ ସବୁକୁ ଠେଲି ତଡ଼ିଦିଏ । ବମ୍ବେର ସିନେମା ଜଗତ ଏମିତି ଅପହଞ୍ଚ କାହିଁକି ହେବ ? ଏଣିକି କଲେଜରୁ ବାହାରି ଆଉ ଦି'ଚାରି ଜଣ ପୁଅଝିଅଙ୍କ ସାଙ୍ଗେ ମିଶି ସେମାନେ ଚାଲିଯାଆନ୍ତି ଆଖପାଖରେ ସୁନ୍ଦର ନିଛାଟିଆ ଜାଗାମାନଙ୍କୁ । ଭୀମ୍ ଭେଟକା, ବନବିହାର । ଆସରରେ ସିନେମା ଜଗତ କଥା ପଡ଼େ ।

କେତେ ରକମର ଆଲୋଚନା ହୁଏ, ମତାମତ ପରାମର୍ଶ ବି ଦିଆନିଆ ହୁଏ ।

"ଏଇ ଗଲା କେଇବର୍ଷ ହେଲା ଆମ ଦେଶରେ ଯେଉଁ ଆର୍ଟଫିଲ୍ମର ଲହର ଚାଲିଚି ଜାଣିଚ ତ ? ମାନେ ମଝିମଝିଆ ବାଟ ଯାହାକୁ କହୁଚନ୍ତି, ମିଡ଼ିଲ୍ ଅଫ୍ ଦ ରୋଡ଼ । ପୂରା କଳା ଫିଲ୍ମ ନୁହେଁ କି ପୂରା ବ୍ୟବସାୟିକ ନୁହେଁ, ସେଇ କ୍ଷେତ୍ରଟି ହେଲା ଅସଲ । ନୂଆ ଟେଲେଣ୍ଟ୍ ମାନଙ୍କ ଲାଗି ସେଇ ହେଉଛି ଜାଗା ।"

"ପହିଲେ ସେଇଠିକି ଯାଇ ସଫଳତା ମିଳିଗଲା ପରେ ପୁରା ବ୍ୟବସାୟିକ ହେଲେ ବି ମନ୍ଦ କ'ଣ ?"

"ତମେ ପରା ଲିରିକ୍ ଲେଖିବ ମୁକ୍ତାର ଭାଇ ? ନା ଆକ୍ଟିଂ ବି କରିବାର ପ୍ଲାନ୍ ଅଛି ?"

"ଆରେ ସମୟ ଆସୁ, ଭାଗ୍ୟ ଥିବ ଯୋଉଠି ସେଇଆ କରିବା ।"

"ଠିକ୍ କଥା । ତମର ତ ସବୁଥିରେ ହାତ, ନୁହେଁ ମିଆଁ ମୁକ୍ତାର ?"

ଫାତିମା ଦେଖେ, ମୁକ୍ତାରର ଚେହେରା ବଦଳିଯାଏ ଏମିତି କଥାବାର୍ତ୍ତା ହେଲାବେଳେ । ତା' ଆଖିକୁ ଦେଖିଲେ ମନେହୁଏ ସେ ଆଉ କୋଉଠି ଯାଇ ପହଞ୍ଚିଲାଣି । ଶୋଭନା କହିପକାଏ, "ମୁକ୍ତାର ଭାଇ, ମୋତେ ଗୋଟାଏ ରୋଲ୍ ଦେବ ନିଶ୍ଚେ, କଥା ରହିଲା ।"

ଜବାବ ଆସେ ଆଉ କାହାଠୁ, "ସିଏ ବମ୍ବେରେ ବିଖ୍ୟାତ ହେଲାବେଳକୁ ଶୋଭନା ତମେ ସେତେବେଳେ କ'ଣ ଏମିତି ଦିଶୁଥିବ ? ମେମ୍‌ସାହାବ ହେଇ ବୁଲୁଥିବ କୋଉଠି । ଦି'ତିନିଟା ପିଲା ମମ୍ମି ମମ୍ମି କହି ଗଡ଼ିଛାଡୁଥିବେ ଆୟା କୋଳରୁ ।"

ହସ ରୋଳ ଟପେଇ ଶୋଭନାର ଜବାବ ଶୁଭେ, "ଆରେ ଆମ ପାଖରେ ବି ଟାଲେଣ୍ଟ୍ ଅଛି । କଥା ହେଲା ଆମ ଭଳି ଘରେ ଛାଡ଼ିବେନି ସିନେମାରେ ମିଶିବା ଲାଗି । ଜୟା ବଙ୍ଗାଳୀ ଝିଅ ବୋଲି ତାଙ୍କ ବାପା ଛାଡ଼ିଦେଲେ ସିନା ।"

"ହଉ, ରାଜେଶ୍ ବି ତମକୁ ଛାଡ଼ିଦେବ ଆକ୍ଟିଂ କରିବାକୁ, ନା କ'ଣ ଭାଇ ରାଜେଶ୍ ?"

ରାଜେଶ୍ କହେ, "ଆରେ ଜୟା କ'ଣ ଆମ ତମ ଘର ଝିଅ ବୋଲି ଭାବିଚ ? ସିଏ କ'ଣ ଏତେଦୂର ଉଠିଥାଆନ୍ତା, ଯଦି ସତ୍ୟଜିତ୍ ରାୟ ତାକୁ ସ୍କୁଲ୍ ଦିନରୁ ବ୍ରେକ୍ ଦେଇନଥାନ୍ତେ ତାଙ୍କ ଫିଲିମ୍ ମହାନଗରରେ ?"

ଫେରିବା ବାଟରେ ସେମାନେ ଅଲଗା ଅଲଗା ରାସ୍ତାରେ ଯାଆନ୍ତି । ତୁନିତାନୀ ଚାଲୁଥିବା ଫାତିମାକୁ ଚାହିଁ ମୁକ୍ତାର କହେ, "ତୋତେ ଲାଗୁଥିବ କାହିଁ ବମ୍ବେ, ଆଉ କାହିଁ ଆମ ପାଖ ଗଳିର ମୁକ୍ତାର ଖାଁ । ସତକହିଲୁ, ଏଇଆ ଭାବୁଚୁ ନା ? ତୋ' ମୁହଁ ପରା

କହିଦେଉଚି ।"

ସେଇଠୁ ଫାତିମା କହିପକାଏ ସାହାସ କରି, "ଆମ ସଂପର୍କ ଏଇଭଳି ରହିଥିବ ନା ସବୁଦିନେ ? ମୋତେ କେମିତି ଡର ଲାଗେ ।"

ନିଜ ମୁହଁରୁ ବାହାଘର କଥାଟା ଆଣିବାକୁ ସାହସ କରେନି ଫାତିମା । ମୁକ୍ତାର ଅବାକ୍ ଚେହେରା କରେ ।

"କେମିତି ଏକଥା ମୁହଁକୁ ଆଣିପାରୁଚ ମେରୀ ଜାନ୍ ? ତମେ ଆଉ ମୁଁ କ'ଣ ଅଲଗା ବୋଲି ଭାବିପାରୁଚ ଏବେବି ? ଆଉ କାହା କଥା ତମ ମୁଣ୍ଡକୁ ଆଣିଲଣି ନା କ'ଣ ?"

"ଆମକୁ କିଏ ପଚାରୁଚି ମ ? ତମେ ସେତେବେଳକୁ ମୋତେ ଚିହ୍ନିଲେ ହେଲା ।"

ଚାଲୁଚାଲୁ ପାଖେଇ ଆସେ ମୁକ୍ତାର ।

ରାସ୍ତାର ଲୋକଙ୍କୁ ଖାତିର ନକରି ଫାତିମାର ହାତକୁ ମୁଠେଇଧରି ଉଚ୍ଛାଟ ଗଳାରେ, ଉଠେଇ ଆସିଥିବା ହସକୁ ଚାପି କହେ, "ତମେ ବି ତ ସେତେବେଳେ ବଦଳି ଯାଇଥିବ ମୋ' ରାଣୀ । ଏମିତି ଢିଲାଢ଼ାଲା ଲୁଗା ପିନ୍ଧି ମୁଣ୍ଡରେ ବେଣୀ ପାରୁଥିବ କି ସେତେବେଳେ ? ଏଠିକି ଯେତେବେଳେ ଆସିବା, ଲମ୍ବା ଇମ୍ପୋର୍ଟେଡ୍ ଗାଡ଼ିରେ ବସିଥିବ ତମେ । ବବ୍‌କଟା ଜୁଲ୍‌ଫେଁ ଉଡୁଥିବ ପବନରେ । ଲୋକେ କହିବେ, ଦେଖ ଦେଖ, ମୁକ୍ତାର ସାହାବଙ୍କ ବେଗମ୍ ଯାଉଚନ୍ତି ।"

# ତେଲ ଲୁଣର ରଙ୍ଗ

କଲେଜରୁ ଫେରି ଘରେ ଗୋଡ଼ ଦେଉଣୁ ମାଆର ତାଗିଦ୍, "ଶ୍ରୀବାସ୍ତବ ସାହାବଙ୍କ ଝିଅର ଘାଗରାଟା ସାରିନାଉଁ ଆଉରି ମୁନ୍ନୀ ? ତା' ବାହାଘର ପରା ଆଉ ଦଶଟା ଦିନ ରହିଲା ?"

ଚଟାଣରେ ଘାଗରାଟା ଖୋଲିପକାଇ ତିନି ଭଉଣୀ ଲାଗିଯାନ୍ତି । ଫାତିମା କପଡ଼ା ଉପରେ ପେନ୍‌ସିଲରେ ଡିଜାଇନ ଆଙ୍କିଦେଇଥାଏ । ମାଆକୁ ଦେଖାଇଲେ ସେ କହେ, ମୁଁ କ'ଣ ବୁଝିବି ଏସବୁ ଆଜିକାଲିକା ଡିଜାଇନରୁ ? ତଥାପି ଖୁସିହୁଏ, ଯେ ପିଲାଦିନୁ ସେ ଶିଖିଥିବା ଜାଣିଥିବା ସିଲେଇ କାମ ପୁଣି ଏତେ ନୂଆ ନୂଆ ପ୍ରକାରେ ହେଇପାରେ । କେଉଁ ଛୁଞ୍ଚକୁ କି ଭଳି ଧରାଯାଏ ସେ ବାଗଠୁଁ ଆରମ୍ଭ କରି ଭଳି ଭଳିକା ଷ୍ଟିଚ୍ ପକେଇବା କାମ ସବୁ ମାଆଠୁ ହିଁ ଶିଖିଛି ଫାତିମା । ଅମ୍ମି କିନ୍ତୁ କହେ ଆଉରି କେତେ ପ୍ରକାର ଛୁଞ୍ଚକାମ ସେ ଜାଣିଚି ଯାହାକୁ ଏବେ ଶିଖି କିଛି ଲାଭ ନାହିଁ । ନବାବ ସରକାରଙ୍କ ମହଲର ଖାସ୍ ଦରଜୀ ଘର ସ୍ତ୍ରୀଲୋକମାନଙ୍କଠୁ ସେମାନେ ସୁନା ଜରିର ଜରଦୌଜୀ କାମ ଶିଖିଥିଲେ । ସେକାଳର ଅସଲ ଜରି କାମ ଆଜିକାଲି କାଳେ ଆଉ ଦେଖିବାକୁ ବି ମିଳୁନି । ତଥାପି ଆଜିକାର କାମକୁ ଅମ୍ମି ନାପସନ୍ଦ କରେନି, ସେବେଠୁଁ ଇଏ ନିଆରା ବୋଲି ସେ ମାନେ ।

ଫାତିମା କପଡ଼ା ଉପରେ ପାଖାପାଖି ଯୋଖି ଧରି ସୂତାମାନଙ୍କ ରଙ୍ଗ ମେଳ ଦେଖେ, ପୁଣି ହୀନାକୁ ଧରି ରଖିବାକୁ କହି ଖଣ୍ଡେ ଦୂରରୁ ତାକୁ ଘୂରି ଘୂରି ପରଖେ । ଭଉଣୀ ଦିହେଁ ବିରକ୍ତ ହେଇଗଲା ଯାଏଁ ପଚାରୁଥାଏ, ଏଇଟା ଭଲ ଦେଖାଯାଉଚି ନା ଆଗଥର ରଙ୍ଗ ମେଳଟା ଭଲ ଥିଲା ? ତେବେ ଅମ୍ମି ନ ଦେଖିଲା ଯାଏଁ ଡିଜାଇନ କଥା ଠିକ୍ ହେଇପାରେନି । ଚୁଲି ପାଖ ପଛେ ସେ ଛାଡୁନଥାଉ, ଚିଡ଼ା ସ୍ୱରରେ କହୁଥାଉ, "ଏସବୁ କଥା ମୁଁ କି ଜାଣେ, ମୋତେ କାହିଁକି ପଚାରୁଚ ?" ଅସଲ ବେଳକୁ ଅମ୍ମି ନାକ କୁଞ୍ଚେଇଦେଇ କହିବ, "ଏ ଶୁଆପକ୍ଷୀ ସାଙ୍ଗକୁ ଏମିତି ଗୋଲାପୀ ମୋତିଟା କ'ଣ ତୋ' ଆଖିକୁ ଭଲ ଦିଶୁଚି ମୁନ୍ନୀ ?"

ଡ଼ିଜାଇନ କଥା ଠିକ୍ ହେଲାପରେ ରେହମାନ ସାଙ୍ଗରେ ଚଉକ ନହେଲେ ପରୀ ବଜାରକୁ ଯାଇ ବାଛି ବାଛି ମୂଲ କରି ସୂତା, କାଚ, ମୋତି ସବୁ କିଣେ ଫାତିମା । ଭଉଣୀ ଦିହିଙ୍କୁ କାମ ବଣ୍ଟେଇ ଦିଏ, "ଏଇ ଜାଗାଟାରେ ସାଟିନ୍ ଷ୍ଟିଚ୍ ହେବ, ଜରୀନା, ତୁ କରିବୁ ଯାକୁ । ଆଉ ହୀନା, ଏଥରକ କାଚ ଯାକ ବସେଇବୁ ତୁ । ତୋ' ହାତ ସଫା ହେଲାଣି, କେଡ଼େ ସୁନ୍ଦର ବସେଇଥିଲୁ ସେ କୁଶନ କଭରରେ ।" ସବୁଠୁ ସରୁ କୋଟୀକମ ଯାକ ଫାତିମା ନିଜ

ହାତରେ କରେ ।

ଭଉଣୀ ଦିହେଁ ଗୁଁ ପୁଁ ହୁଅନ୍ତି, ଅମ୍ମି ଆଗରେ ନାଲିସ୍ କରନ୍ତି, ସ୍କୁଲ୍‌ର ପଢ଼ାକାମ ବାକି ଅଛି, କାଲି କ୍ଲାସ୍‌ରେ ସାର୍ ରାଗିବେ । ଫାତିମା ସାଙ୍ଗେ ସାଙ୍ଗେ ଝାମ୍ପିପଡ଼େ, "ଭାରୀ ପାଠ ପଢ଼ାକୁ ମନ ନା ! ଗତମାସ ଯୋଉ ନୀଳ ଚୁମୁକୀଦିଆ ଜାମା କିଣିଥିଲୁ ଜିଦି କରି, ତା' ପଇସାଟା ଆଉରି ବାକି ଅଛି ଚୁନ୍ନିଲାଲ ଦୋକାନରେ । ଅମ୍ମିର ଗଲା ଇଦ୍‌ରେ ଲୁଗା ଖଣ୍ଡେ ସୁଦ୍ଧା ହେଇନଥିଲା ମନେ ଅଛି ?"ଅମ୍ମି କହେ, "ଯାଉ ସେ ମୁନ୍ନୀ, ପାଟି କରନା ଏମିତି । ସେ ପଢୁ । ଦେ ମୋତେ, ମୁଁ କରିଦିଏଁ ।"

ଫାତିମା ଜାଣେ, ଅମ୍ମି ଦିପହର ସାରା ସିଲେଇ ମେସିନ୍ ପାଖରୁ ଉଠି ନଥିବ । ସଞ୍ଜବେଳୁ ପୁଣି ତା'ର ରୋଷେଇରେ ଲାଗିଯିବ । ଖିଆପିଆ ସରିଲେ ପୁଣି ବସିବ ସିଲେଇ ମେସିନ ପାଖେ ରାତିଅଧ ଯାଏ । ସୂକ୍ଷ୍ମ ଛୁଞ୍ଚିକାମ କଲେ ତା' ଆଖିକୁ ବି କଷ୍ଟ ହୁଏ ଆଜିକାଲି । କହୁଥିଲା ଚାଳିଶିଆ ଚଶମାଟାଏ କିଣି ଆଣିବାକୁ, ଇତବାରା ବଜାରରୁ ସମସ୍ତେ କିଣି ଲଗାନ୍ତି । ଫାତିମା ଓଲଟି ପାଟିକରେ ଭଉଣୀଙ୍କ ଉପରେ, "ସେ ପାଠ ଫାଠ ସବୁ ବାହାନା, ମୁଁ କ'ଣ ଜାଣିନି । ଏତେ ପାଠ ଯାହାର ଥିବ ସ୍କୁଲ୍‌ରୁ ଫେରି ସାରିଦେବନି ? ସଞ୍ଜ ପହର ଯାକେ ଯାବତ୍ ଫାଜିଲ୍ ଝିଅଙ୍କ ସାଙ୍ଗେ ହେଁ ହେଁ ଫେଁ ଫେଁ ହେବ, ଷ୍ଟାପୁ ଖେଳିବ କାଇଁକି ?"ତା'ପରେ ଏକୁଟିଆ ବସିପଡ଼ି ଛାଡ଼ିଦିଏ ସେଇ ଅମୋଘ ଅସ୍ତ୍ରଟି, "ହଉ ତେବେ, ମୁଁ ଏକୁଟିଆ ସାରିବି ଏ ଲେହେଙ୍ଗାକୁ । ଆଉ ଯଦି କିଏ ନୂଆ ପୋଷ୍ଟର ଦେଖି ସିନେମା ଦେଖିବାକୁ ହାଇଁପାଇଁ ହେଇଥିବ ଦେଖିବା, କୋଉଠୁ ଆସିବ ଟିକଟ ।"

ଅମ୍ମି କହେ, "ହଉ ହେଲା ଥାଉ ଆଜିକ ସିଲେଇ, ବାପା ଆସୁଥିବେ । ପାଠ ନପଢ଼ି ସିଲେଇ ଗୁଲିଚି ଜାଣିଲେ ତାଙ୍କ ମନଖରାପ ହେବ । କାଲି ସହଳ ସଞ୍ଜ ନହେଉଣୁ ବସିଯିବ ଯେ ଶିଘ୍ର ସାରିଦେଇ ପୁଣି ପଢ଼ି ବସିବ ।"

ଫାତିମା କହେ, "ନାଇଁ ଅମ୍ମି, ଭୋରରୁ ଉଠି ପଢ଼ିଲେ ଯାଇ ପାଠ ଭଲ ହୁଏ । ସବୁ ପଢୁଆ ପିଲା ସକାଳୁ ଉଠି ପଢ଼ନ୍ତି, ଆମେ ବି ଉଠିବୁ । ଆଲାର୍ମ ଘଣ୍ଟାଟା ମରାମତି କରେଇଲେ ସିନା ?"ମା' ଠାଇକିନି ଜବାବ ଦିଏ, "ଭୋର୍ ଆଜାନ୍ ବେଳକୁ ତ ଡାକି ଡ଼ାକି ଉଠୁନା, ଆଲାର୍ମ କ'ଣ ହେବ ? ସୂର୍ଯ୍ୟୋଦୟ ଆଗରୁ ଆଜାନ୍ ଡାକ ଶୁଣି ଉଠନ୍ତ, ନମାଜ ପଢ଼ିଦେଇ କେଡ଼େ ସୁନ୍ଦର ପାଠ ପଢ଼ି ବସନ୍ତ । ମୋ' କଥା କିଏ ଶୁଣୁଚି ?"

ସକାଳୁ ଉଠିବା ହେଉ ନହେଉ ଉପରଓଳି ପାଠପଢ଼ାରୁ ଛୁଟି ମିଳିଯାଏ । ସଞ୍ଜବେଳୁ ଗିଲାସେ ଲେଖାଁ ଚହା ସାଙ୍ଗରେ କ'ଣ ଟିକିଏ ଖାଇଦେଇ ତିନିହେଁ ବସିଯାନ୍ତି ଛୁଞ୍ଚି ସୂତା ଧରି ସଫା ପୋଛା ଚଟାଣ ଉପରେ । ଅର୍ଦ୍ଧେ ସିନ୍ଦୂର ରଙ୍ଗ ସିଲ୍କ ଲେହେଙ୍ଗାଟାର ଚାରିକଡ଼ ଯାକ

ରଙ୍ଗୀନ୍ ସୂତା ଓ ଚିକ୍ ଚିକ୍ କାଚରେ ଦାଉଦାଉ ଫୁଟିଉଠେ କେତେ ଲତା ଫୁଲ ଫଳ ପକ୍ଷୀ ପ୍ରଜାପତି । କେତେବେଳକେ ହୀନା ଛୁଞ୍ଚ ଥୋଇଦେଇ ଭିଡ଼ିମୋଡ଼ି ହୁଏ, ପାଟିକରି ଡାକେ, "ଅମ୍ମି, ଖାଇବାକୁ ଆଉ କେତେ ବେଳ ? କ'ଣ ଟିକେ ଦିଅନ୍ତୁନି, ପେଟ ଭିତରେ ଚୁଟିଆ ମୂଷା ଦଉଡ଼ିଲେଣି ।" ରୋଷେଇଘରୁ ଜବାବ ମିଳେ, "ବାପା ଆସୁଥିବେ, ଆଉ ଟିକିଏ ବେଳକେ ତ ରୁଟି ଖାଇବ ।" ତଥାପି ବାପାଙ୍କ ଆସିବା ବେଳ ହେଇନଥାଏ ବୋଲି ଜଣାଥାଏ, ତିନୋଟି ଯାକ ସ୍ୱରରେ ସେକଥା କୁହାହୁଏ ବି । ଅମ୍ମି ଗିନାରେ ଚୁଡ଼ା ଭଜା ସାଙ୍ଗେ ଚିନାବାଦାମର ଗୁଡ଼ ଚିକି କେଇଖଣ୍ଡ ଆଣି ପାଖରେ ଥୋଇଦିଏ । ଭଉଣୀ ତିନିହେଁ କୁରୁଳି ଉଠନ୍ତି । ଅମ୍ମି ଫେରି ଯାଉଯାଉ କହେ, "ଆଗ କପଡ଼ାଟା ଘୁଞ୍ଚେଇ ରଖ, ତା'ପରେ ଖାଇବ । ଟିକିଏ ଟିକିରୁ ଗୁଣ୍ଡ ପଡ଼ିଯିବ ତ ଗୁଡ଼ ରଙ୍ଗ ଲାଗିଯିବ କନାରେ ।"

ପୂରା ଚିକି ଖଣ୍ଡକ ଏକାବେଳେ ପାଟିରେ ପକାଇଦେଇ ଜରୀନା କହେ ଗାଲ ଭର୍ତ୍ତି ସ୍ୱରରେ, "ବାସ୍ ଏତିକି ଟିକିଏ ଚିକି ? ତବାଏ ପୂରା ଆସିଥିଲା ହମିଦ୍ ଗଣ୍ଡଘର ପଠେଇଥିଲେ, ମୁଁ ଦେଖିଚି ।" ରୋଷଘରୁ ଶୁଭେ, "ଆଉ କାହିଁ ? ଖାଇଲ ପରା ସବୁ ସକାଳେ । ବାପାଙ୍କ ପାଇଁ ଖଣ୍ଡିଏ ବୋଲି ଅଛି, ବିଚରା ଜମାରୁ ଖାଇନାହାନ୍ତି । କାମରୁ ଥକ୍କା ହେଇ ଫେରୁଥିବେ, ତରତରରେ କ'ଣ ଟିକେ ଖାଇଦେଇ ଯାଇଥିଲେ ସେଇ ସକାଳୁ ।"

ଫାତିମା ଫୁସୁଲାଏ ଭଉଣୀ ଦିହିଙ୍କୁ, "ରହ ଆଗ, ଏଇ ଲେହେଙ୍ଗାଟା ଯୋଉଦିନ ସରିବ, କେଜିଏ ଚିକି ଆଣିବା ଛକଉପର ଲକ୍ଷ୍ମୀ ସୁଇଟ୍‌ସରୁ । ଯାହାକୁ ଯେତେ । ଏଇନା ଟିକେ ହାତ ଫୁର୍ତ୍ତି କଲ ।"

ଖାଇବାକୁ ରୋଷଗରୁ ଡାକରା ଆସିବାକୁ ହୀନା, ଜରୀନା କାନ ପାତି ବସିଥାନ୍ତି । ହେଲେ ଫାତିମା ଯେମିତି ହେଉ ଆଗ ମାଆକୁ ଡାକି, ନେହୁରା ହେଇ ଆଜିକ ତିଆରି ସିଲେଇ କାମ ଦେଖାଏ । ଅମ୍ମିଠୁ ତାରିଫ୍ ପାଇବା ସହଜ ନୁହେଁ । ତେବେ ସେ ନିକୁଞ୍ଚରେ ହେଉପଛେ ଟିକିଏ ମୁଣ୍ଡ ଟୁଙ୍ଗାରିଦେଇ ଆଜିର କାମତକ ଚଳିବ ବୋଲ କହିଲେ ଯାଇ ସିଲେଇ ସରଞ୍ଜାମ ରଖାରଖି କରେ ଫାତିମା ।

ରୋଷେଇ ଘରେ ଥାଳି ଗିନା ସଜାଡୁ ସଜାଡୁ କହେ, "ଏଥର ଅବୁଙ୍କ ଲାଗି ବଢ଼ିଆ ଗୋଟେ କୋଟ୍ କିଣିଦେବା ଅମ୍ମି, ତାଙ୍କୁ ଚମକେଇ ଦେବା । ଉର୍ସ ମେଳାରୁ କିଣା ଶେଖ୍‌ମାନଙ୍କ ପୁରୁଣା କୋଟ୍ ନୁହେଁ, ଏକେବାରେ ନୂଆ କୋଟ୍ ।"

ପ୍ରତି ବର୍ଷ ଉର୍ସ ମେଳା ବେଳେ କେତେଦିନ ଧରି କୁଢ଼ କୁଢ଼ ଲୁଗାରୁ ବାଛି ଶସ୍ତା ସୁନ୍ଦର ଜାମା, କୋଟ୍, ଓଢ଼ଣୀ ସବୁ କିଣିବାରେ ଖୁସି ମଉଜ ଯେତେ ଥାଏ, ପୁରୁଣା ଜିନିଷ ବୋଲି କେମିତି ଗୋଟେ ଗ୍ଲାନି ବି ମିଶାମିଶି ହେଇ ଥାଏ, ସେ ଯେତେ ନୂଆ ଭଳି ଦିଶୁଥାଉ ।

ବଡ଼ ମଣିଷ ଭଳି ସବୁ ବୁଝୁଥିବା ଜରୀନା, କହେ, "ହଁ, ନୂଆ କୋଟ୍ ହେଲେ ଆଉ ସିଲେଇ ଲାଗି ଅବ୍ବୁ ରାଗିବେନି, ନୁହେଁ ଅପା ?"

ସିରାଜ ଆଉ ରେହେମାନ ଗଳିମୁଣ୍ଡ ଟିଉସନ୍‌ରୁ ଫେରନ୍ତି, ତାଙ୍କ ପାଟିତୁଣ୍ଡ ଖଣ୍ଡେ ଦୂରରୁ ବାରିହେଇଯାଉଥାଏ । ଫାତିମା ପାଟିକରେ, "ଜୋତା ଖୋଲି ଗୋଡ଼ ଧୋଇ ଭିତରକୁ ପଶିବ, ଟିକିଏ ଧୂଳି ଭିତରକୁ ଆସିଚି ଯଦି ଦେଖିଥିବ ।"

ଘରକୁ ଝାଡୁ ପୋଛା କରି ରାତିର ବିଛଣା ଚଉତି ରଖି ଘରକାମ ଯେତେକ କରିସାରିଲା ପରେ ଯାଇ ତିନି ଭଉଣୀ ସକାଳ ଓଳି ପାଠ ପଢ଼ିବାକୁ ଯାଆନ୍ତି ଘରୁ । ହେତୁ ପାଇଲା ଦିନୁ ସେସବୁ ଅଭ୍ୟାସରେ ପଡ଼ିଚି, ସେଥିକି ଚିନ୍ତା ନଥାଏ କାହାରି । ହେଲେ ଭଲ ମନ୍ଦ ଖାଇବା ଜିନିଷ କଥାଟା ଭିନେ । ଜରୀନା ହସ ଚପେଇ ଅପାକୁ ପଚାରେ, "ଆମେ ଟିକି ଖାଇଚୁ ବୋଲି କହିଦେବି ? ବିଚରା ସିରାଜ ଆଉ ରେହେମାନଙ୍କ ଲାଗି ତ ଆଉ ନାହିଁ ।"

ହୀନା ମୁହଁ ମୋଡ଼ି ଉତ୍ତର ଦିଏ, "ନାହିଁ ନା ଆଉରି କିଛି । ସିରାଜ ଆଉ ରେହେମାନଙ୍କ ଲାଗି ଆଗ ନ ରଖି ଅମ୍ମି ଆମକୁ ଖାଇବାକୁ ଦେବ ଭାବିଚୁ ?"

ମନ ଭିତରେ କୋଉଠି ଜଣାଥାଏ ଏକଥା ତିନ୍ହିଙ୍କୁ ଅବଶ୍ୟ । ଭାଇ ମାନେ ହେଲେ ନିଆରା । ତାଙ୍କ ସାଙ୍ଗରେ ସମାନ ହେବାକଥା ମନକୁ ଉଙ୍କି ଆସିଲେ ବି ଚାପି ଦିଆଯାଏ । ଓଲଟି ନିଜକୁ, ପରସ୍ପରକୁ ତାଗିଦ୍ କରାଯାଏ, ଭାଇଙ୍କର ସେଇ ନିଆରାପଣ ବଜାୟ ରଖିବା ଲାଗି । ହୀନା କେବଳ ବୋକୀ ଭଳି କହିଦିଏ, "ହଉ, ଆମେ ଲକ୍ଷ୍ମୀ ଷ୍ଟୋର୍‌ରୁ ଟିକି ଆଣିଲେ ସେମାନଙ୍କୁ ଦେବାନି..."ତା' ମୁହଁର କଥା ପୂରା ନହେଉଣୁ ଦିହେଁ ଯାକ ବଡ଼ ଭଉଣୀ ତାକୁ ଆଖି ଦେଖାନ୍ତି, "ଚୋପ୍, ସେମିତି କହନ୍ତି ?"

ଏକାଥରକେ ହାତରେ କାମର ପାଉଣା ବାବଦ ଟଙ୍କା ମିଳେ ଯେବେ, ଫାତିମାର ବିଶ୍ୱାସ ହୁଏନାହିଁ । ଦିନକୁ ଦିନ ଏଣିକି ବେଶୀ ଲେଖାଁ ଟଙ୍କା ହାତକୁ ଆସୁଚି ନିଜ କାମରୁ । ବୁଦ୍ଧି କରି ଭଲ ଜାଗା ସବୁରୁ କାମ ବରାଦ ଆଣିପାରିଲେ ଆଉରି ଆସିବ । ନୂଆ ଜାମା କିଣାହୁଏ ଭଉଣୀ ଦିହିଙ୍କ ଲାଗି, ଭାଇ ଲାଗି ନୂଆ ସ୍କୁଲ ବ୍ୟାଗ୍ । ବାପାଙ୍କ ହାତରେ ଟଙ୍କା ଦେଇ କହେ ଅମ୍ମି, "ଆସିଲା ବେଳେ ଭଲ ମାଂସ ନେଇଆସିବ, ବିରିଆନୀ ଖାଇବ ବୋଲି ଜିଦ୍ ଲଗେଇଚି ରେହେମାନ ।"

ସଞ୍ଜବେଳ ଘର ଅଗଣା ଗୋଟାସୁଦ୍ଧା ମହକି ଯାଏ ବିରିଆନୀର ସୁଗନ୍ଧରେ । ଘର ଆଉରି ଉଷୁମ୍ ହେଇ କୋଳେଇ ନିଏ ସଭିଙ୍କୁ । ଇଟା ଦେଖାଇ ଫାଟି ଫାଟି ଯାଉଥିବା କାନ୍ଥ ପଛେ ଆଉରି ଆଁ କରୁ, ଦୋକାନର ସେଠ୍ ବାପାଙ୍କ ଦରମାରୁ କଟେଇ ନେଉ ପୁରୁଣା ଋଣର ସୁଧ, ଆଜି ହସ ଫୁଟୁଥାଏ ସଭିଙ୍କ ମୁହଁରେ ।

# ଶୋ' ରୁମ୍‌ର ଦର୍ପଣ

ଏସବୁ କଥା ମୁକ୍ତାର ଆଗରେ କହିହୁଏ ନାହିଁ । ତା' ପାଖରେ ଥିଲା ବେଳେ ନିଜ ଦି'ପଇସା ଅର୍ଜନ ଲାଗି ଫାତିମାକୁ ଗର୍ବ ଲାଗେନି । ବରଂ ନିଉନପଣଟିଏ ଘେରି ପକାଏ । ଘରେ ତାକୁ ଅପେକ୍ଷା କରିଥିବା କାମ କଥା ସେ ସେତେବେଳେ ମୁଣ୍ଡକୁ ଆଣେନି ।

ନର୍ଗୀସ ବେଗମ୍‌ଙ୍କ ପାଖେ ଥିବା ସମୟ ତକ କିନ୍ତୁ ତାକୁ ଅଲଗା ଲାଗେ । ତାଙ୍କ ହାତର ଟଙ୍କା କେଇଟାକୁ ଫାତିମା ଅନେଇ ବସିଥାଏ ଏକଥା ସତ । ତେବେ ସେ ତା' କଥାକୁ ମହତ୍ତ୍ୱ ଦିଅନ୍ତି । ନିଜେ ଭାବି ନୂଆ କାମଟିଏ କଥା ଯେବେ କହେ, ବୀ ତାକୁ ମନଦେଇ ଶୁଣନ୍ତି । ରଙ୍ଗ ପେନସିଲ୍, କାଗଜ ଦିଅନ୍ତି ପରିଷ୍କାର କରି ଆଙ୍କି ଡିଜାଇନ ସ୍ଥିର କରିବାକୁ । ନିଜେ ପଦେ କିଛି କହିଦେଇ ଚାହାନ୍ତି ଫାତିମାର ମୁହଁକୁ, ପରଖନ୍ତି ତା' ମନକୁ ପାଇଲା କି ନାହିଁ କଥାଟା । ତାଙ୍କ ଆଖିରେ ଫାତିମା କେବଳ ମୂଲ ଲାଗି କାମ କରୁଥିବା, ଅଳ୍ପ ସମ୍ବଳ ଥିବା ଘରର ସାଧାରଣ ଝିଅଟିଏ ନୁହେଁ । ଫାତିମା ନିଜକୁ ଭିନ୍ନ ଆଖିରେ ଦେଖେ, ଲାଗେ ସତେକି ସେ କେତେ କାମ କରିପାରୁଥିବା, କେତେ ଗୁଣ ନିଜଠି ଭରିରଖିଥିବା କାରିଗରଟିଏ । ନର୍ଗୀସ୍ ବଖାଣନ୍ତି ତା'ର ଗତଥର ଦେଇଥିବା ଡିଜାଇନକୁ ବିଦେଶୀ ଟୁରିଷ୍ଟ କେଣଜଣ କେମିତି ତାରିଫ୍ କଲେ, କେତେଟା କିଣି ଆଉ କେତେଟାର ଫଟୋ ଉଠେଇଲେ । ସତେକି ଫାତିମା ଆସିବାକୁ ସେ ଅପେକ୍ଷା କରିଥିଲେ, ତାକୁ ଏକଥା କହିବାଲାଗି । ଏସବୁ କଥା କେମିତି ତା'ର ଛାତିକୁ କୁଣ୍ଢେମୋଟ କରିଦିଏ, ସେକଥା ବି ମୁକ୍ତାର ଆଗରେ କହେନାଇଁ ଫାତିମା । ତାକୁ କହିବାକୁ ଗଲାକ୍ଷଣି ଘଟିଥିବା କଥା ବଦଳିଯାଏ ସତେବା, ଛାତି ଭିତରକୁ ଭରିଦେଉଥିବା ସେ ଭାବ ଯାକ ପାଣିଫାଟିଯାଏ ।

ବୁଝାଇପାରେ କେବଳ ଅମ୍ମିକୁ । କହିଲାବେଳେ ଭଉଣୀ ଦିହେଁ ବି ଅବଶ୍ୟ ପ୍ରାୟ ସେଇ ପାଖରେ ଥାଆନ୍ତି । ଶାହନାଶାହ ହୋଟେଲ କଥା ଯେତେଥର ଶୁଣିଲେ ବି ସେ ଦିହେଁ କାବା ହୁଅନ୍ତି, ଜିଦି ଲଗାନ୍ତି ଆମକୁ ବି ନେଇଯିବୁ ସାଙ୍ଗରେ ଅପା । ଭାଇ ଦିହିଙ୍କର କାନରେ ତା' କଥା ପଡ଼ିଲା କି ନ ପଡ଼ିଲା ଫାତିମାର ମନକୁ ଆସେନି । ତେବେ ବାପାଙ୍କ କାନରେ ଆଦୌ ନ ପଡ଼ିଲେ ଭଲ । ନର୍ଗୀସ୍ ବୀ ଯେବେ ନୂଆ କାମର ବରାଦ ଦିଅନ୍ତି ବା ତା' କାମକୁ

ତାରିଫ୍ କରିଥାନ୍ତି, ଘରକୁ ଫେରିବା ବାଟଯାକ ଫାତିମାର ତର ସହୁନଥାଏ, କେମିତି ଅମ୍ମିକୁ କଥାଟା କହିବ । ତା'ଠୁ ସବୁକଥା ଶୁଣିଲା ବେଳକୁ ତା' ଅମ୍ମି କିଛି ନ କହି ରୁଟି ବେଲୁଥିବ, ମୁହଁ ସୁଦ୍ଧା ଉଠେଇ ଚାହୁଁନଥିବ । ହେଲେ ତା' ମୁହଁ ଗର୍ବ, ସନ୍ତୋଷରେ ପୂରିଯାଉଥିବା ଜଳଜଳ ଦିଶୁଥାଏ ଫାତିମାକୁ । ହାତରେ ମିଳୁଥିବା ଟଙ୍କାଠୁ ସେକଥାର ମୂଲ୍ୟ ତାକୁ କିଛି କମ୍ ଲାଗେନି ।

ଏଣିକି କଲେଜ ଖାତାରେ ଗାରେଇ ଗାରେଇ ସେ ଡିଜାଇନ ତିଆରି କରେ, ଶୋ ରୁମ୍‌କୁ ନୂଆ ବାଗରେ ସଜେଇବା କଥା ଭାବେ । କ୍ଲାସରେ ଥିଲାବେଳେ ଯେଉଁ ପାଠ ଭିତରେ ସେ ବୁଡ଼ି ରହିଥାଏ, ସେଠୁ ବାହାରିଲା କ୍ଷଣି ପୁଣି ସେସବୁ ମୁଣ୍ଡ ଭିତରୁ ଧୂଆଁ ଭଳି କୁଆଡ଼େ ଚାଲିଯାଏ । ଅପେକ୍ଷା କରିଥାଏ ଆରେକ ଉଚ୍ଚାଟ, ନାହିଁନଥିବା ଜଗତଟିଏ । ହେଲେ ବି ଘରେ ଛୁଞ୍ଚ ସୂତା ଧରିଥିଲା ବେଳେ, ବାରଣ୍ଡାକଡ଼ ସେ ଖୋଲା ବଲ୍‌ବ ଆଲୁଅ ତଳେ ଭଉଣୀଙ୍କ ସାଙ୍ଗେ ମୁଣ୍ଡ ଯୋଡ଼ିଦେଇ କାମ କଲାବେଳେ କାହିଁ କେତେକଥା ଆସି ଭରିଯାଏ ମୁଣ୍ଡ ଭିତର ଜାଗା ସବୁ, ଯାହା ଉଛୁଳି ଯାଉଥିଲା ଭିନ୍ନ ଛବି ସବୁରେ ଆଜି ଦିପହର ବେଳା ।

ମା' ହାତକୁ ଟଙ୍କା ସାଙ୍ଗରେ ଚୁଡ଼ି ଗୋଛାଏ କି ପଣ୍ଡସ୍ ପାଉଡ଼ର ଡବାଟିଏ ଧରେଇ ଦେଲାବେଳର ଆନନ୍ଦ ନିଆରା । ତା' ମୁଣ୍ଡ ପିଠି ଆଉଁସି ଦେଉଦେଉ ଲୁଚେଇ ଓଢ଼ଣୀ କାନିରେ ନିଜ ଆଖି ପୋଛିପକାଏ ଅମ୍ମି । ଜେଜେମା ଲାଗି ନୂଆ ଜାଫରାନି ପତ୍ତିର ଜର୍ଦା ଆଣିଦିଏ ଫାତିମା, ବଙ୍ଗଳା ପାନପତ୍ର ଜାଗାରେ ବନାରସୀ ପାନ ଆଣିଦିଏ । ମହକି ଯାଉଥିବା ପାକୁଆ ପାଟିରେ ଏଡ଼େ ଓସାର ହସଟିଏ ହସି ବୁଢ଼ୀ କହନ୍ତି, "ଭଲ ବରଟିଏ ଆଲ୍ଲା ତୋତେ ଦିଅନ୍ତୁ ମୋ' ମୁନ୍ନୀ ବିଟିୟା ! ଶାଶୁଘରେ ବି ଏମିତି କାମ କରି ଟଙ୍କା ଅର୍ଜି ଆଣୁଥିବୁ, ମୁଣ୍ଡ ଟେକି ରହିଥିବୁ ।"

ମା' କେବେ କେବେ କହେ ତାକୁ, "ହାତରେ କିଛି ଟଙ୍କା ରଖିବା ଏଣିକି । ତୁ ନିଜେ ଗଣି ଆଲମାରୀରେ ରଖ । ମୋଠୁ ନେଇ ଚାବି ପକେଇ ରଖିଦେଉଥିବୁ, କାହାକୁ କହିବା ଦରକାର ନାହିଁ । ଘର ଖର୍ଚ୍ଚ କରିବସିଲେ ତ ତା'ର ସୀମା ନାହିଁ । ଯେତେ ପଇସା ଏଠି ପକାଅ, ଓଟ ମୁହଁରେ ଜୀରା । ତୋ' ବାହାଘର ଲାଗି ତ ପୁଣି ଗହଣା କିଛି ତିଆରି କରିବାକୁ ପଡ଼ିବ ।"

ମା' ଝିଅ ମିଶି ଅଲଗା କରି ପଇସା ଗଣି ରଖନ୍ତି । ଅମ୍ମି ନିଜ ବାହାଘର ବେଳର ଜରିକାମର ଗରାରା ଆଉ ଓଢ଼ଣୀ କାଢ଼ି ଦେଖାଏ, କହେ "ଏ ଓଢ଼ଣୀଟା ତତେ ଦେବି, ତୁ ସାଇତି ରଖିବୁ, ଯେବେ ତୋ' ହାତକୁ ପଇସା ଆସିବ, ଅସଲ ଜରି କିଣି ଆଉରି ଏମିତି ତିଆରି କରିବୁ ।" ଫାତିମା ଓଢ଼ଣୀକୁ ନିଜ ମୁଣ୍ଡ ଉପରେ ପକେଇ ଦର୍ପଣରେ ନିଜକୁ ଚାହେଁ ଏପାଖୁ ସେପାଖୁ । ପୁଣି ଗେଲେଇ ହେଇ ମାଆ ଦେହକୁ ଲାଗିଆସି କହେ, "ମୋ କଥା

ପରେ ହେବ ଅମ୍ମି, ସେଥିଲାଗି ତୁ ଚିନ୍ତା କରନା । ହୀନା ଲାଗି ଆଗ ସବୁ ତିଆରି କରିବାକୁ ହେବ । ମୁଁ ଘରୁ ଗଲେ ସିଲେଇ କାମ କେମିତି ଚାଲିବ ? ହୀନା ତ କିଛି ପାରିବନି, ସୁଦ୍ଧୁ ହୁଣ୍ଡିଟାଏ । ତାକୁ ଆଗ ବାହା କରିଦେବା ।"

ଅମ୍ମି ନିଶ୍ୱାସଟାଏ ଛାଡ଼ି କହେ, "ତୁ ଭଲା ମୋର ପୁଅ ହେଇଥାଆନ୍ତୁ । ପୁଅ ଦିଇଟା ମୋ' କୋଳକୁ ଏତେ ଡେରିରେ ଆସିବାର ଥିଲା ।"

ଫାତିମା ଆଲମାରୀ ଥାକ ସଜାଡ଼ି ଦେଉଦେଉ କହେ, "ରେହମାନ, ସାଜିଦ୍ ଆଗ ଜନ୍ମ ହେଇଥିଲେ ମୋ' ଭଳି ସିଲେଇ କାମ କରିପକେଇଥାନ୍ତେ ନା କ'ଣ ? ଆଉରି ତାଙ୍କୁ ମଣିଷ ହେବାଲାଗି କେତେ ବେଶୀ ଦିନ ଲାଗନ୍ତା । ଭଲ ହେଲା ନା, ଆଗ ଆମେ ଝିଅମାନେ ଜନ୍ମ ହେଲୁ ।"

ଫାତିମା ମୁଣ୍ଡରେ ଏଇ କଥା ଖେଳୁଥାଏ ଯେ ଅମ୍ମିକୁ ରାଜି କରେଇଦେଇ ହୀନାକୁ ଆଗ ବାହା କରେଇଦେଲେ ତା' ନିଜ ବାହାଘରଟା ଟଳିଯାଆନ୍ତା କିଛିଦିନ ଲାଗି ଅନ୍ତତଃ । ତା' କଲେଜ ପାଠଟା ହେଇଯାଆନ୍ତା । ମୁକ୍ତାରକୁ ସମୟ ମିଳିଯାଆନ୍ତା ଘରସଂସାର ପାତିବାର ପ୍ରସ୍ତୁତି ଲାଗି, ସାଧାରଣ ସଂସାରୀଙ୍କ ଦୃଷ୍ଟିରେ ଯୋଗ୍ୟ ହେବାଲାଗି । ପାଖରେ କେହି ନଥିବା ବେଳେ ଫାତିମା ମାଆକୁ ଚୁପ୍‌ଚୁପ୍ କହେ, "ହୀନା କଥା ମୁଁ ଯାହା କହୁଚି ସତରେ ଶୁଣ୍ ଅମ୍ମି । ସେଇଟା ବୋକୀଟେ କିନା । ତା' ହାତରେ ନା ପାଠ ହେଉଚି ନା ସିଲେଇ କାମ । ଅବ୍ବୁଙ୍କୁ କହ ତାକୁ ବାହା କରିଦେବା ଏଇ ପାଖରେ କୋଉଠି, ଭଲ ଘର ବର ଦେଖି । ବେଶପଟା ହେଉଥିବ, ଫୁଲେଇ ହେଉଥିବ ।"

ଅମ୍ମି କହେ, "ବାପାଙ୍କୁ ତ ତୋ' ଚିନ୍ତା ଲାଗିଚି । ହୀନାର ସ୍କୁଲ୍ ପାଠଟା ସରିଯାଉ ଏ ବର୍ଷ । ମୁଁ କଣ ଭାବୁଚି କହିଲୁ, ହୀନାର ତୋ'ର ଏକାଠି ବାହାଘର କରିଦେବା । ଫୁପୀ ତ ତୋ' ଲାଗି ପିଲାଟି ଦେଖି ରଖିଚନ୍ତି, ଆଉ କୋଉଠି ଦେଖିବା କାଇଁକି ଯେ । ହୀନା ଲାଗି ବି ଅବିଦା ଚାଚୀ କହୁଥିଲେ ତାଙ୍କ ନଜରରେ ଭଲ ପିଲାଟିଏ ଅଛି ବୋଲି ।"

ଅମ୍ମି ସିଲେଇ ମେସିନ ଚଲେଇଲାବେଳେ, କୂଅରୁ ପାଣି ଟାଣିଲା ବେଳେ, କଡ଼େଇରେ ଚଟୁ ଖଡ଼ର ଖଡ଼ର କରୁକରୁ ବି କଳ୍ପନାଜଳ୍ପନା ଜାରୀ ରଖିଥାଏ ଆଜିକାଲି । ଫାତିମା, ହୀନା, ଜରୀନା ଯାହାକୁ ପାଖରେ ପାଇଲା ଗପିଲାଗିଥାଏ, "ହାତ ଟିକିଏ ଫୁର୍ତ୍ତି କର ଏଣିକି, ଖଣ୍ଡିଏ ଲେଖାଁ ଫୁଲକଢ଼ା ଦୁପଟ୍ଟା କି ଚାଦର ଅଲଗା କରି ରଖିଦେଉଥିବା । ନହେଲେ ଏକାବେଳକେ ବାହାଘର ବେଳକୁ ଖର୍ଚ୍ଚ ବଳେଇପଡ଼ିବ ।"

ମା' ଝିଅ ଏକାଠି ଗୋପନ କଥାଟି ବିଷୟରେ କଥା ହୁଅନ୍ତି ସୁଯୋଗ ପାଇଲାକ୍ଷଣି, "ଟଙ୍କା କେତେ ହେଲାଣି, ଗଣି ରଖୁଚୁ ତ ? ହାତ ମାରିବୁନି ସେଥିରେ, ତୋତେ ମୋ' ରାଣ

କହିରଖୁଚି ।"

ସେଦିନ ବାହାରୁ ଫେରି ଫାତିମାକୁ ଏକୁଟିଆ ତାକି ଉଚ୍ଛାଟରେ ତା' ଅମ୍ମି କହେ, "ହାର ଆଉ କାନଫୁଲ ମୁଁ ବୁଧବାରା ବଜାରର ବଣିଆ ପାଖରେ ବରାଦ ଦେଇ ଆସିଚି । ହଜାରେ ଟଙ୍କା ହେଲେ ସବୁ ହେଇଯିବ । ଆଉ ତିନିଶହ ବାକି ଅଛି । ଏଥର ନର୍ଗୀସ୍ ବୀଙ୍କଠୁ କେତେ ମିଳିବ ବୋଲି କହୁଥିଲୁ ?"

ଆଉରି ହିସାବ କିତାବ ହୁଏ ଆଉଜା କବାଟ ପଛପାଖେ । ଫାତିମା କହେ, "ଗହଣା ଆସିଲେ ଏକାଥରେ ବାପାଙ୍କୁ ଦେଖାଇ ଚମକାଇ ଦେବା, ନୁହଁ ଅମ୍ମି ? ତାକୁ ଦେଖିଲାକ୍ଷଣି କେମିତି ଦେଖାଯିବ ତାଙ୍କ ମୁହଁ ? ନିଷ୍ଟେ ଭାବିବେ ଆମେ କାହାଠୁ ମାଗିକି ଆଣିଚୁ । ନହେଲେ ନକଲି ଦି'ପଇସିକିଆ ମାଲ ବୋଲି କହିବେ ।"

ଫାତିମାର ହସ ସାଙ୍ଗେ ତା' ମାଆର ହସ ବି ମିଶିଯାଏ । ତେଣୁ ଜେଜେମା ତା'ର ପାନ କୁଟା ଠୁକୁ ଠୁକୁ ଭିତରୁ ପାଟିକରେ, "ସେଠି ମା' ଝିଅ କ'ଣ ଫୁସୁରୁ ଫାସୁରୁ ହେଉଚ ? ମୋତେ ଟିକେ କହ ମୁଁ ଶୁଣେ ?"

ଫାତିମା ବୁଢ଼ୀ ପାଖକୁ ଯାଇ କାନ ପାଖେ ଫୁସୁଫୁସୁ କରି ଚିଡ଼ାଏ, "ଜାଣିନା କି ? ତମରି ହାତ ମାଗିବାକୁ ଆସିଚି ଜଣେ, ଝରକା ପାଖେ ତମ ମୁହଁ ଦେଖି ଦିୱାନା ହେଇଯାଇଚି ପରା ?"

ଧାଇଁ ପଳାଉଥିବା ଫାତିମାର ହାତକୁ ଧରିପକାଏ ଜେଜେମା, ତା'ର ଆଖିରେ, ହାତରେ ଏବେବି ଜୋର୍ ଅଛି । କହେ, "ବୁଝିଲି ବୁଝିଲି । ତା'ହେଲେ ତୋ' ବାହାଘର କଥା ପଡ଼ିଚି ନାଇଁ ? ସେଇଥିଲାଗି ଏତେ ଚଙ୍ଗ ଚଙ୍ଗ ହଉଚୁ ତୁ ଆଜିକାଲି । ତୋ' ମୁହଁଟା ସୁଦ୍ଧା ଭିନ୍ନ ଦିଶୁଚି ପରା ମୁଁ ଦେଖୁଚି ।"

ଫାତିମା ଜାଣେ, ଜେଜେମା ତା' ମୁହଁକୁ ଦେଖି ବୁଝିସାରିବଣି ଆଗଠୁଁ ଟିକିଏ ଅଲଗା ଦିଶୁଚି ବୋଲି । ନର୍ଗୀସ୍ ବୀଙ୍କ ସାଙ୍ଗରେ ଥାଇ ସେ ଜାଣିଯାଇଥିଲା, ବିଉଟି ପାର୍ଲର କାହାକୁ କହନ୍ତି । ତାଙ୍କ ତାଲିମ ପାଇଥିବା ପରିଚାରିକା ହାତରେ ସେ ଫାତିମାର ହାତ ମୁହଁ କ୍ରୀମ୍‌ରେ ପୋଛାପୋଛି କରି ସଫା ସୁନ୍ଦର କରେଇଦେଇଥିଲେ । ଦର୍ପଣ ଆଗରେ ନିଜ ଆବୁରୁ ଜାବୁରୁ ଭ୍ରୁକୁ ଧନୁପରି ସୁନ୍ଦର ହେଇଯିବାର, ଓଠ ଉପର ଚମ ପରିଷ୍କାର ଚିକ୍କଣ ହେଇଯାଇ ପୁରୁଣା ଚେହେରାଟା କେଇ ମିନିଟ୍‌କେ ବଦଳିଯିବାର ଖୁସି ବି କିଛି କମ୍ ନଥିଲା । ବାଳରେ ଶାମ୍ପୁ ଦେଇ ସୁନ୍ଦର କରି କୁଣ୍ଡେଇବା, ଏମିତି କି ଚାଲିବାର, ବସିବାର ଢଙ୍ଗରେ ବି ଅନୁକରଣ କରୁଥିଲା ସେ ତା'ର ସେ ନୂତନ ଆଦର୍ଶ ମୂର୍ତ୍ତି ନର୍ଗୀସ୍ ବେଗମ୍‌ଙ୍କୁ ।

# ଘେରା ଗସ୍ତର ଅପରାହ୍ନ

ସେଦିନ କଲେଜରୁ ଘେରା ଗସ୍ତ ଥିଲା ଚାରିଜଣ ବାନ୍ଧବୀଙ୍କର । କଲେଜରେ ପୁରୁଣା ହେଇଗଲା ପରେ ଆଉ ଖୁବ୍ ଅସୁବିଧା ହୁଏନାହିଁ ଫାଟକ ପାରିହେଇଯିବାକୁ । ଥିଲା ଘରର ଝିଅମାନେ ସାବୀନା ବୀ ଲାଗି ଛୋଟକାଟିଆ ଉପହାର ନେଇଆସନ୍ତି, ତା' ପିଲାଙ୍କ ଲାଗି ଘରୁ ମିଠେଇ ନେଇଆସନ୍ତି । ସାବୀନା ବି ବୁଝେ ସବୁ ପ୍ରକାର ଭାଷା । ସାଲିସ୍ କଲାବେଳେ ବି ନିଜ କାମଟି ସେ କରେ, ମନେ ପକେଇଦିଏ, "ପରୀକ୍ଷା ଆଉ ବେଶୀ ନାହିଁ ବେଟୀ । ପାଠରେ ଲାଗିଯାଅ କିଛିଦିନ, ପରୀକ୍ଷା ସରିଯାଉ ତେଣିକି ଯେତେ ମନ ବୁଲାବୁଲି, ଫୁର୍ତ୍ତି, ନା କ'ଣ ?"

"ବୁଲାବୁଲି କେମିତି କରିବୁ ସାବୀନା ବୀ ? ଘରେ ଛାଡ଼ିଲେ ତ ? କଲେଜ ତ ବନ୍ଦ ଥିବ ।"

"ଲାଇବ୍ରେରୀ ଖୋଲା ନଥିବ କି ? କୋଚିଂ କ୍ଲାସ୍ ବି ଚାଲିଥିବ । କିଛି ଚିନ୍ତା ନାହିଁ, ବାହାରିଆସିବ ଘରୁ । ମୋ' ଡିଉଟି ତ ଏଇଠି ଥିବ ।"

ପୁଅ ଦଳଙ୍କ ସାଙ୍ଗେ ଭେଟ ହେଉ ହେଉ ଆସନ୍ତା ଚମକପ୍ରଦ ପ୍ଲାନ୍‌ଟି କଥା ଘୋଷଣା କରାଗଲା, "କାଲି ଏତେବେଳକୁ ତିଆର ଥିବ ସମସ୍ତେ ପ୍ରୋଗ୍ରାମ ଲାଗି । କାର୍ଡ଼ ଆଣିବା ଜିମା ମୋର । ଗାଡ଼ି ଗୋଟାଏ ଲାଗିବ କିନ୍ତୁ, ଜିମା କିଏ ନେବ ?"

ଶୋଭନା ବୁର୍ଖାଟା କାଢ଼ିପକାଇ ମୁଣ୍ଡ ବାଳକୁ ଠିକ୍ କରୁକରୁ କହିଲା, "ଉଃ, ଏ ଆଲଖାଲା ଆଉ ପୋଷାଉନି । ଖରାଦିନେ ଯ୍ୟାକୁ କେମିତି ପିନ୍ଧନ୍ତି କେଜାଣି ? ହଉ କହ, କି ପ୍ରୋଗ୍ରାମ, ଯିବା କି ନ ଯିବା ଚିନ୍ତା କରିବା ।"

"ମେରୀ ଜାନ୍ । ବେଗମ୍ ସାହିବା ଆସୁଚନ୍ତି, ଜୁମେରାତି କ୍ରିକେଟ୍ କ୍ଲବ୍ ଫଙ୍କସନ୍‌କୁ । ଘରେ ଖୁସିରେ କହିକି ଆସିବ, କେହି ମନା କରିବେନି । ନିଜ ନିଜର ବେଷ୍ଟ ଡ୍ରେସ୍ ସଜିଲ କରି ରଖିଥାଅ ।"

"କିଏ ମ ତମର ସେ ବେଗମ୍ ସାହିବା ? ତାଙ୍କୁ ଦେଖିବାକୁ ଆମେ ଯିବୁ କାହିଁକି ?"

ରାଜେଶ୍ ବଡ଼ ପାଟିରେ ଗାଇଲା, "ମେରୀ ସପନୋ କୀ ରାନୀ କବ ଆଏଗୀ ତୁ..."

ଅନ୍ୟ କେହି ଗୋଲକଧନ୍ଦା ନ ଫିଟାଉଣୁ ମୁନ୍ନାର ହସିଦେଇ କହିଲା, "ଓ, ଶର୍ମିଲା ଆସୁଚନ୍ତି ?"

"ବିଲ୍‌କୁଲ୍ ଠିକ୍ ଜନାବ । ଭୋପାଲ ନଗରୀର ସାମ୍ରାଜ୍ଞୀ, ଖୋଦ୍ ନବାବଙ୍କ ବେଗମ୍, ଶର୍ମିଲା, ଆଉ କିଏ ? ଜୁମେରାତି କ୍ରିକେଟ୍ କ୍ଲବ୍ କରୁଚି ବିରାଟ ଆୟୋଜନ ।"

"ପଟୌଦୀ ଖେଳିବେ ଏଠି ?"

ଫାତିମାର ବୋକାମୀରେ ଅସରାଏ ହସ ହେଲା । "ଆରେ ତାଙ୍କ ଭଳିଆ ଲୋକ କ୍ରିକେଟ୍ ଖେଳିବେ ଆମ ଏଠିକା ଫଟିଚର କ୍ଲବ୍ ଲାଗି ?"

"ହଁ ହଁ, ସମ୍ବର୍ଦ୍ଧନା ପାଇବେ, ପ୍ରାଇଜ୍ ଦେବେ । କେତେଦିନୁ ଏମାନେ ସବୁ ତାଙ୍କୁ ନେହୁରା ହେଉଥିଲେ, ଗଲାଥର ଆସିଥିଲା ବେଳେ ତାଙ୍କଠୁ କଥା ନେଇଥିଲେ । ତାଙ୍କ ଫ୍ୟାନ୍‌ମାନଙ୍କ ଅନୁରୋଧ ଟାଳି ନ ପାରି ଆସୁଚନ୍ତି ।"

"ନାଇଁ ମ । ଅସଲରେ ନବାବ ପଟୌଦୀ ଆସୁଚନ୍ତି ତାଙ୍କ ମାମୁଁଘର ଧନଦୌଲତ କଥା ବୁଝିବାକୁ, ତାଙ୍କରି ଭାଗରେ ତ ପଡ଼ିବ ତ ସବୁ । କିନ୍ତୁ ବେଗମ୍ ସାହିବା ଆସୁଚନ୍ତି ତାଙ୍କ ଫ୍ୟାନ୍ ମାନଙ୍କ ଲାଗି । ଆମରି ଲାଗି ।"

କଥା ବଢ଼ିଲା, ସତେକି କେତେକାଳର ପୁରୁଣା ବନ୍ଧୁଙ୍କ ସାଙ୍ଗେ ଭେଟ ହେବ । ଉଭୟ ନବାବ ଓ ବେଗମ୍‌ଙ୍କର ନିଜ ନିଜ କ୍ଷେତ୍ରରେ କୀର୍ତ୍ତିର ବିଷୟମାନ ବି ଚର୍ଚ୍ଚା ହେଲା । ନିକଟରେ ସେଞ୍ଚୁରୀ କରିଥିବା କ୍ରିକେଟ୍ ମ୍ୟାଚ୍ ମାନଙ୍କ ବିଷୟ । ହିଟ୍ ହେଇଥିବା ସିନେମା ସବୁର ଗୀତ, କାହାଣୀ ଓ ଆନୁସଙ୍ଗିକ ଘଟଣାବଳୀ । ସତେକି ବାଜି ମରାମରି ହେଇଚନ୍ତି, କିଏ କେତେ ବେଶୀ କଥା ଜାଣିଚି, କେତେ ଟିକିନିଖି କରି ବର୍ଣ୍ଣନା କରିପାରୁଚି ।

ସେଇଠୁ କଥା ପଡ଼ିଲା ନୂଆ ଲୋକମାନେ କିଏ ସବୁ ଆଜିକାଲି ବମ୍ବେର ରୁପେଲୀ ପରଦାରେ ଓହ୍ଲେଇବାଲାଗି ଚାନ୍‌ସ ପାଇଚନ୍ତି ।

"ଆମ ନରେନ୍ଦ୍ର ସିଂକୁ ରୋଲ୍‌ଟାଏ ମିଳିଚି ଶର୍ମିଲାଙ୍କ ନୂଆ ଫିଲିମ୍‌ରେ । ଭାଗ୍ୟ ୟାକୁଇ କହନ୍ତି ଜାଣ ।"

"ଛେଃ, କି ଭାଗ୍ୟ ମ । କଳାମଣ୍ଡଳ ଥିଏଟରରେ ନରେନ୍ଦ୍ର ଖାଲି ଜୋକର ପାର୍ଟ କରେ । ଫିଲିମ୍‌ରେ ବି ସେମିତି ଦି'ମିନିଟିଆ ଜୋକର ରୋଲ୍ ମିଳିଥିବ ।"

"ହଉ ଜୋକର ରୋଲ୍ । ସେମିତି ହେଉ ହେଉ ଜନସଂପର୍କ ବଢ଼ିପାରେ, ଆଗକୁ ଭଲ ରୋଲ୍ ବି ମିଳିପାରେ । କିସମତ୍‌ର କଥା ସବୁ ।"

"ମୁକ୍ତାର ଭାଇଙ୍କୁ କିନ୍ତୁ ତାଙ୍କ ଟାଲେଣ୍ଟ୍ ଲାଏକ କିଛି ନ ମିଳିଲେ ସେ କେବେ ନେବେନି, ନା କ'ଣ ମିଆଁ ମୁକ୍ତାର ?"

ଅନ୍ୟମାନେ ଏଭଳି ପରିସ୍ଥିତିର ସପକ୍ଷ ବିପକ୍ଷରେ କହିଲା ବେଳେ ମୁକ୍ତାର କେବଳ ଓଜନଦାର ମୁରୁକି ହସ ହସେ । ଫାତିମା ଆଡ଼େ ଅଳ୍ପ ଚାହିଁ ବଢେଇଦିଏ ତା'ର ସତନ୍ତ୍ର ପରିଚୟ

କଥା । ଫେରିବା ଆଗରୁ ଫାତିମା କହେ ରାଜେଶଙ୍କୁ, "ମୁଁ ଏକୁଟିଆ କେମିତି ଯିବି ରାଜେଶ୍ ଭାଇ ? ତିନି ଗରିଜଣଙ୍କ ଲାଗି କାର୍ଡ଼ ଆଣିବାକୁ ପଡ଼ିବ ତମକୁ । ମୋ' ଭାଇ ଦିହେଁ ତ ଯିବେ ନିଶ୍ଚୟ, ଜରୀନା ବି ଜିଦି କରିପାରେ ।"

ଶୋଭନା ନିଜେ ଦାୟିତ୍ୱ ନେଇ କହେ, "ଆସିବ ଆସିବ ସମସ୍ତଙ୍କ ଲାଗି କାର୍ଡ଼ । ଚିନ୍ତା କରନା । ମୁଁ କିନ୍ତୁ ଅଟୋଗ୍ରାଫ୍ ବି ନେବି ।"

"ଆରେ ଆମେ ବି ନେବା ଦିହିଁଙ୍କର ହସ୍ତାକ୍ଷର, ସାଇତି ରଖିବା ସାରାଜୀବନ ।"

"ଅଟୋଗ୍ରାଫ ବୁକ୍ ସବୁ ରଖିଚ ନା ଏକ୍ସରସାଇଜ୍ ଖାତା ଦେଖେଇବ ବେଗମ୍ ସାହିବାଙ୍କୁ ?"

"ରାଜେଶ୍‌ର କାଗଜ ଲୋଡ଼ାନାଇଁ, ସେ ତା' ଛାତି ଦେଖେଇଦେବ ସପନୌଁ କୀ ରାନୀଙ୍କୁ ।"

ଶୋଭନା କହୁଚି, "ହଉ ଦେଖାଉ ଭଲକଥା । ମୁଁ ବି ମୋ' ଗାଲ ଦେଖାଇଦେବି ପଟୌଦୀଙ୍କୁ ।"

ଥଟ୍ଟା ତାମସା, ଆଉରି କମେଣ୍ଟ୍ ଦିଆନିଆ । ହଲ୍ ଅନ୍ଧାର ହେଲାଣି, ସିନେମା ଆରମ୍ଭ ହେଉଚି, ଆଗରୁ ପଛରୁ ଲୋକେ ବିରକ୍ତିରେ ଅନାଉଚନ୍ତି ଏ ହଇଚଇକୁ । ତଥାପି ସପ୍ନା ପଚାରୁଚି, "ଖାଲି ଅଟୋଗ୍ରାଫ୍ ? ଫଟୋ ଉଠେଇବା ପ୍ଲିଜ୍, ଦିହିଙ୍କ ସାଥିରେ ।"

ପାଖାପାଖି ସିଟ୍‌ରେ ବସି ମୁକ୍ତାରକୁ ଫାତିମା ପଚାରେ, "ମୋର କିନ୍ତୁ ଅଟୋଗ୍ରାଫ୍ ବୁକ୍ ନାହିଁ । ତମର ଅଛି ?"

ମୁକ୍ତାର ଅନ୍ୟମାନଙ୍କୁ ନ ଶୁଭିଲା ଭଳି ଧୀରେକରି କହୁଚି, "ମୋର ଅଟୋଗ୍ରାଫ୍ ଦରକାର ବି ନାହିଁ ।"

ଫାତିମା ଭାବୁଚି, ସତକଥା ତ । ଅଟୋଗ୍ରାଫ୍ ନେଇ ସେ ନିଜେ ବି କ'ଣ କରିବ ? ଅଟୋଗ୍ରାଫ୍ ନେଇ ପ୍ରକୃତରେ କ'ଣ କରନ୍ତି ଲୋକେ ? ତା'ପରେ ଫୁସ୍‌ଫୁସ୍ କରି ମୁକ୍ତାରର କାନରେ କହୁଚି, "ତମର ବି ଏମିତି ଅଟୋଗ୍ରାଫ୍ ନେବେ ଲୋକେ, ନାଇଁ ? ମୁଁ କ'ଣ କରିବି ସେତେବେଳେ ?"

ମୁକ୍ତାର ତା' ହାତ ପାପୁଲିକୁ ନିଜ କୋଳକୁ ନେଇଆସେ । "ଆମେ ଦିହେଁ ସେତେବେଳେ ଏକାଠି ଦସ୍ତଖତ କରିବା, ପ୍ରତି ଅଟୋଗ୍ରାଫ ଖାତାରେ, ହେଲା ?"

ବୋକୀ ଭଳି ପଚାରେ ଫାତିମା, "କୋଉଠି ? ଭୋପାଲରେ ନା ବମ୍ବେରେ ବି ?"

ମୁକ୍ତାର ଏଥର ହସ ରୋକି ପାରେନି । ସାମ୍ନା ସିଟ୍‌ର ଲୋକଟା ବିରକ୍ତ ମୁହଁରେ ବୁଲିପଡ଼ି ଅନାଏ ଦିହିଁଙ୍କୁ ।

# ବେଗମ୍ ସାହିବାଙ୍କ ଘୋଡ଼ା

ନର୍ଗୀସ୍ ବେଗମ୍ ଚାହୁଁଥିଲେ ଫାତିମା ଏଣିକି ଆସି ତାଙ୍କ ଶୋ ରୁମ୍‌ରେ ବସୁ । ହେଲେ ପାଠ ଆଳ କରି ସେ କଥାଟା ଟାଳିଦେଲା । ସେ ଅବଶ୍ୟ ଅନ୍ଦାଜ କରିନେଲେ କାରଣଟା, କହିଲେ, "ଯେତିକି କାମ ଘରେ କରୁଚ, ତା'ଠୁ ବରଂ କମ୍ ପରିଶ୍ରମ କରିବାକୁ ହେବ । କିଛି କିଛି ସମୟ ପ୍ରତିଦିନ ବସିବ ଯଦି, ନୂଆ ପ୍ରକାର କାମ ଶିଖିପାରିବ ।"

ଫାତିମା ଭାବିଲା, କଲେଜରେ କ୍ଲାସ୍ ତ ଗୋଟାଏ ଦିଇଟା ସୁଦ୍ଧା ସରିଯାଏ, ଏଠିକି ସିଧା ଆସି କେଇଘଣ୍ଟା ବସିଯିବ । ନର୍ଗୀସ୍ ବୀ ଯେ ତା' ଘରର ଅଭାବ କଥା ଜାଣନ୍ତି, କାମ ନେବା ସହିତ ତାକୁ ଭଲ ଦରମା ଦେବାକୁ ଚାହାନ୍ତି, ସେକଥା ଫାତିମା ଜାଣେ । ଇଂରାଜୀରେ କଥା କହିବାକୁ ସେ ଫାତିମାକୁ ଶିଖାନ୍ତି, ବସିବା ଖାଇବା ଆଦିର ଆଦବ କାଇଦା ବି । ତେବେ ଆଜି ତା' ମୁହଁକୁ ଦେଖି ସେ ଅନୁମାନ କରିନେଲେ ନିଶ୍ଚୟ, ପଚାରିଲେ, "କ'ଣ, ବାପା ଅନୁମତି ଦେବେନି ତ ? ମୁଁ କଥାବାର୍ତ୍ତା କରିବି ?"

ଫାତିମା ତାଙ୍କୁ କହିପାରିଲା ନାହିଁ ଯେ ଦୋକାନରେ ବସିବା ଲାଗି ତା' ବାପାଙ୍କୁ ସେ ପଚାରି ସୁଦ୍ଧା ପାରିବନି । ଖାଲି ବାପା ନୁହନ୍ତି, ମା'ର ଉତ୍ତର ବି ସେ ଅନ୍ଦାଜ କରିପାରୁଚି, "ଆମକୁ କ'ଣ ରୁଟି ଦି'ପଟ ଆଲ୍ଲା ଜୁଟେଇଦେଉନାହାନ୍ତି ଯେ ତୁ ଯାଇ ଦାଣ୍ଡରେ ଦୋକାନରେ ବସି ଅର୍ଜି ଆଣିଲେ ଯାଇ ଖାଇବୁ ଆମେ ?"

ଫାତିମା ହସି କହିଲା, "ମୋର ବିଏ ପାଠଟା ସରିଯାଉ ବୀ, ତା'ପରେ ଆପଣଙ୍କ ସାଙ୍ଗରେ ହିଁ କାମ କରିବି, ଯୋଉ କାମ ଶିଖେଇବେ ।"

ସେଦିନ ଘରକୁ ଫେରିଲା ବେଳେ ମନକୁ ଆସିଥିଲା ମୁବାରକୁ ପଚାରି ଦେଖିବ କି । ସେ ତ ଫିଲିମ୍ ଦୁନିଆଁକୁ ଭଲପାଏ । ଫାତିମା ଜାଣେ, ଫିଲିମ୍‌ର ଦୁନିଆଁ କହିଲେ କେବଳ କଳା, ସଙ୍ଗୀତ ତ ନୁହେଁ, ମୁବାରକର ଆଖି ଦେଇ ସିଏ ବି ଦେଖିପାରେ ସେଠାକାର ମୁହଁ ସବୁ କେଡ଼େ ଚିକଣଚାକଣ, ନିତିଦିନର କଥାମାନ କେଡ଼େ ନିଖୁଣ । ଏ ଦାମୀକା ହୋଟେଲ୍‌ରେ ବି ବାହାର ବଡ଼ ସହରରୁ ଆସୁଥିବା ଲୋକଙ୍କୁ ଦେଖେ ଫାତିମା । କେତେ ବଡ଼ବଡ଼ିଆ ଘର ସ୍ତ୍ରୀ ଲୋକେ ସବୁ ଆସନ୍ତି ଏଠା ଶୋ ରୁମ୍‌କୁ, ଫାତିମା କେବେକେବେ ଥାଏ ସେଠି । ଗହଣାରେ ଫେଶନ୍‌ରେ ଆଖି ଝଲସାଉଥିବା ମହିଳା ଜଣେ କିଏ ବା ଦର୍ପଣ ଆଗରେ

ଫାତିମାର ହାତ ତିଆରି କୁର୍ତ୍ତାଟିଏ ନେଇ ଆପଣା ଦେହରେ ଲଗାଇ ପଚାରନ୍ତି, "ଏଇଟା ମୋତେ ମାନୁଚି ନା ?" ତରତ୍ତର ହାତରେ ଫାତିମା ଆଉ ଗୋଟିଏ ରଙ୍ଗର ଜାମା ନେଇ ବଢ଼େଇଦିଏ, "ଏଇ ରଙ୍ଗଟା ବି ଟ୍ରାଏ କରନ୍ତୁ ମାଡ଼ାମ୍, ଆପଣଙ୍କୁ ଭଲ ମାନିବ ।" ରଙ୍ଗ ଅପେକ୍ଷା ଜାମାର କାରିଗରୀ ଦେଖି ସିଏ ଗଦ୍‌ଗଦ ହୋଇଯାନ୍ତି । ଦୁଇଟାଯାକ କିଣିପକାନ୍ତି ହୁଏତ ।

ସେ ତ ଭଲକରି ଜାଣେ ଯେ ମୁକ୍ତାର ସପ୍ନ ଦେଖୁଥାଏ ସିଏ ଫିଲିମ୍ ଦୁନିଆଁର ମଝାମଝି ଘର କରିବ ଦିନେ । ପରୀରାଇଜ ଭଳି ସେ ରୂପ ରଙ୍ଗରେ ଝଲସୁଥିବା ଲୋକଙ୍କ ଗହଣରେ ଉଠାବସା ହେବ । ପୁଣି କଥା ଦିଏ, ତା' ସାଙ୍ଗେ ସାଙ୍ଗେ ରହିଥିବ ଫାତିମା ବି, ସବୁଦିନେ । ଫାତିମା ଯଦି ସେଇ ଦିନ ଲାଗି ଏବେଠୁ ତିଆରି ହୁଏ କ୍ଷତି କ'ଣ ତେବେ ? ହେଲେ ଏଇ କଥା ତ ତାକୁ କହିହେବ ନାହିଁ । ମୁହଁରେ ପରିଷ୍କାର କହିଲା କ୍ଷଣି ମୁକ୍ତାରକୁ ବାଜେ କଥା ଭଳି ମନେହେବ, ଅପମାନ ଲାଗିବ ବି ହୁଏତ । ଭେଟ ହେଲାବେଳେ ମୁକ୍ତାରର ଉଚ୍ଛାଟରୁ ଜାଣିପାରେ ହେଲେ ମିଛ ଦେଖିପାରେ ନାଇଁ ଫାତିମା । ତେଣୁ ଆଗରୁ ଭାବି ରଖିଥିଲେ ବି ତା'ର ଇଚ୍ଛା ହୁଏନି ଶୋ ରୁମ୍‌ରେ ବସି ଗରାଖଙ୍କୁ ଜିନିଷ ବିକ୍ରି କରିବା କଥାଟା ପକେଇ ମୁକ୍ତାର ବିଚରାର ସୁଖଟିକ ମାଟିରେ ମିଶେଇଦେବାକୁ । ବରଂ ଯେତେଦିନ ଏମିତି ଚାଲିଚି ଚାଲୁଥାଉ ।

ଥରେ ନିଜେ ନର୍ଗୀସ୍ ବେଗମ୍ ଲଗେଇଲେ, "ଫାତିମା, ଭାବୁଚି ତମଲାଗି ସ୍କୁଟରଟାଏ କିଣିପକେଇଲେ କେତେ ଭଲ ହୁଅନ୍ତା । ତମର ସମୟ ବଞ୍ଚନ୍ତା, ଖର୍ଚ୍ଚ ବି ।"

ଫାତିମାର ସାହିରେ ଝିଅମାନେ ସାଇକଲ ଚଲାନ୍ତି, ଅବଶ୍ୟ ଟିକିଏ ବଡ଼ ହେଲାଯାକେ । ତେବେ ଭଲଘରର ବଢ଼ିଲାଝିଅ କେହି ସାଇକଲ୍‌ରେ ଯିବା ସେ ଦେଖିନି । ତା' ନିଜର ସାଇକଲଟା ଏବେ ସାନ ଭାଇ ଭଉଣୀ ଚଲାନ୍ତି । ପଚାରିଲା, "ସ୍କୁଟର ତ ବହୁତ ଦାମ ହେଇଥିବ ବୀ । ସାଇକଲ ଚଳିବନି ?"

ହେଲେ ବେଗମ୍ ସାହିବା ଜିଦି ଧରିଲେ, "ଯାଃ, ସାଇକଲରେ କ'ଣ ହେବ ? ସ୍କୁଟରରେ ଯିବା ଆସିବା ସୁବିଧା ହେବ, ସାଙ୍ଗରେ ବ୍ୟାଗ୍ ଖଣ୍ଡେ ଧରିବ, ଜିନିଷମାନ ବି ଆସିଯିବ । ସ୍କୁଟୀ ଚଢ଼, ତମ ଦେଖାଦେଖି ଆହୁରି ଝିଅ କିଣିବେ ତମ ଆଖପାଖ ବସ୍ତିରୁ, ତମେ ଦେଖିବ ।"

ସେଇ ନିଜେ ବୁଝି ତା' ଲାଗି ସ୍କୁଟର କିଣାଇ ଦେଇଥିଲେ । ପାଉଣା ଟଙ୍କାରୁ କାଟି ଦାମ୍ ଦିଆଯିବାର ବନ୍ଦୋବସ୍ତ କରି, ତାଙ୍କ ଚିହ୍ନା କେଉଁ ଲୋକର ସେକେଣ୍ଡହାଣ୍ଡ ସ୍କୁଟୀଟିଏ ଅଣେଇ ଦେଇଥିଲେ ସେ ଫାତିମା ଲାଗି । ଘରେ ବାପା ମା'ଙ୍କୁ ବୁଝାଇ ସୁଝାଇ ଦେବାପରେ

ସେଦିନ ରେହମାନକୁ ସାଙ୍ଗରେ ନେଇ ସ୍କୁଟରରେ ଘରେ ପହଞ୍ଚିଥିଲା ଫାତିମା ।

ତା' ସ୍କୁଟର ଆସିବା ଦିନ ଅମ୍ମି ହାଁ କରି ଅନେଇଥିଲା, ହେଲେ ଅବ୍ବୁ ହସିପକେଇଥିଲେ ଗର୍ବରେ । କହିଲେ, "ତମେ ଜାଣିନା ବୋଲି କହୁଚ । ଦେଖିବ ଯାଅ ନୂଆ ସହରରେ, ଅରେରା କଲୋନୀରେ କେତେଝିଅ ସ୍କୁଟର ଚଢୁଚନ୍ତି । ସରକାରୀ ଅଫିସର ଘରର ଝିଅପିଲାଙ୍କୁ, ପଞ୍ଜାବୀ ଠିକାଦାର ଆଉ ବଡ଼ ଶୋ ରୁମ୍ ଦୋକାନୀ ଘର ଝିଅମାନଙ୍କୁ ଦେଖିବ ଯାଅ, କେମିତି ଦୁପଟ୍ଟା ଉଡ଼ାଇ ସ୍କୁଟର ଚଲେଇ ଯାଉଚନ୍ତି ସ୍କୁଲ କଲେଜ । ମୁନ୍ନୀ ଆମର ଭଲ ଲୁଗାପଟା ପିନ୍ଧି ତା' ଗାଡ଼ିରେ କଲେଜ ଯିବ, କ୍ଷତି କ'ଣ ?"

ଜେଜେମା କିନ୍ତୁ ସ୍କୁଟର ଦେଖି ନାହିଁନଥିବା ଖୁସି ହେଇଥିଲା, ପାକୁଆ ପାନଖିଆ ହସ ହସି କହିଥିଲା, "ଆମ ମୁନ୍ନୀ କାହିଁକି ଗାଡ଼ି ନ ଚଢ଼ିବ ? ବେଗମ ସରକାରଙ୍କ ଯୁଗ ହେଇଥିଲେ ଘୋଡ଼ା ଚଢ଼ିଥାନ୍ତା ।"

ଜେଜେମାର ବୟସ ବୋଧେ ପଚସ୍ତରୀ ପାଖାପାଖି ହେବ ସେତେବେଳକୁ । ତା' ପିଲାଦିନେ ଦେଖିଥିବା ଭୋପାଲ ରାଜ୍ୟର ସାମ୍ରାଜ୍ଞୀଙ୍କ କଥା ସିଏ ପଦପଦକେ କହେ । ବେଗମ୍ ସରକାର ଏମିତି ଘୋଡ଼ା ଚଢୁଥିଲେ, ସେମିତି ଶିକାରକୁ ଯାଉଥିଲେ । ସରକାର ଅମ୍ମାଙ୍କ ଦିନ ପରି ଦିନ ଆଉ କାହିଁ ?

ନାତୁଣୀମାନଙ୍କ ପାଠପଢ଼ା ଦେଖି କହେ, "ଆରେ ତମେ କ'ଣ ଏମିତି ନୂଆ କଥା କରିପକଉଚ, ଦେଖିଥାଆନ୍ତ ସେବେ ବେଗମ୍ ସରକାରଙ୍କ ରୁତୁବା । ସିଏ କ'ଣ କେବେ ଜନାନାଙ୍କ ଭଳି ପର୍ଦ୍ଦା କରୁଥିଲେ ? ଆଖିଟେକି ଅନେଇଦେଲେ ପୁରୁଷ ଲୋକ ତାଙ୍କ ପାଖ ପଶି ପାରୁଥିଲେ କେବେ ? ମୁଣ୍ଡରେ ପଗଡ଼ି ଭିଡ଼ା ସେ ଚେହେରା ଆହା ! ଫଟୋ ଦେଖିନା ?"

ଭୋପାଳ ରାଜ୍ୟର ଇତିହାସ କୋଉ ପାଠ ବହିରେ ହେଲେ ନଥାଏ । ହେଲେ ଜେଜମାଠୁ ପିଲାଦିନୁଁ ଅଜସ୍ର କାହାଣୀ ଶୁଣୁଥାନ୍ତି ସେମାନେ, ଶହେବର୍ଷ କାଳ ବେଗମ୍ ମାନଙ୍କ ରାଜୁତିରେ ଭୋପାଳର ସୁବର୍ଣ୍ଣ ଯୁଗ କଥା । ଫାତିମା ପଚାରେ, "ଆଉ ଆମେ ପର୍ଦ୍ଦା ନକଲେ କାଇଁକି ତେବେ ଦୋଷ ହେଇଯାଉଚି ଏବେ ?"

ଜେଜେମା ଏଥର ଓଲଟା ତର୍କ ବାଢ଼େ, "ଆରେ, ତାଙ୍କ କଥା ଅଲଗା । ରାଜୁତି ତ ତାଙ୍କରି ଥିଲା, ସିଏ କାହାକୁ ପର୍ଦ୍ଦା କରନ୍ତେ ? ସେବେ ଆମ ଉପରେ ବି ଏତେ କଟକଣା ଥିଲା କି ଝିଅ ? କ'ଣ କରିବ, ଏବେ ଜମାନା ବଦଳିଗଲାଣି । ପର୍ଦ୍ଦା ଦରକାର ।"

କଥା ସେଇଠୁ ଠିକ୍ ହେଲା, ଫାତିମା ବୁର୍ଖା ପିନ୍ଧି ସ୍କୁଟର ଚଢ଼ିବ । ସେଦିନ କିନ୍ତୁ ଜେଜେମାଠୁ କଥା ବି ନେଇନେଲା ସେ, ଦିନେ ଜେଜେମାକୁ ବି ସ୍କୁଟର ପଛରେ ବସାଇ ବୁଲେଇ ଆଣିବ, ହେଲେ ଜେଜେମା ବୁର୍ଖା ପିନ୍ଧିନଥିବ । ଚକମକିଆ ନୂଆ ସାଲୁଆର କୁର୍ତ୍ତା

ପିନ୍ଧି ଦୁପଟ୍ଟା ଉଡ଼େଇ ସହର ବୁଲିବ ଜେଜମା, ମୁହଁ ଖୋଲା ଥିବ ଆଉ ମୁଣ୍ଡବାଳ ରଙ୍ଗେଇ ଥିବ ନାଲି ରଙ୍ଗ ମେହେନ୍ଦୀରେ । ସେଇକଥାକୁ ନେଇ ଥଟ୍ଟା ନକଲ ହସ ଖୁସି ଚାଲିଲା କିଛି ବେଳ ।

ଘରେ ବଡ଼ମାନଙ୍କ ଭିତରେ ଜେଜେମା ଜଣେ ମଣିଷ ଯିଏ ଖୋଲାଖୋଲି ଖୁସିହୁଏ ବୋହୂ କି ନାତୁଣୀ ମାନେ କାମ କରି ଗ୍ରାହକଙ୍କ ପ୍ରଶଂସା ପାଇଲେ କି ହାତରେ କିଛି ପଇସା ପାଇଲେ । ଶାହନଶାରୁ ଟିକେ ଭଲରକମ ଟଙ୍କା ପାଇଲା ପରେ ଦିନେ ଫାତିମା ଜେଜେମା ଲାଗି ରୂପା ବରକଦିଆ ବନାରସୀ କିମାମ୍ ଜର୍ଦା ଆଣିଦେଇଥିଲା । ତା' ସାଙ୍ଗକୁ ଧରେଇଦେଲା ପାଇଥିବା ଟଙ୍କାରୁ ଶହେ ଟଙ୍କିଆ ନୋଟ୍ ଖଣ୍ଡେ । ନୋଟ୍‌କୁ ହାତରେ ଓଲଟାଇ ପାଇଟାଇ ପରଖି ଦେଖିଲା ଜେଜେମା, କେତେବେଳ ଯାଏ ତା' ମୁହଁରୁ କିଛି କଥା ବାହାରିଲା ନାହିଁ । ପାନ ବଟୁଆରେ ନୋଟ୍ ଖଣ୍ଡକୁ ଚଉତି ରଖିଦେଇ ପାନ ପତରରେ କିମାମ୍ ଟିକିଏ ଲଗେଇ ପାଟିରେ ନେଇ ଜାକିଲା ଚୁପ୍‌ଚାପ୍ । ଅନେଇରହିଥିବା ଫାତିମା ଦେଇ ଆଉ ଚୁପ୍ ରହିବା ହେଲାନାହିଁ, କହିଲା, "ଦାଦୀମା, ଭୁଲିଗଲ ନା କ'ଣ କିଛି ଦେଲି ବୋଲି ?" ମୁହଁ ଟେକି ପରଳିଆ ଆଖିରେ ଟିକିଏ ବେଳ ନାତୁଣୀକୁ ଅନେଇଲା ଜେଜମା । କହିଲା, "କ'ଣ କହିବି ତତେ । କିଏ ମତେ ଏତିକି ଆଣି ହାତରେ ଧରେଇଥିଲା କେବେ ଯେ ଆଜି କିଛି କହିବି ?"

ଫାତିମା ତା'ର ବାମ୍ଫରେ ଗୁନ୍ଧିଯାଉଥିବା ମୁହଁକୁ ଦି ପାପୁଲିରେ ଧରି କହିଲା, "ଆଉ କହନା ମ । ତୋତେ ତ ରାଣୀ କରି ମୁଣ୍ଡରେ ବସେଇ ରଖିଚନ୍ତି ସମସ୍ତେ, କହିଲା କ'ଣ ନା କେହି ମୋତେ କିଛି ଦେଇନାହାନ୍ତି ?"

ତୁନି ହେଇ ପାନ ଚୋବେଇଲା ଜେଜେମା । କହିଲା କେତେବେଳକେ, "ରାଣୀ ହେବାଲାଗି ହାତରେ ସମ୍ବଳ ଦରକାର, ବୁଝିଲୁ ଝିଅ । ହାତ ଟେକି ଅନ୍ୟକୁ କିଛି ଦେବାଲାଗି ତାକତ୍ ଦରକାର । ମୁଁ ଦେଖିଚି କିନା ସରକାର ବେଗମ୍‌ଙ୍କର ରାଣୀପଣିଆକୁ, ସେଇଥିରୁ କହୁଚି । ତୁ ନିଜେ ଏମିତି ଯେବେ ତାକତ୍ ରଖିଥିବୁ ଅନ୍ୟକୁ ଦେବାଲାଗି, ରାଣୀ ବୋଲାଇବୁ । ଅନ୍ୟ କିଏ ଟେକିଦେଲା ଧନରେ କିଏ କ'ଣ ରାଣୀପଣିଆ କରିପାରେ ?"

ଫାତିମା ବୁଢ଼ୀ ପାଖରେ ଖଟରେ ବସି ଗୁଆକାତିରେ ଗୁଆ କାଟିବସେ । କହେ, "ଛାଡ଼ ସେକଥା । ରାଣୀ କିଏ ନା ଆମେ କିଏ । ତୁ ଖାଲି ମୋ' ଲାଗି ଦୁଆ କର ଯେ ମୋ' ହାତରେ କାରିଗରୀ ଆଉରି ବଢୁ, ଆଉରି ପଇସା ଆସୁ ମୋ' ହାତକୁ ।" ବୁଢ଼ୀ ଖୁସି ଥିଲେ ନାତୁଣୀ ମାନଙ୍କୁ ସାଧା ପାନଖଣ୍ଡେ ଲେଖାଁ ଦିଏ । ଆଜି ଫାତିମା ପାଟିରେ ପାନ ଖଣ୍ଡେ ପୂରେଇ ଦେଇ କହିଲା, "ମୋ ଫାତିମା ବେଟୀ ରଜାପୁଅଟିଏ ବାହା ହେବ, ରାଣୀ ହେଇ ରାଜୁତି କରିବ ।

ଆଉରି ବଡ଼ ବଡ଼ ଗାଡ଼ି ଚଢ଼ିବ, ଆଲ୍ଲା ପାଖରେ ମୁଁ ଦୁଆ କରୁଚି ।"

ଫାତିମା ପାନ ଘେବାଉ ଘେବାଉ ଅଘେନକ ପଘରି ବସେ, "ମୋତେ ବୁଝେଇଲୁ ଦେଖି ଦାଦୀମା, ଏମିତି ଆମଭଳି ଘରେ ଜନ୍ମ ହେଲା ଝିଅଙ୍କୁ ତୋ' ଭଳି ଲୋକେ ରାଣୀ ହୁଅ, ରାଜ୍ କର ବୋଲି ଦୁଆ ଦିଅନ୍ତି କାହିଁକି ? ରାଜୁତି କରିବ କୋଉଠି ସେ ଝିଅ ? ତା'ର ରାଣୀ ହେବା ଅର୍ଥ ହେଉଚି ସ୍ୱାମୀର ଗୋଡ଼ର ଜୋତା ହେଇ ରହିବା, ନା କ'ଣ ?"

ଜେଜେମା ସାଙ୍ଗରେ ଏମିତି ସାଙ୍ଗ ସୁଖ ହେଲେ ବୁଢ଼ୀ ଲମେଇ ଲମେଇ କଥା ବାଢ଼େ, "କିଏ ସେ ତୋତେ ଗୋଡ଼ର ଜୋତା କରି ରଖିବ ରଖୁ ଦେଖି । ଆମର ଏଡ଼େ ଗୁଣର ମୁନ୍ନୀ ରାଜ୍ କରିବନି ତ କରିବ କିଏ ? ଗୋଟାଏ କଥା ବୁଝିରଖିଥିବୁ ଝିଅ । ଦି'ଖଣ୍ଡ ରୁଟି ନିଜ ପେଟ ପାଇଁ ଯିଏ ଯୋଗାଡ଼ କରିଦେଇ ପାରିବ, କେହି ତାକୁ ଆଉ ଗୋଡ଼ ତଳ ଜୋତା ପରି ରଖିବେନି । ଆଉ ଆରେକ ପାଇଁ ଯଦି ଦି'ଖଣ୍ଡ ରୁଟି ଯୋଗେଇ ଦେଇ ପାରିବୁ, ସେଇ ତ ହେଲା ରାଜୁତି କରିବା । ସେତିକି ହେଲେ କିଏ ସେ ଛି ଛାକର କରିବ ତୋତେ କରିକି ଦେଖୁ ।"

କ'ଣ କେତେବେଳେ ଜେଜେମା କହେ, ଜ୍ଞାନର କଥା ପରି ଶୁଭେ ସିନା, ବୁଝିବାକୁ ଗଲେ ଲାଗେ ବାଗ ବାଇସ ନଥିଲା ଭଳି । ତଥାପି ନିଜ ଅଜଣାରେ ଫାତିମାର ମନ ଭିତରେ କୋଉଠି ଗଣ୍ଠି ପଡ଼ି ରହିଯାଏ ସେ କଥା ।

ଫାତିମା କେବେ ଭାବେ, କେବେ ବା ମନରୁ କାଢ଼ିଦିଏ, ଯେ ଏମିତି ଭାଗ ଭାଗ ହେଲାଭଳି ଜୀବନ କେମିତି ଘଲିଚି ତା'ର । ମୁକ୍ତାର ପାଖରେ ଥିଲେ ଲାଗେ ସତେକି ସେତିକି ଛଡ଼ା ଆଉ ଜୀବନ ନାହିଁ, ତା' ବାହାରେ ପୃଥିବୀ ବୋଲି କିଛି ନାହିଁ । ଏଣେ ଯେବେ ନିଜ ଗଳିର ଘରଟି ଭିତରେ ପାଦଦିଏ ସେ, ଆଉ ଗୋଟିଏ ଜୀବନ ସେଠି ଅପେକ୍ଷା କରିଥାଏ । ତା' ଆରଦିନ ନର୍ଗିସ୍ ବେଗମ୍‌ଙ୍କ ଶୋ ରୁମ୍‌ରେ ଫାତିମାର ଖୋଳପା ଭିତରୁ ବାହାରି ଆସେ ଆଉ ଜଣେ କିଏ । କଲେଜର କ୍ଲାସ୍ ରୁମ୍‌ରେ, ଗହଳ ଗଛତଳ ଆସରରେ ଉଭାହୁଏ ଆରେକ ସଂସାର । ଅନାୟାସ ସେ ଖାପିଯାଉଥାଏ ଏକୁ ଆରେକରେ, ପ୍ରତିଟି ମାଟି ସତେବା ଏକାବେଳେ ଭିନ୍ନ, ଗୋଟିକରୁ ଡେଇଁ ଆର ସଂସାରଟି ଭିତରେ ପାଣି ଗଳିବାର ଜୁ ନଥାଏ । ଏଠୁ କଥାଟିଏ ଫିଟି ଆରପାଖ ଅର୍ଗଳି ଡେଇଁ ଯିବାଲାଗି ଦେଇହୁଏ ନାହିଁ । ଗୋଟିକରେ ଘଟୁଥିବା କଥା କି ଅନୁଭବ ସେ ବାଣ୍ଟି ପାରେନାହିଁ ଆରେକ ପାଚେରୀ ଭିତରେ । ବେଳେବେଳେ ଘରିପାଖକୁ ଅନେଇଦେଲେ କେମିତି ଗୋଟାଏ ଏକୁଟିଆ ଲାଗେ, ନିଜକୁ ଘହିଁଦେଖିଲେ ଊର୍ଦ୍ଧ୍ୱଶ୍ୱାସ ଆକ୍ତାମାକ୍ତା ହେଲା ଭଳି ଲାଗେ ଫାତିମାକୁ ।

# ଅଭିଆଡ଼ୀ ଝିଅର ଝରକା

ମା' ଆଉ ଅନେକ ଥର ଭଳି ସେଦିନ ରାତିରେ ବାପାଙ୍କ ସାଙ୍ଗେ ଯୁକ୍ତି କରୁଥିଲା, "ତମେ ନିଜେ ତ ତାକୁ ବଡ଼ ବଡ଼ କଥା କହିଲ ସବୁଦିନେ, ପାଠ ପଢ଼ିବୁ, ସାହିର ଅନ୍ୟ ଝିଅଙ୍କ ଭଳି ଘର କଣରେ ପଶିବୁନି । ଏଇନା କହୁଚ ସବୁ ଛାଡ଼ିଦେବାକୁ । କହୁଥିଲ କ'ଣ ନା ଆମ ଝିଅକୁ ଡାକ୍ତରାଣୀ କରିବା ।"

ଏଇ ପ୍ରଥମ ନୁହେଁ, ମ୍ୟାଟ୍ରିକ୍ ପରୀକ୍ଷା ରେଜଲ୍ଟ ବାହାରିଲା ଦିନୁଁ ଏମିତି ଦୃଶ୍ୟ କେଇଥର ଦେଖିସାରିଲାଣି ଫାତିମା । ଅବଶୋଷ ମାଡ଼ିପଡ଼େ । ବାପାଙ୍କ ଆଶାନୁରୂପ ରେଜଲ୍ଟ କରିପାରିଲାନାଇଁ ବୋଲି ସିନା ଆଜି ଏକଥା । ମନଟା ଭାରୀ ହେଇଯାଏ । ପରୀକ୍ଷା ଲାଗି ପ୍ରସ୍ତୁତି ଭଲକରି କରିପାରିଥାଆନ୍ତା ସେ । ତା' ଭବିଷ୍ୟତ ଲାଗି ଏବେକାର ପାଠ, ପରୀକ୍ଷା ଫଳ କେତେ କାମ ଦେବ ସେକଥା ଟିକିଏ ମଗଜରେ ପୂରେଇ ପାରିଥାନ୍ତା । ଆଜି ପଛକୁ ଚାହିଁଲେ ଲାଗେ, କେଜାଣି ହୁଏତ ଆଉ ପ୍ରକାରେ ବାଟ ମୋଡ଼ିଥାନ୍ତା ଜୀବନ । ଖାଲି ଯଦି ସ୍କୁଲ୍ ଶେଷ ବର୍ଷଟାରେ ଏଭଳି ଘଟଣା କେତେଟା ଘଟିନଥାନ୍ତା, ଯାହା ସେତେବେଳେ ଘଟିଯିବାକୁ ଦେଇଦେଲା ସେ । ରୋକିପାରିଲା ନାଇଁ । ପରେପରେ ଯେତେଥର ମନକୁ ଆସିଲା, ଦୋଷୀଭାବକୁ ଭୁଲିବା ଲାଗି, କଥାଟାର ଗୁରୁତ୍ୱକୁ ଏଡ଼ାଇବାଲାଗି ଜାଣିଶୁଣି ନିଜକୁ ଭୁଲାଇଲା ସେ କୌଣସିପ୍ରକାରେ । ଆଉରି ଏଣୁତେଣୁ କଥାରେ ମାତିବାକୁ ଦେଲା ନିଜକୁ ।

ମନେପଡୁଚି, ବାପା କହୁଥିଲେ, "ଆରେ ମୋର କହିବାରେ କ'ଣ ହେବ । ଫାତିମା ଭଲ ପାଠ ପଢୁଥିଲା ବୋଲି ମୁଁ ଭାବୁଥିଲି, କହୁଥିଲି ଡାକ୍ତରୀ ପାଠ ପଢ଼େଇବି ବୋଲି । ପିଲାଦିନୁ ତା' ସ୍କୁଲର ମାଷ୍ଟରାଣୀ ମାନେ କହୁନଥିଲେ ସେକଥା ? ପାଠ ଲାଗି ପ୍ରାଇଜ୍ ପାଉନଥିଲା ସେ ? ଶେଷକୁ ଯାହା ରେଜଲ୍ଟ ହେଲା, ମେଡ଼ିକାଲ୍‌ରେ ସିଟ୍ କୋଉଠୁ ପାଇଥାନ୍ତା ଯେ ?"

ସେଇଠୁ ପରସ୍ପର ଦୋଷ ଦିଆଦେଇ ଚାଲେ, କାହିଁକି ଆଗଭଳି ଭଲ ପଢ଼ିଲା ନାଇଁ ଫାତିମା ।

"ସିଲେଇ କରି ପଇସା ଅର୍ଜନ କରୁ ବୋଲି ପାଠ ବଡେଇଲା ତାକୁ କିଏ ?"

ଜବାବ୍ ମିଳେ, "ମ୍ୟାଟ୍ରିକ୍ ପଢୁଆ ପିଲା ବିନା ଟିଉସନରେ କୋଉଠି ଭଲ ରେଜଲ୍ଟ କରିପାରିଲାଣି ? ତମେ ତ ବାପ ହେଇ ସଞ୍ଜବେଳଟା ଯାକ ସଦର ମଞ୍ଜିଲ ପାଖରେ କଟେଇଦେବ । ଶତରଞ୍ଜ ଖେଳ ଆଡ଼୍‌ଡ଼ା ଛାଡ଼ି ଘରକୁ ଯଦି ଆସିଯାନ୍ତ ଶିଘ୍ର, ପିଲାଏ ପାଠ

ପଢ଼ି ବସନ୍ତେନି ଠିକ୍ ସମୟରେ ?"

"ଘରେ ଆସି ମୁହଁ ଗୁଞ୍ଜି ବସିଗଲେ ପିଲାଏ ପଢ଼ିପକେଇବେ ? ମୁଁ କୋଉ ବିଦ୍ୱାନ ଲୋକଟା ହେଇଚି ଯେ ମାଟ୍ରିକ୍ ପାଠ ବତେଇଦେବି ପିଲାଙ୍କୁ ? ଆଉ ଶତରଞ୍ଜ ଖେଳକୁ ଆଡ୍‌ଡ୍ଡା କହିବନାଇଁ କେବେ ବୁଝିଲ । ରଜା ବାଦ୍‌ଶାହଙ୍କ ବୁନିଆଦି ଖେଳ ଇଏ,କୋଉ ଜୁଆ କି ଗଞ୍ଜେଇ ନୁହଁ । ସାରା ଦୁନିଆଁରେ ଇଜ୍ଜତ ଅଛି ୟା'ର ।"

ଖାଲି ଆକ୍ଷେପ ନୁହେଁ, ଅସହାୟତାରୁ ବର୍ତ୍ତିବା ଲାଗି ପରସ୍ପରକୁ ଆଶ୍ୱାସ ବି ଦିଅନ୍ତି ଦିହେଁ । ଛାଡ଼ ଯାହା ହେଲା ହେଲା । କେତେଟା ଝିଅ ବା ଏ ସାହିରୁ ପାଠ ପଢ଼ି ବାହାରିଚନ୍ତି ଯେ ଫାତିମା ନ ପଢ଼ିବାରୁ ଦୋଷ ହେଇଗଲା । ଫାତିମାର ଦୋଷ ନୁହେଁ, ତା' ବାପ ମା'ଙ୍କର ବି ନୁହେଁ । ଆଜିକାଲି ଦୁନିଆଁ ସେଇଆ । ସମୟ, ପରିସ୍ଥିତି ସେଇଆ । ବାପା ବୁଝାନ୍ତି ମାଆକୁ, "ମେଡ଼ିକାଲ୍‌ରେ ସିଟ୍ କ'ଣ ଖାଲି ବୁଦ୍ଧିଆ ପିଲାଙ୍କୁ ମିଳିଯାଏ ? ଟିଆରି ଲାଗି ଟିଉସନ ଦରକାର, କୋଚିଂ ଦରକାର । ପୁଣି ତହିଁରେ କେତେ ଖର୍ଚ୍ଚ ହୁଏ ତମର ଧାରଣା ଅଛି ?"

ମା' କହନ୍ତି, "ନହେଲା ନାଇଁ, ଆମ ଝିଅର ଏତେ ଗୁଣ ଅଛି, ଆଉ କିଛି ଦରକାର ନାଇଁ ଆମର ।"

"ହଉ । ପାଠ ପଢ଼ୁ କିଛି କଥା ନାହିଁ । ତା' ବୋଲି ବାହା କଥାଟା ତ ଏଥର ଭାବିବାକୁ ହେବ ।"

ତା' ତଳକୁ ପୁଣି ଦିଇ ଦିଇଟା ଝିଅ ଅଛନ୍ତି, ତାଙ୍କ କଥା ବି ପଡ଼େ । ମା' କହେ ଫୁଫୀଙ୍କ ପୁତୁରା କଥା । ବାପା ମୁହଁର ରଙ୍ଗ ବଦଳିଯାଏ, ସ୍ୱର ଉଷ୍ଣେଇ କହନ୍ତି, "କ'ଣ ଦେଖି ସେଠି ଏଡ଼େ ହମହମ ହଉଚ ତମେ ? ସବନମ୍ କହିଦେଲା ବୋଲି ହେଇଗଲା ? ଗ୍ରାଜୁଏଟ୍ ବି ନୁହେଁ, ପୁରୁଣା କୋଠା କେଇଟାକୁ ଭଡ଼ା ଲଗେଇ ଖାଉଚନ୍ତି, କି ଭବିଷ୍ୟତ ଅଛି ସେ ଟୋକାର ?"

ମା'ର ସ୍ୱରରେ ଏଥର ହତାଶା ଥାଏ, "କ'ଣ କରିବା ପୁଣି ? ତା' ପଛକୁ ପରା ହୀନା ଜରିନା ଅଛନ୍ତି । ଆଗ ହୀନା ଲାଗି ବୁଝିବା ତାହେଲେ ?"

ବାପା ରାଜି ହୁଅନ୍ତିନି । "ଏଇଟା କ'ଣ ସୁନ୍ଦର ଦିଶିବ, ଲୋକେ କ'ଣ କହିବେ କହୁନା, ଘରେ ବଡ଼ ଝିଅ ଥାଉଥାଉ..." ତା'ପରେ ଦି'ଥର ଗଳା ଖଙ୍କାରି ସେ କହିବସନ୍ତି, "ଭାବୁଥିଲି, କରିମ୍ ମିଆଁ ଘରେ କଥା ପକେଇବା କି, ସେଇ ମୁନ୍ନାର ପିଲାଟା..."

ଦି'ଗୁଣ ଜୋର୍‌ରେ ଚିହିଙ୍କି ଉଠେ ଅମ୍ମି, "ଆରେ ସେ ଟୋକାର ଅଛି କ'ଣ ? ଖାଲି ଦି'ପଦ ଶାୟରୀ ଗାଇଦେଲା ବୋଲି ସେ ତମ ଆଖିକୁ ବେଶୀ ଯୋଗ୍ୟ ଦିଶିଗଲା ? ତାଙ୍କ ଘରେ ଭଲରେ ଦି ବେଳା ଖାଇବାକୁ ଅଛି ନା ଆଗ ?"

"ଆରେ ନାଇଁ ସେତେ ଖରାପ ଅବସ୍ଥା ନୁହେଁ । ଭାରୀ ଗୁଣର ପିଲାଟିଏ, କେତେ ବଡ଼ ଖାନଦାନ । ଆଜି ନହେଲେ କାଲି ତ କମେଇବ ?"

"ହଉ, ତା'ହେଲେ ଆଗ କମେଇସାରୁ । ମୋ' ଝିଅକୁ ଭଲରେ ଖାଇବାକୁ ପିନ୍ଧିବାକୁ ଦେବାଭଳି ଅବସ୍ଥା ତା'ର ଆସିସାରୁ, ତାକୁ ମୋ' ଝିଅକୁ ଟେକିଦେବା କଥା ଭାବିବି ।"

ପୁଣି କେବେ ବା ବାପା ନିଜେ କଥା ଉଠାନ୍ତି, "ଭଲ ଜାଗାଟିଏ ଆଖିରେ ପଡ଼ିଚି ବେଗମ୍ । ଭାବୁଚି କଥା ପକେଇଦେବା, ଆଉ ଡେରି କରିବାନାଇଁ, ପିଲାଟା ହାତରୁ ଚାଲିଯିବ ।"

ବାପା ଶୋଇଲା ଘରକୁ ଗଲାବେଳେ ମା' ତାଙ୍କ ପଛେ ପଛେ ଯାଏ, ମଶାରୀ ତଳୁ ଆସୁଥିବା ବାପାଙ୍କ କଥା ଆଉ ଶୁଭେନାଇଁ । ମା' ସେଠୁ ଆସିଲା ବେଳେ ହସହସ ଦିଶୁଥାଏ, ତା' ପାଦ ଫୁର୍ତ୍ତି ପଡୁଥାଏ । ଫାତିମାକୁ ଶୁଣାଇ କହେ ସେ, "ଭାଗ୍ୟରେ ଥିଲେ ଏଇଠି ହେଇଯିବ । ଭଲ ଚଳିଲା ଘର, ଭଲ ପିଲା । ଦେବାନେବା କଥା ମୁହଁରେ ଧରୁନାହାନ୍ତି ।"

ପୁଣି ଦିଦିନ ପରେ ହୁଏତ ବାପା ମୁହଁ ଶୁଖେଇ ଧୀର ସ୍ୱରରେ ମାଆକୁ କିଛି କହନ୍ତି । ଭଉଣୀ ମାନେ ବୁଝନ୍ତି, ପାତ୍ରଟି ହାତଛଡ଼ା ହେଇଯାଇଚି । କେତେଦିନ ଆଉରି ଏମିତି ଗଡ଼ିଚାଲିବ କେଜାଣି । ଫାତିମାର ମତାମତ କଥା ନ ଭାବି, ତା' ଆଡୁ କିଛି ବିପଦ ଆସିବାର ସମ୍ଭାବନା କଥା ମନକୁ ନ ଆଣି ବାପା ମା' କେତେଦିନ ଏମିତି ମିଛ ଧାଁ ଦଉଡ଼ରେ ଦିନ କାଟିଦେବେ ?

ମା' ସେ ଦିନ କହୁଥାଏ, "ମୁନ୍ନୀ ଆମର ପଢୁ ଆଉ ଦି'ବର୍ଷ ବର ଜୁଟିଯିବେ । ବିଏ ପାସ୍ କଲେ ନିଶ୍ଚେ କିଛି କାମ ମିଳିଯିବ । କିଛି ନହେଲେ ନର୍ଗୀସ୍ ବେଗମ୍ ଅଛନ୍ତି, ତାକୁ ସାଙ୍ଗରେ ଲଗେଇନେବେ ।"

ବାପା ହସିଲେ, କହିଲେ, "ନର୍ଗୀସ୍ ତ ନିଜ ସଂସାରଟା ସମ୍ଭାଳିପାରିଲାନି, ବାପଘରେ ଆସି ରହିଚି । ବେଶୀ ପାଠ ପଢ଼େଇଲେ ହେବ କଅଣ ? ଝିଅକୁ ସବୁଦିନେ ପାଖରେ ରଖିବାକୁ ଆମର ସମ୍ବଳ ଅଛି ଯେ ଦମ୍ଭ ରଖିବା ?"

ଫାତିମାର ମନେହୁଏ ଅମ୍ମିର ବେଶୀ ବିଶ୍ୱାସ ତା' ଉପରେ, ନା ସେ ଏତେ ଶିଘ୍ର ଘର ଛାଡୁ ବୋଲି ସେ ଚାହୁଁନାଇଁ କେଜାଣି । ତେବେ ବାପା ଦିନକୁଦିନ ଯେମିତି ଅଥୟ ହେଇପଡୁଥାନ୍ତି ତା' ବାହାଘରକୁ ନେଇ, ବିଶେଷତଃ ହୀନା ବୁର୍ଖା ଓଢ଼ି ବାହାରକୁ ଯିବାଆସିବା କଲାଦିନୁ, ମା' ସେତେ ବେଶୀ ବ୍ୟସ୍ତ ହେଲାଭଳି ଜଣାଯାଉନଥାଏ । ଫାତିମା ସେଇଥିଲାଗି ଆଉ ଟିକେ ପରିଶ୍ରମ କରେ, ନିଜ ଲାଗି ଆଦୌ କିଛି ନରଖି ନର୍ଗୀସ୍ ବେଗମ୍‌ଙ୍କଠୁ ମିଳିଥିବା ପାଉଣା ଟଙ୍କା ଯାକ ମା' ହାତରେ ଧରେଇଦିଏ ।

ସେମିତି ଦିନମାନଙ୍କରେ କହିପକାଏ ମା', "ମୁନ୍ନୀ ଆମର କେତେ କାମିକା, କେଡ଼େ ହୁନର ତା' ହାତରେ, ତମ ଆଖିକୁ କେବେ ଦେଖାଯାଉନି ? ତା' ଲାଗି ଆମର ଘରଟା ଚଳିବାରେ କେତେ ସୁବିଧା ହେଉଚି ତମକୁ ବୁଝାପଡୁଚି ?" ବାପା ଆଉ ଏଣିକି ବାଆଁରେଇଲା ପରି ରହନ୍ତି ନାହିଁ । ସିଧା ସଳଖ କହିପକାନ୍ତି, "ଆରେ ଝିଅଟା ଅଛି ବୋଲି ଟିକେ ସୁବିଧା ହେଉଚି, ମନା କରୁନାଇଁ । ମାନୁଚି ସେ ଘରୁ ଗଲେ ଅଧିକା ଆମଦାନୀ ଟିକକ ଚାଲିଯିବ । ହଉ, କିଛି ଯାଏଆସେ ନାଇଁ, ଶୁଖାଶୁଖା ଟିକେ ଖାଇ ଚଳିଯିବା । କାଳେଅଧେ ଗୋସ୍ତ ଟିକେ କ'ଣ ରୁଟିରେ ଘିଅ ଟିକେ ବି ଆମର ନସିବ ନହେବ ଯଦି ନାଇଁ । ତେବେ ସାଇପଡ଼ିଶାରେ ମୁଣ୍ଡଟେକି ତମକୁ ସବୁ ଚଳେଇନେଇ ପାରିବି ମୋ' ନିଜ ଖଟଣିରୁ, ବୁଝିଲ । ଝିଅ କମେଇଲା ଦି'ପଇସା ଖାଇବା ବୋଲି ତାକୁ ବାହା ଦେବାନାଇଁ, ଘରେ ବସେଇ ରଖିବା ?"

ଫାତିମା ବୁଝିପାରିଲା, ବେଶୀ ଦିନ ଆଉ ନୁହେଁ ଏଠି । ସେ ପାଠ ପଢୁ କି ନ ପଢୁ ସେଥିରୁ ଅନ୍ତତଃ ସମାଜର ପ୍ରତିଷ୍ଠା ସିଡ଼ୀରେ କେଇଖେପା ଚଢ଼ିଯିବାର ଖାମଖିଆଲ କେବେଠୁଁ ବାପାଙ୍କ ମୁଣ୍ଡରୁ ଯାଇସାରିଲାଣି । ଡାକ୍ତରାଣୀ କରିବା କଥା କେବେ କାଳେ ସାଙ୍ଗ ମେଳରେ କହିଦେଉଥିଲେ ସିନା, ସେକଥା ବୋଧେ ନିଜେ ବି ବିଶ୍ୱାସ କରୁନଥିଲେ । ତିନିଟିନିଟା ଝିଅଙ୍କ ବୋଝ ମୁଣ୍ଡ ଉପରେ ଥିବା କଥାଟା ମନକୁ ନ ଆଣିବାର ଗୋଟେ ଉପାୟ ଥିଲା ସିଏ । ଆଜିକାଲି ଓଲଟି କଥାକଥାରେ କହନ୍ତି ସେ, "ବିଏ ଏମ୍‌ଏ ପାସ୍ କରା କେତେଜଣ ଝିଅ ବି ତ ବାହାରିଲେଣି ଏ ଅଞ୍ଚଳରୁ । ଅଡିବେଶୀରେ ମାଷ୍ଟରାଣୀ ହେଇଚନ୍ତି ଜଣେଅଧେ । ହଉ ହେଲା, ବଡ଼ଘର ଝିଅ ସେମାନେ ସମସ୍ତେ, ବେଶୀ ଯୌତୁକ ନେଇ ବାହା ହେଇଚନ୍ତି । ହେଲେ ଖାଲି ବିଏ ପାଠ ପଢ଼ିଚି ବୋଲି କୋଉ ଝିଅକୁ ବଡ଼ ଘର ବର ମିଳିଲାଣି ଭଲା ?"

ମା' କହିଥିଲା ଥରେ, "ତୁ ଯଦି ଡାକ୍ତରାଣୀ ପାଠଟା ପଢ଼ିଥାଆନ୍ତୁ ମୁନ୍ନୀ, ଆଉ ଆମର କିଛି ଚିନ୍ତା ନଥାନ୍ତା ।"

ଫାତିମା ସେଦିନ ସାହସ କରି କହିପକାଇଥିଲା, "ଡାକ୍ତରାଣୀ ପାଠ ପଢ଼େଇବାକୁ ବାପାଙ୍କର ସମ୍ବଳ କାହୁଁ ଥିଲା ଅମ୍ମି ? ଦୋଷଟା ମୋଓରି ମୁଣ୍ଡରେ ଦେଇଦେଲେ ତମକୁ ସବୁ ହାଲୁକା ଲାଗେ ନାଇଁ ? ତା'ଠୁ ବେଶୀ ଟଙ୍କା କମେଇ ମୁଁ ଦେଖେଇଦେବି । ନର୍ଗୀସ୍ ବେଗମ୍‌ଙ୍କୁ ଦେଖୁନୁ ?"

ସିଲେଇ ମେଶିନ ଚକ ଉପରେ ମାଆର ହାତଟା ରହିଯାଇଥିଲା, ମୁହଁ ସେମିତି ତଳକୁ ରଖି କହିଥିଲା, "ତୁ ଯାହା କହ ଝିଅ, ତୋତେ ବାହା କରିବା ଛଡ଼ା ଆମର ଏବେ ଆଉ କିଛି ଚିନ୍ତା ନାହିଁ । ତୁ ଡାକ୍ତରାଣୀ ହେଲେ କି ସିଲେଇରୁ ଟଙ୍କା କମେଇଲେ ସେ ଦାୟିତ୍ୱଟା କ'ଣ ଆମ ମୁଣ୍ଡରୁ ଖସିଯିବ ବୋଲି ଭାବିଚୁ ?"

# ଅତିଷ୍ଟ ଇଚ୍ଛାର ଦୁଃଖ

ମୁକ୍ତାର ସାଙ୍ଗେ ଦେଖା ହେଇଥାଏ ଯେଉଁଦିନ, ଘରକୁ ଫେରିଲାବେଳକୁ ଫାତିମାକୁ ଭିନ୍ନ ଲାଗେ ସବୁକିଛି । ମାଡ଼ି ମାଡ଼ି ପଡ଼େ ଜୀବନ ।

ଅବାସ୍ତବ ଲାଗେ ସବୁକିଛି । ଗଳି ମୋଡ଼ଠି ପହଞ୍ଚୁଣୁ ସଦ୍ୟ ବିତାଇ ଆସିଥିବା କିଛି ସମୟକୁ ମନରୁ କାଢ଼ିପକାଏ ସେ ପ୍ରାଣପଣେ । ନିଜକୁ ମନେପକାଇ ଦିଏ, ଦେହକୁ ଟିମୁଟି ଶାସନ କରେ, ଛାଡ଼୍ ସେସବୁ, ଏଇ ହେଉଚି ଘର, ପାଦତଳ ଅସଲ ମାଟି, ଏଇଠି ମନ ଦେ । ଗଳି ମଝାମଝି ବାଁ ପାଖ ସାନ ଆଉଜା କବାଟଟି ଖୋଲି ଅଗଣାରେ ପାଦଦିଏ । ବାଁ ପାଖେ ଛୋଟ କୂଅଟିଏ, ଚନ୍ଦିନୀ କଡ଼କୁ କେଇଟା ମଲ୍ଲୀ ଗଛରେ ଫୁଲ ଫୁଟିଲାଣି, ଲଦି ହେଇଚି କଢ଼ । ନିଶ୍ୱାସରେ ଭରିଯାଉଚି ମହକ, ଛାତିଭିତରକୁ ପୂରିଆସୁଚି ନିଶ୍ଚିନ୍ତ ପିଲାଦିନର ଛବି । ସେପାଖକୁ ପିଜୁଳି ଗଛଟିଏ, ଏପାଖୁ ସେପାଖୁ କେତେଥର ଡାଳ କଟାହେଇ ବି ଡାଳ ମେଲେଇ ଫୁଲ ଫଳରେ ଭରିଯାଏ । ରୋଷେଇଘରୁ ବାସ୍ନା ଆସୁଚି, କେଡ଼େ ଚିହ୍ନା ତଥାପି କେଡ଼େ ଟାଣ ତାର । ମନେ ପକେଇଦେଉଚି ଯେ ଏ ଦେହଟି ଗଢ଼ିହେଇଚି ଏଇ ବାସ୍ନାରେ, ସ୍ୱାଦରେ, ଦିନ ଦିନ କରି । କେବେ ବା ଦାଣ୍ଡ କବାଟ ଖୋଲିବା ଶୁଣି ଅମ୍ମି ଡାକଦିଏ, ଆସିଲୁ କି ମୁନ୍ନୀ ବେଟୀ । ଉତ୍ତର ଦେବା ନ ଦେବାରେ ଯାଏଆସେ ନାହିଁ । ଫାତିମା ବହି ଖାତା ଥୋଇଦିଏ, ବୁର୍ଖା ଚଉତି ରଖିଦିଏ ଆଲଣାରେ । କୂଅ ମୂଳକୁ ଯାଇ ହାତ ମୁହଁ ଧୋଉଧୋଉ ନିଜକୁ ଜୋରକରି ପୂରାଇଦିଏ ହେତୁପାଇଲା ଦିନୁ ବଢ଼ିଥିବା ଉଷୁମ୍ କୋଷାଟିରେ । ମୁଣ୍ଡ ଭିତର ଝରକା କବାଟ ସବୁ ବନ୍ଦ କରିଦିଏ, ସେ ଲକ୍ଷେ ରଙ୍ଗର ଆକାଶ ନ ଦିଶୁ ଏଠୁ । ଏଇ ନିରାପଦ କୋଳରେ ଆଖି ବୁଜିଦେଇପାରିଲେ ଆଉ ନା ଦୁଃଖ ନା ସୁଖ ।

ତେବେ ସେ କୋଳ ବି ତ ଆଉ ସେଇ ସେମିତି କୋଳ ହେଇ ରହିନାହିଁ । ଶାନ୍ତ ନିଧଡ଼କ ହେଇ ନିଦ ଯିବା ହେବ ନାହିଁ ଏଠି ଆଉ । ବାପା ପୁଣି କୋଉଠି ପ୍ରସ୍ତାବ ଦେଖିଲେଣି । ତାକୁ ଦେଖିବାକୁ ଆସିବେ ବରଘର । ଫାତିମା ସବୁ ଶୁଣୁଥାଏ ପୁଣି ନ ଶୁଣିଲାପରି ରହିଥାଏ ।

ଘରକୁ ଫେରିଲେ ଗୋଳିଆଗୋଳି ହେଇଯାଏ ଜୀବନ । ବାପା ମା' ଚୁପ୍‌ଚାପ ଏକାଠି କଥା ହେଉଥିବାର ଦେଖିଲେ ଛାତି ଦାଉଁ ଦାଉଁ ପଡ଼େ ଆଜିକାଲି । ବାପା ଏଣିକି ବାହାଘର ଖର୍ଚ୍ଚ କଥା ବି ଉଠେଇଲେଣି । ମା' ତାଙ୍କୁ ଚୁପ୍‌ଚୁପ୍ କ'ଣ ଭରସା ଦେଉଚି କେଜାଣି । ତାଆରି ଦେଲା ପଇସାର ଜୋର୍‌ରେ ହୁଏତ ତାଆରି ନିଜର ଭାଗ୍ୟର ନିର୍ଣ୍ଣୟ ହେଉଚି । କ'ଣ ହେବ ଜାଲିକି ? ବାପା ହୁଏତ ବାହାଘର ଲାଗି କୋଉଠି ଜବାବ ଦେଇ ଦେଇ ଆସି ଘରେ ଗର୍ବରେ ଘୋଷଣା କରିପାରନ୍ତି । ଯଦି କେହି ମହାନୁଭବ ବିନା ଦିଆନିଆରେ, ଫାତିମାକୁ ନଦେଖି ବାହାହେବାକୁ ରାଜି ହେଇଯାଆନ୍ତି, ତେବେ ତ କଥାନାହିଁ । ଫାତିମାର ମତ ନେବା ଆଉ ଦରକାର ହେବନାହିଁ ସେ ଜାଣେ । ତା'ପରେ, କଥା ଆହୁରି ଆଗକୁ ଗଡ଼ି ଗଲାପରେ ମୁହଁ ଟେକି ମନା କରିବାକୁ ତା'ର ସାହସ କୁଳେଇବ ତ ? ମନାକରି କହିବ କ'ଣ ?

ଆଗରେ ପରୀକ୍ଷା ଥିବା କଥାଟା ବେଶୀବେଳ ଧରି ମନରେ ରହିପାରେନାହିଁ । ତା'ପରେ ଆହୁରି ଦି'ବର୍ଷ କଲେଜ ପଢ଼ା ? ଧୂଆଁଳିଆ ରାସ୍ତାଟିଏ କେବଳ ଲମ୍ବିଯାଇଚି ଆଗକୁ । ପିଠିର ବୋଝ ବଳେଇ ପଡ଼ିଲାଭଳି ହେଲାଣି, ଏଣେ ପହଞ୍ଚିବା ଜାଗା କାହିଁ ଜଣାନାହିଁ । ଏମିତି ଅନିର୍ଦ୍ଦିଷ୍ଟ ଚାଲିବା ଆଉ କେତେଦିନ । ଆରମୁଣ୍ଡଠି କିଛି ସ୍ପଷ୍ଟ ନିଶ୍ଚିତ ଏବେଠୁଁ ଦିଶିଯାଆନ୍ତା ଭଲା ।

ସିଲେଇ କାମରେ ଲାଗିଥିଲା ବେଳେ ମା' ନିଶ୍ୱାସ ଛାଡ଼ି କହେ, "ହଅ, ଆଉ ଦିନ କେତେଟା ତ । ଏଥର ତୋ' ନିଜ ଲାଗି କୁର୍ତ୍ତା, ଓଢ଼ଣୀ ଖଣ୍ଡେ ଲେଖାଁ ଆଗ ତିଆରି କରିପକେଇବାକୁ ହେବ, ସେ ବାହାର ବରାଦ କାମ ହେଉ ନ ହେଉ ।"

ନହେଲେ ବା କହେ, "ଆ ମୁନ୍ନୀ, ଏଥର ରନ୍ଧା କେଇଟା ଭଲକରି ଶିଖି ନେ । ଯେତେ ମାର୍କ ପରୀକ୍ଷାରେ ଆଣ କି ଯେତେ ସିଲେଇ ଜାଣିଥା, ବଢ଼ିଆ କରି କବାବ କି ବିରିୟାନୀଟାଏ ଯଦି ତିଆରି କରିନପାରିଲୁ, ଶାଶୁଘରେ ତୋ' ଇଜ୍ଜତ ରହିବ କ'ଣ ?"

ଶାଶୁଘର ବୋଲି ଶୁଣିଲା କ୍ଷଣି ତା' ମନକୁ ମୁକ୍ତାରର ହଓ୍ୱେଲୀଟା ହିଁ ଦିଶିଯାଏ । ଆଉ କୋଉ ଜାଗାର କଥା ମନକୁ ଆଣିବାକୁ ଚେଷ୍ଟା ନ କରୁଣୁ ଛାତି ଭିତରଟା ଫାଙ୍କାଶି ଉଡ଼ିଗଲା ପରି ଲାଗେ ।

ରାତିରେ ବିଛଣାରେ ଆଖି ବୁଜିଲାକ୍ଷଣି ଉଭାହୁଏ ସେଇ ନାହିଁନଥିବା ଜାଗାଟି । ନିଜ ହାତ ଉପରେ, କାନ୍ଧରେ, ପିଠିରେ କାହାର ହାତ ବାଜି ବାଜି ଯାଏ । ପଲକରେ ଚାରିପାଖ ଲୋକଙ୍କର, ଘରଦ୍ୱାରର ବୋଧ ଚାଲିଯାଇସାରିଥାଏ । ପହଞ୍ଚିଯାଇ ସାରିଥାଏ ସେ ଗୋଟିଏ ଦୁଆରମୁହଁରେ, ଭିତରକୁ ପାଦ ବଢ଼େଇଦେଲେ କୁହୁକ ସାମ୍ରାଜ୍ୟ । ଅସଜଡ଼ା ଦୁଇବଖରା ଘର ।

ଯେତେ ମନ ଭିତର ଜାଗା ସବୁକୁ ଖୁନ୍ଦିଖାନ୍ଦି ଭରିଦେଉଥାଉ ସେ ନାନା କଥାରେ, କାମରେ, ଚିନ୍ତାରେ, ରାତି ଆସିଲେ କୋଉଠି ଛପିଥାଏ ସେ ଦି'ବଖରା ଅସଜଡ଼ା ଘର, ଗୋଟିପଣେ ଘେରିନିଏ ଫାତିମାର ମନକୁ । ଅକ୍ତିଆର କରିନିଏ ଦେହକୁ ବି ।

ରାତି ଗହୀର ହୁଏ, ଫାତିମା ଆଖି ମେଲି ଚାହିଁ ଥାଏ ଛାତର ପୁରୁଣା କଡ଼ି ବର୍ଗାର କଳା ଦାଗମାନଙ୍କୁ । ଗଳିର ପାଖ କେଉଁ ଘରୁ ଭାସିଆସେ ହାବୁକାଏ ଚମେଲୀ ଫୁଲର ବାସ୍ନା । ତାତିଲା ନିଶ୍ୱାସଟିଏ ବାହାରି ମିଳେଇଯାଏ ଅନ୍ଧାରରେ । ଉତ୍ତରଟିଏ ଆସନ୍ତା ଭଲା । ଯେ ଆହୁରି କେତେଦୂର ସେ ଦିନ ଯେବେ ଆଉ ସହିବାକୁ ନଥିବ ଦେହ ଚାରିପାଖେ ଏ ଖାଲିପଣର ବଳୟକୁ । ଅଣନିଶ୍ୱାସୀ ଇଚ୍ଛାକୁ କାବୁ କରିବାଲାଗି ରାତି ରାତି ଧରି ନିଦକୁ ଉଜେଇଁ ଦେବାକୁ ନଥିବ ।

ଅଧା ଅଧା ନିଦରେ, କେବେ ବା ଅଧା ଖୋଲା ଅଧା ବୁଜା ଆଖିରେ ସପ୍ନ ଦେଖେ ସେ । ଘରୁ ଗୋଡ଼ କାଢ଼ି ବାହାରି ଯାଉଚି ସେ ଜମା ପଛକୁ ନ ଅନେଇ । ଥରେ ବାହାରି ଦାଣ୍ଡରେ ଠିଆହେଲା ପରେ ଆଉ କେତେ ବାଟ ବା ?... ସପ୍ନ ସାଙ୍ଗେ ମିଶିଯାଏ ଦୁଃସପ୍ନ । ନିଜକୁ ଦେଖେ ସେ, ଗଳି ମୁଣ୍ଡ ପାରିହେଇ ଚାଲିଚାଲି ସେଇ ଲମ୍ବ ଏମୁଣ୍ଡରୁ ସେମୁଣ୍ଡ ପାଚେରୀ ମଝାମଝିର ଫାଟକ ଡେଇଁ ଭିତରକୁ ଯାଉଚି । ସେଇ ହାଉଜାଉଆ ଅଗଣା, ବାହାରର ଧୂଳିଆ ବିରାଟ ପଡ଼ିଆ । ସେଇ ଦୁଇ ବଖରା ଘର ଯେଉଁଠି ବାଗବାଇସ ନଥାଏ ଜିନିଷ ପତ୍ର କି ଆସବାବର । କାନ୍ଥରେ ଏଠି ସେଠି ପରସ୍ତରା ଖସି ଇଟା ଦିଶୁଥାଏ । କାହିଁ କେତେ ଉଚ୍ଚ ଛାତର ଲମ୍ବ ଡେମ୍ଫରୁ ଝୁଲୁଥାଏ ପୁରୁଣାକାଳିଆ ପଙ୍ଖା । କବାଟ ଖୋଲନ୍ତି ମୁକ୍ତାରର ମା', ପଚାରନ୍ତି, କିଏ ସେ ତମେ ?... ମୁକ୍ତାର ନାହିଁ ତ, ବମ୍ବେରେ ଅଛି । କ'ଣ ହୁଏ ତା'ପରେ ?... ଲେଉଟିପଡ଼ି ଧାଇଁ ପଳେଇଆସେ କି ସେ ? ଫେରିବାଲାଗି ଘର ବା ଆଉ ଥାଏ କାହିଁ ? ସେଠି ତ ତୋରଣ ସଜା ହେଇ ଶାହାନାଇ ବାଜୁଥିବ, ଲୋକ ଗହଳ ଚହଳ ବି ହେବଣି । କିଏ ସେଠି ତଥାପି ଡାକୁଚି, ସାନ ଭଉଣୀ ବୋଧେ, ଆ ଫେରିଆ, ଗଳି କବାଟ ବାଟେ ଭିତରକୁ ଚାଲିଆ ମୋ' ସାଙ୍ଗେ । ଦୋଛକି ଉପରେ ଠିଆ ହେଇଚି ଫାତିମା । ଘରକୁ ଫେରିଗଲେ ତ ଅଜଣା କେଉଁ ଲୋକସାଙ୍ଗେ ବେଡ଼ି ପଡ଼ିବାଲାଗି ହାତ ବଢ଼େଇଦେବା କଥା । ନା, ପଛକୁ ଆଉ ଚାହିଁବାର ନୁହେଁ । ଆଲୁରା ବେଶବାସ ଦୁଃଖିନୀ ଚେହେରାର ସେ ନାରୀ ଜଣକ, ମୁହଁରେ ତାଙ୍କର ତୁଚ୍ଛ ଚାଞ୍ଚଲ୍ୟ ନାହିଁ, ପ୍ରଶ୍ନ ନାହିଁ କି ଆବେଗ ନାହିଁ । ତାଙ୍କରି ଗୋଡ଼ ତଳେ ପଡ଼ି ସେ ନେହୁରା ହୁଏ, ମୋତେ ବୋହୂ କରିନିଅ । ମୁଁ ତମ ଘରକୁ ସଜେଇ ଦେବି, ବାଗେଇ ଦେବି । ମୁକ୍ତାର ତା'ର ତୋଳୁଥାଉ ଆକାଶରେ ଯେତେ ମହଲ ତୋଳିବ, ସାମାନ ଜୁଟାଉଥାଉ ଯେତେଦିନ ତା'ର ମନ । କାଣି କଉଡ଼ିଟିଏ ନଆଣୁ ଘରକୁ । ଆମର କିଛି ଅସୁବିଧା

ହେବନାଇଁ । ମୋ' ଲାଗି କିଛି ହେଲେ କେବେ ମାଗିବି ନାଇଁ ମୁଁ ।

ସେ ଦୁଃଖିନୀ ନାରୀ କିନ୍ତୁ ମୁଣ୍ଡ ହଲେଇ ନାହିଁ କରନ୍ତି, କବାଟ ଦେଇଦିଅନ୍ତି ତା' ମୁହଁ ଉପରେ ।

ଚମକିକିନି ଉଠି ବିଛଣାରେ ବସିପଡ଼େ ଫାତିମା । ମୁଣ୍ଡ ଝୁଣିଦେଇ ଝାଡ଼ିପକାଏ ଦୁଃସପ୍ନକୁ । ଇଏସବୁ କେଉଁ ପୁରୁଣା ଦିନର ଦେଖା ସିନେମା ଦୃଶ୍ୟ, ମୁଣ୍ଡ ଭିତରେ ରହିଥିଲା ବେଳ ଉଣ୍ଡି ବାହାରୁଚି । ଏମିତି ହତଭାଗିନୀ ରୂପରେ ନିଜକୁ କାଇଁକି ଦେଖୁବି ସେ । ସେଭଳି କିଛି ଦୁର୍ବିପାକ ତ ଘଟିନାଇଁ ଏବେ ବି । ସମ୍ଭାଳିବା ଲାଗି ସମୟ ଅଛି, ବୁଦ୍ଧି ଶୁଦ୍ଧି ବି ଅଛି ତା'ର ।

ଖାଲି କେମିତି ଘରେ ବାପା ମା' ତାଆରି ବାହାଘର କଥା କହୁ ନଥାନ୍ତେ କି । କୋଉ ଅଜଣା ବରଘରକୁ ନେଇ ଦିହିଁଙ୍କ ଭିତରେ ବାକ୍ ବିତଣ୍ଡା ହେଉନଥାନ୍ତା, ଗାତି ରୋଷେଇବାସ, ଏକାଠି ଖାଇବାର ସୁଖଚି ମାଟି ହେଉନଥାନ୍ତା । ବରାଦ ଦିଆ ଓଢ଼ଣୀଟିଏ ତିଆରି ପୂରା ନହେଉଣୁ ଫାତିମାର ମୁଣ୍ଡଉପରେ ଘୋଡ଼ି ଦେଇ ତା' ଅମ୍ମି କହୁନଥାନ୍ତା, ଏଇଟି ଆମ ମୁନ୍ନୀକୁ କେଡ଼େ ସୁନ୍ଦର ମାନିବ ।

ମୁକ୍ତାର ସାଙ୍ଗେ ଭେଟ ହେଲାବେଳେ ସେଦିନ ଫାତିମା ମୁହଁରୁ ବାହାରି ଯାଇଥିଲା, "ମୁଁ ଗଲାପରେ ତମର ସେ ହଓ୍ୱେଲୀକୁ କେମିତି ସୁନ୍ଦର କରି ସଜେଇଦେବି ତମେ ଦେଖିବ ।"

ମୁକ୍ତାରର କୁଞ୍ଚା ଭ୍ରୁ ଓ ଆଶ୍ଚର୍ଯ୍ୟ ମୁହଁରୁ ଫାତିମା ଜାଣିଲା କଥାଟା କହି ବୋଧେ ସେ ଠିକ୍ କରିନାଇଁ । ମୁକ୍ତାର ଏମିତି ମୁହଁ କରୁଚି ସତେକି ଫାତିମା ତା' ଘରକୁ ଯିବା କଥାଟା ତା' ମନକୁ ଏଯାଏଁ ଆସିନଥିଲା ।

ଫାତିମା ପୁଣି ପଚାରିଲା ତାକୁ, ମୁହଁରେ ମିଠା ହସ ରଖି, ମୁକ୍ତାର ସାଙ୍ଗେ ଆଖି ମିଶେଇ, "କାଇଁ, ମୁଁ ଯିବିନି କି ତମ ଘରକୁ ବୋହୂ ହେଇ ?"

ମୁକ୍ତାର ଆଖି ଫେରେଇନେଲା । ଦୂରକୁ ଅନେଇଲା ସତେକି ଫାତିମାର ପ୍ରଶ୍ନର ଉତ୍ତର ଖୋଜୁଚି କୋଉଠି । ଟିକିଏ ବେଳ ଚୁପ୍ ରହି ସେମିତି ଫାତିମାର ଆଖିକୁ ନ ଅନେଇ ଉତ୍ତର ଦେଲା, "ନା, ସେଠିକି ତମକୁ ଯିବାକୁ ହେବନାଇଁ ।"

ତଣ୍ଟି ଶୁଖିଗଲା ଫାତିମାର । ଅଧା ଫୁଟୁଥିବା ସ୍ୱରରେ ପଚାରିଲା, "ତା'ହେଲେ ?"

"ମୁଁ ସେ ନବାବ ମଞ୍ଜିଲର ମୁହଁ ଦେଖିବାକୁ ଚାହେଁ ନାଇଁ । ଠିକ୍ କରିଚି ବମ୍ବେ ଯିବି ।"

## ହୁଗୁଳି ଯାଉଥିବା ଡେଣା

ପରୀକ୍ଷା ପାଖ ହେଇ ଆସୁଥାଏ । ଘରକୁ ଫେରିଲା କ୍ଷଣି କ୍ଲାସ୍‌ରେ ପଢ଼ିଥିବା ପାଠ କି ପଢ଼ାବହିକୁ ଅନେଇବାକୁ ମନ ହୁଏନାହିଁ । ଘରେ ସମୟ ବି ନଥାଏ ପଢ଼ାପଢ଼ି ଲାଗି । କଲେଜରେ କେତେବେଳେ ଯାହା ଲାଇବ୍ରେରୀରେ କିଛିବେଳ ବସିବା କଥା । ତଥାପି କଲେଜର ସେ ନାଲି କାନ୍ଥର ହତା ଭିତରକୁ ପଶିଗଲାକ୍ଷଣି ତାକୁ କେମିତି ଆଶ୍ୱାସ ଲାଗେ । ଆରମ୍ଭ ଦିନମାନଙ୍କରେ କଲେଜ କେଡ଼େ ଅଲଗା ଲାଗୁଥିଲା । ତା' ଭିତରେ ବୁଜି ହେଇ ରହିଥିବା ଦିଇଟା ଡେଣା ହୁଗୁଳିଗଲା ଭଳି ଲାଗେ ସେବେ । କ୍ଲାସ୍ ଟେଷ୍ଟରେ, ଟ୍ୟୁଟୋରିଆଲ୍‌ରେ ଭଲ ମାର୍କ ଆଣିଲେ ମାଡ଼ାମ୍ ସାରା କ୍ଲାସ୍ ଆଗରେ ତା'ର ଉତ୍ତର ପଢ଼ି ଶୁଣାଇବାକୁ କହନ୍ତି । କ୍ଲାସ ବାହାରେ କହନ୍ତି ଭଲ ପଢୁଚି ବୋଲି, ୟା'ପରେ କ'ଣ କରିବ ପଚାରନ୍ତି । କଲେଜର କାର୍ଯ୍ୟକ୍ରମରେ ମାତିଥିବାବେଳେ ମନେ ନଥାଏ ବାହାରେ କେତେ କ'ଣ କାମରେ ଚିନ୍ତାରେ ଭରା ସଂସାରଟିଏ ଅଛି ବୋଲି । ଏଣିକି ସେସବୁ ଆଉ ନାହିଁ । ସବୁ କେମିତି ଫିକା ପଡ଼ିଯାଇଚି ।

ସିଲେଇ କାମରେ ବେଶୀ ସମୟ ଦେଇ ହେଉନି । ନର୍ଗୀସ୍ ବେଗମ ମାସେ ହେଲା ସହର ବାହାରକୁ କୁଆଡ଼େ ଯାଇଥାନ୍ତି । ମୁକ୍ତାରକୁ ନିଜ କାମ ନେଇ ବିଶେଷ କିଛି କହିବାକୁ ନଥାଏ ତା'ର । ପ୍ରକୃତରେ ନିଜ ଜୀବନ ବିଷୟରେ ହିଁ କିଛି କହିବାକୁ ନଥାଏ ମୁକ୍ତାର ପାଖେ । ଖାଲି ତା' ପାଖାପାଖି ରହିବାରେ ହିଁ ପୂରିଯାଏ ଫାତିମାର ଜୀବନଗୋଟା । କୋଉଠି ଆଉ ଜାଗା ଟିକିଏ ବୋଲି ନଥାଏ ଅନ୍ୟକିଛି ଲାଗି ।

ଘରେ ଏଣିକି ତା' ବାହାଘର କଥା ପଡ଼ିଲେ ସହିହୁଏ ନାହିଁ । ଦେହରେ ନିଆଁ ଚରିଯିବା ଭଳି ଲାଗେ । କାହିଁକି ବାପା ମା' ତା' ମନ ଭିତରକୁ ଟିକିଏ ଚାହିଁ ଦେଖିପାରୁନାହାନ୍ତି । ମନେ ଅଛି ତା'ର, ତା' ପିଲାବେଳର ଘଟଣାଟିଏ । ସାହି ଆରମୁଣ୍ଡ ଝିଅଟିଏ ବେକରେ ଦଉଡ଼ି

ଦେଇ ମରିଥିଲା । ତା' ମା'ର ଛାତିପିଟା, ମୁଣ୍ଡ କୋଡ଼ା କାନ୍ଦ ଦେଖି ଫାତିମାର ପିଲାମନ ଗୋଟିପଣେ କମ୍ପିଯାଇଥିଲା । ଦିନାକେତେ ଆଉ ଖିଆପିଆରେ ମନ ଲାଗିନଥିଲା ତା'ର । ମନଭିତରେ କୋଉଠି ଅଲିଭା ଗାରଭଳି ଲେଖାହେଇ ରହିଚି ଝିଅଟିର ମାଆ କାନ୍ଦି କାନ୍ଦି କହୁଥିବା କଥା କେଇପଦ, "ତା' ମନରେ କ'ଣ ଥିଲା ମୋତେ କହିଲା ନାହିଁ କାଇଁକି । ପାଟି ବୁଜି ରହିଲା, ପଦେ ହେଲେ କହିଥାଆନ୍ତା ମନ ଭିତରେ କ'ଣ ତା'ର ଥିଲା, ନିଜେ ମରି ମୋତେ ଏମିତି ଜଳେଇ ମାରିଲା କୋଉଥିଲାଗି ।"

ଫାତିମାର ବି ମନକୁ ଆସେ, ଜୀବନ ହାରିଦେବା କଥା । ହାରିଦେବା ଲାଗି ଜଣାଅଛି ତାକୁ କେତେ ଉପାୟ । ପୁଣି ନିଜକୁ ଓଟାରି ଆଣେ ସେ ଚିନ୍ତାରୁ । ମା'କୁ କହିବ କି ସେ ? କି ଉପାୟ ଭଲା ତା' ଅମ୍ମି ତାକୁ ବଚେଇ ପାରିବ ? ଦେଖେଇ ଦିଆଗଲା ବାଟରେ ଚାଲିଚି ବିଚାରୀ ସାରାଜୀବନ । ଓଲଟି ଦୋଷ ଦେବ ବରଂ ଫାତିମାକୁ, ବୁଝେଇବ ଘରର ମହତ ନ ସାରିବାଲାଗି । ଝିଅର ମନଭିତରକୁ ଉଙ୍କି ମାରି ଦେଖିଲାଭଳି ଶକ୍ତି ତା'ର କାହିଁ ଥିବ ?

ଦାଦୀ ମା' ପାଖରେ ଜାକି ହେଇ ଶୋଇଲେ ତାକୁ ବଳ ମିଳେ, ବିଚାରୀ ସାଙ୍ଗରେ କେହି ବଡ଼ କାମଟିଏ ଲାଗି ପରାମର୍ଶ ନ କରୁଥାନ୍ତୁ ପଛକେ । ଆଉ କିଛି ନହେଉ ପଛେ, ସେ ଜାଣିପାରେ ଘରେ କାହାର ମନଦୁଃଖ ହେଇଥିଲେ ଦିପଦ ଆପେ କହେ ସିଏ, ପିଠି ଆଉଁସି ଦିଏ ମନଦୁଃଖ ଉଣା କରିବାଲାଗି । ହେଲେ କିଏ ଜଣେ ତ ନାହିଁ ଯିଏ ତା' ଘର ଭିତର ପରିବେଶକୁ ବି ବୁଝୁଥିବ, ଆଉ ତା' ମନ କଥାକୁ ବି । ମୁଣ୍ଡ ଉପରେ ପିଠି ବଙ୍କେଇ ଦେଲାଭଳି ତା' ଚିନ୍ତାର ବୋଝ କଥା ବୁଝିବା ଭଳି ଆଖେପାଖେ ତା'ର କିଏ ବା ଅଛି ?

ତଥାପି, ସକାଳୁ ଗାଧେଇ ପାଧେଇ ସଜବାଜ ହେଇ କଲେଜ ଲାଗି ବାହାରିପଡ଼ିଲା କ୍ଷଣି ଘରେ ସବୁ ଚିନ୍ତା ଥୋଇଦେଇ ଯାଏ ଫାତିମା । ଟେଷ୍ଟ ପରେ ଦିନମାନ, ଏକଷ୍ଟ୍ରା କ୍ଲାସ୍ ଚାଲିଥାଏ । ସେମାନଙ୍କର ସେଦିନ ପାର୍କରେ ଭେଟ ହେଇଥାଏ । ଶୋଭନା କହିଥିଲା ତାକୁ, କଲେଜରେ ପହଞ୍ଚିଲା ମାତ୍ରେ କାନରେ ଚୁପ୍‌ଚୁପ୍ କରି । "ଆଜି ଗୋଟେ ଜୋର୍‌ଦାର ପ୍ଲାନ୍ ଅଛି । ମନା କରିଥିବୁ ତ ଦେଖିଥିବୁ ।"

"କ'ଣ ସିଏ ? ବେଶୀ ଦୂର ଯିବାନି, ଗରମ ପଡ଼ିଲାଣି । ହାତରେ ବେଶୀ ସମୟ ବି ନାହିଁ ।"

ଶୋଭନା ଆଖିମାରି କହିଥିଲା, "ଦୂର ନୁହଁ, ଏକ୍‌ଦମ ପାଖ । ଆମ ଘରକୁ ଯାଉଚେ ଆମେ ।"

ଗାଡ଼ିରେ ବସି ଯାଉଯାଉ ଫାତିମା ପଚାରିଲା, "ତମ ଘରକୁ ତ ଯାଉଚେ, ଏଥିରେ ଏତେ ଇଶାରା କ'ଣ କରୁଥିଲୁ । ଭାବିଲି କୋଉ ଗୋପନ ଆଡ୍‌ଡ଼ାକୁ ନେଇଯାଉଚୁ ।"

"ସେଇ ତ, ଯାଉଚୁ ଆମେ ଗୋପନ ଆଡ୍‌ଡ଼ାକୁ । ଚାଲ୍ ଦେଖିବୁ ।"

ଚାର-ଇମଲୀରେ ଶୋଭନାର ଘର । ସହରର ଏ ଅଞ୍ଚଳକୁ ଫାତିମା କେବେ ଆସିନଥିଲା । ମୁଖ୍ୟ ରାସ୍ତା ଉପରୁ ଦେଖିଲେ ବଣଘେରା ସାନ ପାହାଡ଼ଟିଏ ଭଳି ଦେଖାଯାଉଚି କଲୋନୀଟି, ପରିଚ୍ଛନ୍ନ ରାସ୍ତାଟିଏ ଚଢ଼ାଣୀ ବାଟରେ ଉଠିଯାଇଚି ବଡ଼ ବଡ଼ ଗଛମାନଙ୍କ ଭିତର ଦେଇ । ବାଁ ପାଖେ ଚିତ୍ରରେ ଅଙ୍କାହେଲା ଭଳି ପଦ୍ମଫୁଲ ଭରା ବଡ଼ ପୋଖରୀଟିଏ, କୂଳରେ ଆମ୍ବଗଛ ଗହଳରୁ କୋଇଲି ରାବ ଶୁଭୁଚି । ଦିଶୁଚି କେଉଁ ଗୋଟିଏ ମନ୍ଦିରର ଚୂଡ଼ା । ନିଜ ଘର ଗେଟ୍ ପାଖରେ ଗାଡ଼ି ରହିଲା କ୍ଷଣି ଫାତିମାକୁ ଡାକି ଓହ୍ଲେଇପଡ଼ିଲା ଶୋଭନା, ଡ୍ରାଇଭରକୁ କହିଲା, "ଗଣେଶ, ଆମର ଡେରି ହେବ, ତମେ ଦି'ଘଣ୍ଟା ଛାଡ଼ି ଆସ ।"

ଖଣ୍ଡେ ଦୂରରେ ରାଜେଶ୍ ଆଉ ମୁକ୍ତାର ଓହ୍ଲେଇଥିଲେ, ରାଜେଶ୍‌ର ମଟରସାଇକଲ୍ ରଖାଯାଇଥିଲା ଗଛ ଆଢୁଆଳରେ । ଫାତିମା ଭାବୁଥିଲା, ଗେଟ୍ ଭିତରପାଖକୁ ଆଗ ଚାହିଁବ ନା ବାହାରକୁ । ଏତେ ସୁନ୍ଦର ଘର ରହେ ଶୋଭନା ? ଯେତେଥର ସେ ଫାତିମାକୁ ଡାକିଚି ଫାତିମା ଆସିନି, ଓଲଟି କହିଚି ଯୋଉଦିନ ଆମଘରକୁ ଆସିବୁ ସେଦିନ ଡାକିବୁ ତମ ଘରକୁ । କୋଉ ମୁହଁରେ ଏବେ ସେ ଶୋଭନାକୁ ଡାକିବ ତା' ଅନ୍ଧାରୁଆ ଗଳି ଭିତର ଘରକୁ । ହତା ଭିତର ଲନ୍, ଫୁଲ ବଗିଚାର ଶୋଭା ଦେଖିଲାବେଳକୁ ଶୋଭନା ଆଗରେ ଚାଲି ଯାଇ ଡାକୁଚି, "ଆ' ଶିଘ୍ର । ଡେରି କରନା ।"

ଗେଟ୍ ଖୋଲି ରାଜେଶ ପଶୁଚି, ତା' ପଛେପଛେ ମୁକ୍ତାର । ବାରଣ୍ଡା ପାହାଚରେ ପାଦ ଦେଇ ଥ ହେଇ ଠିଆହେଇଯାଉଚି ଫାତିମା, "ରାଜେଶ ଆଉ ମୁକ୍ତାର ବି ତମ ଘର ଭିତରକୁ ଆସିବେ ?"

କବାଟର ବେଲ୍ ମାରି ସ୍ୱର ଧୀମା କରି ଶୋଭନା କହୁଚି, "ମୋ ବାପା ମା' ଘରେ ନାହାନ୍ତି ମ, ତୁ ପୂରା ଗୋଟେ ବୋକୀ ।"

ଭିତରୁ ଚାକରାଣୀ କବାଟ ଖୋଲିଲା କ୍ଷଣି ହୁସ୍‌ହୁସ୍ ହେଇ ଭିତରକୁ ପଶିଯାଇ ଶୋଭନା ପାଟିକଲା, "ରେଣୁ ଦିଦି, ଶିଘ୍ର ବଢ଼ିଆ ଚା' କରି ଆଣିଲ, ଚାରି କପ୍ । ଆଉ ମିକ୍ସଚର, ବିସ୍କୁଟ୍ ଯାହା ଅଛି ଆଣ, ଭାରି ଭୋକ ।"

ଭିତରକୁ ଯାଇ କାବା ହେଇ ଅନେଇଚି ଫାତିମା, ଶୋଭନା ବଡ଼ପାଟିରେ ଡାକିଲା, "ତମେ ଦିହେଁ ସେଠି ଠିଆ ହେଇଚ କ'ଣ ମ । ଆସ ଶିଘ୍ର । କେତେ ପଢ଼ା ବାକି ଅଛି !"

ସୋଫା ଉପରେ ବସି ସମସ୍ତଙ୍କୁ ବହି ପତ୍ର କାଢ଼ିବାକୁ ଆଦେଶ ଦେଲା ଶୋଭନା । ଆଖି ଦେଖେଇ ଈଶାରା କଲା, ଚୁପ୍, ବେଶୀ ହସାହସି ନାହିଁ ଏବେ ।

ଚା' ପରଷୁ ପରଷୁ ରେଣୁ ପଚାରିଲା, "କ'ଣ ଟିକିଏ ଜଳଖିଆ କରିଦେବି ଦିଦି ?

ସମସ୍ତେ ଆସିଥିବେ କଲେଜରୁ, ଭୋକ ହେଉଥିବ । ଚୂଡ଼ା ଉପମା କରିଦେବି, ଶୀଘ୍ର ହେଇଯିବ ?"

ଶୋଭନା ବହି ଖାତା ଖୋଲି ପେନ୍‌ଟାଏ ଧରି ଭାରୀ ମନ ଲଗେଇ ଚାହିଁଥିଲା, ଅନ୍ୟମନସ୍କ ହେଲାଭଳି ଚା' କପ୍‌ଟା ନେଇ ରେଣୁକୁ କହିଲା, "ଦିଦି ତମେ ଯାଅ । ଆମର ବହୁତ ପଢ଼ା ଏବେ ସାରିବାକୁ ଅଛି, ପରୀକ୍ଷା ଅଳ୍ପଦିନ ରହିଲା ତ ।"

ଅନ୍ୟ ସମସ୍ତେ ବି ଶୋଭନାର ଆଜ୍ଞା ମାନି ବହି ଖାତାଟି ମାନ ଖୋଲିଦେଇ ଚା' କପ୍ ଧରିଥାନ୍ତି । ରେଣୁ ଫେରିଯାଉ ଯାଉ ପଚାରିଲା, "ତା'ହେଲେ ମୋ' ଘରକୁ ଚାଲିଯିବି ଦିଦି ? ଦରକାର ହେଲେ ବେଲ୍ ମାରିଦେବ ।"

ଶୋଭନା ଏତେବେଳକୁ ରାଜେଶକୁ ବହି ପୃଷ୍ଠାରେ କିଛି ଗୋଟାଏ ଦେଖାଇବାରେ ବ୍ୟସ୍ତ ଥିଲା, ରେଣୁକୁ କହିଲା, "ହଁ ହଁ ତମେ ଯାଅ । ମୁଁ ଡାକିବି ଦରକାର ହେଲେ ।"

ଫାତିମା ଚୁପ୍‌ଚୁପ୍ ପଚାରିଲା, "ତୁ ଏଡ଼େବଡ଼ ଘରେ ଏକୁଟିଆ ରହୁଚୁ ? ଡର ମାଡୁନି ?"

"ଆରେ ନାଇଁ ମ । ଇଏ କ'ଣ ବିଲାତ ନା ଆମେରିକା ହେଇଚି ଯେ ଏକୁଟିଆ ଛାଡ଼ିଦେବେ ମୋତେ ? ରେଣୁ ଦି'ର ଘର ତ ଆମ ପଛ କାନ୍ଥକୁ ଲାଗିଚି ।"

ପୁଣି ରେଣୁକୁ ପଛରୁ ଡାକି ଶୋଭନା ପଚାରିଲା, "ଦାଦା ଦାଦୀ କ'ଣ କରୁଚନ୍ତି ରେଣୁ ଦି ? ତାଙ୍କୁ ଟିକେ ପଚାରିଦେଇ ଆସ ।"

ରେଣୁ ହସି କହିଲା, "ଦାଦା ତ ନିଦରେ ଶୋଇଚନ୍ତି, ଚାରିଟା ଯାଏଁ ଉଠିବେନି । ଦାଦୀ ଜୀ ତାଙ୍କର ଟିଭି ଦେଖୁଚନ୍ତି । ସେଇ ସାଢ଼େ ଚାରିଟାକୁ ତାଙ୍କର ଚା' ଦରକାର ।"

ଶୋଭନା ଉଠି ତା' ପଛେ ପଛେ ଯାଉଯାଉ କହିଲା, "ହଉ ତେବେ । ଆମେ ଏଥର ପାଠ ପଢ଼ିବୁ । ସେଇ ସାଢ଼େ ଚାରିଟାକୁ ଆମର ବି ଚା' ଦରକାର ହେବ । ବାସ୍ ।"

ରେଣୁ ବାହାରିଗଲାରୁ ପଛ କବାଟ ବନ୍ଦକରିଦେଲା ଶୋଭନା, ଆଉ ବୁଲିପଡ଼ି ଦୁଇହାତ ଟେକି ଦେଇ ଖୁସିରେ ଉଛୁଳି ଡେଇଁ ଡେଇଁକା ଚାଲିଆସିଲା । ରାଜେଶ ପାଖକୁ ଲାଗି ବସିପଡ଼ି ତା' ପିଠିପାଖେ ନିଜ ବାହୁ ଘେରେଇଆଣି କହିଲା, "ବାସ୍ । ଚାଲ ଏଥର ଆମର ପାଠ ପଢ଼ିବା ।"

ରାଜେଶ ପ୍ରତ୍ୟୁତ୍ତରରେ ଦୁଇବାହୁରେ ହାଲୁକାକରି ବେଢ଼େଇନେଲା ଶୋଭନାକୁ, ପଚାରିଲା, "ଏଇଠି ପଢ଼ିବା ନା ଆଉ କୋଉଠି ?"

ଶୋଭନା ଜିଭ କାମୁଡ଼ି ଅନେଇଲା ଅନ୍ୟ ଦୁହିଙ୍କୁ, ରାଜେଶକୁ ଆଖି ଦେଖେଇ କହିଲା, "ବେଶୀ ସ୍ମାର୍ଟ ହୁଅନା । ସମସ୍ତେ ଚା' ପିଆ ସାର ଶିଘ୍ର । ତା'ପରେ ଯିବା ।"

ଫାତିମାର କିଛୁ ଡର ଭାଙ୍ଗୁନଥାଏ । ପଚାରିଲା, "ପୁଣି କୋଉଠିକି ଯିବା ?"

"ଏଇ ଭିତରକୁ, ଆମ ଗୋପନ ଆଡ୍‌ଡ଼ାକୁ ।"

ଡ୍ରଇଂରୁମ୍ ପଛପାଖେ ଡାଇନିଂ କଡ଼ଦେଇ ଉପରକୁ ଯାଇଥିବା ସିଡ଼ୀ ମୁହଁଯାଏ ନେଇ ଫାତିମା ଆଉ ମୁକ୍ତାରକୁ କହିଲା ଶୋଭନା, "ଉପରେ ବାଁ ପାଖ ରୁମ୍‌କୁ ଚାଲିଯାଅ, ସେଇଟା ମୋ' ରୁମ୍ । ଡାହାଣଟା ମମ୍ମି ଡାଡ଼ିଙ୍କର, ସେଠିକି ଯିବନି ଖବରଦାର, ତାଙ୍କ ଜାତି ଚାଲିଯିବ ।"

ଫାତିମା ତା' ହାତକୁ ଜାବୁଡ଼ି ଧରି କହିଲା, "ତୁ ବି ଚାଲ୍, ମୁଁ ଏକୁଟିଆ କେମିତି ଯିବି ?"

ଶୋଭନା କହିଲା, "ଶିଘ୍ର ଯାଆ ମ, ଚାରିଟା ଆଗରୁ ପଢ଼ାପଢ଼ି ସାରିଦେବାକୁ ହେବ, ଯେମିତି ମନେଥାଏ । ଆମେ ଏଇଠି ପଢ଼ିବୁ, ମୋ' ଷ୍ଟଡ଼ି ରୁମ୍‌ରେ ।"

ତଥାପି ଶୋଭନାର ହାତକୁ ନ ଛାଡ଼ି ଫାତିମା କହିଲା, "ତମେ ଦି'ଜଣ ତୋ' ମମ୍ମି ଡାଡ଼ିଙ୍କ ରୁମ୍‌କୁ ଚାଲିଆସୁନ ?"

"ଆରେ ନାଇଁ ରେ ବାବା, ଥାକରେ ମନ୍ଦିର ଠାକୁର ଅଛନ୍ତି, ମୋତେ ଡର ମାଡ଼ିବ ।"

ଉପରୁ ପାହାଚରୁ ମୁକ୍ତାର ଡାକିଲା ଚପା ଗଳାରେ, "ଚାଲିଆସ ଫାତିମା, ସମୟ ନଷ୍ଟ ହେଉଚି । ବହୁତ ପଢ଼ା ଅଛି ଯେ ।"

ରୁମ୍ ଭିତରକୁ ପାଦ ଦେଉଦେଉ ଭିତରକୁ ଟାଣିନେଇ କବାଟ ଦେଇଦେଇଥିଲା ମୁକ୍ତାର । ଆଜି ଆଉ ପ୍ରଥମ ଦିନ ଭଳି ପରିପାର୍ଶ୍ୱକୁ ଦେଖିବା ପରଖିବା ଭଳି ମନ ନଥିଲା ଫାତିମାର । ମୁହୂର୍ତ୍ତଟି କେବଳ ଜଳଜଳ ହେଇ ଉଭା ହେଲଚି ଆଗରେ । ଇଏ କିଭଳି କୁହୁକ ଘଡ଼ିଟିଏ ଆସି ଘେରିଯାଉଚି ଅନାହୂତ । ଆଉ କିଛି ନଭାବି ନିଜକୁ ସମର୍ପିଦେଲା ସେ ପାଖ ମଣିଷଟି ପାଖରେ । ଛାଏଁ ମିଳେଇଯିବାକୁ ଦେଲା ତା' ଦେହର ଗୋଟି ଗୋଟି ଅବୟବ ଆଉ ଗୋଟିଏ ଦେହରେ ।

# ରେଶମୀ ଗୋଲାପର ସ୍ମୃତି

ଏତେ ବର୍ଷ ପରେ ବି ସେ ସନ୍ଧ୍ୟା ସେମିତି ଅଙ୍କା ହେଇ ରହିଚି ଫାତିମାର ମନରେ । ହଳଦିଆ ସିଲ୍କ କନା ଉପରେ ଦାଉଦାଉ ନାଲି ସୂତା ଓ କାଚ ଗୋଟିର ଗୋଲାପ ଫୁଲ ଭଳି ।

ମୁକ୍ତାର ପଦେ କଥାରେ ନାକଚ କରିଦେଇଥିଲା ତା' ପ୍ରସ୍ତାବକୁ । ତା' ମୁହଁକୁ ଅନେଇରହି ଫାତିମାର ଆଖି କେତେବେଳେ ପୂରି ଉଛୁଳି ଗଲିଥିଲା । ଅନ୍ଧ ଆଖିକୁ ତା'ର ଗୋଟିଏ ବୋଲି ଛବି ଦୃଶ୍ୟ ହେଉଥିଲା ସତେ ଅବା । ମୁକ୍ତାର କେବଳ । ତାକୁ ଛାଡ଼ି ଆଉ କେଉଁଠି ହେଲେ କିଛି ବୋଲି କିଛି ରହିବାକୁ ନଥିଲା ଫାତିମାର ଜୀବନରେ ।

ମୁକ୍ତାର ନିକାହ ଚାହେଁ ନାହିଁ । ଆଜି କହୁଚି ନବାବ ମଞ୍ଜିଲ ସାଙ୍ଗେ ବି ସଂପର୍କ କାଟିଦେବାକୁ ଚାହେଁ । ସେଇଠି ଠିଆ ହେଇ ଶୁଣୁଚି ଫାତିମା, ପାଦ ଶୂନ୍ ପଡ଼ିଯାଉଚି ତା'ର ।

ମୁକ୍ତାର ତା' ମୁହଁକୁ ଚାହିଁଲା, ପ୍ରାୟ ଆଶ୍ଚର୍ଯ୍ୟରେ । ପଚାରିଲା, "ତୁ କାନ୍ଦୁଚୁ କାହିଁକି ? ମୁଁ କ'ଣ କହିଲି କି ତତେ ?"

"ତମେ ବମ୍ବେ ଚାଲିଯିବ । ମୋର କ'ଣ ହେବ ?"

ପାଖଆଖ ଲୋକଙ୍କ କଥା ଭୁଲିଯାଇ ମୁକ୍ତାର ହାତ ବଢ଼େଇଦେଲା ଫାତିମାର କାନ୍ଧ ଉପରକୁ । ତା' ବାହୁ ଉପରେ ମୁହଁ ରଖି କୋହର ହାବୁକା ଭିତରୁ ଫାତିମା ପଚାରିଲା, "ମୋ କଥା ଟିକେହେଲେ ଭାବୁନ କି ମୁକ୍ତାର ?"

"ଆରେ କି ପାଗଳ ଝିଅ ତୁ, ତୋତେ ଛାଡ଼ି ମୁଁ କୁଆଡ଼େ ଯିବି ଫାତିମା ? ତୁ ପରା ମୋ' ସାଥିରେ ଯିବୁ ।

"ପାର୍କର ଘାସଉପରେ ମୁକ୍ତାର ପାଖକୁ ଘୁଞ୍ଚିଆସିଲା ଫାତିମା, ପ୍ରଥମ କରି ଆଖପାଖ ଲୋକଙ୍କୁ ଖାତିର ନଥିଲା ତା'ର । ପଚାରିଲା, "ସଫା କଥା କହ ମତେ । କ'ଣ ଭାବିଚ ଆମ

ବିଷୟରେ ? ମୋ' ବିଷୟରେ ?"

"ଆମେ ବମ୍ବେ ଯିବା । ତୁ ଆଉ ମୁଁ । ହେଲା ?"

ପ୍ରଥମ କରି ରାଗ ଭଳି କିଛିଗୋଟାଏ ଫୁଟିଲା ଫାତିମାର ସ୍ୱରରେ ।

"କେମିତି ଯିବି ମୁଁ ? ତମେ ଖାଲି କହିଦେଲେ ଚାଲିଯିବି ? ଆମ ଘରେ ମୋତେ ଯିବାକୁ ଦେବେ ? ନିକାହ କେବେ ହେବ କହୁନା ପରିଷ୍କାର ?"

ମୁଣ୍ଡରେ ହାତ ଦେଲା ମୁକ୍ତାର, କି ବୁଦ୍ଧି କରିବ ଜାଣିପାରୁନି ସତେକି । "ନିକାହ ହେବ ମୋ' ଜାନ୍, ନିକାହ ଆମର ହେଇ ସାରିଚି । ସବୁ ଭୁଲିଯାଇଚୁ କି ତୁ ? ନିକାହ ହେବା କ'ଣ ବାକି ଅଛି ?"

"ହଁ, ବାକି ଅଛି । ସେମିତି ଖାଲି ଲୁଚାଛପାରେ ମିଶିଗଲେ କ'ଣ ନିକାହ ହେଇଯାଏ ?"

"ଆଉ କେମିତି ହୁଏ ମୋତେ ବୁଝାଇ ଦେଲୁ । ଏଡ଼େ ଧର୍ମ ବିଶ୍ୱାସୀ ତୁ କେବେଠୁଁ ହେଲୁଣି ? କେତେଥର ପଢୁ ନମାଜ ଦିନରେ ?"

"ସେକଥା ଛାଡ଼ । ମୋ' ଅମ୍ମି ଆଉ ଅବ୍ବୁ ଯୋଉଦିନ ମତେ ବାହା କରେଇଦେବେ, କାଜି ଆଗରେ ଦିହେଁ ମିଶି ନିକାହ କବୁଲ କରିବା, ସେଦିନ ମୁଁ ତମ ସାଙ୍ଗରେ ଯିବି, ତା' ଆଗରୁ ନୁହେଁ ।"

ମୁକ୍ତାରର ଆଖି ନଇଁଗଲା ଘାସ ଉପରକୁ, ମୁହଁର ହସ ଫିକା ପଡ଼ିଗଲା । ଫାତିମାର ଲୁହ ଶୁଖିଯାଇଥିଲା । ନିଜ ଦେହକୁ ଘୁଞ୍ଚାଇନେଇ ପଚାରିଲା, "ସତ କରି କହ । ନିକାହ କରିବନି ମୋ' ସାଙ୍ଗେ, ଏଇଆ ତ ?"

ପ୍ରଥମକରି ମୁକ୍ତାରକୁ ଏଡ଼େ ଜୋର୍ ଭୁରୁ କୁଞ୍ଚେଇବାର ଦେଖିଲା ଫାତିମା । ଶୁଣିଲା ତା'ର ଟିକିଏ ଅଲଗା ଭଳି ଶୁଭୁଥିବା ସ୍ୱର, "ଏବେ ମୁଁ କେମିତି ବିବାହ କରିବି ? ଟିକେ ଭାବି ଦେଖିଲୁ । ମୋର ପାଖେ ଅଛି କ'ଣ ? ତୋ' ବାପା ମା'ଙ୍କୁ ତୋ' ହାତ ମାଗିବି କୋଉ ମୁହଁରେ ? ରାଜି ହେବେ ସେମାନେ ? ରାଜିହେଲେ ମୁଁ ବି ରାଜି ।"

ଫାତିମା ଚୁପ୍ ହେଲା । ତା' କୋହ ମରିଯାଇଥିଲା । ମୁଣ୍ଡ ହଲେଇ ନାହିଁ କଲା ସେ, ନା । ସେମାନେ ରାଜି ହେବେନି ।

ଘାସ ଧାରେ ଲେଖାଁ ଟିକି ଟିକ୍ କରି ଛିଡ଼ାଉ ଛିଡ଼ାଉ କେତେବେଳର ଚୁପ୍ କାଟି ଫାତିମା କହିଲା, "ମୁଁ ଯଦି ଯାଏ ତମ ସାଙ୍ଗେ, ରହିବା କୋଉଠି, ଖାଇବା କ'ଣ ? "ମୁହଁ ପୋତି ମୁକ୍ତାର କହିଲା, "ଭାବିନି ।"

ପୁଣି କେତେବେଳକେ କହିଲା, "ଏବେ ତୁ ନଗଲେ ? ତୁ ଘରେ ରହି ପଢ଼୍ ଏବେ, ବିଏ ପାସ୍ କର । ମୁଁ ତେଣେ କାମରେ ଲାଗିବି, ବମ୍ବେରେ ରହି ଷ୍ଟ୍ରଗଲ୍ କଲେ କିଛି ନା କିଛି

ମିଳିଯିବ ନିଶ୍ଚୟ ।"

ପୁଣିଥରେ ମୁକ୍ତାରର ଦେହକୁ ଲାଗି ଅତର୍କିତ କୋହରେ ଭାଙ୍ଗିପଡ଼ିଲା ଫାତିମା । "କିଛି ହେବ ନାହିଁ ସେସବୁ । ମୁଁ ତମ ସାଙ୍ଗରେ ଯିବି । ମୋତେ ନେଇଯାଅ ମୁକ୍ତାର ।"

ସେଦିନ ଦିହେଁ ବାଟ ଭାଙ୍ଗି ଯିବା ଆଗରୁ ମୁକ୍ତାର କଥା ଦେଇଥିଲା ।

"ହଉ ହେଲା । ମୁଁ ଏକୁଟିଆ ଯିବି ନାହିଁ । ଗଲେ ଆମେ ଏକାଠି ଯିବା ବସ୍ନେ, ହେଲା ତ ?"

ସେ ଦିନମାନଙ୍କରେ ଫାତିମା ମୁଣ୍ଡରେ ସର୍ବୋପରି ଥାଏ ଗୋଟିଏ କଥା । ଯେ କେବଳ ବସ୍ନେ ହିଁ ସର୍ବପ୍ରଧାନ ମୁକ୍ତାରର ଜୀବନରେ । ବସ୍ନେ ସାଙ୍ଗେ ଯୋଡ଼ି ହେଇ ରହିଲେ ହୁଏତ ରହିବ ଫାତିମା । କିନ୍ତୁ ବସ୍ନେକୁ ଛାଡ଼ି ଫାତିମା ନୁହେଁ ।

ରାତିରେ ଆଖିପତା ତଳେ ଯେବେ ପୁଣି ସେ ଅସଜଡ଼ା ଘର ଆସି ତାକୁ ଚାରିପାଖରୁ ଘେରିପକାଏ, ମୁକ୍ତାର ଥାଏ, କିନ୍ତୁ ଅତି ପାଖକେ ଅନେଇଥାଏ କେଉଁ ଅନ୍ଧାରୁଆ ଗହୀର ଖାଇଟିଏ । ଦେହର ସେଇ ପୁରୁଣା ଚିହ୍ନା ଇଚ୍ଛା ନୁହେଁ, କେବେ କାଳେ ଜାଣିନଥିବା ଏକ କଳା ଭୟ ଆବୋରି ପକାଏ ତାକୁ ।

# ପୁନେଇଁ ରାତିରେ ଉଭା ରାଣୀ

ଫାତିମାର କାହାଣୀ ଲେଖାହେଲା ବେଳେ ତା' ସଙ୍ଗେ ଆହୁରି ଅନେକ ଅନେକ ସ୍ମୃତି ଆପେ ଟାଣିହେଇ ଆସେ । ସେଇ ସହରର ସ୍ମୃତି, ମୋର ରହଣୀର, ସାଙ୍ଗ ସାଥୀଙ୍କର, ପାଣି ପବନର ଓ ତାଙ୍କ ସାଙ୍ଗେ ମୋ' ଜୀବନ ଭିତରକୁ ଚହଲି ଆସିଥିବା ଆହୁରି ଅନେକ କାହାଣୀମାନଙ୍କର । ଲକ୍ଷ୍ମୀବାଈ କଲେଜକୁ ମୋର ଆସିବା ସେତେବେଳେ ତିନି ଚାରିବର୍ଷରୁ ବେଶୀ ହେଇନଥିବ । କଲେଜରୁ ପିକ୍‌ନିକ୍ ଯାଇଥିଲୁ ଇସ୍‌ଲାମନଗର । ବୋଧେ କ୍ଳାସ୍ ପିକ୍‌ନିକ୍ ଥିଲା ନା ଡିପାର୍ଟମେଣ୍ଟ ଅନୁଯାୟୀ ଝିଅ ଦଳ ହେଇଥିଲେ ସ୍ପଷ୍ଟ କରି ମନେପଡୁନି । ତେବେ ବସ୍ କରି ଯାଇଥାଉ ଗୋଟିଏ ସୁନ୍ଦର ଶୀତ ସକାଳରେ । ବାଟଯାକ ଯେଉଁ କେତେଜଣ ସିନେମା ଗୀତ ନାଚର ଧୂମ୍ ଉଡ଼େଇ ଯାଇଥିଲେ, ତାଙ୍କ ଭିତରେ ଫାତିମାକୁ ମୋର ମନେଅଛି । ଭୋପାଳରୁ କିଛି ଦୂରରେ ପୁରୁଣା ଗୋଟିଏ ଗଡ଼ ଥିଲା, ଅସଲରେ ଭୋପାଳର ମୂଳ ରାଜଧାନୀ । ଏବେ ଛୋଟିଆ ଗାଁଟିଏ, ତହସିଲ ଅଫିସ ଅଛି ।

ଆମେ ଯାଇଥିଲାବେଳେ ଇସଲାମନଗର ଆଜି ଭଳି ଟୁରିଷ୍ଟ ଜାଗା ଭାବେ ଗଣାଯାଉନଥାଏ, କି କିଲାର ହେପାଜତ୍ ନିଆଯାଉନଥାଏ । ଭୋପାଳରୁ ପ୍ରାୟ ପନ୍ଦର କିଲୋମିଟର ଦୂର ବାଟ ଯିବାଲାଗି ସେତେ ଭଲ ପକ୍କା ରାସ୍ତା ବି ହେଇନଥାଏ । ପହଞ୍ଚିବାର କିଛି ସମୟ ଆଗରୁ ଦୂରରୁ ବାରି ହୁଏ ଗୋଟିଏ ସାନ ଆକାରର କିଲା । ଅବହେଳିତ, ପରିତ୍ୟକ୍ତ କୋଠାମାଳ ଖଣ୍ଡେ ଦୂରରୁ ଅଧା ଭଙ୍ଗା କାନ୍ଥଘେର ଭିତରୁ ଦିଶୁଥାଏ । ଏ ଦୁର୍ଗ କାଳେ ଅଢ଼େଇଶ ତିନିଶ ବର୍ଷ ତଳେ ତିଆରି କରିଥିଲେ ଦୋସ୍ତ ମହମ୍ମଦ ଖାଁ, ଭୋପାଳ-ଇତିହାସର ପ୍ରତି ଛତ୍ରରେ ଜଡ଼ିତ ଯାହାଙ୍କ କୀର୍ତ୍ତି ବା ଅପକୀର୍ତ୍ତି ରାଜି । ପ୍ରକୃତ ଗଡ଼ଟି ଥିଲା ଆଉରି କେଇଶହ ବର୍ଷ ପୁରୁଣା । ଅଷ୍ଟାଦଶ ଶତାବ୍ଦୀରେ କେବଳ ମରାମତି ହେଇ କିଛି ଅଂଶ ନୂଆ ତିଆରି ହେଇଥିଲା । ଜଗଦୀଶପୁରରୁ ନାଁ ବଦଳାଇ ଯେଉଁ ଦୋସ୍ତ ମହମ୍ମଦ ଇସ୍‌ଲାମନଗର ରଖିଲେ, ସିଏ ନିଜେ ମାତ୍ର କିଛି ବର୍ଷର ରାଜୁତି ପରେ ନୂତନ ଶାସକଙ୍କ ଦ୍ୱାରା ନିଯୁକ୍ତ ହେଲେ ଗଡ଼ର ରକ୍ଷକ, କିଲେଦାର ଭାବେ । ଗଡ଼ର ଅସଲ ନିର୍ମାତା ଥିଲେ ଜଣେ ବିସ୍ମୃତ ଗୋଣ୍ଡ ଜାତିର ରାଜା । ଅପର ମତରେ ନିର୍ମାତା ଜଣେ ଦୂରଦର୍ଶୀ ରାଜପୁତ ।

ସରୁ ନଈଟିଏ ଉପରେ କୋଉ କାଳର ପୁରୁଣା ପୋଲ ପାରିହେଇ ଯିବାକୁ ହୁଏ । ପହଞ୍ଚୁ ପହଞ୍ଚୁ ଲାଗେ ଏ ଜାଗାଟା କେମିତି ଅଲଗା ଧରଣର, ଅନ୍ୟ ପଢ଼ିଥିବା ଦେଖିଥିବା ଐତିହାସିକ ଜାଗା ଭଳି ନୁହେଁ । ନଈଟିର ଦୁଇକୂଳ ଯାକ ପଥର ବନ୍ଧ, ଜାଗା ଜାଗାରେ

ଭୁଷୁଡ଼ି ପଡ଼ିଚି । ଶୁଣିଲି, ଏଇ ହେଉଛି ସୁବିଖ୍ୟାତ ଭୋଜରାଜାଙ୍କ ତିଆରି ବନ୍ଧ, ପ୍ରାୟ ହଜାରେ ବର୍ଷ ତଳେ ନିର୍ମିତ । କେତେଗୁଡ଼ିଏ ନଈ ନାଳରେ ପଥର ଯୋଡ଼େଇ ବନ୍ଧ ବନ୍ଧାଯାଇ ତିଆରି ହେଇଥିଲା ଭୋପାଳର ବଡ଼ା ତାଲ୍ । ପ୍ରକୃତ ନାଆଁ ଥିଲା ଭୋଜ-ତାଲ୍, ସେଥିରୁ ହେଲା ଭୋପାଲ । ସଂସ୍କୃତ ଅଧ୍ୟାପିକା ମଧୁ ଭଟ୍ଟ କିନ୍ତୁ କହିଲେ, ନାଇଁ ମ, ଭୂ-ପାଳରୁ ହେଲା ଭୋପାଲ ।

ପୋଲ ପାରି ହେଲାପରେ ଆଉ ଭଲ ରାସ୍ତା ନଥାଏ । ବସ୍‌ରୁ ଓହ୍ଲେଇ ଜିନିଷ ପତ୍ର ସବୁ ଟେକାଟେକି କରି ନିଆଗଲା ଗଡ଼ ଭିତରକୁ । କିଛିଦୂରରୁ ମୁଣ୍ଡରେ ପଗଡ଼ି ଭିଡ଼ୁ ଭିଡ଼ୁ ଆସିଲା ଗାଁ ଲୋକଟିଏ, ହସହସ ମୁହଁରେ କହିଲା ସେ ପାଣି ଇତ୍ୟାଦି ଅଣାଅଣିରେ ସାହାଯ୍ୟ କରିବାକୁ ପ୍ରସ୍ତୁତ, ଆଉ ଗାଇଡ଼ ଭାବେ ସ୍ଥାନୀୟ ଇତିହାସ ବଖାଣିବା ଲାଗି ବି । ତା' ସାଙ୍ଗେ ଦରଦାମ୍ ନକରୁଣୁ ଆମ ସାଙ୍ଗେ ଯାଇଥିବା ବନଓ୍ୱାରୀ ପିଅନ କହିଲା ତାକୁ ଏଠାକାର ସବୁ ଇତିହାସ, ସବୁ କାହାଣୀ ଜଣା । ଗାଇଡ୍ ଲୋଡ଼ାନାହିଁ, କେବଳ କାମରେ ଟିକେ ସାହାଯ୍ୟ କଲେ ଯଥେଷ୍ଟ । ଯାହେଉ ଲୋକଟି ପାଖ ଟିଉବ୍ ୱେଲ୍‌ରୁ ପାଣି, ରୋଷେଇ ଲାଗି କାଠ ଓ ଗୋବର ଘଷି ଆଦି ଯୋଗାଡ଼ କରିଦେଲା । ସମସ୍ତଙ୍କ ପ୍ରଶ୍ନର ଉତ୍ତର ଦେଇ, ନାନାଦି ସନ୍ଦେହ ମୋଚନ କରି ଗାଇଡ଼ର କାମ ବି କଲା ।

ଏ ନଦୀର ଅସଲ ନାଁ ହେଲା ଥାଳ ନଦୀ । ଚିରସ୍ରୋତା ଏ ନଈଟିର ଦୂରଦୂରାନ୍ତ ଯାଏଁ ଶସ୍ୟ କ୍ଷେତ୍ରର ଇଏ ଥିଲା ଥାଳ । ପୂର୍ବେ ଏ ଅଞ୍ଚଳର ନଈ ନାଳ ସବୁ ଖରାଦିନ ନ ଆସୁଣୁ ଶୁଖିଯାଏ । ପ୍ରଜାମାନଙ୍କ କୃଷିକର୍ମ ପାଇଁ ବର୍ଷସାରା ପାଣି ଯୋଗାଇଦେବା ଲାଗି ଏଇ ବନ୍ଧର ପରିକଳ୍ପନା କରିଥିଲେ ଏକାଦଶ ଶତାବ୍ଦୀର ବିଖ୍ୟାତ, ପ୍ରଜାପାଳକ ରାଜା ଭୋଜ । ତେବେ ଅନ୍ୟ ଏକ କାହାଣୀ କୁହେ ଯେ ରାଜା ଭୋଜଙ୍କର ଗୋଟିଏ ଅସାଧ୍ୟ ଚର୍ମରୋଗ ହେଇଥିଲା । ରାଜବୈଦ୍ୟ କହିଲେ ତିନିଶହ ପଇଁଷଠି ଗୋଟି ବିଭିନ୍ନ ଉତ୍ସର ପାଣିକୁ ମିଶେଇ ଯଦି ରାଜା ପ୍ରତିଦିନ ବଡ଼ି ଭୋରୁ ସ୍ନାନ କରିବେ ଏ ରୋଗ ଭଲ ହେବ । ଇଏ ବି ଦୁଃସାଧ୍ୟ କାମ । ଏତେଗୁଡ଼ିଏ ପାଣିଥିବା ଜାଗାର ଠିକଣା ଅବା ମିଳିଗଲା, ସେଥିରୁ ପ୍ରତିଦିନ ମାଠିଆଏଁ ଲେଖା ପାଣି ସଂଗ୍ରହ କରି କେମିତି ଅଣାଯିବ ? ହେଲେ ରାଜମହଲର ବାସ୍ତୁବିଦ୍ ଥିଲେ ବୁଦ୍ଧିମାନ । ଆଖପାଖର ପାର୍ବତ୍ୟ ଅଞ୍ଚଳ ଯାକ ଦେଇ ବହୁଥାଏ ଅଗଣିତ ଜଳଧାରା । ସବୁ ଜଳ ସ୍ରୋତମାନଙ୍କୁ ବାନ୍ଧି, ଖୋଲି, ଯୋଡ଼ାଯୋଡ଼ି କରି ସେ ଗୋଟିଏ ବନ୍ଧରେ ମିଶେଇବାର ଯୋଜନା କଲେ । କୌଣସି ପ୍ରକାରେ ଅଞ୍ଚଳ ଯାକର ନଈ, ନାଳ, କୂପ, ଝର, ତଟିନୀ, ତଡ଼ାଗର ଖବର ନିଆଯାଇ ତିନିଶହ ଚଉଷଠି ହେଲା । ତେବେ ଜଳ ସ୍ରୋତ ତଥାପି ଗୋଟିଏ କମ୍ ପଡ଼ୁଛି । ରାଜପୁରୋହିତ ଏଥର ସନ୍ଦେଶ ଦେଲେ ଯେ ଏଇଠି ମାଟିତଳେ ଗୋଟିଏ

ଅନ୍ତଃସଲୀଳା ନଦୀ ବି ଅଛି । ଶେଷରେ ତିନିଶହ ପଇଁଷଠି ସ୍ରୋତର ଜଳକୁ ମିଶାଇବାର ଯୋଜନା ହେଲା । ନଈ ମୁହଁସବୁରେ ବନ୍ଧ ଦିଆଗଲା । ପାହାଡ଼ ମାନଙ୍କ ମଝାମଝି ପାଣି ଜମାହେବା ଲାଗି ବିସ୍ତୃତ ଜାଗା ନିର୍ଦ୍ଦିଷ୍ଟ ହେଲା । ତଳ ପାଖ ନଈକୂଳ ମାନ ଉପର ପାହାଡ଼ ଯାକେ ପଥରରେ ବନ୍ଧାଗଲା ଭୁଷୁଡ଼ି ନ ଯିବ ବୋଲି । ସୃଷ୍ଟି କରାଗଲା ଭୋପାଳର ବିରାଟ ହ୍ରଦ । ରାଜା ପ୍ରତିଦିନ ସେ ଜଳରେ ସ୍ନାନ କରି ବ୍ୟାଧିମୁକ୍ତ ହେଲେ । ତା' ସହିତ ରହୁଁ ରହୁଁ ସମଗ୍ର ଅଞ୍ଚଳ ଶସ୍ୟ ଶ୍ୟାମଳ ହୋଇ ଉଠିଲା । ସାନ ବଡ଼ ପାହାଡ଼ ମାନଙ୍କୁ କାନ୍ଥ କରି ମଝି ଉପତ୍ୟକା ସବୁକୁ ବ୍ୟାପିଯାଇଥିବା ବିରାଟ ହ୍ରଦଟିକୁ ଘେରି ଗଢ଼ିଉଠିଲା ଅସଂଖ୍ୟ ଗାଁ ଗଣ୍ଡା, ଜନବସତି । ପାହାଡ଼ ମାନ ଆହୁରି ଘଞ୍ଚ ବନାନୀରେ ଭରିଗଲେ ।

କହିବା ବାହୁଲ୍ୟ, ଏ ଅଞ୍ଚଳ ଉପରେ ପୂରାପୂରି ନିର୍ଭରଯୋଗ୍ୟ ତଥ୍ୟ ସମ୍ବଳିତ କୌଣସି ଇତିହାସ ବହି ସମ୍ଭବତଃ ବଜାରରେ ନଥିଲା ସେତେବେଳେ । ପ୍ରତିଟି ବିଷୟ ପଛରେ ଏକାଧିକ କାହାଣୀ, କିଛି ଗାଇଡ଼ କହୁଥାଏ, ଆଉ କିଛି ଆମ ଦଳ ଭିତରୁ କାହା କାହା ମୁହଁରୁ ଆସୁଥାଏ । ପାଚେରୀ ଘେରା ବିରାଟ ଅଗଣାମାନଙ୍କ ଭିତରେ ଥିବା ଧାଡ଼ି ଧାଡ଼ି ପଥର କୋଠାମାନ । ପ୍ରଶସ୍ତ ବାରଣ୍ଡା ପଛକୁ ଖୋଲା କବାଟ ଝରକା, ଶୂନଶାନ କୋଠରୀମାନ । କଥା ନମାନି ଏଣେତେଣେ ଖେଦିଯାଉଥାନ୍ତି ଝିଆମାନେ । ହାତେ ଉଞ୍ଚ ପାହାଚ ମାନ ଦେଇ କେବେ ଛାତ ଉପରକୁ ତ କେବେ ମାଟି ତଳ ଅନ୍ଧାରୁଆ କୋଠରୀ ମାନଙ୍କୁ ଗଳିଯାଉଥାନ୍ତି । ଆଗରେ ପଛରେ ସବୁ ଅଧ୍ୟାପିକା, ତାଙ୍କ ପିଲା କେତେକେ ବି । ଏ ଶୃଙ୍ଖଳା ମଝି ପଢ଼ିଆ ମାନଙ୍କରେ ଦିନେ ସୁଶୋଭିତ ବଗିଚା ଥିବ ନିଶ୍ଚୟ । ତିଆରି ଶୈଳୀରେ ସେଭଳି କିଛି ବିଶେଷତ୍ୱ ଦେଖାଯାଉନାହିଁ ସାଧାରଣ ଆଖିକୁ । ଗାଇଡ଼ କହୁଚି ଭିନ୍ନ ଭିନ୍ନ ଜାଗାର ମହତ୍ତ୍ୱ, ବିଶେଷତ୍ୱ, ଉପଯୋଗୀତା ।

ଆଜିର ଭୋପାଲ ନଗରୀର ପ୍ରତିଷ୍ଠାତା ଥିଲେ ଦୋସ୍ତ ମହମ୍ମଦ ଖାଁ, ଅଷ୍ଟାଦଶ ଶତାବ୍ଦୀର ଆରମ୍ଭରେ ଆସିଥିବା ଜଣେ ଦୁର୍ଦ୍ଧର୍ଷ ଆଫଗାନ୍ ଯୋଦ୍ଧା ଯିଏ ମୋଗଲ ସମ୍ରାଟ ଆଉରଙ୍ଗଜେବଙ୍କ ପ୍ରିୟଭାଜନ ହୋଇପାରିଥିଲେ ଓ ମୋଗଲ ସାମ୍ରାଜ୍ୟର ପତନ କାଳର ଅରାଜକତାର ସୁଯୋଗ ନେଇ ଭୋପାଲ ସାମ୍ରାଜ୍ୟର ଅଧିକାରୀ ହେଲେ ।

ଇତିହାସ ନାଁରେ କାହାଣୀ କିମ୍ବଦନ୍ତୀ ହିଁ ବୋଧେ ଆମ ମନକୁ ପାଏ ବେଶୀ । ସେଦିନ ଶୁଣିଥିବା କାହାଣୀ ସବୁ ମୋ' ମନରେ ଏଡ଼େ ସ୍ୱଷ୍ଟ ହେଇ ରହିଥାଆନ୍ତା କି ନାହିଁ କେଜାଣି, ଯଦି ସେଦିନ ଦୋସ୍ତ ମହମ୍ମଦଙ୍କୁ ନେଇ କେତେଜଣଙ୍କ ଭିତରେ ଯୁକ୍ତିତର୍କ ବଚସା ଯାଏ କଥା ଯାଇ ନଥାନ୍ତା । ପୁଣି ସେଯାଏଁ ଚୁପ୍ ହୋଇ ବସିଥିବା ଫାତିମା ସେ କାହାଣୀକୁ ଦେଇନଥାନ୍ତା ନୂଆ ମୋଡ଼ଟିଏ, ଯେଉଁ କଥାକୁ ଅନ୍ତତଃ ସେଠି କେହି କାଟିବାର ଉପାୟ

ନଥିଲା ।

ରାଣୀ କମଳବତୀ ହିଁ ଏ ଛୋଟିଆ ରାଜ୍ୟଟିର ଶାସକ ଥିଲେ, ରାଜ୍ୟର ଅଧିବାସୀ ସମେତ ରାଜପରିବାର ଥିଲେ ଆଦିବାସୀ ଗୋଣ୍ଡ ସମ୍ପ୍ରଦାୟର । ପାଖଆଖର ଭିଲ୍, ରାଜପୁତ ତଥା ମରାଠା ରାଜା ଓ ଜମିଦାର ମାନଙ୍କର ଏ ସମ୍ପନ୍ନ ରାଜ୍ୟଟି ଉପରେ ଲୋଭ, ଶତ୍ରୁତା ଓ ଷଡ଼ଯନ୍ତ୍ରରେ ଅତିଷ୍ଠ ହୋଇ ରାଣୀ ଦୋସ୍ତ ମହମ୍ମଦଙ୍କ ସାହାଯ୍ୟ ଭିକ୍ଷା କଲେ । ସେତେବେଳର ଅସୁରକ୍ଷିତ ଅଶାନ୍ତ ରାଜନୈତିକ ପରିବେଶରେ ସମଗ୍ର ଉତ୍ତର ଭାରତରେ ନିଜ ଶକ୍ତି ଅନୁଯାୟୀ ଯିଏ ଯେମିତି ପାରିଲା ଛୋଟ ବଡ଼ ଭୂଖଣ୍ଡ ଅଧିକାର କରିବାରେ ଲାଗିଥିଲେ । ଚାରିଆଡ଼େ ଥିଲା ଦୁରଭିସନ୍ଧି, ପ୍ରତାରଣା ଓ ରକ୍ତପାତର ଆବହାଓ୍ୱା । ସତନ୍ତ୍ର ଅଶ୍ୱାରୋହୀ ଦଳଟିଏ ନେଇ ଦୋସ୍ତ ମହମ୍ମଦ ଖାଁ ସେତେବେଳେ ଯାବତ୍ ଯୁଦ୍ଧବିଦ୍ୟାରେ ପାରଙ୍ଗତ ସଶସ୍ତ୍ର ସୈନ୍ୟବଳଙ୍କୁ ଯୋଗାଇ ଦେଉଥିଲେ ଭଡ଼ାରେ । ଛୋଟ ଛୋଟ ରାଜା, ଜମିଦାରୀମାନଙ୍କ ଭିତରେ ରାଜୁତି ଲାଗି ଚାଲିଥିବା ଦଳାଚକଟାରେ ଜଣକ ପକ୍ଷ ନେଇ ସେ ଅପର ପକ୍ଷକୁ ଧୂଳିସାତ୍ କରୁଥିଲେ ନିଶ୍ଚିତ ଅର୍ଥ ବିନିମୟରେ । ଗୋଟିଏ ପକ୍ଷ କହନ୍ତି ଯେ ଜଣେ ପ୍ରତିଯୋଗୀ ରାଜପୁତ ଶାସକ ଷଡ଼ଯନ୍ତ୍ର କରି କମଳବତୀଙ୍କ ସ୍ୱାମୀଙ୍କୁ ହତ୍ୟା କରିଥିଲେ । ତରୁଣୀ ରାଣୀ ଭାଙ୍ଗି ନ ପଡ଼ି ହାତକୁ ଶାସନ ଟୋରି ନେଇଥିଲେ । ନିଜ ବିଚକ୍ଷଣ ବୁଦ୍ଧି ଓ ପ୍ରଜାବତ୍ସଳତା ଯୋଗୁଁ ସେ ଅଳ୍ପଦିନକେ ଜୀବନ୍ତ କିମ୍ବଦନ୍ତୀ ପାଲଟି ଯାଇଥିଲେ । ତଥାପି ସ୍ୱାମୀଙ୍କ ହତ୍ୟାର ପ୍ରତିଶୋଧ-ଲିପ୍‌ସା ଓ ପଡ଼ୋଶୀ ରାଜାମାନଙ୍କ ଶତ୍ରୁତା ତାଙ୍କୁ ଶାନ୍ତିରେ ରହିବାକୁ ଦେଲାନାହିଁ । ସେହି ଅଜ୍ଞାତକୁଳଶୀଳ ଦୁର୍ଦ୍ଧାନ୍ତ ବିଦେଶୀର ସାହାଯ୍ୟ ନେବାର ଦୁଃସାହସ କରିଥିଲେ ସେ ଶେଷରେ । ପ୍ରତିଦାନରେ ରାଜ୍ୟର ଖଜଣାଖାନାର ସମ୍ପତ୍ତି ପ୍ରାୟ ଖାଲିକରିଦେଇଥିଲେ । ତଥାପି ନିଜ ରାଜ୍ୟକୁ ଶେଷପର୍ଯ୍ୟନ୍ତ ହାତରେ ରଖିପାରିନଥିଲେ ।

କମଳବତୀଙ୍କ ହାତରୁ ରାଜ୍ୟ ହସ୍ତାନ୍ତର ହେବା ପୂର୍ବରୁ କେଉଁ ସବୁ ଘଟଣା ଘଟିଥିଲା, ଲୋକମୁଖରେ ତା'ର ଭିନ୍ନ ଭିନ୍ନ ବର୍ଣ୍ଣନା ଅଛି । ଦୋସ୍ତଙ୍କୁ ରାଣୀ କମଳବତୀ କେବଳ ବନ୍ଧୁ ନୁହେଁ, ଭାଇ ଭାବେ ସ୍ୱୀକାର କରିଥିଲେ, ହାତରେ ରାକ୍ଷୀ ବାନ୍ଧିଥିଲେ । ଓ ତାଙ୍କରି ସୁରକ୍ଷାରେ ରାଜ୍ୟ ଶାସନ କରି ମୃତ୍ୟୁ ପରେ ଦୋସ୍ତଙ୍କୁ ହିଁ ରାଜ୍ୟର ଅଧିକାର ଦେଇ ଗଲେ । ଆରେକ ପକ୍ଷ କହେ, ଦୋସ୍ତ ମହମ୍ମଦ କମଳବତୀଙ୍କ ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇ ବିବାହ ପ୍ରସ୍ତାବ ଦେଇଥିଲେ । ଓ ପ୍ରତ୍ୟାଖ୍ୟାନର ଅପମାନ ସହି ନପାରି ରାଜ୍ୟ ଉପରେ ଆକ୍ରମଣ କରିଥିଲେ । ବିଶ୍ୱାସଭଙ୍ଗ ସହ ପରାଜୟର ଗ୍ଲାନିରେ ରାଣୀ କମଳବତୀ ଆତ୍ମହତ୍ୟା କରିଥିଲେ ।

କେବଳ ସେଦିନର ନୁହେଁ, କେତେ ଆଉ କେତେ କାହାଣୀ ଚାଲିଆସି ମନରେ ରହିଯାଏ । ପିକ୍‌ନିକ୍ ଦିନର କଥା ବି ଆଉ ଟିକିନିଖି କରି ନୁହେଁ, ଖଣ୍ଡିଏ ଟେନାଏଁ ଲେଖାଁ

ହୋଇ ମନେଅଛି । ଗଡ଼ର ପଛପାଖ ପଡ଼ିଆର ମହୁଲ ଗଛ ତଳେ ଚୁଲି ଜଳାଯାଇଥାଏ । ଡାଲି-ବାଫ୍‌ଲା-ବାଇଗଣ ଭର୍ତ୍ତା ତିଆରିରେ ମାତିଥାନ୍ତି ଥୋକେ । ଯା ସାଙ୍ଗରେ ଖିଆଯାଏ ଚୁନିଚୁନି କଟା ସାଲାଡ୍, ଆଉ ଚୁର୍‌ମା ଲଡୁ । ପ୍ରାୟ ସବୁକିଛି ଘିଅ ସରସର । ମାଲୱା ଅଞ୍ଚଳରେ ଶୀତ ଦିନର ପ୍ରିୟ ବ୍ୟଞ୍ଜନ । ମୋର ଭାତଖିଆ ପାଟିକୁ ଏ ମଧ୍ୟାହ୍ନ ଭୋଜନ ରୁଚିକର ଲାଗିବାଲାଗି ଆହୁରି ଅନେକ ବର୍ଷ ଲାଗିଥିଲା ଅବଶ୍ୟ ।

ଆଉ ଥୋକେ ଯାଇ ଜୁଟିଛନ୍ତି କଡ଼ିକିଆ ଅସମାନ ଭୂଜଥିବା ଅଗଣାଟିରେ, କିଛି ଗୋଟାଏ କାମ ଚାଲିଛି ସେଠି । ଦୂରରୁ ମୋତେ ମଧୁ ଭଙ୍ଗ ଡାକିଲେ ହାତ ହଲେଇ, "ଆସ ଆସ ମିଶ୍ର ମାଡ଼ାମ୍, କେଡ଼େ ସୁନ୍ଦର ଚିତ୍ରକାରୀ ଚାଲିଚି ଏଠି, ଦେଖିବ ଆସି" । ଚିତ୍ର ଅଙ୍କା ଚାଲିଥାଏ । ଗଛ ତଳଯାକ ବିଛେଇ ହୋଇ ବସିଛନ୍ତି ଦଶ ବାର ଜଣ କିଶୋର । ଗାଉଁଲି ବେଶଭୂଷା । ସମସ୍ତଙ୍କ ପାଖେ କାଗଜ ଆଉ ରଙ୍ଗ । ଆଙ୍କିବାର ଧରଣ ଅନନ୍ୟ । ଛବିମାନ ତୁଳୀର ଗାରରେ ନୁହେଁ, ଟୋପି ଟୋପି କରି ଉଜ୍ଜ୍ୱଳ ରଙ୍ଗସବୁର ଧାଡ଼ିଧାଡ଼ି ସ୍ରୋତରେ ତିଆରି । ଧାଡ଼ିମାନ ମୋଡ଼ିହୋଇ ଅଙ୍କେଇ ବଙ୍କେଇ ପରିଣତ ହେଉଛି ହରିଣରେ, ପାହାଡ଼ରେ, ଗଛବୃଛରେ, ପ୍ରକୃତିର ନାନା ଭାବର ବିଭବ ଧରିଥିବା ସମ୍ପୂର୍ଣ୍ଣ ଚିତ୍ରପଟରେ । ଏ ଇଲାକାରେ ଗୋଣ୍ଡ ଜାତି ଲୋକଙ୍କ ଗାଆଁମାନଙ୍କର ପରମ୍ପରାଗତ ଚିତ୍ରକଳା ଇଏ । ଓଡ଼ିଶାର ପଟ୍ଟଚିତ୍ର ଭଳି, ମାଟି କାନ୍ଥ ଦେହର ଚିତା ମୁରୁଜ ଭଳି ଚାଲିଆସିଚି ପିଢ଼ୀ ପରେ ପିଢ଼ୀ କାହିଁ କୋଉ ଯୁଗରୁ । କେତେଜଣ ଆଧୁନିକ ପୋଖତ ଚିତ୍ରକାରଙ୍କ ଆଖିରେ ବି ଇଏ ପଡ଼ିଲାଣି, ବଡ଼ ସହରର ଚିତ୍ରଶିଳ୍ପ ଜଗତକୁ, ଲୋକଲୋଚନକୁ ବି ପହଞ୍ଚିଲାଣି । ଏଠି ଏ ପିଲାମାନେ ତାଙ୍କ ପରିଚିତ କଳାରେ ହାତ ପୋଖତ କରୁଚନ୍ତି । ଜଣେ କିଏ ଶିକ୍ଷା-ନିର୍ଦ୍ଦେଶକ ହେବେ, ପ୍ରତି କିଶୋର ପାଖକୁ ଯାଇ ଦେଖୁଚନ୍ତି, କିଛି କିଛି ଶିଖାଇ ବୁଝାଇଛନ୍ତି ।

ସେଇଠି ଅଳ୍ପ ଦୂରରେ ବସିଛି ଜଣେ ବୟସ୍କା ସ୍ତ୍ରୀ, ଗଛତଳ ମାଟିଉପରକୁ ଦିଶୁଥିବା ମୋଟା ଚେରଟିଏ ଉପରେ କାଗଜ ରଖିଛି, ଗୋଡ଼ଲମ୍ବେଇ ଗୋଟିକ ଉପରେ ଆର ଗୋଡ଼ ଥୋଇ ଅଳ୍ପ ନଇଁପଡ଼ି ଆଙ୍କିଚାଲିଚି । ନିଜ କାମରେ ତନ୍ମୟ, କୁଆଡ଼ିକି ନିଘା ନାହିଁ । ଆଣ୍ଠୁଯାଏଁ ଲୁଗା ତଳକୁ ଦିଶୁଚି ଗୋଡ଼ସାରା ପାଦ ଯାଏଁ ନେଳୀ ଚିତାକୁଟା । ବଳାଗଣ୍ଠିରେ, ବାହୁରେ, ହାତରେ ସବୁଠି ଓଜନିଆ ପୁରୁଣାକାଳିଆ ଗହଣା, ରୂପା କି ଗିଲଟ ହେବ । ଦୁଇ ନାକ ପୁଡ଼ାରେ ବଡ଼ ଗୁଣା, ବେକରେ ମାଳି, ତେଲ ମଖା ଚିକଣକରି କୁଣ୍ଡା ମୁଣ୍ଡଖୋଷା । ସେ ପୃଷ୍ଠଭୂମି ସହିତ ନିଜେ ଦିଶୁଚି ସମ୍ପୂର୍ଣ୍ଣ ଚିତ୍ରପଟଟିଏ ପରି ।

ସେପାଖ ଭଙ୍ଗା କାନ୍ଥ ପାଖରେ ତିନୋଟି ପଥରରେ ଚୁଲି ତିଆରି ହୋଇ ତାଙ୍କର ବି ଚାଲିଚି ରୋଷେଇବାସ । ପାଖକୁ ଯାଇ ଦେଖିଲି, ମୋଟା ମୋଟା ବାଜରା ରୁଟି ଆଉ

ପଥରରେ ଦରଛେଚା ଚଟଣୀ । ଆମ ସାଙ୍ଗେ ଥିବା ଝିଅମାନେ ସବୁ ତାଙ୍କ ଚିତ୍ର ଅଙ୍କା ବିଷୟରେ, ଗାଆଁ ବିଷୟରେ ପଚରାଉଚରା କରୁଥିଲେ । ପୁଣି ତାଙ୍କର ଆଉ ଆମର ଖାଇବା ଦିଆନିଆ ବି ହେଇଥିଲା । କିନ୍ତୁ ସବୁଠୁ ମନେରହିଲାଭଳି ଥିଲା ସେଇ କଳାକାର ସ୍ୱୀର ଗୀତ । ସେ ଗୁଣୁଗୁଣୁ ଗାଇବା ଦେଖି ଆମ ଭିତରୁ କିଏ ଜଣେ ଅନୁରୋଧ କଲା ବଡ଼ ପାଟିରେ ଗାଇବାକୁ । ଉତ୍ତରରେ ଝକ୍‌କିନି ହସିଦେଇ ବିନା ଦ୍ୱିଧାରେ ଗୀତ ଗାଇଥିଲେ ସେ ଅପୂର୍ବ ଗୀତଟିଏ । ପ୍ରତି ପଦ ଶେଷରେ ଅବଲୀଳାକ୍ରମେ ପାଳିଆ ଧରୁଥାନ୍ତି ତାଙ୍କ ଦଳର ବାଳକ ଓ ପୁରୁଷ ମାନେ । ରାଣୀ କମଳବତୀଙ୍କୁ ନେଇ ଥିଲା ଗୋଣ୍ଡ ଭାଷାର ସେ ଲୋକଗୀତ । ରାଣୀଙ୍କ କରୁଣାନ୍ତକ ଜୀବନବୃତ୍ତ ନୁହେଁ, ତାଙ୍କ ଅପରୂପ ସୌନ୍ଦର୍ଯ୍ୟ ଓ ଅପୂର୍ବ ଜୀବନର ପରୀକଥା ଭଳି ବର୍ଣ୍ଣନା ହିଁ ଥିଲା ସେ ଗୀତର ଆଧାର । କମଳବନରେ ଚନ୍ଦ୍ରିନୀ ରାତିରେ ଝିଲ ପାଣିରେ ବିହାର କରୁଛନ୍ତି ରାଣୀ କମଳବତୀ ।

ଫେରିଲା ବେଳକୁ ସନ୍ଧ୍ୟା ହୋଇଆସିଥାଏ । ନଦୀ ପାଖରେ ଥିବା ବସ୍‌ଗୁଡ଼ିକୁ ଆମେ ଗଲାବେଳକୁ ଆମ ଗାଇଡ଼ ବନ୍ଧୁ କହିଲେ, ଏ ନଈଟାର ନାଁ ହଲାଲୀ କେବେଠୁଁ ହେଲା ଜାଣିଚନ୍ତି ନା ନାଇଁ ? ସକାଳେ ଏଠି ପହଞ୍ଚିଲା ବେଳେ ମୋ' କାନରେ ପଡ଼ିଥିଲା ଯେ ଏଇ ସେ ନଦୀ ଯାହା ନାଁ ହଲାଲୀ । ପରେ ହଲାଲୀ ଡ୍ୟାମ୍ ବି ତିଆରି ହେଇଚି ଏ ନଦୀ ଉପରେ । ଜନଶ୍ରୁତି କହେ, ଦିନେ ୟାରି କୂଳରେ ପଡ଼ିଥିଲା ରାଣୀ କମଳବତୀଙ୍କ ସୈନ୍ୟ ଛାଉଣୀ । ହୁଏତ ଆମନ୍ତ୍ରିତ ଅତିଥି ଭାବେ ଆସିଥିବା ଯୋଗୁଁ କିମ୍ବା ହୋଲି ପର୍ବଲାଗି ସାମୟିକ ଯୁଦ୍ଧବିରତିର ଚୁକ୍ତି ପରେ ସେଇ ଦିନଟି ସାରା ଶିବିରରେ ଆନନ୍ଦ ଉତ୍ସବର ପରିବେଶ ରହିଥିଲା । ହେଲେ ଗଭୀର ରାତିରେ ତମ୍ବୁ ଭିତରେ ଶୋଇଥିବା ନିରସ୍ତ୍ର ସୈନ୍ୟମାନଙ୍କ ଉପରେ ଅପ୍ରତ୍ୟାଶିତ ଚଢ଼ାଉ କରିଥିଲା ଦୋସ୍ତ ମହମ୍ମଦ । ସୂର୍ଯ୍ୟୋଦୟ ବେଳେ ଛାଉଣୀର ସମଗ୍ର ନିରୁପାୟ ସେନାଙ୍କ ରକ୍ତରେ ନାଲି ହେଇଯାଇଥିଲା ଥାଳ ନଦୀର ପାଣି । ସେହିଦିନୁ ତା' ନାଁ ରହିଗଲା ହଲାଲୀ ନଦୀ । ଛାଉଣୀରେ ଥିବା ସୈନ୍ୟଦଳ ଅଦୂର ରାଜ୍ୟର ରାଜପୁତ ଥିଲେ ବୋଲି କଥା ଅଛି ।

ଆଉ କଥାଏ ଅଛି ଯାହା ଆହୁରି ଲୋମହର୍ଷଣକାରୀ । ରାଣୀ କମଳବତୀଙ୍କ ଶତ୍ରୁଙ୍କ ଉପରେ ବିଜୟ ଉତ୍ସବ ପାଳିବା ଲାଗି ତାଙ୍କରି ପକ୍ଷରୁ ଲଢ଼ିଥିବା ବନ୍ଧୁ ଦୋସ୍ତ ମହମ୍ମଦ ନିଜ ଜମିଦାରୀ ତରଫରୁ ଦରବାରର ସବୁ ମନ୍ତ୍ରୀ ଓ ପାରିଷଦ୍‌ଙ୍କୁ ନିମନ୍ତ୍ରଣ କରିଥିଲା ସେଦିନ । କୃତଜ୍ଞ ରାଜ୍ୟବାସୀ ଧନ୍ୟବାଦ ଦେବାଲାଗି ଆସିଥିଲେ ଯାହାକୁ, ସେଇ ସାହାଯ୍ୟକାରୀ ଯୋଦ୍ଧାଙ୍କ ଦ୍ୱାରା ଭୋଜିରେ ବିଷ ମିଶା ଖାଦ୍ୟ ପରଷା ଗଲାପରେ ଅତିଥିମାନଙ୍କୁ ନଦୀକୂଳରେ ଗଳା କାଟି ହତ୍ୟାକରାଗଲା । ଓ ତା'ପରେ ରାଣୀଙ୍କର ବଞ୍ଚିବାଲାଗି ଆଉ କିଛି ବାଟ ନଥିଲା ।

ନିଜ ଉଆସ ଛାତଉପରୁ ସେ ଡେଇଁପଡ଼ିଥିଲେ ତାଲ୍‌ର ଗହୀର ପାଣିକୁ ବୋଲି କହେ କିମ୍ବଦନ୍ତୀ ।

ଯିବା ପୂର୍ବରୁ ଗାଇଡ଼ ଆହୁରି ବି କହିଲା, ଭୋଜରାଜାଙ୍କ ଯୁଗରେ ଏ ନଈର ନାଁ ଥିଲା ବନଗଙ୍ଗା । ପବିତ୍ର ଥିଲା ଯା'ର ପାଣି । ବନ୍ଧ ବନ୍ଧାହେଲା ପରେ ସେଇ ନଦୀ ଏ ଅଞ୍ଚଳର ଲୋକଙ୍କୁ ଜୀବନ ଦେଲା, ମାଟିକୁ ଶସ୍ୟର ଥାଳ କଲା । ହେଲେ ସମୟ ଆସିଲା, ଏଠା ମାଟିର ପବନର ପବିତ୍ରତା ରଖିପାରିଲେ ନାଇଁ ଲୋକେ । ସେଇ ନଈର ପୁଣି ଭାଗ୍ୟରେ ଲେଖା ଥିଲା ତାକୁ ମାଆ ଡାକୁଥିବା ମଣିଷଙ୍କ ଲହୁକୁ ଛାତିରେ ମିଶେଇ ବହିବାକୁ ।

କଳାକାର ଦଳ କେତେବେଳୁ ଯାଇସାରିଥାନ୍ତି, ତାଙ୍କର ଦୂର ଗାଁକୁ ସେମାନେ ଚାଲିଚାଲି ଯାଇଥିବେ । ଏଯାଏଁ ଆମ ଆଖପାଖ ପବନରେ ଝରା ପତ୍ର ଭଳି ଘୂରିବୁଲୁଥାଏ କୋଉ କାଳେ ସେଠି ଘଟିଯାଇଥିବା ଇତିହାସର ଟୁକୁଡ଼ାଏ ଲେଖାଁ କଥା । ଠିକ୍ କେଉଁଭଳି ହସ୍ତାନ୍ତରଣ ହେଇଥିଲା ଏ ରାଜ୍ୟର, ସଠିକ୍ ବୃତ୍ତାନ୍ତ କିଏ ବା କହିପାରିବ । କିଭଳି ଥିଲେ ସେ ରାଣୀ, ଆଉ କେଉଁଭଳି ଅନ୍ତ ହେଇଥିଲା ସେ ଜୀବନର, ତିନିଶହ ବର୍ଷ ପରେ ବି ଯାହାଙ୍କୁ ହେଜୁଛନ୍ତି ତାଙ୍କୁ ଲୋକେ ଗୀତରେ, କାହାଣୀ କିମ୍ବଦନ୍ତୀରେ!

ଗାଇଡ଼ କହିଥିବା ଶେଷ କାହାଣୀଟି ପରେ ସବୁ ହସଖୁସି ଉପରେ କେମିତି ଗୋଟେ କୁହୁଡ଼ି ଭଳି ଉଦାସ ଭାବ ଛାଇଯାଇଥିଲା । ତା' ସହିତ ଅଧିକାଂଶଙ୍କ ମୁହଁରେ ଗୋଟେରକମ ଚପା କ୍ରୋଧ ଭଳି କିଛି ବି । ସତେକି ଏଇଠି କୋଉଠି ତିନିଶହ ବର୍ଷ ତଳେ ଘଟିଯାଇଥିବା ସେ ଅମାନୁଷିକ ବିଶ୍ୱାସଘାତ, ବିଧିର ନିଷ୍ଠୁରତା ଲାଗି ଆଜି କାହାକୁ ଦାୟୀ କରିଦେଇ ଶାସ୍ତି ଦେଇଦେଇପାରିଲେ କେମିତି ଟିକେ ଶାନ୍ତି ମିଳନ୍ତା ।

ଗାଆଁ ଛାଡ଼ି ବସ୍ ମାନ ହଲାଲୀ ନଦୀର ସରୁଆ ପୋଲ ଟପିଲା ବେଳକୁ ରାସ୍ତା ମଝିରେ ଦଳେ ଗାଉଁଲି ଟୋକା ହୋ ହଲ୍ଲା କରୁଥିଲେ, ବୋଧେ ପିଇଦେଇ ମାତଲାମୀ ଚାଲିଥିଲା । ହଠାତ୍ ପଛରୁ ଲାଇଟ୍ ସାଙ୍ଗକୁ ହର୍ଣ୍ଣ ଶୁଣି ହଡ଼ବଡ଼େଇ ଏଣେ ତେଣେ ଧାଉଁ ଧାଉଁ ଚଳନ୍ତା ବସ୍ ଉପରକୁ ବି ବିଧା ଦେଖେଇଲେ, ଗାଳି ବର୍ଷେଇଲେ । ବସ୍ ଭିତରୁ ହସରୋଳ ଉଠିଲା, ଝରକା ବାଟେ ପଦେ ଦିପଦ ଜବାବ ବି । ପୁଣି ଲାଗିଗଲା ହିପ୍ ହିପ୍ ହୁର୍ରେ ଓ ସମବେତ ଗୀତର ଲଟେଇ । ପଛପାଖେ ଅନ୍ଧାରରେ ରହିଗଲା ଇସଲାମ ନଗର । ମୋ' ପାଖରେ ବସିଥାନ୍ତି ମଧୁ ଭଟ୍ଟ । ଲମ୍ବା ନିଶ୍ୱାସଟିଏ ଟାଣି କହିଲେ, ବୁଝିଲେ, "ବଡ଼ ଗୋଟାଏ ଅନାଚାର ଘଟିଗଲେ ଲୋକେ ତାକୁ ଭୁଲିପାରନ୍ତି ନାଇଁ । କ୍ଷମା କରିପାରନ୍ତି ନାଇଁ । ନାନା ରୂପରେ ସେକଥା ଫୁଟେ, ରହିଯାଏ କାଳକାଳକୁ ।"

ଆଉ କେତେଜଣ ବି ତାଙ୍କ ମତାମତ ସବୁ ଦେଲେ । ଭାଗ୍ୟକୁ, ଦେଶକୁ, ଜାତିକୁ

ନିନ୍ଦିଲେ ।

ଆଗପାଖକୁ ଦିଇଟା ସାମ୍ନାସାମ୍ନି ସିଟ୍‌ରେ ବସିଥାଉ ଆମେ କେତେଜଣ ଅଧ୍ୟାପିକା । ପଛପାଖରୁ କ'ଣ ଜଳଖିଆ ଟିକିଏ ଦେବାଲାଗି ଆସି ଫାତିମା କେତେବେଳେ ସେପାଖ କଣ୍ଡକ୍ଟରର ଗୋଟିକିଆ ସିଟ୍‌ରେ ବସିପଡ଼ି ଆମ କଥାକୁ କାନେଇଥିଲା । ଜିନତ୍ ଜହାଁ ଏତେବେଳକୁ କଥାଟିଏ କହିଲେ । "କିଏ ଜାଣିଚି ଅସଲ ଘଟଣା ମାନ କଅଣ, ମଧୁ ମାଡ଼ାମ୍ ? ଲୋକମୁଖରେ କେତେ ରକମର ରୂପ ପାଇପାରେ ଇତିହାସ, ପରସ୍ପର ବିରୋଧୀ କାହାଣୀ ଭାବେ ବି । ହେଲେ କେଉଁଟି ସତ, ପ୍ରମାଣ କାହିଁ ?"

ମଧୁ ଭଞ୍ଜ ମାନେ କଥା ଗାଇଗଲେ ଯା'ର ଉତ୍ତରରେ । କହୁଥାନ୍ତି, "ପ୍ରମାଣ ପୁଣି ନାହିଁ କ'ଣ ମ ? ଏ ରାଜ୍ୟ ପୁଣି ବିଦେଶୀ ପଠାଣ ହାତକୁ ଗଲା କେମିତି ? ନଈର ନାଁ ଯେ ବଦଳି ହଲାଲୀ ହେଲା, ଏକଥା ଯଥେଷ୍ଟ ପ୍ରମାଣ ନୁହେଁ ?"

ଜିନତ୍ ମାଡ଼ାମ୍ ଇତିହାସ ପଢ଼ାନ୍ତି । କହିଲେ, "ସେତେବେଳର ଇତିହାସ ପଢ଼ନ୍ତୁ ମାଡ଼ାମ୍ । ପଠାଣ, ରାଜପୁତ, ମରାଠା, ଗୋଣ୍ଡ ଭିଲ୍ ଆଦିବାସୀ, ସଭିଏଁ ଏଠି ପରସ୍ପର ତଣ୍ଟି କଟାକଟି ହେଉଥିଲେ । ଖାଲି କେମିତି ଖଣ୍ଡିଏ ଚେନାଏଁ ଭୂଇଁ ହାତେଇବେ ବୋଲି । ସଂସାରରେ ଏଭଳି ଘଟଣା ନୂଆ କଥା କିଛି ନୁହେଁ । ସ୍ୱାର୍ଥ ଲାଗି ଆପଣା ବନ୍ଧୁ ଦୋସରଙ୍କ ପିଠିରେ ଛୁରା ଭୁଷିଦିଅନ୍ତି ଲୋକେ, ନିଜ ରକ୍ତର ଲୋକଙ୍କୁ ବିଷ ଦିଅନ୍ତି । କିଛିହେଲେ ମଣିଷପଣିଆ ରହେନାଇଁ ଇତିହାସର ଏମିତିସବୁ ରାଜଗାଦି ବଦଳ ବେଳେ, ସଂସାର ଯାକ ଯୋଉଠି ଦେଖ । ମଣିଷକୁ ଥରକୁଥର ଭୋଗିବାକୁ ହେଇଥାଏ ଏମିତି ସମୟ, ସବୁ ଯୁଗରେ, ଦେଶରେ । ଭାଇ ଭାଇ ଭିତରେ, ବାପ ପୁଅଙ୍କ ଭିତରେ ସଂପର୍କ ପାଣିଫାଟିଯାଏ ପରା, ପଢ଼ିନାହାନ୍ତି ଆପଣ ?"

ତେଣୁ ହୋମ୍ ସାଇନ୍‌ସ ଅଧ୍ୟାପିକା ଶିଲା ଯୋଷୀ କହିଲେ, "ଛାଡ଼ ମ ସେ ଇତିହାସକୁ । ସେ ରାଣୀ କଥା ଟିକେ କହ କିଏ ଜାଣିଚ ?" ଜିନତ୍ ମାଡ଼ାମ୍ କହିଲେ, "ମୁଁ କହୁଚି ତାଙ୍କ କାହାଣୀ ଶୁଣ । କମଳବତୀ ଥିଲେ ସୁନ୍ଦରୀ ଯୁବତୀ । ଆଉ ଦୋସ୍ତ ଯେତେ ଦୁର୍ଦ୍ଧର୍ଷ ହେଇଥାଉ, ଯୁବକ ଥିଲା, ଏକୁଟିଆ ଥିଲା । କିଭଳି ପରିସ୍ଥିତିରେ ରାଣୀ ଦୋସ୍ତର ପରିଚୟ ପାଇଲେ, ତାକୁ ଚିହ୍ନିଲେ, ଜାଣିଲେ, ତା'ର କିଛି ବିବରଣୀ ତ ନାହିଁ । କେଉଁ ବିଶ୍ୱାସରେ ନିଜ ରାଜ୍ୟକୁ, ଜୀବନକୁ ବାଜି ଲଗେଇଦେଲେ ରାଣୀ, ଜଣେ ଅଚିହ୍ନା ଲୋକ ହାତରେ ? କିଏ କହିବ କି ଯୁକ୍ତି ବଳରେ ଏପରି ନିର୍ଣ୍ଣୟ ନେଇପାରେ ଜଣେ ଦକ୍ଷ ଶାସକ ? ଅପର ପକ୍ଷରୁ ବିଚାର କଲେ, ଯୋଦ୍ଧାଟିର ଏକାକୀ ରୁକ୍ଷ କର୍କଶ ଜୀବନରେ ଆସିଥିବ ଜଣେ ନାରୀ, ରୂପରେ କଳାରେ ବୁଦ୍ଧିରେ ଅସାମାନ୍ୟ ବୋଲି ଯାହାକୁ ଲୋକଗୀତି କହେ । ସବୁ ରାଜନୀତି, ସଂକୀର୍ଣ୍ଣ ସ୍ୱାର୍ଥ ବାହାରେ ଗୋଟିଏ ମଣିଷ ପ୍ରକୃତି ଥାଏ ନା ନାହିଁ ?"

ଶିଲା ଯୋଷୀ କଣ୍ଠ କଥାରେ ପଚାରିଲେ, "ମାନେ ତମେ କହୁଚ ଦିହିଙ୍କର ପ୍ରେମ ହେଇଯାଇଥିଲା ?"

ମୋ ମୁହଁରୁ ଏତେବେଳେ ବାହାରିଗଲା, "ଖୁବ୍ ଅସମ୍ଭବ ନୁହଁ କିନ୍ତୁ କଥାଟା ।"

ମଧୁ ଟିକେ ଚଢ଼ା ସ୍ୱରରେ କହିଲେ, "କି କଥା ମ ଇଏ, କାହାଣୀ ଗଢ଼ିବ ବୋଲି ତମେ ଯାହା ମନ ତାହା ଫିଲିମି ଗପ ଫାନ୍ଦିପକେଇବ ?"

ପ୍ରୀତି ଚୌହାନ ଏତେବେଳ ଯାଏଁ ଝରକା ବାହାର ଜହ୍ନକୁ ଅନେଇ ବସିଥିଲେ, ଭିତରର କଥା ତାଙ୍କ କାନରେ ପଡୁଥିଲା କି ନାଇଁ କେଜାଣି । ସମସ୍ତେ ଜାଣନ୍ତି ସିଏ ଟିକେ ରୋମାଣ୍ଟିକ ମିଜାଜ୍‌ର ବୋଲି । ସୁନ୍ଦର ଗୀତ ଗାଆନ୍ତି, ଗଜଲ ଆଉ ପୁରୁଣା ଗୀତରେ ମଜେଇ ରଖନ୍ତି ଯେ କୌଣସି ଆସରକୁ । ଏତେବେଳକୁ ମୁହଁ ଖୋଲିଲେ । କହିଲେ, "ମୋ ମନକୁ ବି ସେଇ କଥା ଜୁଟିଚି କେତେଥର, ଜାଣନ୍ତି । କମଳବତୀଙ୍କ ପାଖାପାଖି ହେଇ, ତାଙ୍କ ସୁରକ୍ଷାର ଦାୟିତ୍ୱ ନେଇ, ବିଶ୍ୱାସପାତ୍ର ହେଇ କିଏ ସେ ପୁରୁଷ ଥିବ ଯିଏ ତାଙ୍କ ପ୍ରେମରେ ପଡ଼ିଯିବନି ? କମଳବତୀଙ୍କ ତରଫରୁ ବି କଥାଟି ଦେଖାଯାଉ, ସିଏ ବି ତ ଏକାକିନୀ ଥିଲେ । ରାଜଦରବାରର ନୀରସ ଜୀବନ । ପୁରୁଷଟିଏ ପ୍ରତି ଆକର୍ଷଣ ଅନୁଭବ କରିବା କ'ଣ ଅସ୍ୱାଭାବିକ ?"

ଏକଥାର ସପକ୍ଷ ବିପକ୍ଷରେ ବି କିଛି କଥା କୁହାଗଲା । ପ୍ରୀତି କିନ୍ତୁ ସେମିତି ଥଣ୍ଡା ଗଳାରେ ଯୁକ୍ତି ବାଢ଼ିଲେ, "ହଉ ହେଲା । କିଏ କେଉଁ କାରଣରୁ ଅପରକୁ ପ୍ରତ୍ୟାଖ୍ୟାନ ବା ପ୍ରତାରଣା କରିଥିବ, କାହାର ହେଇଥିବ ମୋହଭଙ୍ଗ ଆଉ କିଏ ଚାହିଁଥିବ ପ୍ରତିଶୋଧ ନେବାକୁ, ସେକଥା ଠିକେ ଠିକେ ବତେଇବାଲାଗି ଏବେ ଆଉ କିଏ ଅଛି ? ରାଣୀ କମଳବତୀ ଆତ୍ମହତ୍ୟା କରିଥିଲେ ନା ନାଇଁ ? ନା ଦୋସ୍ତର ସୁରକ୍ଷାରେ ତାଙ୍କ ମୃତ୍ୟୁ ପରେ ରାଜ୍ୟ ଅନ୍ୟ ହାତକୁ ଚାଲିଗଲା, ଯା'ର ଉତ୍ତର ଲାଗି କି ପ୍ରାମାଣିକ ତଥ୍ୟ ବା ରହିଛି ?"

ଅଚାନକ ସେପାଖ ସିଟ୍‌ରୁ ଫାତିମା ମୁହଁ ଖୋଲିଲା, "ହେଲେ ମାଡ଼ାମ୍, ଭୋପାଲ ସହର ଆଜି ଏଡ଼େ ବଡ଼ ଜଣାଶୁଣା ହେଇଚି, କ'ଣ ଦୋସ୍ତ ମହମ୍ମଦ ପାଇଁ ? ମୋ' ଜେଜେ ମା' ତ କହେ ଭୋପାଲ ଏଡ଼େ ସୁନ୍ଦର ସହର ହେଲା, ସାରାଦେଶରେ ଏଡ଼େ ବିଖ୍ୟାତ ହେଲା ଯୋଉଥିଲାଗି, ସେ ସବୁ କରିଚନ୍ତି ଏଠିକା ବେଗମ୍ ନବାବ ମାନେ । ଦାଦୀ ମା' କହେ, ରାଜଗାଦି ଯେବେ ଏ ହାତରୁ ସେ ହାତ ହୁଏ, ମାରକାଟ ହଣାହଣି ତ ହୁଏ । ତା'ପରେ କେମିତି ଚଳେ ସେ ରାଜ୍ୟ ସେଇଟା ସିନା ବଡ଼ କଥା ।"

ମୁଁ ଅନେଇଲି ସେ କଅଁଳ ମୁହଁକୁ, ସହଜ ବିଶ୍ୱାସରେ କହୁଥିଲା, ସତେକି ନିଜ ଘରକଥା, ଅଙ୍ଗେ ନିଭେଇଥିବା କଥାଟିଏ ସେ କହୁଚି ।

ଜିନତ୍ କହିଲେ, "ଠିକ୍ କହୁଚ ତମେ । ଏଠାକାର ପୁରୁଷ ନବାବ ମାନେ ଗାଦି ଛଡ଼ାଛଡ଼ିରେ ମାତିଥିଲେ ସିନା, ଶାନ୍ତିରେ ଶାସନ କଲେ କେବେ ? ଇଂରେଜ ଆସିଲା ପରେ ଯାଇ ଟିକେ ଶାନ୍ତି ଆସିଲା ଜାଣ । ସୁଲତାନ ବେଗମ୍ ମାନେ ହିଁ ଏ ମାଟିକୁ ସଜେଇଲେ ସର୍ଜାଗିଲେ । ଶହେବର୍ଷ କାଳ ଏତେ ଶାନ୍ତି ସମୃଦ୍ଧି କେଉଁ ଦେଶକୁ ଜୁଟିଚି ଯା'ଭଳି ?"

ମଧୁ ଭଟ୍ଟ ଟିକିଏ ଥଣ୍ଡା ପଡ଼ିଆସିଥିଲେ, ତଥାପି କହିଲେ, "ଆମେ କାହିଁ କୋଉ ଇତିହାସ ବହିରେ ତ ପଢ଼ିନୁ ଏକଥା ।" ଶିଲା ଯୋଷୀ କହିଲେ, "ଆମେ ନିଜ ମାଟି ନିଜ ପରିବେଶ କଥା କେବେ ପଢ଼ିବାକୁ ପାଉ ଯେ ? ଅସଲରେ ନିଜ ଗାଆଁ କଥାସବୁ ତ ଏମିତି ସବୁ ଗପ କାହାଣୀରୁ ହିଁ ଜାଣିବାକୁ ହୁଏ । ହଉ କହିଲ ଜିନତ୍ ଜୀ, ଦୋସ୍ତ ମହମ୍ମଦ କ'ଣ ଭଲ ଶାସକ ଥିଲା ନା ରଇସ୍ ସୁଲତାନ ହେଇ ସିଂହାସନ ଭୋଗ କଲା ?"

ଜିନତ୍ ହସିଦେଇ ଚୁପ୍ ରହିଲେ ଟିକେ । କହିଲେ, "ଦୋସ୍ତ ମହମ୍ମଦ ଆଉ ସୁଲତାନ ବନିଲା କେବେ ଯେ ? ଲଢ଼େଇରେ ହାଣକାଟରେ ଆପଣା ଲୋକଙ୍କ ହତ୍ୟା ଆଉ ଦୁର୍ଦ୍ଦଶା ଦେଖିବାରେ ତ ତା'ର ସାରାଜୀବନ ବିତିଗଲା । ନିଜର ଚଉଦ ବର୍ଷର ପୁଅଟିକି ବି ତାକୁ ନିଜାମଙ୍କ ପାଖେ ବନ୍ଧାପକେଇବାକୁ ହେଇଥିଲା । ସେ ମଲାପରେ ଅଠର ବର୍ଷର ପୁଅ ୟାର ମହମ୍ମଦ ଯେବେ ଫେରିଲା ନିଜାମଙ୍କ ସୈନ୍ୟ ସାମନ୍ତ ସାଥିରେ, ଦୁଇ ପକ୍ଷର ଶତରଞ୍ଜ ଖେଳରେ ଗୋଟି କରାଗଲା ଦୁଇ ଭାଇଙ୍କୁ । ଆଠବର୍ଷର ସାନଭାଇଟିକୁ ହଟାଇ ରାଜ୍ୟ ନିଷ୍କଣ୍ଟକ କରାଗଲା ।"

ପ୍ରୀତି ଚୌହାନ ଏଥର କାନରେ ହାତ ଦେଇ ପାଟିକଲେ, "ଓହୋ ଥାଉ ଥାଉ । ଆମର ଦରକାର ନାହିଁ ସେସବୁ ଭୟଙ୍କର ଗପ । ଅନ୍ୟ କଥା ପକାଅ ମ । ଗୀତ ଫିତ ଗୋଟେ ଗାଅ ।"

ମୁଁ ଫାତିମାକୁ ଧୀରେ କରି ପଚାରିଲି, "ତମେ କୋଉଠୁ ପଢ଼ିଲ ବେଗମ୍ ନବାବ ମାନଙ୍କ କଥା ?" ଫାତିମା କହିଲା, "ମୋ ଦାଦୀମା କହନ୍ତି । ସେ ପିଲାଦିନୁ କାଇଖୁସରୋ ବେଗମ୍ ନବାବଙ୍କୁ ଜାଣିଥିଲେ, ତାଙ୍କ ସାଙ୍ଗରେ ମହଲରେ ରହିଥିଲେ । ବେଗମ୍ ସରକାରଙ୍କ କଥା ପଡ଼ିଲେ ଦାଦୀ ଏବେବି ଡାକନ୍ତି ସରକାର ଅମ୍ମା । ଭାରୀ ଭଲ ଥିଲେ କାଳେ, ନଅରର ସମସ୍ତେ ଖାଇସାରିଚନ୍ତି କି ନାହିଁ ପଚାରି ନ ବୁଝିଲ ସରକାର ଅମ୍ମା ନିଜେ ଖାଉନଥିଲେ ।"

ପଚାରିଲି, "ଆଉ ରାଣୀ କମଳବତୀଙ୍କ ବିଷୟରେ କ'ଣ ଜାଣିଚ ତମେ ?"

ଅନାୟାସ ଉତ୍ତର ଦେଲା ସେ, "ନିଶ୍ଚେ ସେମିତି ରାଣୀ ହେଇଥିବେ ସେ, ନହେଲେ କ'ଣ ଏତେ ଯୁଗ ହେଲାଣି ଲୋକେ ଝୁରୁଥାନ୍ତେ ? ତେବେ ଜୀନତ୍ ମାଡ଼ାମ୍ ଯାହା କହୁଥିଲେ, ତାଙ୍କ ଜୀବନରେ ଆଉରି କିଛି ହୁଏତ ଘଟିଥାଇପାରେ, ଯାହା କେହି ଜାଣିନାହାନ୍ତି ।"

"ମାନେ ସେ ଆତ୍ମହତ୍ୟା କରିନଥିବେ, ଏଇଆ ତ ?"

"ନା ମାଡ଼ାମ୍, ସେକଥା ନୁହେଁ । ଆତ୍ମହତ୍ୟା ସେ କରିଥାଇପାରନ୍ତି । କିନ୍ତୁ କାରଣଟା ପୂରାପୂରି ଆଉ କାହା ଦୋଷରୁ ହେଇଥିବ ବୋଲି କଥା ଅଛି ? ଭଲ ମଣିଷ, ବି କ'ଣ ବେଳେ ବେଳେ ଭୁଲ୍ କରିପକାଏ ନାହିଁ ?"

କେଡ଼େ ପୋଖତ କଥା କହୁଚି ଝିଅଟି । ଟିକେ ଆଶ୍ଚର୍ଯ୍ୟ ହେଲି ମୁଁ । କେତେବେଳର ଚୁପ୍ ପରେ ପଚାରିଲା ସେ, "ଆପଣ ଦେଖିଚନ୍ତି ନା ମାଡ଼ାମ୍, କମଳବତୀ ପ୍ୟାଲେସ୍ ? ଆଜିକାଲି ତାକୁ କହୁଛନ୍ତି କମଳାପତି ମହଲ ବାଟରେ ପଡ଼ିବ, ଦେଖେଇଦେବି ।"

ବଡ଼ ତାଲ୍ ଓ ଛୋଟ ତାଲ୍‌କୁ ଯୋଡ଼ି ବେଶ୍ ପ୍ରଶସ୍ତ ସ୍ଥଳଭାଗଟିଏ ପୋଲର କାମ କରିଆସୁଥିଲା କେଉଁ କାଳୁ । ତାଆରି ଗୋଟିଏ ପାଖରେ ଆଜି ବି ଠିଆହେଇଚି ରାଣୀ କମଳବତୀଙ୍କ ଉଆସ । ଯେଉଁ ସମୟର କଥା ମୁଁ କହୁଚି, ନିତାନ୍ତ ଅବହେଳିତ ଅବସ୍ଥାରେ ଥିଲା । ଆଜିକାଲି ସୁନ୍ଦର ବଗିଚା, ମନ୍ଦିର, ଅନେକ କଥା ସେଠି । ସମଗ୍ର ପୋଲଟି ବି ପ୍ରଶସ୍ତ ସୁନ୍ଦର ହେଇଯାଇଚି । ସେବେ ସେ ବାଟଦେଇ ଗଲାବେଳେ ବି ବିଶେଷ ନଜରରେ ପଡ଼େନାହିଁ, ସହରର ଅନେକ ରଙ୍ଗଛଡ଼ା ଉଜାଡ଼ ଉଆସରୁ ଗୋଟିଏ ଭଳି ଦିଶେ । ସେଦିନ ରାତିରେ ଫେରନ୍ତି ବାଟରେ କମଳବତୀଙ୍କ ଉଆସ ଦେଇ ଗଲାବେଳେ ବସ୍ ଭିତରଯାକ ଆମର ଆପେ ଚୁପ୍ ପଡ଼ିଗଲା । ଅଧା ଜହ୍ନଟିଏ ତଳେ ତିନିମହଲା ଅନ୍ଧାରୁଆ ମହଲଟିର ଆକାର ପ୍ରକାର କେବଳ ଜଣାଯାଉଥାଏ । ଛାତ ଚାରିକଡ଼ ଭାଙ୍ଗି ପଡୁଥିବା ବାଡ଼ ଯାକ ବାରିହେଉଥାଏ । ସେପାଖେ ତଳୁଆ ସାନ ତାଲ୍ କୂଳର ଜକାଜକି ବସ୍ତିସବୁରୁ ଦିଶୁଥାଏ ଧୀମା ବତୀ ଆଲୁଅମାନ । ଏପାଖେ ପାହାଡ଼ ଘେରା ବଡ଼ ତାଲ୍‌ର ଆଖି ପାଉନଥିବା ପାଣିରେ ଜହ୍ନ ଆଲୁଅ ଖେଳୁଥାଏ । ସଞ୍ଜବେଳେ ସେଇ ଆଦିବାସୀ କଳାକାର ଦଳ ଗାଇଥିବା ଅଧାଅଧା ବୁଝାପଡୁଥିବା ଗୀତ ବାଜିଯାଉଥିଲା କାନରେ ।

ପୁନେଇଁ ରାତିରେ ଦେଖ ହୋ ନୀଳ ଜଳ ଯେ ଯାଇଛି ମାତି
 ଉଭା ଗୋ, ରାଣୀ କମଳବତୀ ।
କମଳ ବନରେ ବିହାର କରନ୍ତି କିଏ ସେ ପରୀ ଗୋଟି
 ଆହା ସେ ରାଣୀ କମଳବତୀ ।
ପଦ୍ମପତରରେ ଆହ୍ଲୁଲା କରିଣି ଛନ୍ତି ପାଞ୍ଚଶହ ସଖୀ
 ଆସ ଦେଖ ହୋ, ରାଣୀ କମଳବତୀ ।
ପଦ୍ମ ଯେତେ ଆସି ରୁଣ୍ଡ ହୋଇଯାନ୍ତି ତାଙ୍କ ସୁନା ଦେହ କତି
 ଆହା ମୋ' ରାଣୀ କମଳବତୀ ॥

# ଓସ୍ତାଦ୍ ମିଆଁଙ୍କ ସଙ୍ଗୀତ କ୍ଲାସ୍

ଯେବେ ମୋତେ ଜୀବନ ଟାଣିନେଇଥିଲା ଭୋପାଲ ନାମକ ଗୋଟିଏ ସହରକୁ, କେବେ କାଳେ ଚିହ୍ନା ଜଣା ନଥିବା ଏ ମାଟି ଆପଣା ଛାଏଁ ମୋର ନିଜର ପାଲଟିଯିବ ବୋଲି ମୁଁ କ'ଣ କେବେ ଭାବିଥିଲି । ବେଶ୍‌କିଛି ବର୍ଷ ଘର କରି ରହିବା ପରେ ପୁଣି ଅଚାନକ ଯେବେ ସେ ସହର ଛାଡ଼ି ଚାଲିଯିବାକୁ ହେଲା, ଚେର ଲାଗିଯାଇଥିବା ଜୀବନକୁ ଉପାଡ଼ି ସାଉଁଟିନେବା ସହଜ ହେଉନଥିଲା ମୋ' ଲାଗି । ତା'ପରେ ଆଜିଯାକେ, ବେଳ ଅବେଳରେ, ଜାଣତ ଅଜାଣତରେ ସେଠି କାଟିଥିବା ଦିନର କେତେ କେତେ ଛବି ଅନାହୂତ ଆସି ବିନ୍ଧିଯାଏ ମନକୁ । ନିଜକୁ ବୋଧ ଦେବାକୁ ହୁଏ ବାରମ୍ବାର, ଯିବି ମୁଁ ପୁଣିଥରେ ସେଠିକି । ପାହାଡ଼ ଟାପୁ ମାନଙ୍କ ଚାରିକଡ଼େ ସାନ ବଡ଼ ନୀଳ ହ୍ରଦ ମାନଙ୍କ କୂଳେ କୂଳେ ଗଢ଼ିଉଠିଥିବା ସେ ସ୍ୱପ୍ନ ପରି ସହରକୁ ମୁଁ ପର କରିଦେଇଚି ବୋଲି କିଏ କହିଲା । ସେ ତ ନାନା ମତେ ମୋ' ସାଙ୍ଗେ ସାଙ୍ଗେ ରହିଚି, ରହିବ । ଯେମିତି ଏଇ କାହାଣୀ ।

ଫାତିମାକୁ ଜାଣିବାର ବହୁତ ଦିନ ପରେ ମୁଁ ମୁକ୍ତାରକୁ ଜାଣିଥିବା କଥା ଆବିଷ୍କାର କଲି । ମନେପକେଇଲି ଯେ ବହୁଦିନୁ ତାକୁ ମୁଁ ଭେଟିଚି ଏଠି ସେଠି । ବ୍ୟକ୍ତିଗତ ସ୍ତରକୁ ଯଦିଓ ସେ ଭେଟିବା ଆଉ ଆସିପାରିନାଇଁ । ନାନା କାରଣରୁ ମୋ' ସ୍ମୃତିରେ ରହିଯାଇଚି ପ୍ରାୟ ପ୍ରତିଟି ଭେଟ, ଯଦିଓ ସେ ମୋତେ ମନେ ରଖିନଥିବ ହୁଏତ, ମନେରଖିବାର କୌଣସି କାରଣ ନଥିବ ତା' ପାଇଁ । ତେବେ ସେଇ ଭେଟ ଗୁଡ଼ିକୁ ଭଲକରି ହେଜି କାହାଣୀରେ ଗୁନ୍ଥିବା ଲୋଡ଼ା ପଡ଼ିଲା, ଯେବେ ମୁଁ ଜାଣିଲି ଯେ ସେ ଫାତିମା ଜୀବନର ଅଂଶ ପାଲଟିଥିଲା କେବେଠୁଁ । ମୁଁ ଫାତିମାକୁ ଜାଣିବା ପୂର୍ବରୁ ।

ମୁକ୍ତାରକୁ ମୁଁ ପ୍ରଥମ କରି ଦେଖିଥିଲି ଗୋଟିଏ ଡ୍ରାମାରେ । ମୋଗଲ ସାମ୍ରାଜ୍ୟର ପୃଷ୍ଠଭୂମିର ଲେଖା କାହାଣୀଟିରେ ସେ ରାଜଦରବାରର କବିଟିଏର ରୋଲ କରୁଥିଲା ।

ପଟଳା ନାକନକ୍ସାର ଏଡ଼େ ସୁନ୍ଦର ପିଲାଟିଏ ଯେ ସେ ରୋମାଣ୍ଟିକ୍ ଚରିତ୍ରଟିକୁ ପୂରା ଖାପ୍‌ଖାଇଯାଉଥିଲା । ସାଧାରଣ ନାଗରିକ ହୋଇ ସମ୍ରାଟ ଶାହାଜାହାନ୍‌ଙ୍କ ଭଉଣୀ ଜହାଁଆରାଙ୍କୁ ପ୍ରେମ କରିବାର ଆସ୍ପର୍ଦ୍ଧା କରିଥିବା ଯୋଗୁଁ ଏ କବିଙ୍କୁ କେବଳ ରାଜଦରବାରର କବିପଦ ନୁହେଁ, ଦିଲ୍ଲୀ ନଗରୀରୁ ବହିଷ୍କୃତ ହେବାକୁ ପଡ଼ିଥିଲା ବୋଲି କାହାଣୀ କହେ । ପ୍ରାସାଦ ଝରକାରେ ରାଜକୁମାରୀଙ୍କୁ ଥରଟିଏ ଦେଖିବା ଲାଗି ଜୀବନକୁ ପାଣିଛଡ଼ାଇ ଆସିଥିବା ପ୍ରେମ ପାଗଳ କବି ଭୂମିକାରେ ଯେବେ ମୁକ୍ତାର ଆସିଲା, ଅଭିନୟ ସାଙ୍ଗକୁ ତା'ର ସୁକୋମଳ ଚେହେରା, ଅବିନ୍ୟସ୍ତ କେଶବାସ, ଛଳଛଳ ଆୟତ ନୟନ ଅନାୟାସ ଦର୍ଶକଙ୍କ ଆଖିରେ ବି ଲୁହ ଆଣିଲା । ଷ୍ଟେଜ୍ ମଝିରେ ତିଆରି କାର୍ଡ୍‌ବୋର୍ଡ୍ ପାଚେରୀ ଏପାଖୁ କବିକୁ ଅସ୍ତ୍ରଧାରୀ ରକ୍ଷୀମାନେ ନିର୍ମମ ଭାବେ ନିଶ୍ଚିତ ମୃତ୍ୟୁକୁ ଟାଣିନେଉଥିବା ବେଳେ ସେପାଖେ ରାଜକୁମାରୀଙ୍କ ହୀରା-ମାଣିକ୍ୟ-କଙ୍କଣ ପିନ୍ଧା କୋମଳ ହାତ ଝରକା କବାଟକୁ ଧୀରେ କରି ଆଉଜେଇ ଆଣିଥିଲା । ପୃଷ୍ଠଭୂମିରେ ଝଙ୍କୃତ ହେଉଥାଏ ହାଫିଜ୍ ଓସ୍ତାଦଙ୍କ ହାତର ସାରଙ୍ଗୀ ତାର ଉପରେ ଯାଦୁକରୀ ଛୁଆଁ ।

ଭୋପାଳର ମାନଚିତ୍ର ଆଉ ଇତିହାସ ଭଳି ଏ ସହରର ଆବହାଓ୍ୱାରେ ବି ଅଧା ସତ ଅଧା କଳ୍ପନା ମିଶାମିଶି ହେଇଥାଏ । ଏଠା ପୁରୁଣା ସହର ବାସିନ୍ଦାମାନେ କିଛି ବର୍ତ୍ତମାନ ଓ କିଛିଟା ସତ ମିଛ ଫେଣ୍ଟା ଇତିହାସ ଭିତରେ ରହୁଥିଲା ଭଳି ମନେହୁଅନ୍ତି ମୋ' ଭଳି ନୂଆ ବାସିନ୍ଦାଙ୍କ ଆଖିରେ ।

ସହର ଭିତରେ ଅତି କମ୍‌ରେ ଦଶ ବାରଟା ନାଟକ ମଣ୍ଡଳୀ ଥାଆନ୍ତି, ସେଥିରୁ ଦିଇଟା ପେଶାଦାର ଓ ବାକିସବୁ ସୌଖୀନ୍ । ପେଶାଦାର ଥିଏଟର ଦୁଇଟିର କଳାକାର ମାନେ ବି ନାଟକର ଆୟରୁ ଜୀବିକା ନିର୍ବାହ କରିପାରୁଥିବେ ବୋଲି ବିଶ୍ୱାସ ହୁଏନାହିଁ । ସୌଖୀନ୍ ଦଳର ଅଭିନେତା ନିର୍ଦ୍ଦେଶକ ସମେତ ସମସ୍ତେ ତ ସହଜେ ଘରୁ ଖାଇ ଘୋଡ଼ା ଆଗରେ ଧାଇଁବା ବାଲା । ତଥାପି ନାନା ପର୍ବ ପର୍ବାଣୀ ଆଳରେ ସବୁ ମାସ ଋତୁରେ ଏଠି ନାଟକ ମଞ୍ଚନ ଚାଲିଥାଏ । ତା'ଛଡ଼ା ଛୋଟ ବଡ଼ ନାନାଦି କ୍ଲବ୍ ଓ ଗୋଷ୍ଠୀ ତରଫରୁ ବିଭିନ୍ନ ହଲ୍, ପଡ଼ିଆ, ଗଳି କନ୍ଦି ତଥା କୋଠା ଛାତ ମାନଙ୍କରେ ହାସ୍ୟ ବ୍ୟଙ୍ଗ କବିତା ଅଥବା ଶେର୍ ଶାୟରୀର ଆସର ମାନ ବାରମାସୀ ଚାଲିଥାଏ ।

ଏକାଧାରରେ ଲେଖକ, ଗାୟକ, ଅଭିନେତା ହୋଇ ରାତାରାତି ସହରବାସୀଙ୍କ ଆଖିରେ ଷ୍ଟାର ପାଲଟିଯିବାର ନଜିର ଏଠି କେବଳ ଯେ ମୁକ୍ତାର ତା' ନୁହେଁ । ଏଭଳି ଅନେକ ଯୁବ କଳାକାର ଉଦୟ ହେଉଥାଆନ୍ତି, କେତେକେ ବମ୍ବେ ଯାଇ କିମ୍ବା ଯିବା ପୂର୍ବରୁ ଅସ୍ତ ହୋଇଯାନ୍ତି । କଦବା କିଏ ବା ମୁମ୍ବାଇ ଚଳଚ୍ଚିତ୍ର ଜଗତରେ ସଫଳ ବି ହେଇଛନ୍ତି । ତେଣୁ

ଯୁବକଟିଏ ସଙ୍ଗୀତ, ଅଭିନୟ ଭଳି କିଛି ଗୋଟିଏ କଳା ନେଇ ମାତିବା କଥାଟିକୁ ଏଠି ବେଶ୍ ସ୍ୱାଭାବିକ ଓ ମାର୍ଜିତ ସଂସ୍କାରର ପରିଚାୟକ ବୋଲି ଧରାଯାଏ ।

ମୁଁ ଯେଉଁ କଲେଜରେ ପାଠ ପଢ଼ାଏ, ତାହାରି ଅଳ୍ପଦୂରରେ ଛୋଟା-ତାଲ୍ କୂଳରେ ଥାଏ ମୋ' ଛୋଟିଆ କ୍ୱାର୍ଟର୍ସ । ସେଠି ରହିବାର ପ୍ରାୟ ଛ'ମାସ ପରେ ମୋତେ ଜଣାପଡ଼ିଲା ଯେ ପାଖରେ ଅଛି ଗୋଟିଏ ସଙ୍ଗୀତ ବିଦ୍ୟାଳୟ । ଆମ କଲେଜର ଜଣେ ଅଧ୍ୟାପିକା ଦୀପିକାଙ୍କଠୁ ଶୁଣିଥିଲି ଓସ୍ତାଦ୍ ହଫିଜ୍ ଖାଁଙ୍କ ସଙ୍ଗୀତ ସ୍କୁଲ ବିଷୟରେ । ନିଜେ ଓସ୍ତାଦ୍ ଜୀ ଥିଲେ ଜଣେ ଭାରତ ବିଖ୍ୟାତ ସାରଙ୍ଗୀ ବାଦକ, ଆକାଶବାଣୀର 'ଏ' ଶ୍ରେଣୀର କଳାକାର । କିନ୍ତୁ ନିଜ ସ୍କୁଲ୍‌ରେ ସେ ବାଦ୍ୟ ସଙ୍ଗୀତ ନ ଶିଖେଇ ସପ୍ତାହରେ ତିନିଦିନ ଗଜଲ ଓ ତିନିଦିନ ଶାସ୍ତ୍ରୀୟ କଣ୍ଠସଙ୍ଗୀତ ହିଁ ଶିଖାଉଥିଲେ ।

ପ୍ରାୟ ଦି ତିନି ବର୍ଷ କାଳ ସେତେବେଳେ ମୋତେ ପରିବାରଠାରୁ ଦୂରରେ ଭୋପାଳରେ ଏକୁଟିଆ ରହିବାକୁ ପଡ଼ିଥିଲା । ସେତିକିବେଳେ ଦୀପିକା ସାଙ୍ଗରେ ମୁଁ ବି ଗଜଲ ଶିଖିବାଲାଗି ଯାଉଥିଲି କିଛିଦିନ, ମୁଖ୍ୟତଃ ସନ୍ଧ୍ୟା ସମୟଟା ଭଲରେ କଟାଇବାଲାଗି ।

ସେଠି ପ୍ରାୟ ଦେଖେ ମୁକ୍ତାର ବୋଲି ସେ ଯୁବକଟିକୁ । ସେ ଅବଶ୍ୟ ଜମାରୁ ନିୟମିତ ଆସେନାହିଁ କ୍ଲାସ୍‌କୁ । ସେଥିଲାଗି ଓସ୍ତାଦ୍‌ଜୀଙ୍କଠୁ ତାକୁ ଗାଳି ଶୁଣିବାକୁ ବି ହୁଏ, କେବେ ମିଠା ନରମ ଗାଳି ତ କେବେ ବେଶ୍ କଡ଼ାକରି ଦି'ପଦ । ଏମିତିକି ଏଣିକି ଆଉ କ୍ଲାସ୍‌କୁ ଆସିବା ଦରକାର ନାହିଁ ବୋଲି ଶୁଣାଇଦିଆଯାଏ ଥରେ ଥରେ । ପ୍ରତିଥର ତା' ନରମ ଆଖି ମୁହଁ ସେମିତି ନରମ ରହିଥାଏ, ଭସାଣିଆ ଆଖିଦୁଇଟି ସମ୍ଭ୍ରମରେ ସେମିତି ନଇଁଯାଏ ଯୋଡ଼ ହାତ ସହିତ କ୍ଷମା ମାଗିବା ମୁଦ୍ରାରେ ।

"ମାଫ୍ କରିଦିଅନ୍ତୁ ଓସ୍ତାଦ୍ ଜୀ, ଅମୁକ ରିହର୍ସାଲଟା ଚାଲିଚି କି ନା, ଆଉ ଦିନ କେଇଟା ତ ରହିଲା ଫାଇନାଲ୍"... ନତୁବା, "ଆପଣଙ୍କୁ ତ ଜଣାଅଛି ଓସ୍ତାଦ୍ ଜୀ, କ'ଣ ଆଉ କହିବି, ସମୁକ ଶାୟରୀ ମେହେଫିଲ୍‌କୁ ତ ନଗଲେ ନ ଚଳେ... ।"

ମୁକ୍ତାର କଥା କହିଲା ବେଳେ ବି ଗୋଟାଏ ମଧୁର କଳାକାର ଭାବ ଥାଏ ତା'ର ସ୍ୱରରେ, ଭାବଭଙ୍ଗୀମାରେ ।

କହିବା ବାହୁଲ୍ୟ, ଓସ୍ତାଦ୍‌ଜୀଙ୍କୁ ମାଫ୍ କରିବାଲାଗି ତା'ର କଥା କେଇପଦ ହିଁ ଲୋଡ଼ା ଥାଏ । ସତେକି ତା'ଠୁ ସେଭଳି କଥା ଦି'ପଦ ଶୁଣିବାଲାଗି ହିଁ ଓସ୍ତାଦ୍ ଜୀ ତାକୁ ଉସୁକାଉଥାନ୍ତି । ସେଠୁ ତାକୁ କହନ୍ତି, "ହଉ ହେଲା । ଗାଅ ଦେଖିବା, ଗତଥର ଯେଉଁ ଗଜଲଟା ନୂଆ ଶିଖାଇଥିଲି ମନେ ଅଛି ନା ନାହିଁ ?"

ଯଦି କଦବା କ୍ଲାସ୍ ଆରମ୍ଭରୁ ମୁକ୍ତାର ଆସି ପହଞ୍ଚିଥାଏ ତେବେ ସରସ୍ୱତୀ ବନ୍ଦନା ଓ

ଶ୍ଳୋକ କେଇଟାରେ ମୁଖ୍ୟ ସ୍ୱରର ଦାୟିତ୍ୱ ତା' ଉପରେ ପଡ଼େ । ହଫିଜ୍ ଓସ୍ତାଦ୍‌ଙ୍କ ଗଜଲ କ୍ଲାସ୍ ଓ ଶାସ୍ତ୍ରୀୟ ସଙ୍ଗୀତ କ୍ଲାସ୍ ଉଭୟ ଆରମ୍ଭ ହୁଏ ସରସ୍ୱତୀ ବନ୍ଦନାରେ । ସାନ କ୍ଲାସ୍‌ରୁମ୍‌ଟି ଭିତରକୁ ପଶିଲାକ୍ଷଣି ଦୃଷ୍ଟି ପଡ଼େ ସାମ୍ନା ବାଁ କୋଣକୁ ସାନ ଟେବୁଲ୍‌ରେ ଥୁଆ ସରସ୍ୱତୀ ମୂର୍ତ୍ତିଟି ଉପରେ । ମୁଁ ଯେଉଁଦିନ ନୂଆକରି ଗଲି, ଦୀପିକାର କହିବାରେ ସାନ ଫୁଲମାଳଟିଏ ଓ ମିଠା ପ୍ୟାକେଟ୍‌ଟିଏ ନେଇ ଯାଇଥିଲି । ସରସ୍ୱତୀଙ୍କୁ ମାଳଟି ଅର୍ପଣ କରାଯିବା ପରେ ପନ୍ଦର କୋଡ଼ିଏ ଜଣ ବିଦ୍ୟାର୍ଥୀଙ୍କ ଭିତରେ ମିଠା ବାଣ୍ଟିଦିଆଯାଇଥିଲା ।

ଥରେ ଜଣେ କିଏ ବୋକା ପିଲାଟିଏ, ହିନ୍ଦୁ କି ମୁସଲମାନ କେଜାଣି, ପଚାରିଦେଇଥିଲା, "ଏଇଟା ପରା ରମଜାନ ମାସ ଉସ୍ତାଦ୍ ଜୀ, ରୋଜା ରଖୁଥିବା ଲୋକଙ୍କୁ ପୁଣି ସରସ୍ୱତୀ ବରଦାନ ଦେବେ ?"

ହଫିଜ୍ ଓସ୍ତାଦ୍ ଚିହିଁକି ଉଠି ଜବାବ ଦେଲେ, "କାଇଁକି, ସରସ୍ୱତୀ କ'ଣ କାହାର ବପୌତି କି ? କାହାର ବାପ ଅଜାର ସମ୍ପତ୍ତି ସିଏ, ଖାଲି ତାଙ୍କୁଇ ଦେବେ ବରଦାନ ? ଯିଏ ତାଙ୍କୁ ଡାକିଚି, ଇବାଦତ କରିଚି, ସିଏ ବର ପାଇଚି ତାଙ୍କଠୁ ରେ ବେଟା ।"

ମୁକ୍ତାର ଯେବେ ଗାଏ, ସରସ୍ୱତୀ ବନ୍ଦନା, ଯା କୁନ୍ଦେନ୍ଦୁ... ଗାଏ, ତା'ପରେ ଗୁରୁ ବନ୍ଦନା ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ ଓ ତୃତୀୟରେ କବିର-ଭଜନ ବା ସୁଫି କଲାମ, ସବୁଦିନ ଅପେକ୍ଷା ସେଦିନ କ୍ଲାସ୍‌ରେ ଗୋଟାଏ ଭାବର ଆମେଜ ଆସେ । ଏଇ ଆରମ୍ଭ ପର୍ଯ୍ୟାୟରେ ସଭିଏଁ ମୁଣ୍ଡରେ ଲୁଗା ଦିଅନ୍ତି, ସ୍ତ୍ରୀଲୋକେ ଶାଢ଼ୀ କାନି ବା ଓଢ଼ଣୀ, ଆଉ ପୁଅ ପିଲାଏ ମୁଣ୍ଡରେ ରୁମାଲ ରଖନ୍ତି ବା କଦବା କିଏ ଲେସ୍‌ର ଟୋପି । କୋଡ଼ିଏ ପଚିଶି ଜଣଙ୍କ କ୍ଲାସ୍‌ରେ ପୁଅଙ୍କ ସଂଖ୍ୟା ହିଁ ବେଶୀ । ଝିଅ ଚାରି ପାଞ୍ଚଜଣ । ମୁଁ ଯେତେଦିନ ଯାଉଥିଲି, ମାତ୍ର ଜଣେ ମୁସଲମାନ ଝିଅ ଆସୁଥିଲା, ଅଫିସର ଘର ଝିଅ, ପୁରୁଣା ସହର ବାସିନ୍ଦା ନୁହେଁ ।

ଗଜଲ କ୍ଲାସକୁ ଗଲାବେଳେ ମୁଁ ଯାହା ଦେଖିଲି, ସଙ୍ଗୀତ ଶିକ୍ଷା ଓସ୍ତାଦ୍‌ଜୀଙ୍କ ମନମାଫିକ୍ ଚାଲେ । କେବେ ଖୁବ୍ ଗୁରୁ ଗମ୍ଭୀର ରୀତିରେ ଗୀତ ଶିଖାଯାଏ, ତାନପୁରା, ତବଲା ଆଦି ବାଦ୍ୟ ସହ । ଓସ୍ତାଦ୍ ଜୀ ନିଜେ ଗାଇଲେ ଅନ୍ୟମାନେ ପାଳିଆ ଧରନ୍ତି, ପୁଣି ଛାତ୍ରମାନେ ଜଣ ଜଣ କରି ଗାଇ ଶୁଣାନ୍ତି । ଆଉ କେବେ ବା ପୂରା ସମୟତକ ଜଣକୁ ଯାହାକୁ ମନ ହେଲା ତାକୁ ହିଁ ଗୋଟାକ ପରେ ଗୋଟାଏ ଗୀତ ଗାଇବାକୁ କହନ୍ତି ସେ । ଅନ୍ୟମାନଙ୍କୁ ଚୁପ୍‌ହେଇ ବସିବାକୁ ପଡ଼େ । ବିଶେଷ କରି ମୁକ୍ତାର ଆସିଲେ ଆଉ ସମସ୍ତଙ୍କ ଗାଇବା ବନ୍ଦ । ଗୋଟାକ ପରେ ଗୋଟାଏ ଓସ୍ତାଦ୍‌ଜୀଙ୍କ ଫରମାଇସ ଚାଲିଥାଏ, ତାଙ୍କ ନିଜ ସ୍ୱର ଦିଆ ଗଜଲ ହେଉ ବା ଅନ୍ୟ ଜଣାଶୁଣାରୁ କେଉଁଟି ହେଉ । ମେହେନ୍ଦୀ ହାସାନ୍‌ଙ୍କ ଗଜଲ ସବୁ ନୂଆ ଚହଲ ପକାଇଥାଏ ସେତେବେଳେ, ଅଧିକାଂଶ ତହିଁରୁ ଆପେ ଆୟତ୍ତ କରିନେଇଥାଏ

ମୁକ୍ତାର । କେବେବା ଗୁରୁଜୀ କହନ୍ତି, "ବେଟା ମୁକ୍ତାର ମିଆଁ, ଗାଇଲ ତଲତ୍ ମେହେମୁଦ୍‌ର ସେଇ ପୁରୁଣା ଗୀତଟି ।"

ସେଇଠୁ ପୁରୁଣା ଫିଲିମ୍ ଗୀତର ଆସର ଜମେ । "ବାବା ସେଇ ଗୀତଟା ଗାଆ ତ ଦେଖି, ବସନ୍ତ ବାହାରର ମାନ୍ନା ଡେ ଆଉ ଲତାର ସେ ଗୀତଟା କ'ଣ ତ, ମନେ ଅଛି ନା..."

କିଏ ଜଣେ ସେଠୁ କହେ, "ମାନ୍ନା ଡେ ର ଗୀତଟା ଆପଣଙ୍କ ଗଳାକୁ ବେଶୀ ସୁଟ୍ କରିବ ଓସ୍ତାଦ୍‌ଜୀ, ମୁକ୍ତାର ସିନା ତଲତ୍‌ର ଗୀତ ଭଲ ଗାଏ । ତା' ଗଳାଟା ନରମ କିନା ।"

ସେଇଠୁ ଓସ୍ତାଦ୍ ଜୀ ସାଇଗଲର ଗୀତ ଗାଆନ୍ତି, ସି.ଏଚ୍. ଆତ୍ମା ପୁଣି ପଙ୍କଜ ମଲ୍ଲିକର । ମୁକ୍ତାର ତାଙ୍କ ସାଙ୍ଗରେ ଗାଏ । ମୁଗଲେ ଆଜମ୍ ଫିଲ୍ମର ବଡ଼େ ଗୁଲାମ ଅଲିଙ୍କ ଗୀତ ଦିହେଁ ଗାଇଥିଲେ ଯେଉଁଦିନ, ଆସର ଭାଙ୍ଗୁ ଭାଙ୍ଗୁ ଖୁବ୍ ରାତି ହେଇଯାଇଥିଲା, ବେଳ ଜଣାପଡ଼ିନଥିଲା ।

ମୁକ୍ତାର ତେଣୁ ଲାଗ୍ ଲାଗ୍ କେତେଟା କ୍ଲାସ୍ ଆସିଲେ ବିଦ୍ୟାଳୟର କେତେଟା ଛାତ୍ର ଛାଡ଼ି ପଳାନ୍ତି, ଅନ୍ୟ କେଉଁ ସଙ୍ଗୀତ ସ୍କୁଲ୍‌ରେ ଯାଇ ନାଁ ଲେଖାଇଥିବାର ଶୁଣିବାକୁ ମିଳେ । ଥରେ ଥରେ ପୁରୁଣା ଗୀତରୁ ଫିଲିମ୍ ଆଡ଼କୁ ବି କଥା ଗଡ଼ିଯାଏ । ପିଲାଏ ଅଳି କରନ୍ତି, ଓସ୍ତାଦ୍ ଜୀ, ଟିକେ ପୃଥ୍ୱୀରାଜ କପୁରର ଡାଏଲଗ୍ ଗୋଟାଏ ଶୁଣାନ୍ତୁନା । ଓସ୍ତାଦ୍ ହଫିଜ୍ ମିଆଁଙ୍କ ହାଡୁଆ ପତଳା ଚେହେରା ମୁହୂର୍ତ୍ତକେ ରୂପାନ୍ତରିତ ହେଇଯାଏ, ଏକଚାଳିଶ ମସିହାର ସିକନ୍ଦର ସିନେମାରୁ ପୃଥ୍ୱୀରାଜଙ୍କ ଡାଇଲଗ୍ ଶୁଣାନ୍ତି ।

ଏଥର ବରାଦ ହୁଏ ମୁକ୍ତାର ଆକ୍‌ଟିଂ କରି ଦେଖାଉ ଅମୁକ ହିରୋକୁ ସମୁକ ଫିଲିମ୍‌ର ଦୃଶ୍ୟରେ । ମନହେଲେ ହଫିଜ୍ ମିଆଁ ନିଜେ ମୁକ୍ତାରର ପିଠି ଥାପୁଡ଼ାନ୍ତି, ଆଉ କିଛି ଗୋଟାଏ ଅଭିନୟ କରିଦେଖାଇବାକୁ କହନ୍ତି । କେବେ ବା ବିଗିଡ଼ି ଯାଇ କହନ୍ତି, "ଇଏ କ'ଣ ସବୁ ଫାଜିଲାମି ହେଉଚି ଏଠି ? ଏସବୁର ଜାଗା କ'ଣ ଏଇଟା ?" କହୁକହୁ ହାରମୋନିୟମ୍ ବଜାଇ ଶିଖେଇବା ଆରମ୍ଭ କରିଦିଅନ୍ତି, ତବଲାବାଲାଙ୍କୁ ଚାହାଣୀରେ ଆଦେଶ ଦିଅନ୍ତି ।

ଆଉ କେବେ ବା ତାଙ୍କ ମିଜାଜ୍ ଦେଖି ଜଣେ କିଏ କହିପକାଏ, "ଓସ୍ତାଦ୍ ଜୀ, ଟିକିଏ ରାମଲୀଳାର ସୀତା ପାର୍ଟ ଦେଖାନ୍ତୁ ନା ।"

ମିଛ ରାଗରେ ଆଖି ଦେଖାଇ ସେ କହନ୍ତି, "ଚୁପ୍, ଶଇତାନ୍ କହାଁକା ।"

ବୁଝିଲା ବେଳକୁ କ'ଣନା, ପିଲାଦିନେ କାଳେ ହଫିଜ୍ ମିଆଁ କେଉଁ ରାମଲୀଳା ମଣ୍ଡଳୀରେ ମିଶିଥିଲେ, ସୀତା ପାର୍ଟ କରୁଥିଲେ । ସେଇଠୁ ତାଙ୍କ ସୁଲଳିତ କଣ୍ଠ ଶୁଣି ଜନୈକ ବିଖ୍ୟାତ ସଙ୍ଗୀତଜ୍ଞ ତାଙ୍କୁ ଶିଷ୍ୟ କରିନେଇଥିଲେ । ହେଲେ ପ୍ରତିବର୍ଷ ରାମ ନବମୀ ବେଳକୁ ସେ ରାମଲୀଳା ଯାତ୍ରାରେ ମାତୁଥିଲେ କାଳେ ବେଶ୍ ପ୍ରାପ୍ତବୟସ୍କ ହେବାଯାକେ । ମିଠା ଗାଳି

ଟିକିଏ ଦେବାପରେ କିନ୍ତୁ ସେ ତାଙ୍କ ରାମଲୀଳାର ଦିନସବୁ କଥା କହିବସନ୍ତି । ତୁଳସୀ ଦାସଙ୍କ ରାମଚରିତ ମାନସରୁ ମଧୁର ପଂକ୍ତିମାନ ବୋଲନ୍ତି । ଅନ୍ୟ ମାନେ ତବଲା, ଗିନି ବଜାଇଲା ବେଳେ ନିଜେ ସାରଙ୍ଗୀରେ ସଙ୍ଗତ କରନ୍ତି । କହୁ କହୁ ରାମାୟଣରୁ ଗପ କହିବା ଆରମ୍ଭ ହେଇଯାଏ ।

ଆଜିବି ମୋତେ ଦିଶିଯାଏ ଓସ୍ତାଦ୍ ଜୀ ବର୍ଣ୍ଣନା କରୁଥିବା ସୀତା ସ୍ୱୟମ୍ବର । ଗୋଟି ଗୋଟି କରି ତିନି ଲୋକର ରାଜାମାନେ ଶିବଧନୁ ଟେକିବାରେ ବିଫଳ ହେବାକଥା ଗାଉ ଗାଉ ହାତର ସାରଙ୍ଗୀ ଥୋଇଦେଇ ସେମିତି ବସି ବସି ଟିକେ ଲେଖାଁ ଅଭିନୟ କରିପକାନ୍ତି ସେ । ତା'ପରେ ପ୍ରବଚନ ଦେଲା ଭଳି କହନ୍ତି, "ଏତେବେଳକୁ ଉସ୍ତାଦ୍ ବଶିଷ୍ଠ୍ କ'ଣ କରୁଥିଲେ ଜଣାଅଛି ?" ସେଇଠୁ ଘଲେ ତାଙ୍କର କେବଳ ମୁହଁ ଆଖିର ସୂକ୍ଷ୍ମ ଅଭିନୟରେ "ଉସ୍ତାଦ୍ ବଶିଷ୍ଠ୍"ଙ୍କର ପ୍ରତିକ୍ରିୟା ତଥା ଶାଗିର୍ଦ୍ ରାମ ଓ ଲକ୍ଷ୍ମଣଙ୍କୁ ଇଙ୍ଗିତରେ ଦେଉଥିବା ଆଦେଶର ବର୍ଣ୍ଣନା ।

ଛୋଟା-ତାଲ୍ କୂଳ କୋଉ ଯୁଗର ପୁରୁଣା ଆମ୍ବଗଛ ତଳ ସେ ଦୋତାଲା କୋଠାର ସଙ୍ଗୀତ କ୍ଲାସ୍‌କୁ ନିୟମିତ ଯାଇଥିବି ମୁଁ ବୋଧେ ବର୍ଷେ ଯାଏଁ । କେତେ କ'ଣ ଶିଖିଲି ଆଉ କହିବା ସମ୍ଭବ ନୁହେଁ, ଅଧିକାଂଶ ଗୀତ ଗଜଲ ବି ଆଉ ମନେନାହିଁ । ହଫିଜ୍ ମିଆଁ ଅନେକ ବର୍ଷ ହେଲା ଆରପାରିକି ଗଲେଣି । ତାଙ୍କ ଛବି ମନରେ ସ୍ପଷ୍ଟ ଥିଲେ ବି ସଙ୍ଗୀତ କ୍ଲାସ୍‌ର ଅନ୍ୟ ମୁହଁସବୁ ମନରୁ ଲିଭିଗଲେଣି, କେତେ ଘଟଣା କେତେ ଛବି ଧୂଆଁଳିଆ ହେଇଗଲାଣି । ମୁକ୍ତାରକୁ କେମିତି କେଜାଣି ମୁଁ ଜମା ଭୁଲିନାହିଁ ।

# ଗୋଟି ଗୋଟି ଝରକା ବନ୍ଦ ହେଲାବେଳେ

ମୁକ୍ତାର କଥା ଫାତିମା ମନରୁ ଯାଏ ନାହିଁ ଜମା । ସେବେ ନୁହେଁ, କେବେ ବି ନୁହେଁ । ଅଚାନକ ତା' ମୁହଁରୁ ଫାତିମା ଶୁଣିଲା ଦିନେ, ଯେ ସେଇଦିନ ରାତି ଗାଡ଼ିରେ ବମ୍ବେ ଯାଉଚି ସେ । ଭାଗ୍ୟ ପରଖିବାକୁ । କିସମତ୍ ଆଜମେଇବାକୁ ।

ପାଦତଳୁ ଭୂଇଁ ଖସିଯାଇଥିଲା ଫାତିମାର । କେବଳ ଅନେଇଥିଲା ସେ ତା' ପ୍ରେମିକର ମୁହଁକୁ, ଅଜାଣତରେ ତା' ଓଠ ପାଟି ଖୋଲି ଆଁ ହେଇଗଲା ।

"ଏମିତି କ'ଣ ଅନେଇଚୁ ଭକୁଆ ଭଳି । ମୁଁ ତୋତେ କେବେ କହିନି ବମ୍ବେ ଯିବି ବୋଲି ? ନୂଆ ଶୁଣିଲୁ ନା କ'ଣ ?"

ଢୋକ ଗିଳି କଷ୍ଟରେ ମୁହଁ ଖୋଲିଲା ଫାତିମା, ଆଉ କୋହ ଭିତରୁ ଭଙ୍ଗା ଭଙ୍ଗା ସ୍ୱର ନଫିଟୁଣୁ ଏକାବେଳକେ କହିପକେଇଲା, "କେବେ କହିଥିଲ ? କ'ଣ କହିଥିଲ ? କହିଥିଲ କେବେ ତା'ବୋଲି ଏମିତି ପଳେଇବ ? ମୋତେ ସାଙ୍ଗରେ ନେବ ବୋଲି..."

କଥାଟା ପୂରା କରିପାରିନଥିଲା ଫାତିମା, ମୁଣ୍ଡ ଘୁରେଇଦେଲା ତା'ର । କଥା ପୂରା କରିଦେଇଥିଲା ନିଜେ ମୁକ୍ତାର, ପାଖେଇଆସି ତା'ଆଡ଼କୁ ହାତ ବଢ଼େଇଦେଇଥିଲା । ତା' ଆଖିକୁ ଫାତିମାର ଗୋଡ଼ ଟଳମଳ ହେବା ଦିଶୁଥିଲା କି କ'ଣ । ତାକୁ ଦି'ବାହୁ ମୂଳରୁ ଧରି ବଢ଼େ ଝାଙ୍କିଦେଇ କହିଲା, "ଶୁଣ୍ ଫାତିମା, ତୋତେ ସାଙ୍ଗରେ ନେଇଯିବି ମୁଁ । ପଳେଇଯାଉନାହିଁ ମ କୁଆଡ଼େ । ଏମିତି କ'ଣ ଛାନିଆଁ ହେଉଚୁ ? ଯେମିତି କଥା ଥିଲା ସେମିତି ଯିବା ଆମେ, ଥୟ ଧର ମୋ' ସୁନାଟି ।"

ପାର୍କରେ ଗଛମୂଳ ବେଞ୍ଚରେ ବସି ଟିକିଏ ସାଷ୍ଟମ ହେଲାପରେ ଧୈର୍ଯ୍ୟରେ ବୁଝେଇଦେଇଥିଲା ମୁକ୍ତାର, "ଆମେ ଯିବା ବମ୍ବେ, କଥା ଦେଇଚି ପରା ତତେ । ହେଲେ ଏବେ ଏକାସାଙ୍ଗେ ଯାଇପାରିବାନି । କିଛି ଦିନ ପରେ, ମୁଁ ଖବର ଦେବି । କିରେ, ଆମେ ଦିହେଁ ରହିବା ଜାଗା ଖଣ୍ଡେ ଠିକଣା କରିବି ତ ଆଗ ?"

ତା'ପରେ ସେଇ ମାସେ ପନ୍ଦର ଦିନ କେମିତି କଳା ଅନ୍ଧାର ଭିତରେ କଟିଥିଲା, ଫାତିମା ଆଜିବି ମନେ ପକେଇପାରେନି । ଘରେ ବାପା କେଉଁ ଗୋଟିଏ ପ୍ରସ୍ତାବକୁ ନେଇ ନାହିଁ ନଥିବା ଉତ୍ସାହ ଦେଖାଉଥାଆନ୍ତି, ଘରସାରା ଲୋକେ ମାତିଥାଆନ୍ତି ତହିଁରେ ।

ସଂଜବେଳେ ଶିଘ୍ର ଫେରିଆସି ସେଦିନ ଅନ୍ନିକୁ କହିଲେ, "ଭଲ କିଛି ଗୋଟେ ଜଳଖିଆ କଲ ଆଜି । ପକୁଡ଼ି ବହୁତ ଦିନୁ ଖିଆହେଇନାଇଁ ।"

ଅନ୍ନି ଉଠିଯାଉ ଯାଉ ଅବ୍ବୁ ପୁଣି ପଛରୁ ଡାକି କହିଲେ, "ହେଇଟି ଶୁଣ, ଚଟଣୀ ଟିକିଏ ବି ବାଟିବାକୁ କହ, ଭଲ ରାଗୁଆ ଲଙ୍କା ଅଛି ନା ନାଇଁ ?"

ସେମିତି ଭଲ ମିଜାଜ୍‌ରେ ନଥିଲେ ବାପା କେବେ ଖାସ୍ କିଛି ତିଆରି କରିବାକୁ ବରାଦ କରନ୍ତିନାଇଁ । ଏମିତି କି ରେହମାନ୍ ବି କହିପକେଇଲା, "ଆଜି ଅବ୍ବୁ ଚେସ୍‌ରେ ଜିତି କି ଆସିଚନ୍ତି । ଜଲେବି ଆଣିଲ ନାଇଁ ଅବ୍ବୁ, ଖାଲି ଘର ତିଆରି ପକୁଡ଼ି ?"

"ଆରେ ନାଇଁ ରେ, ଆଜି ଆଉ ଚେସ୍ ଖେଳିବାକୁ ଗଲି କେତେବେଳେ ? ଆଉରି ବଡ଼ କାମଟାଏ କରିଆସିଚି ଆଜି । ପୂରା ହେଇଯାଉ ମିଠେଇ ଆଣିବା ରହ । ବହୁତ କଥା ଆଣିବା ।"

ଘରେ ସମସ୍ତେ ବୁଝିଯାଇଥିଲେ ସେ କଥାଟା । ଅନ୍ନି କାଠ ଆଲମାରୀ ଭିତରୁ ପୁରୁଣା ପିତଳ ହାତବାକ୍ସରେ ରଖା ତା' ବାହାଘର ବେଳ ନାଲି କନାଗୁଡ଼ିଆ ଗହଣା ଦି'ଖଣ୍ଡ ଆଣି ଜେଜେମା'କୁ ଚୁପିଚୁପି ଦେଖେଇଲା, "ଏଥିରୁ କୋଉଟା କାହାକୁ ଦେବା, ଆପଣ ଯେମିତି କହିବେ ଅନ୍ନି ।" ଭଉଣୀ ଦିହେଁ ତା' ଉପରେ ହାମୁଡ଼ିପଡ଼ି କୁଲୁରୁ କାଲୁରୁ ହେଲାବେଳେ ଜେଜେମା ପାଟିକଲା, "ଆରେ ଯାଆ ପଳା ଏଠୁ । ଆଲିବାବାର ଜେବରାତ୍ ଭଣ୍ଡାର ଖୋଲିଗଲା ପରି ହଉଚ, ଲାଜ ନାହିଁ ତମ ମୁହଁକୁ । ଆଖିକୁ ଦିଶୁନାଇଁ କ'ଣ ଦି'ଖଣ୍ଡି ଅଛି, ଏଥିରୁ ରଖିବ କ'ଣ ଯୌତୁକ ଦେବ କ'ଣ ?"

ମା' କିନ୍ତୁ ଜମା ଦେହକୁ ନେଲାନାଇଁ ତାଙ୍କ ବଙ୍କା କଥା । ରୋଷେଇଘରେ ମଉକା ଦେଖି ଫାତିମାକୁ ଦେଖି ମୁରୁକି ହସିଲା, ତା' ପାଖକୁ ଲାଗିଆସି ଫୁସୁଫୁସୁ କରି କହିଲା, "ବାପାଙ୍କୁ ଏଇକ୍ଷିଣା କିଛି କହିନଥିବା, ବୁଝିଲୁ । ବାକିତକ ଟଙ୍କା ଦେଇ ବଣିଆ ପାଖରୁ ହାରଟା ଆଗ ନେଇଆସିବା । କଥାଟା ଫଇସଲା ହେଇଯାଉ କି, ତା'ପରେ ଦେଖେଇବା ।"

ବାପାଙ୍କୁ ଏମିତି ଖୁସିରେ ଆଶ୍ଚର୍ଯ୍ୟ କରିଦେବା କଥା କଳ୍ପନା କରୁଥିବା ଅନ୍ନିର ମୁହଁକୁ ଅନେଇ ପାରିନଥିଲା ଫାତିମା । ସେଇଠି ଆଉ ନିଶ୍ୱାସ ନେବାଲାଗି ପବନ ନଥିଲା ସତେକି । ବାରଣ୍ଡା କଡ଼ ସରୁ ଅନ୍ଧାରୁଆ ଶିଡ଼ିଦେଇ ଉଠିଯାଇଥିଲା ସେ ଦୋତାଲା ଉପର ଛାତକୁ । ଛାପିଛାପିକା ମେଘୁଆ ଆକାଶଟାରେ କିନ୍ତୁ ଆଶ୍ୱାସର ଚିହ୍ନ ନଥିଲା ସେଦିନ, ଜହ୍ନ ଚିରୁଡ଼ାଏ ବି ନଥିଲା । ରାଣୀ କମଳବତୀଙ୍କ କାହାଣୀ ମନକୁ ଆସୁଥିଲା । ଫାତିମା ଲାଗି ବି ସେମିତି ଡେଇଁ ପଡ଼ି ଅନ୍ଧାରରେ ମିଳେଇଯିବାକୁ ଏଇ ପାଚେରୀ ତଳେ ଥାଆନ୍ତା କି ବଡ଼ ତାଲ୍‌ର ଗହୀର ପାଣି ।

# ଅନ୍ଧପୁଟୁଳିର ବାଟ

କଲେଜବାଟରେ ହିଁ ଫାତିମା ବାହାରିଯାଇଥିଲା ବମ୍ବେକୁ । ମୁକ୍ତାରର କଥା ଉପରେ ଆଖିବୁଜା ଭରସା କରି ।

ଆଜି ଅନେକଦିନ ପରେ କଥାଟା ମନେପକେଇଲା ବେଳେ, ଏକୁଟିଆ ବସି ନିଜକୁ ଜେରା କରୁଚି ଫାତିମା । ଆଉ କଅଣ ସବୁ ଥିଲା ସେଇ କଞ୍ଚା ମଗଜ ଭିତରେ ଯାହା ସେମିତି ପାଗଳାମୀ ଯାଏଁ ପହଞ୍ଚାଇ ଦେଲା ତାକୁ ? ଚଢ଼େଇ ବସା ପରି ଉଷୁମ ପିଲାଦିନର ଘରଟିରୁ ଗୋଡ଼କାଢ଼ି ସେ ବାହାରିଯାଇ ପାରିଲା, କେବଳ ନାଁ ଶୁଣା ଅଜଣା ଜାଗାଟିଏ ଲାଗି । ଏ ପରିଣତ ବୟସରେ ବି ସେ କଥା ଭାବିଲାକ୍ଷଣି କାହିଁକି ମହଣେ ଓଜନ ଲୁହା ଲଦିହେଇ ଯାଉଚି ଛାତିଭିତରେ, ପୋଡ଼ି ଉଠୁଚି ଆଖି ଅତର୍କିତ ଲୁହରେ ।

ଶୁଣିଲା ଯେଉଁଦିନ, ମୁକ୍ତାର ନିଜେ ଆସିଚି ତାକୁ ନେଇଯିବାକୁ । ନିଜ ଭାଗ୍ୟ ଉପରେ ବିଶ୍ୱାସ ହେଇନଥିଲା ସେଦିନ । ଜବୀନା ଆସିଥିଲା କହିବାକୁ, ରଫିକ୍ ହାତରେ ଖବର ପଠେଇଚି ମୁକ୍ତାର, ଦି'ଧାଡ଼ି ଚିଠିରେ । "ଅଠର ତାରିଖ ବମ୍ବେ ମେଲ୍‌ରେ ଯିବା । ଷ୍ଟେସନରେ ବହିଦୋକାନ ପାଖେ ମୁଁ ଅପେକ୍ଷା କରିଥିବି, ଆସିବ ।" ସମ୍ବୋଧନ କି ଇତି ନଥିଲା, ନାଁ ନଥିଲା କାହାରି ତଳେ ବା ଉପରେ । ହେଲେ ସେ ହାତ ଲେଖା ନ ଦେଖୁଣୁ ଫାତିମାର ଆଖି ଏମିତି ପୂରିଗଲା ଯେ ଅକ୍ଷର ଦି'ଧାଡ଼ି ପଢ଼ିବା କଷ୍ଟ ହେଇଗଲା । ଜବୀନା ପଚାରୁଥିବା ପ୍ରଶ୍ନର ଉତ୍ତର ପଦେ ଦେବାକୁ ଗଲାବେଳେ ଗଳା ରୁନ୍ଧିହେଲା କୋହରେ ।

ସବୁଦିନ ଭଳି କଲେଜ ଯିବାଲାଗି ତିଆରି ହେଇଥିଲା ସେ ସକାଳେ । ଘରକାମ ଦିଇଟା ସାରି ସିଲେଇ ସରଞ୍ଜାମ ସବୁ ସଜାଡ଼ି ଥାକରେ ରଖିଥିଲା । ଗାଧୁଆ ପାଧୁଆ ସାରି କାନ୍ଥ ଦର୍ପଣ ଆଗରେ ମୁଣ୍ଡ କୁଣ୍ଡେଇଲା, ପାଉଡ଼ର କଜଳ ଲଗେଇଲା । ବହିଖାତା ସଜାଡ଼ିବାରେ ଏତେ ବେଳ ଲଗେଇଲା ଯେ ମାଆ ପଚାରିଲା, "ଆଜି ତୋ'ର ଡେରି ହେବ କି ଯିବାରେ ? ତା'ହେଲେ ମୁଁ ଯାଏଁ ରଚୀଙ୍କ ଘରେ ଲୁଗା ଦିଇଟା ଦେଇଆସେ, ଲେହେଙ୍ଗା ଓଢ଼ଣୀ ଦିଇଟା ଲାଗି କେତେଥର ଖବର ପଠେଇଲେଣି ବିଚାରୀ ।"

ଫାତିମା ଅପେକ୍ଷା କରିଥିଲା ଏଇ ବେଳକୁ, କାଲିଠୁ ଓଢ଼ଣୀ ସଜିଲ କରି ସେଇ ରଖିଦେଇଥିଲା, ଅମ୍ମିକୁ କହିଥିଲା ତାଗିଦ୍ କରି, "କେତେଦିନୁ ପଡ଼ି ରହିଚି ବରାଦ ଦିଆ ଲୁଗା ତାଙ୍କର । କାଲିକି ଯେମିତି ହେଉ ଦେଇଦେବା, ମୁଁ ସଜିଲ କରି ରଖିଦେଉଚି ।" ଅମ୍ମି

କିନ୍ତୁ ଯାଉ ଯାଉ ରହିଯାଇ ଆହୁରି ଦିଇଟା କ'ଣ ବରାଦ ଦେଲା, "ଯଦି ତୋ'ର ଶିଘ୍ର ଯିବାକୁ ନାହିଁ ମା', ପିଲାଙ୍କ ସ୍କୁଲ ଡ୍ରେସ୍ ଦି'ଖଣ୍ଡ ସର୍ଫରେ ପକେଇଥିଲି, ଟିକେ ଧୋଇ ଶୁଖେଇଦିଅନ୍ତୁ ।" ପୁଣି ଫାତିମାର କୁଞ୍ଚାଭୁରୁ ଦେଖି କହିପକେଇଲା, "ହଉ ଥାଉ ଥାଉ, ତୁ ଯା ବାହାରି, ମୁଁ ଫେରିଲେ ଧୋଇଦେବି ।" ପୁଣି ବାରଣ୍ଡା ତଳକୁ ପାଦ ବଢ଼ାଉଣୁ ତା' ହାତରୁ ଖସିଗଲା ଲୁଗା ପୁଡ଼ିଆଟା, ଗୋଟେଇ ନେଉ ନେଉ କ'ଣ ଭାବି ଖୋଲିପକେଇଲା ଅମ୍ମି, କହିଲା, "ବଡ଼ ସୁନ୍ଦର ହେଇଚି ଏଥରର ହାତକାମ ଯାକ, ଦେଇଦେବାକୁ ମନ ଡାକୁନି ।" ଫାତିମା ଏଥର ଅଧୈର୍ଯ୍ୟ ହେଇ ମା' ହାତରୁ ଲୁଗାଦି'ଖଣ୍ଡ ନେଇଯାଇ କହିଲା, "ମିଛଟାରେ ଡେରି କରୁଚ ତମେ ଅମ୍ମି । ଆମର ସବୁ ସିଲେଇ କଢ଼ାଇ ସୁନ୍ଦର ହୁଏ ।"

ତା' ବିରକ୍ତିର ଛିଟା ଟିକିଏ ହେଲେ ପଡ଼ିଲା ନାଇଁ ମା' ମୁହଁରେ । ତଳେ ବିଛେଇ ଲୁଗା ଭାଙ୍ଗ କରୁଥିବା ଝିଅ ପାଖକୁ ଆସି କହିଲେ ସେ, "ଏଣିକି ଆଉ କାହାର ବରାଦ ଦେବାନାଇଁ ତୋ' ବାହାଘର ଯାଏଁ । ଖାଲି ତୋଓରି ଲୁଗା ତିଆରି ହେବ, ଏମିତି ସୁନ୍ଦର କରି ତିଆରିବା ଯେ ଆଖି ଖୋସି ହେଇଯିବ ସଭିଙ୍କର ।"

ଚଟ୍‌କିନି ମା' ମୁହଁକୁ ଚାହିଁ ଆଖି ତଳକୁ କଲା ଫାତିମା । ମା' ଅଚାନକ ଏମିତି କାନ୍ଦକାନ୍ଦ କାଇଁକି ହେଉଚି । ଛାତିକୁ ଟାଣ କରି ଶୁଖିଲା ସ୍ୱରରେ ଜବାବ ଦେଲା ସେ, "ଆଉ ତା'ପରେ ମୁଁ ଗଲା ପରେ କିଏ ଏଠି ସିଲେଇ କଢ଼ାଇ କରିବ ଶୁଣେ ?"

ଝିଅ ମୁଣ୍ଡରେ ହାତ ବୁଲେଇ ଦେଇ କୋହରେ ବସା ଗଳାରେ ମା' କହିଲେ, "ନହେଉ ଆମର ସେ ସିଲେଇ କାମ । ମୁନ୍ନୀ ଆମର ଖାଲି ସୁଖରେ ଘର କରୁ ।"

ଫାତିମା ସେମିତି ମୁହଁ ପୋଡି ଲୁଗା ଚଉତି ବ୍ୟାଗ୍‌ରେ ରଖିଲା । ମା' ହାତକୁ ବଢ଼େଇ ଦେବାଯାଏଁ ଆଉ ଆଖି ଉଠେଇ ସେ ମୁହଁକୁ ଚାହିଁନଥିଲା । ଦାଣ୍ଡ କବାଟ ପାଖରୁ ଅମ୍ମି ପୁଣି ଡାକି କହିଲେ, "କଲେଜ ଗଲାବେଳେ କବାଟ ଆଉଜେଇ ଦେଇ ଯିବୁ ମୁନ୍ନୀ, ଜେଜେମା'ଙ୍କୁ ଉଠେଇବୁନି, ମୁଁ ଏଇଲାଗେ ଆସିଯିବି ।"

ଫାତିମା କିନ୍ତୁ ସେହିକ୍ଷଣି ଯାଇ ଭିତରପାଖୁ ଦାଣ୍ଡ କବାଟ ଛିଟିକିଣିଟା ଲଗେଇଦେଲା । ଆଉ ଗଳିର ସେମୁଣ୍ଡକୁ ଯାଇ ଫେରୁ ଫେରୁ ଅମ୍ମିକୁ ଅତି କମ୍‌ରେ ଅଧଘଣ୍ଟା ଲାଗିବ, ସେଥିରେ ପୁଣି ସାଙ୍ଗସୁଖ ବି ହେବ ନିଶ୍ଚେ କେତେବେଳ । ଚଟ୍‌ପଟ୍ ଯାଇ କାନ୍ଥ ଖୋପରୁ ଚାବି ନେଇ ମାଆଙ୍କ କାଠ ଆଲମାରୀ ଖୋଲିଲା ସେ, ଟିକିଏ କଁ କିନି କବାଟ ଡାକିଲାରୁ ଚମକି ଜେଜେମା ଥିଲା କୋଠରୀ ଆଡ଼କୁ ଅନେଇଲା । ଏଇ ଆଲମାରୀକୁ ମା' ଅପେକ୍ଷା ଫାତିମା ହିଁ ବେଶୀଥର ଖୋଲେ, କାହିଁକି ନା ଟଙ୍କା ରଖିବା, କାଢ଼ିବା ତ ଆଜିକାଲି ତାଆରି କାମ । କେଉଁ ବଳକା ଦାମୀ କନାରେ ତିଆରି ଫୁଲପକା ଛୋଟିଆ ପର୍ସଟି ଭିତରେ

ରଖାହେଇଚି ମାଆର ସଞ୍ଚିତ ସର୍ବମୋଟ ଛଅଶହ ପଚାଶ ଟଙ୍କା । ଆଜି ଅନ୍ନି ଟଙ୍କା ନେଇଆସିଥିଲେ ବଣିଆର ବାକି ଟଙ୍କା ଦେଇ ହାର ଅଣାଯାଆନ୍ତା । ଲୁଗାଥାକ ତଳେ ମହାର୍ଘ ପିତଳ ଗହଣା ବାକ୍ସ । ଅନ୍ନିର ଗହଣା ପୁଡ଼ାଟି ଖୋଲିଲା ସେ ଶିଘ୍ର ଶିଘ୍ର, ସୁନା କାନଫୁଲ ଆଉ ବଳା ଦି'ପଟ ନେଇ ଟଙ୍କା ସହିତ ପର୍ସରେ ପୂରେଇଲା ।

ସବୁଦିନିଆ କାନ୍ଧ ଝୁଲାମୁଣି ଭିତରେ ଆଜି ବହି ନୁହଁ, ଲୁଗା ଦିଖଣ୍ଡ ରଖି ତରବରରେ ଘରୁ ବାହାରି ଆସୁଆସୁ ରହିଗଲା ସେ । ପାଠ ଖାତାରୁ ଫର୍ଦ୍ଦେ ଚିରି ଦି'ଧାଡ଼ି ଲେଖିଦେଇ ଯିବାକୁ ହେବ, ନହେଲେ ଖୋଜାଖୋଜିରେ ଲାଗିଯିବେ ଯଦି ବାପା ? ହେଲେ ଦି'ଧାଡ଼ି ଲେଖିଦେବା ବି କ'ଣ ସହଜ କଥା ? ଯା'ପୂର୍ବରୁ କେବେ ମାଆକୁ ଚିଠି ଲେଖିନଥିଲା ସେ, ବୁଝାପଡୁନି କ'ଣ ବୋଲି ଆରମ୍ଭ କରିବ । ସେଇଠୁ ନିକଟରେ ପାଇଥିବା ଚିଠି ଭଳି ବିନା ସମ୍ବୋଧନ ଓ ଇତିରେ ଫାତିମା ବି ଗାରେଇଦେଲା ଦି'ଧାଡ଼ି, "ମୋ ଲାଗି ଚିନ୍ତା କରିବନି । ନିକାହ ହେବାପରେ ଆମେ ଏକାଠି ଫେରିବୁ ।" ସିଲେଇ ସେମିନ୍ ଉପରେ ରଖି ଦେଉଦେଉ ପୁଣି ଥରେ କାଗଜଟିକୁ ହାତକୁ ନେଇ ଲେଖିଦେଲା ସେ, "ଖୁଦା ହାଫିଜ୍" ।

କଲେଜ ବାଟରେ ସିଧା ଷ୍ଟେସନକୁ ଅଟୋ କରି ଚାଲିଯାଇଥିଲା ଫାତିମା । ଦୂରରୁ ମୁକ୍ତାରରୁ ଦେଖିଦେଇ ତା' ଛାତିରେ ପ୍ରାଣ ପଶିଲା । ତେଣିକି କିଛି ଆଉ ନଥାଏ ତା' ମୁଣ୍ଡରେ । ନା ଆଗତ, ନା ଗତକାଲିର ଜୀବନ । ନା ତାଆରି ସାଙ୍ଗେ ଛନ୍ଦିମନ୍ଦି ହେଇ ଜୀଉଁଥିବା ଆଉ କେତେଜଣ ଲୋକଙ୍କ କଥା ।

ଷ୍ଟେସନର ଲେଡ଼ିଜ୍ ୱେଟିଂ ରୁମ୍‌କୁ ଯାଇ ବୁର୍ଖା ଖଣ୍ଡିକ ପିନ୍ଧି ପକେଇଥିଲା ସେ । ଟ୍ରେନ୍ ଆସିଲା ଯୁଗଟିଏ ପରେ । ସଂଜ ହେଇ ଆସୁଥାଏ । ମୁହଁ ଉପରେ ବୁର୍ଖା ପର୍ଦ୍ଦା ଥାଇ ବି ଛାନିଆଁରେ ଏଣିକି ତେଣିକି ଚାହିଁ ଚାହିଁ ଏକୁଟିଆ ଲେଡ଼ିଜ୍ କମ୍ପାର୍ଟମେଣ୍ଟରେ ଚଢ଼ିଲା ଫାତିମା । ସହର ପଛରେ ଛାଡ଼ି ଗାଡ଼ି ଧାଇଁଲା ବେଳକୁ ସଂଜ ଗଡ଼ି ରାତି ଗହୀର ହେଇଆସୁଥାଏ । ପାଖରେ ବସିଥିବା ସ୍ତ୍ରୀଲୋକଙ୍କ ଦୃଷ୍ଟିକୁ ପ୍ରଶ୍ନସବୁକୁ ନାନାମତେ ସମ୍ଭାଳି ଅପେକ୍ଷା କରୁଥାଏ ସେ ମୁକ୍ତାରକୁ । ଶେଷକୁ ଆଖି ବୁଜି ଢୁଳେଇବା ବାହାନାରେ ଆକୁଳରେ ଆଲ୍ଲାଙ୍କୁ ଡାକିଲାବେଳକୁ କାନ୍ଧରେ ହାତ ପାପୁଲିଟିଏ ଥୋଇଲା କିଏ, ପ୍ରାୟ ହାଉଳି ଖାଇଗଲା ଫାତିମା । ପାଖରେ ମୁକ୍ତାର ଛିଡ଼ାହେଇ ହସୁଥାଏ । କେଉଁ ଗୋଟିଏ ବଡ଼ ଷ୍ଟେସନ ସେଇଟା । ନିର୍ଭୟରେ ବଡ଼ ପାଟିରେ କଥା କହୁଥାଏ ମୁକ୍ତାର । ନିଜ ସହର କୋଉ ପଛରେ ପଡ଼ିଲାଣି । ଫାତିମାର ହାତ ଧରି ବାଟ କଢ଼ାଇନେଲା ସେଇଠୁ ଆଉ ଗୋଟିଏ ଡବାକୁ । ମନେଅଛି, ପ୍ରଥମ କରି ସଭିଙ୍କ ଆଗରେ ଏତେ ପାଖାପାଖି ବସିଥିଲେ ଦୁହେଁ, ଜେନେରାଲ୍ ଡବାର କାଠ ସିଟ୍‌ରେ । ମୁକ୍ତାର କ'ଣ ସବୁ କହିଚାଲିଥିଲା । ଫାତିମାର ମୁହଁରୁ କିନ୍ତୁ କୋଲପ ଫିଟୁନଥିଲା ତେବେବି ।

ଅଧରାତି ହେବ, ମୁକ୍ତାରର ସ୍ୱର ଶୁଣିଲା, "କାନ୍ଦୁଚୁ କାହିଁକି ଫାତିମା ?"

ଫାତିମାର ଖିଆଲ ନଥିଲା ଯେ ସେ କାନ୍ଦୁଥିଲା । ମୁହଁ ଉପରୁ ନକାବ୍‌ଟା ଉଠେଇଦେଇଥିଲା ସେ, ଆଉ ମୁକ୍ତାରର କାନ୍ଧଉପରେ ମୁଣ୍ଡ ରଖି ଆଖି ବୁଜିଦେଇ ବସିଥିଲା । କେତେବେଳୁ ତା' ଆଖିରୁ ଲୁହଧାର ବହି ଚାଲିଥିଲା ତାକୁ ଜଣା ବି ନଥିଲା । ମୁକ୍ତାର ମୁରବୀପଣିଆରେ କହିଲା, "ଲୁହ ପୋଛିପକା । କିଏ ଦେଖିଲେ କ'ଣ ଭାବିବ ?"

କଥା ମାନି ଲୁହ ପୋଛିପକେଇଲା ଫାତିମା । ତା' ମୁହଁକୁ ଅନେଇ ମୁକ୍ତାର ପଚାରିଲା, "ଭୋକ ହେବଣି ତତେ । ଖାଇନଥିବୁ ତ କିଛି ?"

ମନେପଡ଼ିଲା, ଆଜି ସକାଳେ କିଛି ଖାଇପାରିନଥିଲା ଫାତିମା, ତଣ୍ଟି ତଳକୁ କିଛି ଢୋକି ପାରିନଥିଲା ପ୍ରାୟ । ସେଇ ବାହାରିଲାବେଳୁ ପେଟରେ କିଛି ଆଉ ପଡ଼ିନି, ପ୍ଲାଟଫର୍ମରେ ଜଳ ପାଖକୁ ଯାଇ ପାଣି ପିଇବାଲାଗି ବି ତାକୁ ଭୟ ଲାଗିଥିଲା ।

କେଉଁ ଗୋଟିଏ ସାନ ଷ୍ଟେସନରେ ମୁକ୍ତାର ଉଠିଲା, "ଯାଏଁ ଦେଖେଁ ଖାଇବାକୁ କ'ଣ ମିଳୁଚି, ତୁ ତ ଦିନଯାକ କିଛି ଖାଇନଥିବୁ ।"

"ତମେ ବି ତ କିଛି ଖାଇନଥିବ ।"

"ନାଇଁ, ମୁଁ କ'ଣ ଟିକେ ଖାଇଦେଇଥିଲି । ତୁ ତ ଆଉ କମ୍ପାର୍ଟମେଣ୍ଟରେ ଥିଲୁ ନା ।"

ବାହାରେ ଶୂନଶାନ ଷ୍ଟେସନ୍‌ଟି ଆଡ଼େ ଅନାଇ ମୁକ୍ତାରର ହାତ ଧରିପକେଇଲା ଫାତିମା, କହିଲା, "ଏଠି କୋଉଠି ଓହ୍ଲଉଚ । ବସ, କୁଆଡ଼େ ଯିବା ଦରକାର ନାହିଁ ।"

ବୋଧେ ପ୍ରଥମ କରି ଏମିତି ନିଜ ତରଫରୁ ଫାତିମା ତା' ହାତ ଧରିଥିଲା । ମୁକ୍ତାର ହସିପକେଇ କହିଲା, "ବୋକୀ କୋଉଠିକାର । ପାଞ୍ଚ ମିନିଟ୍‌ରେ ଆସୁଚି, କିଛି ଖାଇବା ନ ଆଣିଲେ କ'ଣ ତୁ ଭୋକରେ ରହିବୁ ?"

ଫାତିମା ସେମିତି ଥାଇ କହିଲା, "ଡ଼ର ମାଡୁଚି ମତେ ।" ନିଜ ହାତକୁ ତା' ହାତରୁ ଗେହ୍ଲାରେ ଝଟକାଇ ନେଲା ମୁକ୍ତାର,

"ଏଣିକି ଚିନ୍ତା ଡର ସବୁ ଛାଡ଼ି ଦେ ବୁଝିଲୁ । ସବୁ ମୋ' ଉପରେ ଛାଡ଼ିଦେ ।"

ମୁକ୍ତାର ଓହ୍ଲେଇଗଲା ପରେ ପ୍ରଥମ କରି ଘର କଥା ମନେପକେଇଲା ଫାତିମା । ରାତି କେତେଟା ହେବଣି କେଜାଣି । ଘରେ ସମସ୍ତେ ଖାଇ ଶୋଇସାରିବେଣି । କିନ୍ତୁ ଶୋଇବେ କେମିତି ? କ'ଣ ହେଇଥିବ ଆଜି ସନ୍ଧ୍ୟାରେ, ଫାତିମା ଘରକୁ ଫେରିନଥିବା ପରେ । ଆଗକୁ ଆଉ ଭାବିବାକୁ ନାହିଁ କଲା ଫାତିମା, ମନରୁ ଘଉଡ଼ିଦେଲା ସେ ଚିନ୍ତାକୁ ।

ଦିଇଟା ପତ୍ର ଦନାରେ କ'ଣ ଖାଇବା ନେଇ ଆସି ଫାତିମା ହାତକୁ ବଢ଼େଇଦେଲା ମୁକ୍ତାର । ହେଲେ ଟ୍ରେନ୍ ଛାଡ଼ିଲାବେଳକୁ ବି ହାତରେ ତାକୁ ସେମିତି ଧରିଥାଏ ଫାତିମା ।

ମୁକ୍ତାର ସେଥିରୁ ଅଳ୍ପଟିକିଏ ନେଇ ନିଜେ ଖାଇଲା, କହିଲା, "ଖାଇପକା, ଥଣ୍ଡା ହେଇଯିବ ।"

ଭୟରେ, ଶୋଷରେ ଫାତିମାର ତଣ୍ଟି ଶୁଖି ଯାଉଥିଲା । କଷ୍ଟରେ କହିଲା ସେ, "ପାଣି ଟିକେ ।"

ସାମ୍ନା ସିଟ୍ ବାଲାର ସୋରେଇରୁ ନିର୍ଭୟରେ ପାଣି ଆଣିଲା ମୁକ୍ତାର । କହିଲା, "ଏଥର ଖାଇପକା, ଭୋକ ଓପାସରେ କ'ଣ ହେଲାଣି ତୋ' ଚେହେରା ।"

ରୁଦ୍ଧା ଗଳାରେ ଫାତିମା ପଚାରିଲା, "ଆମ ଘରେ କ'ଣ ହେଇଥିବ ? କାହାକୁ କିଛି ନକହି ଏମିତି ଚାଲିଆସିଲି ?"

"କ'ଣ ହେଲା ସେଇଠୁ ?... ଅନ୍ଦାଜ କରିନେଇଥିବେ ସେମାନେ । କେହି ନା କେହି କହିବେ ତାଙ୍କୁ ନିଶ୍ଚେ । ତୁ କାହାକୁ କିଛି କହିନୁ ତ ?... ନା କହିଛୁ କିଛି ?..."

ଫାତିମା ଚିଠି ଛାଡ଼ିଥିବା କଥା କିଛି କହିଲାନି । ମୁକ୍ତାର କହିଲାଗିଚି, "ଟିକିଏ ଚିନ୍ତା କରିବେ ଦିନାକେତେ, ଚୁପ୍ ହେଇ ରହିବେ ବଳେ । ତୁ ଖାଇଲୁ ।"

ଅଳ୍ପ ଅଳ୍ପ ମନେପଡୁଥିଲା ଫାତିମାର, ପାଖ ସାହିର ଝିଅଟିଏ ଘରୁ ପଳେଇଯାଇଥିବା କଥା । ତା' ପିଲାଦିନେ । ଚିହ୍ନିନଥିଲା ସେ ଝିଅଟିକି, ଫାତିମା ଘରେ କେହିହେଲେ ତାକୁ ଜାଣିନଥିଲେ । ସାହିର ସ୍ତ୍ରୀଲୋକମାନେ ସବୁ ଗପୁଥିଲେ ସେ କଥା । ଏମିତି ଚୁପ୍‌ଚାପ୍ ହେଇ କଥା କହୁଥିଲେ ସତେକି ପ୍ରଳୟ ହେଇଯିବ ଜୋର୍‌ରେ କହିଦେଲେ । ସତେକି ଏମିତି କଥା ଜୋର୍‌ରେ କହିବା ହିଁ ଲାଜକଥା । କେମିତି ଦିନ କାଟିବେ ଫାତିମା ଘର ଲୋକେ ସେ ନଥିଲା ବେଳେ ? କେମିତି ସାମ୍ନା କରିବ ମା' ସାହିର ସ୍ତ୍ରୀ ଲୋକଙ୍କୁ ? ବାପା ତେସ୍ ଖେଳିବା ସାଙ୍ଗମାନଙ୍କୁ ଭେଟିବେ କେମିତି ?... ଆଉ ଆଗର ଦୃଶ୍ୟସବୁକୁ ଆଖି ବୁଜିଦେଲା ସେ ।

"ଖାଇପକା, ଧରିଚୁ କାଇଁକି ହାତରେ । ମୁଁ ବି ମୋ' ଘର ଛାଡ଼ି ଆସିଚି ନା ନାଇଁ ? ଦେ, ଖାଇଲୁ ଏଥର ।"

ପାଟିର ଗୁଣ୍ଡା ତଣ୍ଟିତଳକୁ ଯାଉନଥିଲା ଫାତିମାର । ମୁକ୍ତାରକୁ କିଛି କହିନଥିଲା ସେ । ସେଦିନ ମୁହୂର୍ତ୍ତ ମୁହୂର୍ତ୍ତ କରି ତା' ଛାତିରେ ଲେଖିହେଇଯାଉଥିଲା ଯାହା, ଲୁହଧାରରେ କୋରିହେଇଯାଉଥିଲା ସାରା ଜୀବନ ଲାଗି, ତାକୁ କହିବାଲାଗି କେଉଁ ଭାଷା ଥିଲା ବା ତା' ପାଖେ ।

ମୁକ୍ତାର ଏଥର ତା' ପିଠିରେ ହାତ ଦେଇ କହିଲା, "ଏତେ ଚିନ୍ତା କରୁଚୁ କାଇଁକି ଫାତିମା । ମୋ' ଉପରେ ତୋ'ର ବିଶ୍ୱାସ ନାଇଁ କି ? ଦିନ କେତେଟା ଟିକିଏ କଷ୍ଟ ସହିପାରିବୁନି ମୋ' ସାଙ୍ଗରେ ?..."

ଫାତିମାର କୋହ କମିଗଲା । ଲୁହ ପୋଛି ସେ କହିଲା, "ସେକଥା ନୁହେଁ ।"

"ଆଉ କୋଉ କଥା ତେବେ ?... ଘରଛାଡ଼ି କ'ଣ ଯିବାକୁ ହୁଏନି ସବୁ ଝିଅଙ୍କୁ ?..."

ହତାଶ ହେଇ ଫାତିମା ଝରକା ବାହାରକୁ ଅନେଇଲା । ଆଖପାଖ ସିଟ୍ ମାନଙ୍କରେ ଯିଏ ଯୋଉଠି ଯେମିତି ପାରିଲା ଲୋକେ ଶୋଇଯାଇଚନ୍ତି । ଚେଇଁରହିଚନ୍ତି କେବଳ ସେଇ ଦି'ଜଣ । ଲାଇଟ୍ ବି ଗୋଟିଏ ଧୀମା ହେଇ ଜଳୁଚି । ଗୋଟିଏ ଗୋଟିଏ କରି ଥଣ୍ଡା ପୁରି ତରକାରି ଖାଇଲା ଫାତିମା ।

ସମସ୍ତେ ଶୋଇଥିଲା ବେଳେ ଟ୍ରେନ୍ ସାଙ୍ଗେ ଝୁଲିଝୁଲି ଚେଇଁରହିଥିଲେ ଦିହେଁ । ଟିକି ସୋରେଇଟିକୁ ସାବଧାନରେ ଟେକି ପାଣି ପିଉପିଉ ଜଡ଼ିହେଇ ଛାତିରେ ପଡ଼ିଥିଲା ଫାତିମାର, ପୋଛିବାକୁ ହାତ ବଢ଼େଇଦେଇଥିଲା ମୁକ୍ତାର ଆଉ ହସି ପକେଇଥିଲେ ଦିହେଁ । ବୁର୍ଖାରୁ ସାମ୍ନାପଟଟା ଓଦା ହେଇଯାଇଥିଲା, ଦେହରୁ କାଢ଼ିପକେଇ ସିଟ୍ ଦେହରେ ମୋଡ଼ି ରଖିଦେଇ ଫାତିମା କହିଥିଲା, "ତମେ ଶୋଇପଡ଼, ମୁଁ ବସିଚି ।"

ବାହାରେ ଫିକା କୁହୁଡ଼ିଆ ଜହ୍ନଟାଏ ଥିଲା । ନୂଆ ଖରାଦିନର ମିଠାଳିଆ ରାତି ପବନ । ଝର୍କାପାଖକୁ ଜାକିଜୁକି ହେଇ ବସିଥିଲେ ଦିହେଁ । ମୁକ୍ତାର କହିଥିଲା, "ଏମିତି ଏକାଠି ସାଙ୍ଗରେ ବସିବାକୁ କେବେ ଜୁଟିଚି କହିଲୁ ? ଭାବି ଭାବି କେତେ ଦିନ ଚାଲିଯାଇଚି । ଖାଲି ତରତରିଆ ଯାହା ଯେତିକି ହେଇଚି, ସେଥିରେ କ'ଣ ମନ ପୂରେ ? ଏଣିକି ଏକା ଆଉ ଶୋଇବା କଥା ନୁହେଁ । ବସିବା, ଶୋଇବା ଯାହା ହେବ ଏମିତି, ଲଗାଲଗି ହେଇ ।"

ତା' ଦେହକୁ ଆହୁରି ଜାକିହେଇ ଆସିଥିଲା ମୁକ୍ତାର । ପୁଣି କେତେବେଳକୁ ଫାତିମାର କାନ୍ଧରେ ମୁଣ୍ଡ ରଖି ତା'ର ଆଖି ବୁଜିହେଇଯାଇଥିଲା ।

ଫାତିମାର ଆଖି ଖୋଲା ଥିଲା ସେମିତି । ଝରକା ବାହାରର ଦୁନିଆଁକୁ ଦେଖିବାକୁ ଚେଷ୍ଟା କରୁକରୁ । ଦୂର ଆକାଶରେ ନାଲିଚିଆ ଆଲୁଅ ଦିଶିଆସିଲାଣି । ଦିନ ଫିଟିଆସିବ ଚାହୁଁ ଚାହୁଁ । ବସିବସି ପିଠି ଅଣ୍ଟା ଦରଜ ହେଲାଣି, ହେଲେ ଏବେ ଖାଲି ସବୁର କରିଯିବା କଥା । ଟିକିଏ ବେଳକେ ନୂଆ ଦିନଟିଏ ଆସି ଉଭା ହେବ ।

ମୁକ୍ତାର ବାଥରୁମ୍‌ରୁ ହାତ ମୁହଁ ଧୋଇ ଆସିଲା, ପାଖରେ ବସି ସାନ ତଉଲିଆରେ ମୁହଁ ପୋଛି କହିଲା, "ଯା ହାତ ମୁହଁ ଧୋଇଆ ଲୋକେ ଭୀଡ଼ କରିବା ଆଗରୁ । ଘରେ ଯାଇ ପହଞ୍ଚିଲେ କେତେ କାମ ଅଛି ଜାଣିଚୁ ?..."

କ'ଣ କାମ ? କେମିତି ସେ ଘର ?... ସେ ଦିହିଙ୍କ ଘର ?...

ତେବେ ଏକଥା ପଚାରିବାକୁ ଫାତିମାର ତୁଣ୍ଡରେ ପଇଟିଲା ନାହିଁ । ତା' ବଲବଲ ଚାହିଁଥିବା ଆଖିକୁ ଅନେଇ ମୁକ୍ତାର ଓଠଚାପି ହସିଲା, ନଇଁପଡ଼ି ଚୁପ୍‌ଚପ୍ କହିଲା, "ହଉ, ଚିନ୍ତା କରନା । ଆଜି ଦିନକ ତୋ'ର କିଛି କାମ ନାହିଁ । ଖାଲି ସବୁଠୁ ଜରୁରୀ କାମ ଯାହା ।"

# କୁହୁଡ଼ି ଭିତରେ ସଂସାର

ଆଜି ଆଉ ମନେପକେଇବାକୁ ଚେଷ୍ଟାକଲେ ବି ସହଜରେ ଆସୁନାହିଁ, ତାପର ଦିନମାନଙ୍କ ସ୍ପଷ୍ଟ ଛବି । ଜୀବନ ବାହାରର ଅଂଶ ଖଣ୍ଡିଏ ଅବା ଥିଲା ସେ ।

ମନେପଡୁଚି ସେଦିନ ଷ୍ଟେସନ୍‌ରୁ ବସ୍ ଧରି ନୂଆ ଘରକୁ ଯିବାର କଥା । ଏଣିକି ନିଜେ ବାଛିଥିବା ଜୀବନସଙ୍ଗୀଟି ବାଟ କଢ଼େଇନେଲା ବାଟରେ ହିଁ ଭରସା କରିବା ଲାଗି ନିଜକୁ ତିଆରୁ ଥାଏ ଫାତିମା । ବସ୍ ଝରକାରୁ ମୁକ୍ତାର ଚିହ୍ନେଇ ଦେଉଥାଏ ରଜା ଉଆସ ଭଳି ଦିଶୁଥିବା କୋଠାବାଡ଼ି ଓ ଆଖିଝଲସା ବଜାର ମାନଙ୍କୁ, ସତେକି କାହିଁ କେତେଦିନୁ ଚିହ୍ନିଚି ସେ ସେମାନଙ୍କୁ । ପୁଣି ତା' ସହିତ ବଖାଣୁଥାଏ ଏଭଳି କୁହୁକ ଦେଶରେ ରହିବା ଜାଗାଟିଏ ଠାବ କରିଥିବାର କରାମତି କଥା, ସତେକି ସାମ୍ରାଜ୍ୟଟିଏ ତା'ର ହାତପଇଠ ହେଇଯାଇଚି ।

ପୁରୁଣାକାଳିଆ ଚାଳ୍‌ଘରଟିକୁ ଦୂରରୁ ଆଙ୍ଗୁଠି ଦେଖେଇ ଚିହ୍ନେଇ ଦେଲା ମୁକ୍ତାର ଯେବେ, ଉଈହୁଙ୍କା ଭଳି ଚାରିତାଲା କୋଠାଟିର ବାହାର ଭିତର ହାଉଯାଉ ହେଉଥିବା ଲୋକଙ୍କୁ ଦେଖି ଫାତିମାର ମନେପଡ଼ିଲା ପୁରୁଣା ନବାବ ମଞ୍ଜିଲ । ତା' ସହିତ ସେଇଠୁ ଆରମ୍ଭ ହେଇଥିବା ତା'ର ଘର ପାତିବାର ସ୍ୱପ୍ନ ଯାହାର ସ୍ମୃତି ତା' ମନ ଭିତରେ ସତସତିକା ଚିତ୍ର ପାଲଟି ଯାଇଥିଲା । ମନରୁ ଘଉଡ଼ି ଦେଲା ଏଥର ମନର ସେ ଛବିକୁ । ନିଜକୁ ଆକଟିଲା, କିଏ କହିବ ଯେଉଁ ଘରକୁ ମୁକ୍ତାର ନେଇଯିବ ବୋଲି କଥାଦେଇଚି ସିଏ ଆହୁରି ସୁନ୍ଦର ନୁହେଁ ବୋଲି, ବା ହେବନାହିଁ ବୋଲି ? ମୁକ୍ତାର ପରା ନବାବ ମଂଜିଲକୁ ନାକ ଟେକି ଚାଲିଆସିଚି । ତା'ପରେ ଆତଯାତ ଲୋକଙ୍କ ଆଡ଼େ ଜମା ନ ଅନେଇ, ମୁକ୍ତାର କାହା ସଙ୍ଗେସବୁ ପଦେଅଧେ କଥା ହେଲାବେଳେ ତେଣିକି କାନ ନଦେଇ ମୁହଁପୋତି ତା' ପଛରେ ଚାଲିଚାଲି ଫାତିମା ଶେଷରେ ନିଃଶ୍ୱାସ ମାରିଲା ଯେବେ ତା' ଘରର ତାଲା ଖୋଲିଲା । କବାଟ ଖୋଲିବା ପୂର୍ବରୁ ମୁକ୍ତାର ଅନେଇଲା ଫାତିମାର ମୁହଁକୁ ଟିକିଏ ଦୋଦୋପାଞ୍ଚ ହେଲାଭଳି, କହିଲା, "ବଖରାଏ ବୋଲି ଘର, ଏଠି ଲୋକେ ପିଲାପିଚିକା ନେଇ ରହନ୍ତି ଏମିତି ଘରେ । ଆମେ ଚଳିଯିବା ଦିନାକେତେ, ନାହିଁ ଫାତିମା ?" ତା' ମୁହଁକୁ ଅନେଇ କିଛି ନ କହି ହସିଲା କେବଳ ଫାତିମା, ସବୁ ଚିନ୍ତାଦକ ଉଡେଇ ଯାଇଥିବା ଭଳି ମୁହଁ ଉଜଳ କରି । ନିଜ

ଘର ବୋଲି ଭାବିନେଇଥିବା ସେଇ ଜାଗାଟି ହିଁ ତା'ର ସବୁ ସମସ୍ୟାର ମୂର୍ତ୍ତିମନ୍ତ ସମାଧାନ ଥିଲା ସତେଅବା ।

ଭିତରେ ପାଦ ଦେଇ ଘରିପାଖକୁ ଆଖି ବୁଲେଇ ଥରେ ଦେଖିନେଉ ନେଉ ପଛରୁ କବାଟ ବନ୍ଦ ହେବାର ଶୁଣିଲା ଓ ମୁକ୍ତାରର ବାହୁରେ ବେଢ଼ିହେଇ ଭୂଇଁଛାଡ଼ି ଶୂନ୍ୟକୁ ଉଠିଗଲା ସେ । ଗୋଟିପଣେ ତାକୁ ଟେକିନେଇ ଘିରିଘିରି ବୁଲେଇନେଉଥିଲା ମୁକ୍ତାର । ନିଜଘରକୁ ଥରେ ଦେଖି ଚିହ୍ନିବା ଆଗରୁ ତା'ର ଛାତ ସହିତେ ଘରିକାନ୍ଥ ଗୋଳିଆଗୋଳି ହେଇ ଚକ୍ରିପରି ବୁଲୁଥିଲା ଫାତିମାର ଆଖି ଆଗରେ । ଛାନିଆଁରେ ଆଖିବୁଜି ମୁକ୍ତାର ବେକ ଛାତିକୁ ଜାବୁଡ଼ି ଧରି କାନ୍ଦୁଣୁ ମାନ୍ଦୁଣୁ ହେଇ ଗୁହାରି କଲା ସେ, "ପଡ଼ିଯିବି ପଡ଼ିଯିବି ଛାଡ଼ିଦିଅ ମତେ ।" ଉତ୍ତରରେ ମୁକ୍ତାର ତାକୁ ଆଖିବୁଜା ଚୁମା ଦେଉଥିଲା ଆଉ ହୋ ହୋ ହସୁଥିଲା । ତଳେ ପଡ଼ିଥିବା ଚଟେଇ ଖଣ୍ଡକ ଉପରେ ଦିହେଁ ଅଜାଡ଼ି ହେଇ ପଡୁପଡୁ କାନପାଖରେ ଶୁଭିଥିଲା ମୁକ୍ତାରର ସ୍ୱର, "ଆମେ ଏକାଠି ଏଣିକି... ତୋ'ର ଆଉ ମୋର... କେହି ନାହାନ୍ତି ଏଠି... ମୁଁ ଆଉ ତୁ ବାସ୍... କୁଆଡ଼େ ଛାଡ଼ିବିନି ତତେ... କାହାକୁ ଆଉ ଖାତିର୍ ନାଇଁ... ମୋ' ଜାନ୍..."

ପ୍ରଥମ କରି କୁଣ୍ଠା, ଭୟ, ଅନିଶ୍ଚୟ ସବୁ ଗୋଟି ଗୋଟିକରି ଫିଟି ଆଡ଼େଇ ହେଇଯାଉଥିଲା ଫାତିମାର ଦେହରୁ ମନରୁ ଅନାୟାସ ।

କେତେବେଳକେ ପୁଣି ଫେରିଆସିଲେ ଦିହେଁ ନିଦା କୋଠରୀକୁ । କୋଉକାଳୁ ଚୂନ ଧଉଳା ହେଇନଥିବା ସେ ଘରିକାନ୍ଥ ମଝିରେ ପାଖାପାଖି ଚଟେଇରେ ଶୋଇରହିଲେ କେତେବେଳଯାଏଁ । ସତେକି ତା' ବାହାରେ ଆଉ କେହି ନାହିଁ, କିଛି ନାହିଁ । ମୁକ୍ତାର ହାତ କଚଟିର ଘଡ଼ିରେ ସମୟ ଦେଖିଲା ଫାତିମା । ଜିଭ କାମୁଡ଼ି ଉଠି ବସିଲା । ମୁକ୍ତାର ତାକୁ ବାହୁରୁ ଧରି ନିଜ ଉପରକୁ ଟାଣିନେଇ କହିଲା, "ଏମିତି ପାଖାପାଖି ଶୋଇଥାଆନ୍ତେ କି ସବୁକାଳ, ଉଠନ୍ତେ ନାଇଁ, କିଛି ଆଉ କରନ୍ତେ ନାଇଁ ଜୀବନ ଯାକ ।"

ନିଜକୁ ତା' ବାହୁରୁ ମୁକୁଳାଇ ନେଇ ପୁଣି ଉଠିଲା ଫାତିମା । କଡ଼ରେ ଥୁଆ ଲୁଗା ଖଣ୍ଡକ ନେଇ ଦେହରେ ପକାଉ ପକାଉ କହିଲା, "ଛି ଛି, କେଡ଼େ ଅସନା ଲାଗୁଚି, ଟ୍ରେନ୍‌ରେ ଆସିଚେ ପରା । ମୋ' ମା' ତ ଘରେ ପୂରେଇ ଦିଅନ୍ତା ନାଇଁ । ବାପା ଯଦି କୁଆଡୁ ଟ୍ରେନ୍‌ରେ ଫେରିଥିବେ, ବାହାର କୂଅରେ ଗାଧେଇ ସେଇଠି ଲୁଗା ଛାଡ଼ି ଆସିବାକୁ କହେ ।" କହୁକହୁ ଫାତିମାର ଛାତି ପୂରିଆସିଲା, ଓଠ ଚପିନେଇ ସେଠୁ ଉଠିଗଲା ସେ ।

ମୁକ୍ତାର ଚୁପ୍‌ଚାପ୍ ଛାତର ମସିଆ ଫ୍ୟାନ୍‌କୁ ଅନେଇରହି ଶୋଇଥାଏ ତଥାପି ସେମିତି । ଛୋଟିଆ ରୋଷେଇଟିର କଳପାଖେ ବାଲ୍‌ଟିରେ ପାଣି ଭରିଲା ଫାତିମା । ଥାକ କଣରେ

ସାବୁନ୍ ଅଛି, ଅଲୁଗୁଣୀରେ ମୁକ୍ତାରର ତଉଲିଆ । ଗାଧୁଆ ସାରି ଓଦା ବାଳ ଝାଡୁଝାଡୁ ଆଖିବୁଜି ଶୋଇଥିବା ମୁକ୍ତାରକୁ ପଚାରିଲା, "ଆରେ, ଶୋଇଲଣି କ'ଣ ତମେ ? ଉଠ, ଗାଧେଇପଡ଼ ଆଗ ।"

ଉତ୍ତର ନ ଆସିଲାରୁ ପଛକୁ ଫେରି ଅନେଇ ଫାତିମା ଦେଖିଲା ମୁକ୍ତାର ତାଆରି ଆଡ଼େ ଅନେଇ ରହିଚି ଆଉ ମୁଚୁ ମୁଚୁ ହସୁଚି । ଦେହରେ କେବଳ କୁର୍ତ୍ତାଟା ଗଳେଇ ପକେଇଥିଲା ଫାତିମା, ସାଲୁଆର ନଥିବା ତା' ଖାଲି ଗୋଡ଼କୁ ଅନେଇଚି ମୁକ୍ତାର । ଓଦା ଓଢ଼ଣୀଟାକୁ ଅଣ୍ଟାରେ ଗୁଡ଼େଇହେଇ ପଡ଼ି ଫାତିମା ମିଛ ରାଗରେ ଭୁରୁ କୁଞ୍ଚେଇଲା, କହିଲା, "ହସୁଚ କ'ଣ ମ ଏମିତି ଫାଜିଲଙ୍କ ପରି ? ଆମ ନିକାହଟା କେବେ ହେବ ଆଗ କହିଲ ।"

ମୁକ୍ତାର ଏଥର କ ଜୋର୍‌ରେ ହସିପକେଇଲା । କହିଲା, "ଧନ୍ୟ କହିବ ତୋତେ । ଆଗ ଖାଇବା କ'ଣ, ରହିବା କେମିତି ସେକଥା କିଛି ନାହିଁ । କ'ଣ ନା ବାହାଘର ।"

"ରହିବା ଖାଇବା କ'ଣ ସେତେ ବଡ଼ କଥା ? ଆମ ବାହାଘର ତା'ଠୁ ବଡ଼ କଥା ନୁହେଁ ?"

ମୁକ୍ତାର ଉଠି ବସିଲା, ନିଜ ମୁଣ୍ଡ ବାଳ ସାଉଁଳି ଥକ୍କା ଆଖିରେ ଅନେଇଲା ଏଥର, କହିଲା, "ତୋ ମୁଣ୍ଡରେ ବାହାଘର ଭୂତଟା ଏମିତି ପଶିରହିଚି କାହିଁକି କହିଲୁ ? ଏଇଠି କିଏ ଜାଣୁଚି ଆମେ ବିବାହିତ ନା ନୋହୁଁ ? ଶାଦିଶୁଦା ବୋଲି କ'ଣ କାହା କପାଳରେ ଲେଖା ହେଇଥାଏ ?"

ଫାତିମା ତା' କଥାର ଜବାବ ଦେଲା ନାହିଁ, ହେଲେ ଲୁଗା ଧୋଉଥିବା ତା' ହାତ ରହିଗଲା ସେମିତି ଖୋଲା ପାଣିକଳ ତଳେ । ତା'ର ମଉଳା ମୁହଁରେ କ'ଣ ଦେଖିଲା କେଜାଣି, ମୁକ୍ତାର ଏଥର ଉଠି ଛିଡ଼ାହେଲା, ପ୍ରାୟ ଚିଡ଼ିଗଲା ସ୍ୱରରେ କହିଲା, "ତୋର ଏତିକି ବୋଲି ବିଶ୍ୱାସ ନାହିଁ ମୋ' ଉପରେ ଫାତିମା ? ତା'ହେଲେ ଘର ଛାଡ଼ି ମୋ' ସାଙ୍ଗେ ଆସୁଥିଲୁ କାହିଁକି ? ବାପା ଯାହାକୁ ବାଛିଲେ ବାହାହେଇପଡ଼ିଲୁ ନି ?"

କିଛି ନକହି ତଳକୁ ମୁହଁ ପୋତି ବାଲ୍‌ଟିରୁ କାଚିଲା ଲୁଗା କାଢ଼ି ଚିପୁଡ଼ି ବସିଲା ଫାତିମା । ତା' ଆଖିରୁ ଲୁହ ଦିଟୋପା ଗଡ଼ିପଡ଼ିବା ମୁକ୍ତାରର ନଜରରେ ପଡ଼ିଲା କି ନାହିଁ କେଜାଣି । ସେ ଏତେବେଳକୁ ସାର୍ଟ ଖଣ୍ଡେ ଦେହରେ ଗଳେଇ କହିକହିକା ବାହାରିଗଲା, "ଯାଏଁ କିଛି କିଣାକିଣି କରି ଆଣେ ଆଗ । କବାଟ ଦେଇଦେଇଥିବ ।"

ଫାତିମା କବାଟ ବନ୍ଦକରି ବ୍ୟାଗ୍‌ରୁ ସାଲୁଆର କାଢ଼ି ପିନ୍ଧିଲା । ଧୁଆ ଲୁଗା ଦି'ଖଣ୍ଡ ଝରକା ପାଖେ ଜାଗା ଖୋଜି ଶୁଖେଇଲା । ରୋଷେଇ ଘର କୋଣରେ ପଡ଼ିଥିବା ଝାଡୁ ଖଣ୍ଡକ ନେଇ ଘର ସଫେଇରେ ଲାଗିଗଲା ।

# ବସା ପାତିବାର ନିଶା

ଦିହେଁ କଥା ହେଇଥିଲେ ଏଠି କାହାରି ସାଙ୍ଗେ ବେଶୀ ମିଳାମିଶା କରିବା ଦରକାର ନାହିଁ । ଫାତିମା ବି ବିଶ୍ୱାସ କରିଥିଲା ଯେ ଶାଦିଶୁଦା ବୋଲି କାହାରି କପାଳରେ ଲେଖା ନଥାଏ । ହେଲେ ଦିନଟିଏ ବି ଗଲାନାହିଁ ।

ସେଦିନ ସଂଜ ପୂର୍ବରୁ ମୁକ୍ତାର ବଜାର ଆଡ଼ିକି ପୁଣିଥରେ ବାହାରି ଯାଉଁ ଯାଉଁ ବାହାର ଲମ୍ବ ବାରଣ୍ଡା ଉପରେ ଭେଟିଲେ ପଡ଼ିଶା ଘର ଶ୍ରୀମତୀ ଖଣ୍ଡେରକର । ସାଙ୍ଗରେ ତାଙ୍କର କଲେଜ ପଢୁଆ ଝିଅ ମନିକା । ଦିହିଙ୍କ ମୁହଁରେ ହସ । ମାଉସୀ କହିଲେ, "କ'ଣ ବେଟା ମୁକ୍ତାର, ବୀବୀକୁ ନେଇ ଆସିଚ ଏଥର ଦେଖୁଚି ।"

ମୁକ୍ତାର ଅପ୍ରସ୍ତୁତ ଭାବ ଲୁଚେଇପାରିଲା ନାହିଁ । ଫାତିମା ତାଙ୍କ କଥା ଶୁଣି ବି କବାଟ ଦେଇଦେଇ ସାରିଥିଲା ।

ଘଣ୍ଟାକ ପରେ ମୁକ୍ତାର ଫେରିଲା ବେଳକୁ କିନ୍ତୁ ଆଉ ଉପାୟ ନଥିଲା, ସାଙ୍ଗରେ ମାଉସୀ ଆଉ ତାଙ୍କ ଝିଅ ଦୁଆରବନ୍ଧ ପାଖେ ଠିଆହେଲେ । ମାଉସୀ କହିଲେ, "ଇଏ କ'ଣ, ବାହାରୁ ଖାଇବା ନେଇ ଆସିଚ ? ଓଳିଏ ଅଧେ ଆମ ଘରେ ଖାଇଦେଇ ନଥାନ୍ତ ।"

କହୁକହୁ ସେ ଘର ଭିତରକୁ ଆସିଲେ । ଝିଅ ତାଙ୍କର ଫାତିମା ପାଖକୁ ଆସି କହିଲା, "ବାପ୍‌ରେ, ଆମ ଭାଭୀ ଏତେ ସୁନ୍ଦର । ଆମକୁ ଲୁଚେଇଥିଲ ଏକଥା ନାହିଁ ?"

ଘର ଚାରିଆଡ଼ ଦେଖି ତାଙ୍କ ଶ୍ୟେନ ଦୃଷ୍ଟି ନିଶ୍ଚେ ଠଉରେଇ ସାରିଥିବ ଯେ ଅଧିକା ବାକ୍ସ ପତ୍ର ନେଇ ଏ ଦମ୍ପତି ଆସିନାହାନ୍ତି । ଆଉ ଫାତିମାର ଦେହରେ ନା ନବବଧୂର ସାଜଶୃଙ୍ଗାର ଅଛି ନା ଅଭ୍ୟସ୍ତ ସ୍ତ୍ରୀର ଘରଣୀପଣ ।

ତଥାପି ରାତିରେ ତାଙ୍କ ଘରୁ ଗିନାରେ ତରକାରୀ ଆସିଥିଲା ଓ ଯାହା ଦରକାର ହେଲେ ନିସଙ୍କୋଚରେ କହିବାକୁ ମାଉସୀ ବାରବାର ତାଗିଦ୍ କରି କହିଲେ । ଏଥରକ ମଉସା

ବି ଆସିଥାନ୍ତି ସାଙ୍ଗରେ, ହସହସ ମୁହଁରେ ଦୁଆରବନ୍ଧ ପାଖରେ ଛିଡ଼ା ହେଇ ଭିତରର ଦୃଶ୍ୟ ଦେଖୁଥାନ୍ତି । ବଡ଼ ପାଟିରେ ପଚାରିଲେ, "ଦି'ଜଣଙ୍କ ଲାଗି ବିଛଣା ଅଛି ନା ନାଇଁ ? ଚାଦର ଦି'ଖଣ୍ଡ ଆଣିଦବା, କିଛି କଥାନାଇଁ ।"

ସେମାନେ ଯାଉ ଯାଉ ମୁକ୍ତାର ଉଠି କବାଟ ବନ୍ଦ କଲା । ବୁଲି ଚାହିଁଲା ବେଳକୁ ଝରକା ବାହାରକୁ ମୁହଁକରି ଫାତିମା ଆଖି ପୋଛୁଚି । ନାଟର ହେଲାଭଳି କହିଲା, "ପୁଣି କ'ଣ ତମେ କାନ୍ଦିଲଣି ? ଏମିତି ବ୍ୟସ୍ତ ହେଲେ କେମିତି ଚଳିବ ?"

"ତମେ କାଇଁକି କହିଲନି ଏତେ ଲୋକ ତମର ଏଠି ଚିହ୍ନା ବୋଲି ? କ'ଣ ଭାବିଥିବେ ସେମାନେ ମୋତେ ?"

"କାଇଁକି କ'ଣ ଭାବିବେ ? ମୋ' ସ୍ତ୍ରୀ ବୋଲି ଭାବିବେ, ଆଉ କ'ଣ ?"

ଫାତିମା ଉତ୍ତର ଦେଲାନି ।

ତଳେ ଚଟେଇରେ ବସି ପ୍ଲେଟ୍‌ରେ ଖାଇବା ଜିନିଷ ସବୁ ପ୍ୟାକେଟ୍‌ରୁ କାଢ଼ିଲା ମୁକ୍ତାର । କହିଲା, "ଆସ ଖାଇବା । ଭୋକ ହେଲାଣି । ଏଇ ଚାଲ୍‌ର ପଡ଼ିଶାରେ କିଏ କ'ଣ ଭାବିଲେ ଆମର କି ଯାଏଆସେ ? ଟୋକୀଟାଏ କୋଉଠୁ ଉଡ଼େଇ ଆଣିଚି ମୁଁ, ଏଇଆ ଭାବିବେ ତ କିଛିଦିନ ? ଏଠି ବମ୍ବେରେ ଇଏ କିଛି ନୂଆ କଥା ନୁହେଁ ବୁଝିଲ ।"

ରୁଟି ଖଣ୍ଡେ ଶୁଖିଲା ପାଟିରେ ଚୋବଉ ଚୋବଉ ଗୁଁ ଗୁଁ ହେଇ ଫାତିମା କହିଲା, "ହେଲେ ଏଇଠି ରହିବା ତ ଆମେ, ? କିଛି ଦିନରେ ଆଖପାଖର ସମସ୍ତେ ବି ଜାଣିଯିବେ ।"

ଖାଉ ଖାଉ ଅତିରଂଜିତ ବେଖାତିରିରେ ମୁକ୍ତାର କହିଲା, "କାହାର ଆଉକିଛି ତ କାମ ନାହିଁ, ଖାଲି ଆମରି ବିଷୟରେ କଥା କହୁଥିବେ ସାରା ବମ୍ବେର ଲୋକେ । ଏଠି ନିଃଶ୍ୱାସ ମାରିବାକୁ ଫୁର୍‌ସତ ନଥାଏ କାହାରି, ବୁଝିଲ ?"

ହେଲେ ପରଦିନ ସକାଳୁ ଘର ତିଆରି ଚୁଡ଼ା ଉପମା ଆଉ ହାଲୁଆ ନେଇ ଆସିଲେ ତଳ ମହଲାରେ ରହୁଥିବା ମିସେସ୍ କୁରେଶୀ ଓ ମିସେସ୍ ଖାନ୍ । ମୁକ୍ତାର ସାଙ୍ଗେ ବି ତାଙ୍କର ସେଯାଏଁ ପରିଚୟ ନଥିଲା, କିନ୍ତୁ କହିଲେ ଯେ ମୁସଲମାନ ପିଲାଟିଏ, ଭାରୀ ଶାନ୍ତ ସୁଧାର ଗୁଣର ପିଲାଟିଏ ଆସି ତାଙ୍କରି ଚାଲ୍‌ରେ ରହୁଚି ବୋଲି ସେମାନେ ଖବର ପାଇଥିଲେ । ଏବେ ଜାଣିଲେ ତା' ବୀବୀ ବି ଆସିଲାଣି, ତେଣୁ ଆପଣାର ଲୋକ ବୋଲି ଭେଟିବାକୁ ଆସିଲେ ।

କୋଠରୀର ଆସବାବ ପତ୍ର ସବୁ ଦେଖି ଯାହା ଧାରଣା ତାଙ୍କର ହେଇଥିଲେ ହେଇଥାଉ, କିଛି ସେ ବିଷୟରେ ପଚରା ଉଚରା କଲେନାହିଁ । ଏମିତି କି କୋଉଠି ଘର, ବାପା ମା' କିଏ ଆଦି ପ୍ରଶ୍ନ ବି ପଚାରିଲେ ନାହିଁ । ପ୍ରୌଢ଼ା ମିସେସ୍ କୁରେଶୀ ଫାତିମାର ମୁଣ୍ଡ

ଗାଲ ଆଉଁଶି ଦେଉ ଦେଉ ଆଖି ଛଳ ଛଳ କରି କହିଲେ, "କେଡ଼େ ସୁନ୍ଦର ଜହ୍ନ ପରି ମୁହଁଟିଏ। ମୋର ଦିଇ ଦିଇଟା ଝିଅ ବାହା ହେଇ କୁଏତ୍ ଆଉ ଦୁବାଇରେ ଅଛନ୍ତି କିନା।"

ଯାଉ ଯାଉ ସେମାନେ ବି ସମୟ ଦେଖି ତାଙ୍କ ଘରକୁ ଯିବାକୁ କହିଲେ, ନିଜ ପରିବାର ଲୋକ ବୋଲି ମଣିବାକୁ କହିଗଲେ। କୋଠାର ଗୋଟିଏ ପାଖକୁ ଏକାଠି ଥିବା ଗାଧୁଆଘର ପାଇଖାନା ପାଖେ ବିଭିନ୍ନ ବୟସର ସ୍ତ୍ରୀ ଲୋକ, ପିଲାମାନେ ଆସି ଫାତିମା ସାଙ୍ଗେ କଥା କହିଲେ। ନିଜ ନିଜର ପରିଚୟ ଦେଇ ତାକୁ କିଏ କ'ଣ ଡାକିବ ବତେଇଦେଲେ। ସମବୟସ୍କ ମାନଙ୍କର ସେ ଭାଭୀ, ଛୋଟ ପିଲାଙ୍କର ଆଣ୍ଟି ଆଉ ବୟସ୍କା ମାନଙ୍କର ବେଟୀ। ତା' ବାପଘର ବା ଶାଶୁଘର ବିଷୟରେ କିଛି ହେଲେ ପ୍ରଶ୍ନ କାହାରି ନଥିଲା।

କେତେଦିନ ଧରି ଥିଲା ସେ କେଜାଣି, ଆରମ୍ଭର ସେ ଯେନତେନ ପ୍ରକାର ଘରକରଣା। ସାଇପଡ଼ିଶାଙ୍କ ସାଙ୍ଗେ ଆସ୍ତେ ଆସ୍ତେ ଗାଁ ଲୋକଙ୍କ ଭଳି ରହିବାର, ତରକାରୀ ଦିଆନିଆଠୁ କ୍ରମେ ଏକାଠି ପର୍ବ ମଉଛବ ଭୋଜି ଭାତରେ ବି ସାମିଲ ହେଇଯିବାର ସେ ନୂଆ ଅନୁଭବ।

ମୁନ୍ତାର ସାଙ୍ଗେ ଜୀବନ। ବେହିସାବ ଗପ। ଲଗାମଛଡ଼ା ସହରବୁଲା, ବସ୍ କରି, ପାଦରେ ଚାଲି। ଆଉ ବନ୍ଦ କୋଠରୀ ଭିତରେ ଏକାଠି ହେବା। ଗତ ଆଗତ ସବୁକୁ ହଜେଇଦେଇ ଦୁଇ ଦେହ ମିଶିଯିବା। ମିଳେଇଯିବା ନିଜ ଦେହରୁ ବାହାରି କେଉଁ ଅଦେହୀ ସ୍ଥିତିରେ।

ମୁନ୍ତାର ଘରୁ ବାହାରିଯାଏ ସକାଳୁ। ସେ ଗଲାପରେ ଆଗ ଆଗ ସେ କବାଟ କିଲି ରହୁଥିଲା। ପରେ ଆଉ ଅଜଣା ଜାଗାର ଭୟ ନଥାଏ। ସାଇପଡ଼ିଶା ଲୋକଙ୍କର ନୂଆ ମଣିଷ ବୋଲି ଉତ୍ସାହ କୌତୁହଳ କଟିଯାଇଥାଏ। ବିଶେଷ କେହି ଆଉ ଅବେଳରେ ଆସନ୍ତି ନାହିଁ। ହାତରେ ଥାଏ ଅସରନ୍ତି ସମୟ।

ଅଭ୍ୟାସ ମତେ ମୁଣ୍ଡ ଭିତରକୁ ପଶିଆସେ କାମ କରିବାର ଚାପ, ସତେକି କାହିଁ କେତେ କାମ ସାରିବାକୁ ଅଛି, ସମୟ ନଷ୍ଟ କରୁଚି ସେ। ବଖରାକର ଘରସଂସାରକୁ ଫାତିମା ମାଠିମୁଠି ସଜାଏ ନାନାମତେ। ଦିହେଁ ମିଶି ବଜାର ସଉଦା କରନ୍ତି, ଦୂରଦୂରାନ୍ତର ଦୋକାନ ହାଟରୁ ଦରଦାମ୍ ଦେଖି ଶକ୍ତିମତେ ଜିନିଷ କିଣାହେଇ ସଜାହୁଏ ଘର, ଝରି କାନ୍ଥ, ଗୋଟିକିଆ ବିଛଣା, ଟିକି ରୋଷେଇଘର। ଫୁଟ୍‌ପାଥ ବିକାଳୀଠୁ ଫେଶନର ଜାମା, ପୋଷାକ, ଜୋତା, ଚକଚକିଆ ଗହଣା। ଆଗ ଧାଡ଼ିର ଟିକଟ କାଟି ସିନେମା ଦେଖିଲାବେଳେ ପ୍ରତିଥର ଆଶ୍ୱାସନା ଦିଏ ମୁନ୍ତାର, ଆଉ ବର୍ଷେ କେତେଟା ପରେ କୋଉଠି ବସି ଆମେ ସିନେମା ଦେଖିବା କହିଲୁ? ବାଲ୍‌କନୀ? ଧେତ୍, ତା'ଠୁ ଆଗକୁ କିଛି ଆଉ ଭାବିପାରୁନୁ ନା କ'ଣ?

ଗତରେ ପଡ଼ିଆସୁଥିଲା ଏଇ ଯେଉଁ ଜୀବନ, ତା'ର ସପ୍ନର ଜୀବନ ସହିତ ତା'ର କିଛି ସମ୍ବନ୍ଧ ନଥିଲା । କେବଳ ମୁକ୍ତାର ଥିଲା ପାଖରେ । ତା'ଠାରୁ ଅଧିକ କିଛି ଜୀବନଠୁ ସେ ମାଗିବନାହିଁ ବୋଲି ନିଷ୍ପତ୍ତି କରୁଥିଲା ।

ତଥାପି ଅଦିନିଆ ଝଡ଼ ଭଳି ମନ ଭିତରକୁ ପଶିଆସୁଥିଲା ଭୋପାଲର ସାଙ୍ଗ ମହଲରେ ମୁକ୍ତାରକୁ ନେଇ ଯେଉଁ କଳ୍ପନାର ସଉଧ ତୋଳା । ସେ ସ୍ମୃତିକୁ ବି ଦେଖି ନଦେଖିଲା ଭଳି ରହୁଥିଲା ଫାତିମା । ମୁକ୍ତାର ସାଙ୍ଗେ ନିଜ ତରଫରୁ ବେଶୀ ସେ ବିଷୟରେ ସେ କଥାବାର୍ତ୍ତା କରେନାହିଁ । କେମିତି ଗୋଟେ ଗୁମ୍‌ସୁମ୍ ହେଇଯାଏ ପବନ, ପରିବେଶ । ଏସବୁ ଦିନ ତ ସତ ନୁହେଁ, ଦିନ କେଇଟାର କଥା । ବଦଳି ଯିବ ସବୁକିଛି, ରାତାରାତି ।

ମୁକ୍ତାର କଥା ଦେଇଚି । ମିଛ କହି ଭଣ୍ଡେଇବା ଲୋକ ନୁହେଁ ସେ । ହାତକୁ ଟିକିଏ ସଫଳତା ଆସୁ, ପଇସା କିଛି ଆସୁ । ସାଙ୍ଗ ସାଥୀଙ୍କୁ ନେଇ ଭଲରେ ହେବ ବାହାଘର । ଭୋଜି ଭାତ ବି ହେବ, ମଧ୍ୟମ ଧରଣର ହେଉ ପଛକେ ।

"ଘରଲୋକଙ୍କୁ ଖବର ଦେବା ନା ନାହିଁ?" ଫାତିମା ପଚାରେ ।

"ଦେବାନାହିଁ କେମିତି ଯେ ? ତେବେ ଡାକିବା ଆଉ କ'ଣ ସମ୍ଭବ ? ହଁ, ନିକାହ ହେଲା କ୍ଷଣି ଏକାଠି ଦିହେଁ ମିଶି ଯିବା ଭୋପାଲ । ଆଗ ମୋ' ଅମ୍ମିକୁ ଯାଇ ଭେଟିବା ନା ତୋ' ଅମ୍ମି, ଅବୁକୁ ? ତୁ ଯାହା କହିବୁ ମୁଁ ସେଥିରେ ରାଜି ।"

# ଫାଙ୍କା ସମୟର ବୋଝ

ମୁକ୍ତାର ପାଖେ ରହିବା ହିଁ ଦିନେ ଥିଲା ତା'ର ଚରମ ସ୍ୱପ୍ନ । ତା'ର ଖିଆଲ ନଥିଲା ଯେ ହାତରେ ଯେଉଁ ସମୟ ଥାଏ, ତାକୁ ଭରିବାକୁ ହୁଏ କାମରେ । ଖାଲି ମନ ଭିତରେ ଥିବା ସମ୍ପର୍କରେ ସମୟକୁ ଭରି ହୁଏନାହିଁ । ସମ୍ପର୍କ ବି ବାସ୍ତବ ବସ୍ତୁବାରେ ଥାଏ ପ୍ରକାରେ, ମନ ଭିତରେ ଚିତ୍ର ଅଙ୍କା ହେଇଥାଏ ଆଉ ପ୍ରକାରେ । ବର୍ତ୍ତମାନକୁ ଟାଣିଟୁଣି ମନରେ ଥିବା ଚିତ୍ର ସାଙ୍ଗରେ ଖାପ ଖୁଆଇବାର ନିଶା ଘାରିଥାଏ, ପ୍ରେମରେ ପଡ଼ିଥିଲା ବେଳେ । କ'ଣ ସିଏ କେଜାଣି, ଦୂରରେ ଥିଲେ ପାଖକୁ ଯିବାକୁ ଟାଣେ, ପାଖରେ ବେଶୀ ବେଳ ରହିଥିଲେ ମନ କହେ, ନା ନା, ଇଏ ନୁହଁ, ଆରେକ ପ୍ରକାରେ ଥିଲା ପରା ସେ ଛବି ।

ମୁକ୍ତାର ସକାଳୁ ସକାଳୁ ତିଆର ହୋଇ ବାହାରିପଡ଼େ । ଯାଉ ଯାଉ ଫାତିମାକୁ ତା'ର ସେଦିନର କାମ କଥା ବୁଝାଇଯାଏ, ଅମୁକ ସାଙ୍ଗ ଜଣେ ଚିହ୍ନା କରିଦେବ ଆଜି ସମୁକ ନିର୍ଦ୍ଦେଶକଙ୍କ ସାଙ୍ଗରେ । ଭୋପାଳର ସମୁକ ଅଭିନେତା ସମୟ ଦେଇଛନ୍ତି ଆଜି ଭେଟ ହେବ ଖାସ୍ ତାଙ୍କ ଘରେ । ଯେଉଁ ଲେଖାଟା ନେଇଥିଲେ ବିଖ୍ୟାତ ସେଇ ପ୍ରଡ୍ୟୁସର ଜଣକ କହୁନଥିଲି, ଆଜି ପଢ଼ି ମତାମତ ଦେବେ, ଷ୍ଟୁଡ଼ିଓରେ ଯାଇ ଦେଖା କରିବାକୁ କହିଛନ୍ତି । ହାତରେ ତା'ର ସମ୍ଭାବନା ସବୁ ଅନେକାନେକ, ଠୁଳେଇ ଧରିବାକୁ କୁଣ୍ଢ ପାଏନି । ଏଣୁ ଧରୁଧରୁ ତେଣେ ଖସିଯାଇ ବିସ୍ତୁହେଇ ପଡୁଥାଏ ସତେକି, ଚାଲିଯିବ ହଜିଯିବ ସୁଯୋଗ ସବୁ ବେଳଥାଉଁ ଜାବୁଡ଼ି ନ ଧରିଲେ ବୋଲି ଛାନିଆଁ ବି ଲାଗୁଥାଏ ତାକୁ । ଏତେ ଲୋକଙ୍କୁ ଦେଖା କରିବାକୁ ଅଛି, ଏତେ ଜାଗାରୁ ଆଶା ଆଶ୍ୱାସନା ମିଳିଚି, କେତେ ଜାଗାକୁ ଦଉଡ଼ିବ କାହା କାହା ପାଖରେ ନିଜ କଥା ରଖିପାରିବ ମଣିଷ ।

ଫାତିମା ଏକା ଏକା ହାତରେ ବହି କି ପତ୍ରିକା ଖଣ୍ଡେ ଧରି ଖଟରେ ପଡ଼ିଥାଏ । ଭାବିହୁଏ, କେମିତି କାଟିବ ଏ ଦିନ । ମୁକ୍ତାର ଆସିବା ବେଳକୁ ଚାହିଁ ଚାହିଁ କେତେବା କଟିବ

ସମୟ । ଦି ଘରଛାଡ଼ି ଜଣେ ପଡ଼ୋଶୀଙ୍କ ଘରକୁ ନୂଆ ଟିଭି ଆସିଥାଏ । ସକାଳ ସଂଜରେ ପ୍ରୋଗ୍ରାମ ଆସେ, ରବିବାର ସଂଜରେ ସିନେମା ହେଲେ ସାଇପଡ଼ିଶା ଭୀଡ଼ କରନ୍ତି ତାଙ୍କ ଘରେ । ସେଦିନ ମୁକ୍ତାର କହିଯାଇଥାଏ କୋଉ ସିନେମାର ପ୍ରେମିୟର ଲାଗି ତାକୁ ପାସ୍ ମିଳିଚି, ସିନେମା ଜଗତର ଅନେକ ଲୋକଙ୍କ ସାଙ୍ଗେ ଦେଖାହେଇଯିବ । ପରିଚୟ ବି ହେବ କିଛି ବିଶିଷ୍ଟ ଲୋକଙ୍କ ସାଙ୍ଗେ । ତେଣୁ ଫେରୁ ଫେରୁ ଡ଼େରି ହେବ ତା'ର ।

ଫାତିମା ବଖୁରିକ ଘରେ ଭିତର ବାହାର ହୁଏ, ଦିନଚର୍ଯ୍ୟାକୁ ଟାଣିଟାଣି ବିତାଏ ଘଣ୍ଟା ପରେ ଘଣ୍ଟା । ଅନ୍ଧାର ହେଇଆସିଲା ବେଳକୁ ବଖରାର ଚରିକାନ୍ଥ ମାଡ଼ିପଡ଼େ, ଆଉ ଭିତରେ ରହିହୁଏନାଇଁ । କବାଟ ଆଉଜେଇ ବାହାର ଲମ୍ବ ବାରଣ୍ଡା ବାଡ଼କୁ ଆଉଜି ଠିଆହେଇଥାଏ ସେଦିନ, ଦି'ଘର ଛାଡ଼ି ଟିଭି ଥିବା ଘରୁ ଗୀତା ଡାକିଲା, "ଭାଭୀ, ଆସୁନ ଆମ ଘରକୁ, ଫିଲିମ୍ ଆସୁଚି ଦେଖିବ । କ'ଣ କରୁଥାଅ ଘରେ ଏକୁଟିଆ ଯେ ?"

ଆଖପାଖର ଝିଅ, ବୋହୂ ଆଉ ପିଲାଏ ଖୁନ୍ଦି ହେଇଥାନ୍ତି ଘର ଭିତରେ ପୁଣି କବାଟ ସାମ୍ନା ବାରଣ୍ଡାରେ, କ'ଣ ଗୋଟିଏ ପୁରୁଣା ହିଟ୍ ଫିଲିମ୍ ଆସୁଥାଏ । ଫାତିମା ଲାଗି ପିଲାଦିନୁ ସିନେମା ଦେଖିବା ଥିଲା ଗୋଟିଏ ଅଭାବିତ ସୁଯୋଗ, କୋଉ ମଉଛବରୁ ଊଣା ନୁହେଁ । ଏଠି ଏମିତି ଗୁଡ଼ିଏ ଲୋକଙ୍କ ଗହଳରେ ବସିଥାଇ ବି, କେଉଁକାଳୁ ଦେଖିବାକୁ ମନ ଥିବା ସେ ସିନେମା ପରଦାରେ ଆଖି ଲଗେଇଥାଇ ବି ମନ ଭିତରେ ଛୁଟିଚଲେ ଛାଡ଼ିଆସିଥିବା ଜୀବନର ଦୃଶ୍ୟମାନ ।

ଘରେ ଅମ୍ମି କେମିତି ସବୁଯାକ କାମ କରୁଥିବ ? ସମ୍ଭାଳି ଯିବେଣି ସମସ୍ତେ, ପୁରୁଣା ଜୀବନର ଗତ ଫେରିଆସିବଣି ନିଶ୍ଚେ । ତା' କଥା କେହି ମୁହଁରେ ଧରୁନଥିଲେ ନାଇଁ ପଛକେ । ସିଲେଇ କାମ ଚାଲିଥିବ ଆଗଭଳି, ତେବେ ବରାଦ ଲୁଗା ସବୁ ଠିକ୍ ସମୟରେ କ'ଣ ସାରି ପାରୁଥିବେ ? ହୀନା, ଜରୀନା ଦିହିଙ୍କ ସିଲେଇ କଢ଼ାଇରେ ହାତ ସଫା ହେଇନି, ନର୍ଗୀସ୍ ବେଗମ୍‌ଙ୍କଠୁ କ'ଣ ଆଉ କାମ ମିଳୁଥିବ ? ଅମ୍ମି ବିଚରୀ କୁଆଡୁ କେମିତି ସମ୍ଭାଳୁଥିବ କେଜାଣି । ଚିଠି ପତ୍ର ନାଇଁ, ଖବର ଅନ୍ତର ନାଇଁ ।

ଯେତେ ନାଇଁ କଲେ ବି ଭାବନାକୁ ରୋକି ହୁଏନାଇଁ । ଭାବୁ ଭାବୁ ଅଣନିଃଶ୍ୱାସୀ ଲାଗେ । ଶେଷକୁ ନିଜକୁ ସେଇ ବୋଧ ଦେଇ ତୁନି କରାଇବାକୁ ହୁଏ, ସବୁର୍ କରିଯା, ଦିନ କେଇଟା ତ । ଯେମିତି ହେଉ ବାହାଘରଟା ହେଇଗଲେ, ସେ କାଜୀ ହାତରେ ନିକାହ ହେଉ ବା ରେଜିଷ୍ଟ୍ରି ବାହା ହେଉ, ତେଣିକି ଘରକୁ ଯାଇ ବୁଲିଆସିବାରେ ଆଉକିଛି ଅସୁବିଧା ନଥିବ । ମଝିରେ ପଡ଼ିଥିବା କାନ୍ଥ ବାଡ଼ ସବୁ ଭାଙ୍ଗିଯାଏ ଝିଅ ଯେବେ ଇଜ୍ଜତରେ ବାହା ହେଇଯାଏ । ବାପ ମା' ପରିବାର ଲାଗି ସେତିକି ହିଁ ବଡ଼କଥା, ଏତିକି ତାକୁ ଜଣାଅଛି ।

ସେଦିନ ଫେରିଲାବେଳେ ଫାତିମା କହିଲା ରୀତାକୁ, "ତମ ଟିଭି ଲାଗି କଭରଟିଏ ତିଆରି କରିଦିଅନ୍ତି, ହେଲେ ମୋ' ପାଖରେ କିଛି ସରଂଜାମ ନାହିଁ।" ପରଦିନ ରୀତା ସାଙ୍ଗରେ ପାଖ ବଜାରରୁ ରଙ୍ଗୀନ ସୂତା ଆଉ ଚୁମୁକି କିଣିଆଣିଲେ ଦିହେଁ। ରୀତା ଘରୁ କଇଁଚି ଆଉ ଇଞ୍ଚଟେପ୍ ନେଇ, ତାଙ୍କ ଘରେ ବସି କପଡ଼ାରେ ଫୁଲ ପକେଇ ଡିଜାଇନ୍ କରି ଟିଭି କଭର ତିଆରିରେ ଲାଗିଗଲେ ଦିପହର ସାରା। ଫାତିମାଠୁ ରୀତାର ଉତ୍ସାହ କିଛି କମ୍ ନଥାଏ। ଦିଦିନରେ ଟିଭିର ନୂଆ କଭର ଦେଖାଇବାକୁ ରୀତା ପଡ଼ୋଶିନୀ କେଇଜଣଙ୍କୁ ଡାକିଆଣିଲା। ଆଚମ୍ବିତ ହେଲେ ସେମାନେ, ସାଦା କପଡ଼ାରେ ଫୁଟି ଉଠିଥିବା ଫୁଲସବୁକୁ ହାତରେ ପରଖି ଏପାଖ ସେପାଖ କରି ଦେଖିଲେ।

ବୟୋବୃଦ୍ଧା ଜଣେ କହିଲେ ଫାତିମାକୁ, "ତମ ପାଖେ ଏତେ ଗୁଣ, ଏତେ ହୁନର ଅଛି ଝିଅ। ଏକୁଟିଆ ରହୁଚ ଦିନଯାକ, କାମ ତ ନଥିବ। ଏମିତି କେବେ କାହା ଲାଗି ସିଲେଇ କାମ କିଛି କିଛି କରିଦିଅନ୍ତ। ହାତ ଖର୍ଚ୍ଚ ବି ତମର ବାହାରିଯାଆନ୍ତା। ଏଭଳି ଚୁମୁକୀ କି କଢ଼ାଇ କାମ ଆମର ଏଠି ଦୋକାନରେ ବହୁତ ଦାମ୍।" ରୀତାର ମା' କହିଲେ, "ଆମ ରୀତା ବି ଯା ହେଉ କିଛି କିଛି ଶିଖିଗଲା। ତା' ମନ ଲାଗିଗଲାଣି, ଆଉରି ଶିଖିବ ବୋଲି କ'ଣ ସବୁ ସରଂଜାମ କିଣିଦେବାକୁ ମୋତେ ଲଗେଇଚି।"

ତଳ ମହଲାର ବୋଷ ଆଣ୍ଟି ବି କାହାଠୁ କେଜାଣି ଶୁଣି ଚାଲିଆସିଥିଲେ। ଫାତିମାକୁ କହିଲେ, "ମୁଁ ବି ଶିଖିବି ତମଠୁ, ସିକ୍ୱେଲ୍‌ର ଏମ୍ବ୍ରଡ଼ାରୀ ଶିଖିବାକୁ ବହୁତ ଦିନୁ ମୋର ମନ ଥିଲା।" ଯାଉ ଯାଉ ତାଙ୍କ ଘରକୁ ଯିବାଲାଗି ଫାତିମାକୁ କେଇଥର କହିଗଲେ।

ନିଜ ଘରକୁ ଆସିଲା ବେଳେ ଫାତିମାର ଛାତି ଭିତରଟା ଟିକିଏ କେମିତି ଉଶ୍ୱାସ ଲାଗୁଥିଲା।

# ଚଲା ବାଟରେ ଚିହ୍ନା ଅଚିହ୍ନା

ମୁକ୍ତାର ଥକା ହେଇ ଫେରେ ରାତିକୁ । ଅଧରାତି ଯାଏ ସ୍କ୍ରିପ୍ଟ ଲେଖେ । କେବେବା ଦି ତିନିଦିନ ଧରି ଘରୁ ବାହାରେ ନାହିଁ, କାଗଜ କଲମରେ ମନ ମୂନ ଲଗେଇ ଖଟଟାରେ ମୁହଁମାଡ଼ି ବସିଥାଏ । ଲାଗ୍ ଲାଗ୍ ଘରୁ ବାହାରକୁ ଗଲେ ତା'ର ଯିବା ଆସିବା ବେଳର ଠିକଣା ନଥାଏ । କେବେ କେବେ ସାଂଗ ମହଲରୁ ଖାଇଦେଇ ଫେରେ, ହୁଏତ ଟିକେ ପିଇଦେଇ ବି । ସେଦିନ ଖୁସି ଜଣାଯାଉଥାଏ, କହେ, "ଗୋଟାଏ ବଡ଼ ବଜେଟ୍ ଫିଲ୍ମର ମହୁରତ୍‌କୁ ଆଜି ଯାଇଥିଲି, ପାସ୍ ଦେଇଥିଲେ ଜାବେଦ୍ ଭାଇ । ସେଠି କିଏ ସବୁ ଥିଲେ କହିଲୁ ? ଏଭଳି ଆର୍ଟିଷ୍ଟ ସାଙ୍ଗେ ଆଜି ଭେଟ ହେଇଚି ମୋ' ଜାନ୍, ଆମ ଭୋପାଲ୍ ବାଲା ତାଙ୍କର ଅଟୋଗ୍ରାଫ୍ ବି ପାଇବେନି । ହଉ, ଆରଥରକୁ ତୋ' ଲାଗି ବି ପାସ୍ ଆଣିବି । ସମସ୍ତଙ୍କ ସାଙ୍ଗେ ଚିହ୍ନା କରେଇଦେବି ତୋତେ । କହିବି ଚିହ୍ନିଲେ ଦେଖି ଇଏ କିଏ ? ମୁକ୍ତାର ମିଆଁର ବିବି, କୋଉ ଫିଲିମ୍ ଷ୍ଟାର୍ ବୋଲି ଭାବିଲେ କି ?"

ନିଜ ଜୋକ୍‌ରେ ନିଜେ ହସେ ବଡ଼ପାଟିରେ । ବର୍ଣ୍ଣନା କରେ ସଦ୍ୟ ଫେରିଥିବା ମଜଲିସ୍‌ର ଦୃଶ୍ୟ । ଚିତ୍ର ତାରକା ମାନଙ୍କର ବେଶଭୂଷାର କାରୁକଳା, ଗାଡ଼ି ଘୋଡ଼ାର ବୈଭବ, ବସା ଉଠା ଠାଣିର କଥା । ଶୁଣୁ ଶୁଣୁ ଫାତିମାର ପାଟି ଆଁ ହେଇଯାଏ । ସେ ନିଜ ଲୁଗାପଟାକୁ ଚାହେଁ । ପାସ୍ ମିଳିଗଲେ ବି ଯିବ କେମିତି ସେ ସେଭଳି ମେଳାକୁ ? ସିନେମା ଜଗତର ପତ୍ର ପତ୍ରିକା ସବୁ ଆସି ଘରେ ଜମାହୁଏ । ସେଇଥିରୁ ଦେଖେ ସେ ମୁକ୍ତାର ଏଣିକି ଭାଗନେଉଥିବା ସଂସାରର ଛବି । କଳ୍ପନା କରିବାକୁ ଚେଷ୍ଟା କରେ ତା' ମଝିରେ ନିଜକୁ, ସଂକୋଚରେ ଆଖି ବୁଜିଦିଏ ।

ବିଛଣାରେ ଫାତିମାକୁ ପାଖକୁ ଟାଣିଆଣୁ ଆଣୁ ମୁକ୍ତାର ପଚାରେ, "କ'ଣ ଖାଇଲୁ ଆଜି ? ଚଳେଇ ନେବୁ ମୋ' ସୁନାଟି, ବଜାରରୁ ସଉଦା ନେଇଆସିଥିଲୁ ତ ? ମୋ' ପାଖେ ସମୟ କାହିଁ, ଦେଖୁଚୁ ତ ମୋ' ଜୀବନ । ଷ୍ଟ୍ରଗଲ୍‌ର ଦିନ ଇଏ, ଚାଲିଯିବ । ଏମିତି ମୁହଁ ଶୁଖେଇ ବସ୍ ନାହିଁ ମୁଁ ଫେରିଲାବେଳକୁ ।"

ଫାତିମା ଗେଲେଇ ଗଳାରେ କହେ, "କେବେ ମୁହଁ ଶୁଖେଇଲି ? ତମର ଷ୍ଟ୍ରଗଲ୍ କଥା ମୁଁ କ'ଣ ବୁଝୁନି । ଖାଲି ଫେରିଲା ବାଟରେ ଅଟା, ଡାଲି, ଆଳୁ ପିଆଜ ଯଦି ନେଇଆସନ୍ତ । ତଳ ଦୋକାନରେ ଦେଢ଼ା ଦାମ୍ ନେଉଚି ।"

ମୁକ୍ତାର ନିଃଶ୍ୱାସଟିଏ ଛାଡ଼େ, କହେ, "ଏସବୁ କଥା କେବେ ମୋ' ମୁଣ୍ଡରେ ନଥାଏ, ବୁଝିଲୁ । ହଉ, ଗୋଟେ କାମ କରିବା, ଏଥରକ ଏକାଠି ଯାଇ ମାସକର ସଉଦା ନେଇଆସିବା, ଆଉ ନିତିଦିନିଆ ଚିନ୍ତା ନଥିବ ।"

ଫାତିମା କଥାକୁ ଆଗକୁ ବଢ଼ାଏ ନାଇଁ । ମାସକର ସଉଦା ଲାଗି ସମୟ ନୁହେଁ, ପଇସାର ନିଅଣ୍ଟ ଥାଏ ସବୁବେଳେ । ଘରୁ ଆଣିଥିବା ପଇସା କେବେଠୁଁ ସରିଲାଣି । ବସା ପାତିବାର ମାସ କେଇଟାରେ ସୁନା ଚେନ୍ ଆଉ ବଳା ବି ବଣିଆ ଦୋକାନକୁ ଯାଇ ସାରିଥିଲା ।

ସେଦିନ ସକାଳୁ ମୁକ୍ତାରକୁ ବାଟେଇ ଦେବାକୁ ଆସି ଦେଖିଲା ଫାତିମା, ଗୀତା ଲୁଗା ବଦଳେଇ କୁଆଡ଼େ ବାହାରିଚି । ଫାତିମାକୁ ଦେଖିଦେଇ ମହା ଉତ୍ସାହରେ ଡାକିଲା, "ମିନୁ ଦିଦି ପୁଅକୁ ନେଇ ହସ୍‌ପିଟାଲରୁ ଫେରିଲେଣି, ଜାଣିନ କି ଭାଭୀ ? ଆସୁନ ତାଙ୍କୁ ଦେଖିବାକୁ ଯିବା ।" ପାଞ୍ଚ ମିନିଟ୍‌ରେ ତିଆର ହେଇ ବାହାରିପଡ଼ିଲା ଫାତିମା । ଏମିତି କିଛି ନା କିଛି ଆଳରେ ଏଣିକି ଘରୁ ବାହାରେ ରହିଲେ ହିଁ କିଛି ବେଳଲାଗି ହେଉପଛେ ଟାଳିହେଉଚି ସେ ମାଡ଼ିପଡୁଥିବା କଳା ଘୁମର ମେଘକୁ, ଯାହା ଫାତିମାକୁ ଅପେକ୍ଷା କରିରହିଥାଏ ବଖୁରିକର ସଂସାର ଭିତରେ ।

କୁଆଁ କୁଆଁରେ ଉଛୁଳୁଥିବା ଘରଟିରେ ପୋଖତୀକୁ ଘେରି ମାଇପିମାନେ, ଝିଅମାନେ ଥଟ୍ଟା ତାମସା ହେଉଚନ୍ତି ।

ଫାତିମାକୁ ଦେଖିଲାକ୍ଷଣି ପ୍ରଶ୍ନ ଆସିଲା କାହାଠୁ, "ଆଉ ତମ ପାଳି କେବେ ମ ଝିଅ ? ଏମିତି ଦିଟିକିଆ ପରିବାର ଆମର ଏଠି ଚଳେନାଇଁ, ଶିଘ୍ର ଆମେ ଦୁଇ ଆମର ଦୁଇ ହେବାର ନିୟମ ଏଠି ।" ଜବାବରେ ଅନ୍ୟମାନଙ୍କଠୁ ଅକାରଣ ହସ । ତାଆରି ଭିତରେ ଜଣେ କିଏ ଆଉରି ଯୋଡ଼ିଦେଲା, "ମୁକ୍ତାର ଭାଇ ତ ବାହାଘର ଭୋଜିଟାଏ ବି ଦେଲେନି, ଠକିଦେଲେ । ଶିଘ୍ର ମଉକା ଦିଅ କି ଦିଇଟା ଯାକ ଭୋଜି ଆଦାୟ କରିବୁ ।"

ସେଇ ଭିତରେ କିନ୍ତୁ ଜଣେ ଦିଜଣଙ୍କ ଭିତରେ ଆଖିର ଠରାଠରି ଫାତିମାର ଦୃଷ୍ଟିରୁ ବାଦ୍ ଗଲାନାଇଁ । ଅନ୍ୟମାନଙ୍କ ଦୃଷ୍ଟିକୁ ବି ହୁଏତ ସେମିତି ଏଡ଼ିଯାଇନଥିବ ଯେ ଫାତିମା ମୁହଁରେ ନା ହସ ଥିଲା ନା ତା'ଠାରୁ ଅପେକ୍ଷିତ ଲାଜ ସରସର ପ୍ରତିକ୍ରିୟା । ଜଣେ କିଏ ମଝିରେ ପଡ଼ି ତାଗିଦ୍ କଲା, "କାଇଁ ବିଚାରୀକୁ ହଇରାଣ କରୁଚ ? ଦିଦିନ ହେଲା ତ

ଘରକରଣା ଆରମ୍ଭ କରିଚି, ଟିକେ ଥଇଥାନ ହେବାକୁ ଦିଅ ।"

ଗୀତା ଫାତିମାର ପିଠିପାଖରୁ ହାତ ବେଢ଼େଇନେଇ କହିଲା, "ଏଡ଼େ ତରବର କାହିଁକି ଯେ ? ମୁକ୍ତାର ଭାଇଙ୍କ ଫିଲିମ୍ ହିଟ୍ ହେଇଯାଉ କି ଦେଖିବ କେମିତି ଉଛବ ହେବ ଏଠି । କେହି ଜୀବନରେ ଦେଖିନଥିବ ସେମିତିକା, କହିରଖୁଚି ଆଜିଠୁ ।"

ସମସ୍ତେ ଏଥର ଫାତିମା ଆଡ଼େ ଅନେଇଲେ ଟିକିଏନାକୁ ସମ୍ଭ୍ରମରେ । ଚୁପ୍‌ଚାପ୍ କଥାବାର୍ତ୍ତାରେ ସମସ୍ତେ ଜାଣିଥିଲେ ମୁକ୍ତାରର ସିନେମା ଜଗତରେ କାମ କଥା । ହେଲେ ନୂଆ ନୂଆ ଏଠା ମାଟି ମାଡ଼ିଲା ଟୋକାଙ୍କ ଏଭଳି ହରକତ୍ ସଭିଏଁ ଦେଖୁଚନ୍ତି, କେତେ ଭାଗ ତହିଁରୁ ବିଶ୍ୱାସ କରିହେବ କେତେ ଉଡ଼େଇଦେବାକୁ ହେବ ସେକଥା ବସ୍ତିରେ ରହିବା ଲୋକ ଆପେ ନିଶ୍ଚୟ କରିନିଅନ୍ତି ।

ସେଦିନ କୁରେଶି ଆଣ୍ଟି କଥା କହୁକହୁ ଆପେ ଆସିଲେ ଫାତିମା ଘରକୁ । ଭିତରେ ଗୋଡ଼ ନଦେଉଣୁ ପିଠିପାଖେ କବାଟକୁ ଆଉଜେଇ ନେଇ ସିଧା ପଚାରିଲେ, "ଗୋଟାଏ କଥା ପଚାରିବି ପଚାରିବି ହେଉଚି ବେଟୀ, ମୋତେ ଲୁଚାଇବୁ ନାହିଁ ତୋତେ ଆଲ୍ଲାଙ୍କ ରାଣ । ତମେ ଦିହେଁ ନିକାହ କରିନେଇଚ ତ ?"

ଫାତିମା ଏଣେ ତେଣେ ଅନେଇ ଚୁପ୍ ରହିବାର ଦେଖି ପୁଣି ସେ ପଚାରିଲେ, "ମୁଁ ଆପଣାର ଲୋକ ବୋଲି ପଚାରୁଚି । ତମ ଦିହିଙ୍କ ଘରୁ କେହି ତ କେବେ କାହିଁ ଆସିନାହାନ୍ତି ? ତମ ବାପା ମା' ସମସ୍ତେ ରାଜି ଖୁସି ଅଛନ୍ତି ତ ?"

ଫାତିମା ନିଶ୍ୱାସଟାଏ ଛାଡ଼ି ବସିପଡ଼ିଲା ଖଟରେ । କୁରେଶି ଆଣ୍ଟି ଯାଇ ତା' ପାଖରେ ବସିଲେ । କହିଲେ "ସାରା ଚାଳ୍‌ରେ ସମସ୍ତେ କଥା ହୁଅନ୍ତି, ତମକୁ ଏକଥା ଜଣା ଥିବ ନିଶ୍ଚେ ।"

ଫାତିମାକୁ ଜଣାଥିଲା ଅବଶ୍ୟ । ଯେ ସାଇପଡ଼ିଶା ଦେଖୁଥିବେ ତା' ଜୀବନକୁ । ଡାକବାଲାକୁ ଅପେକ୍ଷା କରେନାଇଁ ସେ ଅନ୍ୟମାନଙ୍କ ଭଳି, କି ଦିଓ୍ୱାଲୀରେ ଡାକବାଲା ତାକୁ ବକସିସ୍ ମାଗେନାଇଁ । ପର୍ବ ପର୍ବାଣୀରେ କୁଣିଆ ମଇତ୍ର କେହି ଆସନ୍ତି ନାହିଁ ତା' ଘରକୁ । କୁରେଶି ଆଣ୍ଟିଙ୍କ ମୁହଁକୁ ଅନେଇ ଏଥର ମୁହଁ ଖୋଲିଲା ଫାତିମା, କୋହରେ ରୁନ୍ଧି ହେଉଥିବା ଗଳାରେ ପଚାରିଲା, "କାହିଁକି ଯେ ? ଆମେ କାହାର କି କ୍ଷତି କରୁଚୁ ଏଠି ?"

ଇଏ ପ୍ରଥମ ନୁହେଁ । କିଛି ଦିନ ତଳେ ଗଣେଶ ପୂଜା ଉତ୍ସବରେ କେଇଦିନ ଧରି ଯେବେ ଚାଳ୍‌ର ତଳ ଅଗଣାରେ ନାଚ, ଗୀତ ମଉଛବ ଚାଲିଥାଏ, କେଇଜଣ ଟୋକାଙ୍କ ଟାପରାର ଉତ୍ତର ଦେଇ ମୁକ୍ତାର ସଭିଙ୍କ ଭିତରେ ଫାତିମାର ହାତଧରି କହିଥିଲା, "ଆମର ପରିଚୟ ସଭିଙ୍କୁ ଦେଇଦିଏଁ । ଆମେ ଦୁହେଁ ସ୍ୱାମୀ ସ୍ତ୍ରୀ । ମଧ୍ୟପ୍ରଦେଶର ଗୋଟିଏ ସାନ ଗାଁ ରେ ଆମ ଘର । ମୋ' ବାପା ନାହାନ୍ତି, ଆଉ ୟା'ର ନିଜ ପରିବାରରେ କେହି ନାହାନ୍ତି । ଫିଲିମ୍‌ରେ

ମିଶିବି ବୋଲି କହିଲାରୁ ମୋ' ମା' ନାହିଁ କରୁଥିଲେ ବୋଲି ଆମେ ଦିହେଁ ଲୁଚିକି ଚାଲିଆସିଛୁ । ଦିନ କେତେଟା ପରେ ଆମ ବନ୍ଧୁ ବାନ୍ଧବ ଯେବେ ଏଠିକି ଆସିବେ, ସମସ୍ତଙ୍କ ସାଙ୍ଗେ ପରିଚୟ କରିଦେବି । ତେବେ ଆଜି ମୋ' ଲାଗି ଯିଏ ସବୁ ଚିନ୍ତିତ ତାଙ୍କୁ ମୋର ଧନ୍ୟବାଦ । ଆଉ ଯଦି ଆତ୍ମୀୟ ସ୍ୱଜନଙ୍କୁ ଭେଟିବାର କାହାରି ନିହାତି ଇଚ୍ଛା ଥାଏ, କାଲି ମୋ' ସାଙ୍ଗେ ଚାଲ, ଚିହ୍ନା କରିଦେବି । ଜାବେଦ୍ ସାହାବ ବୋଲି ସାରା ବମ୍ବେ ଯାହାଙ୍କୁ ସଲାମ୍ କରେ, ସେ ମୋ' ଚାଚା । ଆଉ କମେଡ଼ି ଷ୍ଟାର ଖୁର୍ସିଦ୍ ଭାଇ ହେଉଚନ୍ତି ମୋ' ନିଜ ମାଉସୀ ପୁଅ ଭାଇ । ଆଉ କେତେଟା ନାଁ ଦରକାର ?"

ସମସ୍ତେ ଚୁପ୍ ପଡ଼ିଯାଇଥିଲେ ଏତିକିରେ । ହେଲେ ଫାତିମାର ଛାତି ଚାଉଁ କିନି ହେଲା । ଏତେ ସତମିଛର ଫେଣ୍ଟାଫେଣ୍ଟି ଭିତରେ ଫାତିମାର ପରିଚୟ ବି ଗୋଟାପଣେ ମିଛ ହେବା ଦରକାର ଥିଲା ? ସତେକି ସେ କେହିନୁହେଁ, ପବନରେ ଅଙ୍କା ଛବିଟିଏ । ତେବେ ସେଠି ସମସ୍ତଙ୍କ ଆଗରେ କିଛି କହିବାର ନଥିଲା ଫାତିମାର ।

କୁରେଶି ଆଣ୍ଟି ତା' ପିଠିରେ ହାତ ରଖିଲେ । କହିଲେ, "ତମେ ଭୋପାଲରୁ ଆସିଚ ଦିହେଁ, ମୁଁ ଜାଣିଗଲିଣି । ଭଲ ଘର ପିଲା । ତମ ପାଖ ସାହିରେ ମୋ' ନଣନ୍ଦ ରହନ୍ତି, ତାଙ୍କ ପୁଅ ଆସିଥିଲା ଏଇ ଦିଦିନ ତଳେ । ହେଲେ ଏସବୁ ଆମ ନିଜ ଲୋକବାକଙ୍କ କଥା, ମୁଁ କାହାକୁ କହିବିନି । ହେଲେ ଝିଅ, ବାହା ନହେଇ ଏକାଠି ରହିବା ଠିକ୍ ନୁହେଁ, ଆଲ୍ଲାଙ୍କ ପାଖେ ଦୋଷ, ପାପ । ଆମ ପଡ଼ିଶା ଖାନ୍ ଭାଇସାବ୍‌ଙ୍କ ସାଙ୍ଗେ ଆମର କଥା ପଡ଼ିଥିଲା । ଆମେ କାଜୀ ଠିକଣା କରିଦେବୁ, ନିକାହ ଟା କରିନେଉନା କାହିଁକି ?"

ଫାତିମା ମୁହଁ ପୋତିଲା । ପିଠି ଉପରେ ଆଣ୍ଟିଙ୍କ ହାତର ଆଶ୍ୱାସରେ ତା'ର ଟିକକ ଆଗର ଅପମାନ, କ୍ରୋଧ ସବୁ ଏକାବେଳକେ ପୋଛି ହେଇଯାଇଥିଲା । ଲୁହପୋଛି ମୁହଁ ଟେକି ଅଳ୍ପ ହସିଲା ସେ, କହିଲା, "ଆପଣ ଯାହା ଠିକ୍ ଭାବିବେ, ଆମ ମାନିବୁ । ଖାଲି ମୁନ୍ନାରଙ୍କ ମୁଣ୍ଡରେ କାମ ବୋଝ ଥିଲା ବୋଲି..."

# ବାଟୋଇ ଜାଣିବା ଆଗୁଁ ଆପେ ବାଟ ମୋଡ଼ ନିଏ

ମହାନଗରୀରେ ନିଜ ନିଜ ପାରିବାର ପଣିଆ ମତେ ଲୋକେ ଏକାଠି ରହନ୍ତି ସାଇପଡ଼ିଶା ହେଇ । ପଛରେ ଛାଡ଼ିଆସିଥିବା ଗାଁ କି ସହରର ବନ୍ଧୁ ବାନ୍ଧବଙ୍କ ବଦଳରେ ନୂଆ ବନ୍ଧୁ ପାତନ୍ତି । ହେଲେ ଏଠି ଉପସ୍ଥିତ ଜୀବନର ବୋଝ ହିଁ ବାଟ କଢ଼ାଏ । ଆଜିର ଜୀବନର ବୋଲ ହିଁ ମାନିବାକୁ ହୁଏ ସଭିଙ୍କୁ । ଏକଥା ଫାତିମାକୁ ବୁଝାପଡ଼ିଲା ଯେବେ କୁରେଶି ଆଣ୍ଟି ବିବାହ କଥାଟା ଉପରେ ଜୋର ଦେଇଗଲେ ସିନା, ଦିନ କେତେଟାରେ ସେମାନଙ୍କର ମୁରବୀପଣିଆ ଢିଲାପଡ଼ିଗଲା ମୁକ୍ତାରର କେଇପଦ କଥାରେ । କେତେଦିନର ଚେଷ୍ଟାରେ ଯେବେ ମୁକ୍ତାର ସମୟ କାଢ଼ିଲା କୁରେଶିଙ୍କ ଘରକୁ ଯିବାଲାଗି, ତା'ର ଆଶାନୁଯାୟୀ ସେମାନେ ପାଖ ଘରକୁ ଖାନ୍ ଦମ୍ପତ୍ତିଙ୍କୁ ଡାକିଲେ ଓ ଧର୍ମସମ୍ମତ ବିବାହର ଔଚିତ୍ୟ ବିଷୟରେ ବୁଝାଇବସିଲେ । ପଡ଼ୋଶୀ ଖାନ୍ ତା' ସାଥିରେ କଥା ହେଲେ ଯେ ସମୁକ କାଜୀସାହାବ ତାଙ୍କର ଚିହ୍ନା, ସବୁ ବନ୍ଦୋବସ୍ତ ହେଇଯିବ । ମୁକ୍ତାର ତାଙ୍କ କଥାସବୁ ମନଦେଇ ଶୁଣିଲା । ସବୁଶୁଣି ଉତ୍ତର ଦେଲା, "କଥାଟା ଆପଣ ବୁଝୁନାହାନ୍ତି ଅଙ୍କଲ । ମୋ' ନିକାହ ଏମିତି ଲୁଚଛପାରେ ହେବାର ଥିଲେ କେବେଠୁଁ ହୁଅନ୍ତାଣି । ଲୁଚଛୁପାରେ ବାହାହେଇପଡ଼ିଲେ ଅଙ୍କଲ, ମୁଁ ନିଜ ଆଖିରେ ତଳେ ପଡ଼ିଯିବି ।"

କୁରେଶି ଆଣ୍ଟିଙ୍କ ଜଳଖିଆକୁ ତାରିଫ୍ କରୁକରୁ ମୁକ୍ତାର ଯେତେବେଳେ କହିଲା ଭୋପାଳରେ ତା' ପରିବାର କଥା, ପୁଣି ବମ୍ବେ ସିନେମା ଜଗତରେ ତା'ର ନିଶ୍ଚିତ ପଦକ୍ଷେପ କଥା, ସେମାନଙ୍କର କୌଣସି ସନ୍ଦେହ ନଥିଲା ତା'ର ଚରିତ୍ର ଓ ଆଭିଜାତ୍ୟ ଉପରେ । ପ୍ରୌଢ଼ ଦମ୍ପତି ଦୁହେଁ ଅବିଶ୍ୱାସ କରିବାର କିଛି କାରଣ ପାଇଲେ ନାହିଁ ଯେ ହାତରେ କନ୍ୟାକୁ ଦେବାଲାଗି ମେହେରର ପଇସା ନଥାଇ, ଆତ୍ମୀୟ ସ୍ୱଜନଙ୍କ ଅଜାଣତରେ ଯଥାକଥା ନିକାହଟା କରିନେବା ଲାଗି ମୁକ୍ତାରର ରୁଚିକୁ ବାଧୁଚି । ଦିନ କେତେଟାରେ ଅବସ୍ଥା ସୁଧୁରିବ, ଡାକିବଜେଇ ବାହାଘର ହେବ । ଘରୁ ପରିବାରଜନ ଆସିବେ, ସାଇପଡ଼ିଶାଙ୍କ ସାଙ୍ଗେ ଭୋଜି ଭାତ ହେବ । ତାକୁ ସିନା କହନ୍ତି ନିକାହ ।

ଆସର ଭାଙ୍ଗିଲାବେଳକୁ କଥା ଯାଇ ଫିଲିମ୍ ଜଗତରୁ କେତେଟା ଚର୍ଚ୍ଚିତ ବିଷୟ ଓ ରସାଳ ଗୁଜବ ଉପରେ ପହଞ୍ଚିଥିଲା । କୁରେଶି ଆଣ୍ଟି ମୁକ୍ତାରକୁ ପଚାରୁଥିଲେ, "ସତରେ

କ'ଣ ଧର୍ମେନ୍ଦ୍ରର ହେମାମାଳିନୀକୁ ଛାଡ଼ି ତା' ପ୍ରଥମ ସ୍ତ୍ରୀ ପାଖକୁ ଫେରିଯିବ ?"

ଘରେ ପହଞ୍ଚିଲା ବେଳକୁ ଫାତିମା ଅପେକ୍ଷା ମୁକ୍ତାର ହିଁ ବେଶୀ ଖୁସି ଥିଲା । ଫାତିମାକୁ କହିଲା, "ଦେଖିଲ, ମୁଁ କହୁନଥିଲି, ଘରୁ ଗୋଡ଼ କାଢ଼ିଲେ କେତେ ବନ୍ଧୁ ଜୁଟିବେ । ତମେ ଏଣିକି ବେଶୀ ବେଶୀ ମିଳାମିଶା କଲେ ସିନା ନିଜ ଘର ଲୋକଙ୍କୁ ଝୁରିବା ଛାଡ଼ିବ । ନୂଆ ଜୀବନ ଜୀଇଁବା ଶିଖିବ ।"

ମୁକ୍ତାର ଖୁସିଥାଏ, କିଏ ଜଣେ ଡାଇରେକ୍ଟର ତାକୁ ଆସିଷ୍ଟାଣ୍ଟ କରି ନେବେ ବୋଲି କଥା ଦେଇଚନ୍ତି ତାଙ୍କ ନୂଆ ଫିଲ୍ମରେ । କାମ ଆରମ୍ଭ କରୁଚି ସେ ଦିଦିନ ଭିତରେ । ତାଙ୍କରି ହାତରେ ତା'ର ନୂଆ ସ୍କ୍ରିପ୍‌ଟ ଟା ବି ଅଛି । ସାଙ୍ଗରେ କାମ କଲାବେଳେ କେତେଟା ଅଦଳ ବଦଳ କରିବେ ସେ ତହିଁରେ । ତା'ପରେ ଜଣକେତେ ପ୍ରଡ୍ୟୁସରଙ୍କ ସାଙ୍ଗେ କଥା କହିବେ ।

ମୁକ୍ତାର ପାଖେ ଘଟିବା ଲାଗି ଥାଏ ଅନେକ କଥା । ସବୁକଥାରେ ଥାଏ ଅଙ୍କୁରଟିଏ ତା' ଲାଗି, ତହିଁରୁ ଫୁଲ ଫୁଟିବାର, ଆଉରି ଚମତ୍କାର କିଛି ଫଳର ଛବି ତାକୁ ଦିଶୁଥାଏ । "ମେହେତା ସାହାବ ନିଜେ ବସି ଶୁଣିଲେ ମୋ' ସ୍କ୍ରିପ୍‌ଟ ଜାଣ୍, କପି କରି ଦେବାକୁ କହିଚନ୍ତି ।" ଫାତିମାର ମତାମତକୁ ଅପେକ୍ଷା ନଥାଏ ସେଠି । ସେ ଜାଣି ବି ନଥାଏ କୋଉ ସ୍କ୍ରିପ୍‌ଟ ସେଇଟା । ତଥାପି, ନିଜେ ବଞ୍ଚୁଥିବା ଜୀବନକୁ, ଦେଖୁଥିବା ସୀମିତ ସପ୍ନକୁ ନେଇ ଲଜ୍ଜିତ ହେଇପଡ଼େ ସେ ।

ମୁକ୍ତାରକୁ ଛୋଟକାଟିଆ କାମ କିଛି ମିଳିଲେ ଫାତିମା ପ୍ରଥମେ ପଚାରୁଥିଲା କେତେ ପଇସା ମିଳିବ ବୋଲି । ପ୍ରତିଥର ମୁକ୍ତାର ଚିଡ଼ିଯାଇ ଉତର ଦିଏ, "ଆରମ୍ଭରୁ ସେସବୁ କଥା ପଚରାଯାଏନି ବୁଝିଲୁ । ଷ୍ଟ୍ରଗଲିଂ ଆର୍ଟିଷ୍ଟକୁ ଗୋଟିଏ ଚାନ୍‌ସ ମିଳିବା ଭାଗ୍ୟର କଥା । କାମଟାଏ ହାତକୁ ନ ଆସୁଣୁ ମୁଁ ମୂଲ କଷାକଷି କରି ବସିବି ନା କ'ଣ ?"

ଫାତିମା ବୁଝିଯାଏ, ଏଭଳି କଥା ଘର ଭିତରେ ଏକୁଟିଆରେ ଉଠେଇବା ବି ରୁଚିହୀନତାର ଲକ୍ଷଣ । ସେ ଶୁଣି କେବଳ ଖୁସିହୁଏ, ମୁକ୍ତାରର ସଫଳତା ଲାଗି ଆଲ୍ଲାଙ୍କୁ ପ୍ରାର୍ଥନା କରେ, ପ୍ରକାଶ୍ୟରେ ଓ ମନଭିତରେ, ମୁକ୍ତାର ଯେବେ କହେ, "ଏଥରର ସ୍କ୍ରିପ୍‌ଟ ଟା ଖୁବ୍ ମନକୁ ପାଇଚି ମେହେତା ସାହାବଙ୍କର, ଜାଣିଚୁ ନା । କହିଲେ, ପୂରା ଡେଭେଲପ୍ କର, ମୋତେ ଦେବ, ଆଉ କାହାକୁ ଦେବନି ।"

ଟିଭିରେ ଦୂରଦର୍ଶନର ଏକାଧିପତ୍ୟର ଥାଏ ସେବେ । ଚାଲ୍‌ର ଟିଭି ଥିବା ଘରମାନଙ୍କରୁ ଫାତିମାକୁ ଡାକରା ମିଳେ । ଆଖପାଖରେ ସମ୍ମାନ ଟିକିଏ ବଢ଼ିଥାଏ, ଗୋଟିଏ ଟିଭି ସିରିଆଲର କାଷ୍ଟିଂରେ ମୁକ୍ତାରର ନାଁ ଥାଏ ଆସିଷ୍ଟାଣ୍ଟ ଭାବେ । ତଥାପି ଦିହେଁ ମିଶି ମାସିକିଆ ସଉଦା ଏକାଠି କରିବାର ଦିନ ଆସେନି । ଫିଲ୍ମ ପ୍ରେମିୟର କି ମୁକ୍ତାରର ବନ୍ଧୁ

ମଜଲିସକୁ ଯାଇପାରିବା ଭଳି ବଡ଼ ଦୋକାନରୁ ଲୁଗା ଫାତିମା ଲାଗି କିଣାଯାଇପାରେନି । ନିକାହ ଲାଗି ମେହେର ଟଙ୍କା ଏକାଠି କରିବା କି ଭୋଜିଭାତ କରିବାକଥା ଆଦୌ ଆଉ ଉଠାଯାଏନି କଥାବାର୍ତ୍ତାରେ ।

ଫାତିମା ଯେଉଁଦିନ ଖଣ୍ଡେରକର ଆଣ୍ଟି ଦେଇଥିବା ବ୍ଲାଉଜ୍ ପିସ୍‌କୁ କାଟି ମିନୁ ଦିଦିର ପୁଅ ଲାଗି ଡ୍ରେସ୍‌ଟିଏ ତିଆରିକରି ଦେଲା ଓ ସେ ବାଧ୍ୟକରି ତା' ହାତରେ କିଛି ଟଙ୍କା ଗୁଂଜିଦେଲେ, ପୁଣି ଆଉ ଦୁଇଖଣ୍ଡ କନା ଦେଲେ ନୂଆଡ୍ରେସ୍ ତିଆରି କରିଦେବାଲାଗି, ମୁକ୍ତାରକୁ ସେକଥା କହିବ କହିବ ହେଇ ସେ କହିପାରିଲା ନାଇଁ । ଘରର ସଉଦାରେ ସେଇ କେତେଟା ଟଙ୍କା ଖର୍ଚ୍ଚ ହେଇଗଲା ବେଳେ କିନ୍ତୁ ସେ ଆହୁରି କଳ୍ପନା କଲା, କେମିତି ଆଉ କେତେଟା ସିଲେଇ କାମ ମିଳିପାରିବ, କାହାକୁ କହିଲେ । ରୀନା କହୁଥିଲା ତଳ ମହଲା ବୋଷ ଆଣ୍ଟିଙ୍କ ଘରେ ସିଲେଇ ମେସିନ ଅଛି । କେତେକରି ଡାକିଥିଲେ ବି । ତାଙ୍କ ଲାଗି କିଛି ଗୋଟାଏ ତିଆରି କରିଦେଲେ ସେ ଦିପହରେ ତାଙ୍କ ମେସିନଟା ବ୍ୟବହାର କରିବାକୁ ଦେବେ ନିଶ୍ଚୟ ।

ବୋଷ ଆଣ୍ଟିଙ୍କ ଘରେ ବସି କାମ କଲାବେଳେ ସେ ପଚାରନ୍ତି, "ମୁକ୍ତାର ଭାଇଙ୍କ ଚେହେରା ଏତେ ଭଲ, ସେ ତ ଫିଲ୍ମରେ ରୋଲ୍ କରିବା କଥା, ସ୍କ୍ରିପ୍‌ଟ କାହିଁକି ଲେଖୁଚନ୍ତି ? ଆଉ ତମେ ଏ ସିଲେଇ ଫିଲେଇରୁ କେତେ ରୋଜଗାର କରିବ ବୋଲି ଭାବୁଚ ? ମୁଁ ପଚାରିବି ତ ମୁକ୍ତାର ଭଇଙ୍କୁ..."

ତାଙ୍କୁ କଥା ପୂରା କରିବାକୁ ନଦେଇ ଫାତିମା ଜିଭ କାମୁଡ଼ି କହେ, "ତାଙ୍କ ଆଗରେ ଜମା କହିବେ ନାଇଁ ଆଣ୍ଟି, ମୁଁ ସିଲେଇ କାମ କରୁଚି ଜାଣିଲେ ସେ ଭାରି ମନଦୁଃଖ କରିବେ ।"

ତଥାପି ଏଇ କାଁ ଭାଁ ଦିଚାରିଟା ଟଙ୍କାରେ ଘର ଚଳେ ନାଇଁ । ଅଧରାତିରେ ବାଇନାଭୂତ ଭଳି ଫେରିଥିବା ମୁକ୍ତାରକୁ ସେ ପଚାରି ବି ପାରେନାଇଁ, ଆଜି ବି ପିଆଜ ଆଣିଚ ନା ନାଇଁ ବୋଲି । ବେଳେ ବେଳେ ରାଗ ଚାପି ପାରେନାଇଁ ଫାତିମା । ଗରମ ନ କରି ସେମିତି ଥୋଇଦିଏ ଯାହା ଥାଏ । ବିନାଛୁଙ୍କ ଡାଲିରେ ଥଣ୍ଡା ରୁଟି ବୁଡ଼େଇ ଖାଉ ଖାଉ ମୁକ୍ତାର ଟଙ୍କା ହସ ହସେ, ସତେକି ବିନା ଆପତ୍ତିରେ ଏତକ ଖାଇଦେଇ ସେ ବିଶ୍ୱବାସୀଙ୍କ ଉପରେ ଅପାର କରୁଣା କରୁଚି । ପଚାରେ ନାଇଁ ଫାତିମାକୁ, ତମେ କ'ଣ ଖାଇଚ ସକାଳେ । ଫାତିମା ବି ପଚାରେନାଇଁ, ଦେହରୁ କାଢ଼ି କାନ୍ଥଖୁଣ୍ଟିରେ ମୁକ୍ତାର ଟାଙ୍ଗିଦେଇଥିବା ସାର୍ଟପକେଟରୁ ଦିଶୁଥିବା ନୋଟ୍ କେଇଟି କେଉଁଠୁ ଆସିଚି, ପୁଣି କୋଉ ବନ୍ଧୁଠୁ ଉଧାର ଆଣିଚି ନା ସତରେ ଏଥର ସେ କାମ ପାଇଥିବା ସିନେମାବାଲା ଆଡ଼ଭାନ୍‌ସ ଦେଇଚି ।

ଆଉ କେତଦିନ । ଶିଘ୍ର ଫେରିଆସିଥାଏ ମୁକ୍ତାର । ହାତରେ ହାଫିଜ୍ ହୋଟେଲରୁ ମାଂସ ତରକାରୀ ଆଉ ରୁଟି ଆଣିଥାଏ । ଥାଳିରେ ବାଢ଼ୁ ବାଢ଼ୁ ଫାତିମା କହିପକେଇଲା, "କଞ୍ଚା ମାଂସ ଆଉ ପିଆଜ ରସୁଣ ନେଇଆସିଥିଲେ ମୁଁ ରାନ୍ଧିଦେଇଥାନ୍ତି । ମିଛରେ ଏତେଗୁଡ଼େ ପଇସା ନଷ୍ଟ କଲ ।"

ମୁହଁକୁ ନେଉ ନେଉ ହାତ ତଳକୁ କରି ତାକୁ କଟମଟ ଅନେଇଲା ମୁକ୍ତାର । କହିଲା, "ଖାଇଲାବେଳେ ଏକଥା କହିପାରିଲ ? ତମରି ଲାଗି ଆଣିଚି ମୁଁ ଜାଣ ? ଦିନେ ହେଲେ ଭଲ ମନ୍ଦ ଟିକିଏ ଖାଇପାରୁନା ତମେ ବୋଲି ।"

ଫାତିମା କଥା ବୁଲେଇ କହିଲା, "ମୁଁ ରାନ୍ଧିଥିଲେ ବି ଆମେ ଦିହେଁ ଖାଇଥାନ୍ତେ । ମୁଁ କ'ଣ ଯା'ଠୁ ଖରାପ ରାନ୍ଧେ ? ମୁଁ କ'ଣ ସବୁ ରୋଷେଇ ଜାଣିଚି ତମକୁ ଜଣା ଗଲାଣି ଆଗ ?"

ମୁକ୍ତାର ତାକୁ ପାଖକୁ ଟାଣିଆଣି କହିଲା, "ଏଠିକି ଆଣି ମୁଁ ତୋତେ ଦେଇଚି କ'ଣ ? ମୋତେ ସେ କଥା ଭାବିଲାବେଳେ କେତେ କଷ୍ଟ ହୁଏ ତୁ ଜାଣିଚୁ ?"

ସେଦିନ ଶୋଇବା ଲାଗି ବିଛଣା ପାରିଲା ବେଳେ ଫାତିମା କହିଲା, "ମୋ କଥା ଯଦି ତମ ମନରେ ଥାଏ, ତେବେ ଆଗଭଳି ମୋତେ ତମ ନିଜ କଥାସବୁ କହୁନା କାହିଁକି ? ତମ ଲେଖା କେତେଦିନୁ ଶୁଣାଇନ, ଖାଲି ସେଇ ସିନେମା ବାଲାଙ୍କୁ ଶୁଣାଉଥାଅ ।"

ସେଦିନ ଅଧରାତି ଯାଏଁ ମୁକ୍ତାର ତାକୁ ନିଜ ଲେଖା ପଢ଼ି ଶୁଣାଇଥିଲା । ତା' ବାହୁରେ ଶୋଇଶୋଇ ଫାତିମା ବନ୍ଦ ଆଖିତଳେ ଆଙ୍କିଲା, ଦିନ ବଦଳିଯିବାର ଛବି । ବଦଳିଯିବ ଏଇ ବମ୍ବେର ଦିନ । ତା'ପରେ ଆସିବ ନବାବ ମଂଜିଲକୁ ନିଜ ହାତରେ ସଜେଇ ଗଢ଼ିବାର ଦିନ । ମୁଣ୍ଡଟେକି ଫେରିଯାଇ ପିଲାଦିନର ଅଗଣାରେ ପାଦ ଦେବାର ଦିନ । ଦୁଇବାହୁ ମେଲି ଅମ୍ମି ଆଉ ଅବ୍ବୁ ତାକୁ ପୁଣି କୋଳେଇ ନେବାର ଦିନ ।

ଦିନ ବଦଳିଥିଲା ରାତିପାହୁଣ୍ଡୁ, ଦିନ ଦିନ ଧରି ମୁକ୍ତାର ପୁଣି ଯେବେ ଘରେ ରହିଲା ନାଇଁ ଅଧରାତି ଯାଏଁ । ରୁଟି, ଡାଲି ଲାଗି ବି ସଉଦା କରିବା କଷ୍ଟସାଧ୍ୟ ହେଇପଡ଼ିଲା ତା' ଲାଗି ।

ଆଉ ଦିନ ଅଚାନକ ବଦଳିଗଲା ଯେବେ ତିନି ଚାରିଟି ପଡ଼ିଶା ଘରୁ ସିଲେଇ କାମର ପାଉଣା ପାଇଲାପରେ ନିଜେ ପାଖ ବଜାରରୁ ମାଂସ, ଗରମ ମସଲା ଆଣି ଫାତିମା ଜେଜେମାଠାରୁ ଶିଖିଥିବା ନବାବୀ ବିରିଆନୀ ତିଆରିକଲା, ମୁକ୍ତାର ଲାଗି । ସଂଜବେଳେ ଖୋଲା କବାଟରେ ପଶୁ ପଶୁ ମହକିଯାଉଥିବା ଘର ଦେଖି ମୁକ୍ତାର ପଚାରିଲା, "ଇଏ କ'ଣ ? କ'ଣ ରୋଷେଇ କରିଚୁ ଆଜି ?"

ଫାତିମା କହିଲା, "ସେଦିନ କହିଥିଲ ନା, ଖାଇବା ବେଳେ ଏସବୁ କଥା ପଚରା ଯାଏନି ବୋଲି ?"

ମୁକ୍ତାର ହାତ ଧୋଇ ଥାଳିପାଖେ ବସିଲା । ମୁହଁକୁ ଗୁଣ୍ଡା ନେଉନେଉ କହିଲା, "ତଥାପି, ତୋ' ପାଖେ ପଇସା କୋଉଠୁ ଆସିଲା କହିବୁ ତ ?"

ଫାତିମା ତା' ଦେହକୁ ଲାଗି ବସିଲା, କହିଲା "ଚାଲ ଖାଇଦେବା ଆଗ । ତା'ପରେ କହିବି ।"

ଖାଉଖାଉ ମୁକ୍ତାର ପୁଣି ପଚାରିଲା, "ଉଧାର ଆଣିଥିବୁ ? ନା ମୁଦି ଫୁଦି କିଛିଗୋଟେ ଆଉରି ଲୁଚେଇ ରଖିଥିଲୁ ? ନାଇଁ ମ, ଉଧାର ଆଣିଚୁ ନିଶ୍ଚେ । କୁରେଶି ଆଣ୍ଟିଠୁ ?"

ପ୍ରତି ପ୍ରଶ୍ନର ଉତ୍ତରେ ଓଠ ଚାପି ହସି ଫାତିମା କେବଳ ମୁଣ୍ଡ ଟୁଙ୍ଗାରିଲା । ଖାଇସାରି ମୁହଁ ଧୋଇ ବିଛଣାକୁ ଆସିଲା ମୁକ୍ତାର । ଲାଇଟ୍ ଲିଭାଇ ପାଖକୁ ନ ଆସୁଣୁ ଛାତି ଦେହରେ ଫାତିମାକୁ ମିଶେଇଦେଇ ଓଠରେ ତା' ଓଠ ବୁଜିଦେଉଦେଉ ପଚାରିଲା, "ଏବେ କହ, କେତେ ଟଙ୍କା ଉଧାର କଲୁ ।"

ଚୁମା ମଝିରୁ ଗୁଁ ପୁଁ ହେଇ ଫାତିମା ପଚାରିଲା, "କେମିତି କହିବି ?"

ଓଠ ଘୁଂଚେଇନେଇ ମୁକ୍ତାର କହିଲା, "କାଲି ଶୁଝିଦେବି ମୁଁ । ଟଙ୍କା ମାଗିଲୁ କାହିଁକି ମୋତେ ନକହି ? ଆଉ କେବେ ମାଗିବୁନି, ଛି ।"

"ମାଗିନି ।"

"ମାନେ ?"

"କମେଇଚି । ସିଲେଇ କାମରୁ ।"

କିଛି ଦିଶୁନଥିବା ଅନ୍ଧାରରେ ସବୁକିଛି ଚୁପ୍ ହେଇଗଲା । ମୁକ୍ତାର ଉଠିବସିଲା ବିଛଣାରୁ, ଆଉ ସ୍ଥିର ନିଶ୍ଚଳ ପାଲଟିଗଲା ମୁହୂର୍ତ୍ତକେ । ଛାତିଭିତର ଧକ୍ କିନି ରହିଗଲା ଫାତିମାର । ଆସ୍ତେକରି ପଚାରିଲା, "କ'ଣ ହେଲା କି ? ରାଗିଲ ମୋ' ଉପରେ ?"

ଉତ୍ତର ଆସିଲାନି । ଫାତିମା ବି ଏଥର ଉଠିବସିଲା । ପରିଷ୍କାର ଗଳାରେ ପଚାରିଲା, "ରାଗିଲ ମୁଁ ସିଲେଇ କରି ରୋଜଗାର କଲି ବୋଲି ?"

"କେବେଠୁ କରୁଚ ତମେ ସିଲେଇ କାମ ? ମୋତେ କହିନା କାହିଁକି ?"

ଫାତିମା ଉଠି ଲାଇଟ୍ ଜଳାଇଲା । ମୁକ୍ତାର ଆଗରେ ଯାଇ ଛିଡ଼ାହେଲା । ମୁହଁକୁ ଆସୁଥିଲା ପଚାରିବ, ଘର କେମିତି ସବୁଦିନ ଚଳୁଚି ତମ ମୁଣ୍ଡକୁ ସେକଥା ପଶୁନି ? ହେଲେ ଓଠ ସେପାଖେ ଢୋକିନେଲା କଥାଟିକୁ । କହିଲା, "ମୁଁ ତ ଭୋପାଳରେ ସିଲେଇ କରି ରୋଜଗାର କରୁଥିଲି । ଶାହନଶା ହୋଟେଲରେ ବିଜିନେସ୍ କରୁଥିଲି । ତମେ ଜାଣନି ମୁଁ

ସିଲେଇକାମ କରେ ବୋଲି ?"

ମୁକ୍ତାର ଯେଉଁ ଆଖି ନେଇ ତାକୁ ଅନେଇଲା ସେ ଦୃଷ୍ଟି ସହ ଫାତିମାର ପରିଚୟ ନଥିଲା ।

"ଏଠି ତମେ ଗୋଟେ କାମ କରିବ, ରୋଜଗାର କରିବ, ମୋ' ପାଖେ ରହି, ଅଥଚ ମୋର ସେଥିରେ ମତାମତ ନଥିବ ? ମୋ କାମ ସାଙ୍ଗେ ତା'ର ତାଳମେଳ ନଥିବ ?"

"କ'ଣ ଖାଲି ତମକୁ ପଚାରିଲି ନାହିଁ ବୋଲି ତମର ଏତେ ରାଗ ? ଏଇ ଆମ ଚିହ୍ନା ପଡ଼ିଶା ଲୋକଙ୍କ କାମ ବୋଲି ତମକୁ ପଚାରିଲିନାଇଁ । ହଉ ହେଲା ମୋର ଭୁଲ୍ ହେଇଚି, ମୋର ପଚାରିବା ଉଚିତ୍ ଥିଲା । ହେଲେ କାମ କରିବାରେ ଭୁଲ୍ କ'ଣ ?"

"ମୋ ସାଥିରେ ତମେ ଆସିଥିଲ ଘର ଘର ବୁଲି ଏସବୁ କାମ କରିବ ବୋଲି ? ମୁଁ ଯଦି ଏକଥା ସ୍ୱପ୍ନରେ ଭାବିଥାନ୍ତି ।"

ଏଥର କହିବାକୁ ଚେଷ୍ଟା କଲାବେଳେ କୋହ ଉଠେଇ ସ୍ପଷ୍ଟ ଶୁଭୁନଥିଲା ଫାତିମାର କଥା, "ଏଇ କାମ ହିଁ ମୋତେ ଆସେ ବୋଲି ତମେ ତ ମୂଳରୁ ଜାଣିଥିଲ ? ଜାଣି ବି ମୋତେ ଭଲ ପାଇଥିଲ ?"

"ମୋର ଭାବନା ଆଉ ରୁଚି ସହିତ, ମୋ' ସମ୍ମାନ ସହିତ ଯେଉଁ କାମର ସଂପର୍କ ନଥିବ, ସେଭଳି କାମରେ ଚିନ୍ତାରେ ବନ୍ଧାହେଇ ରହିଥିବ ଯାହାର ପୂରା ଅସ୍ତିତ୍ୱ, ସେ ମୋ' ସ୍ତ୍ରୀ, ମୋ' ପ୍ରେମିକା କେମିତି ହେଇପାରିବ ?"

ଫାତିମା ଯେ ଅନ୍ଦାଜ କରିନଥିଲା କିଛି ଗୋଟାଏ ଆପତ୍ତି ବା ଛୋଟକାଟିଆ କଥା କଟାକଟି ତା' ନୁହେଁ, ଓ ତାକୁ ସାମ୍ନା କରିବାକୁ ସେ ମନେମନେ ତିଆର ଥିଲା । କିନ୍ତୁ ମୁକ୍ତାରର ଏଭଳି ରୂପ କେବେହେଲେ ତା'ର କଳ୍ପନାରେ ନଥିଲା ।

ଅନେକବେଳ ପରେ, ଦୁହେଁ ଦୁହିଙ୍କୁ ପଛକରି ଶୋଇଥିଲା ବେଳେ, କବାଟଆଡ଼କୁ ମୁହଁକରି ଶୋଇଥିବା ଫାତିମା ପଚାରିଲା, "ମୋତେ କ'ଣ ଏଇ ବଖୁରିକିଆ ଘରେ ଶୁଆଟିଏ ଭଳି ବନ୍ଦକରି ରଖିବ ବୋଲି ସାଙ୍ଗରେ ଆଣିଥିଲ ?"

କାନ୍ଥଆଡ଼କୁ ରହିଁ ଶୋଇଥିବା ମୁକ୍ତାର ପଚାରିଲା, "ମୁଁ ବି ସେଇକଥା ତମକୁ ପଚାରୁଚି । ଦିଇଟା ଦିନ ଅଭାବରେ ମୋ' ସାଙ୍ଗେ କାଟିପାରୁନ । ମୋ' କବିତା, ମୋ' ନାଟକ, ମୋର ଭବିଷ୍ୟତର ପ୍ଲାନ୍ କଥା ସବୁ ଜାଣିସାରି ତ ତମେ ମୋତେ ଭଲପାଇଥିଲ । ମୋ' ଭବିଷ୍ୟତର ଅନିଶ୍ଚିତତା କଥା କ'ଣ ଜାଣିନଥିଲ ? ମୋ' ସାଥିରେ ଘର ଛାଡ଼ିବାଲାଗି ମୁଁ କ'ଣ ତମକୁ ବାଧ୍ୟ କରିଥିଲି ?"

# ବଦଳୁଥାଏ ମାଟି, ପାଣି, ପବନ

ଚଟାଣରେ ଶୋଇ ଶୋଇ ସାରାରାତି କାନ୍ଦିଥିଲା ଫାତିମା । ପାହାନ୍ତା ପହରରେ କେତେବେଳେ ନିଦ ଲାଗିଯାଇଥିଲା । ଆଗରୁ କେଇଥର ଦେଖିଥିବା ସେଇ ସପ୍ନଟି ଆସିଲା ପୁଣିଥରେ । କୋଉ ସବୁ ଗଳି ଭିତରେ ବୁଲୁଚି ସେ । ଚିହ୍ନା ଚିହ୍ନା ଲାଗୁଚି ସେଇ ରାସ୍ତା ଘର ଆଖପାଖ ସବୁ, ଅଥଚ ପିଲାଦିନୁ ଜାଣିଥିବା ନିଜ ଘରଟା ସେ ଜମା ଖୋଜିପାଉନାଇଁ । ପଚାରିବାକୁ ଚାହୁଁଚି ସେ ଗଲାଆସିଲା ଲୋକଙ୍କୁ, ଏଇଠି ଆମ ଘରଟା ଥିଲା କୁଆଡ଼େ ଗଲା ? ହେଲେ ଗଲା ଆସିଲା ଲୋକେ କେହି ଚିହ୍ନୁନାହାନ୍ତି ତାକୁ, ବାଟ ଭାଙ୍ଗି ଚାଲିଯାଉଚନ୍ତି । ସବୁଥର ପରି ପାଟିକରି ଡାକିବାକୁ ଯାଉଯାଉ ତା' ନିଦ ଭାଙ୍ଗିଗଲା ।

ଏକାଥରକେ ଆଖି ଖୋଲି ଉଠିବସିଲା ସେ । ପାଖ ବିଛଣାରେ ମୁନ୍ତାର ନାଇଁ, ଉଠିଗଲାଣି କେତେବେଳୁ ନିଶ୍ଚେ । ଖଟ ଦାଢ଼ରେ ଅଇଁଠା ଚା' କପ୍ ଥୁଆହେଇଚି, ସେପାଖେ ଷ୍ଟୋଭ୍ କଡ଼ରେ ଚା' ସରଂଜାମ । ଏମିତି ହୁଏନାଇଁ ତ କେବେ । ସକାଳ ଚା' କପ୍‌ଟି ଲାଗି ଅନ୍ତତଃ କେଇଥର ଡାକଦିଏ ସେ ଫାତିମାକୁ । ଧୂଆଁଳିଆ ଧରିଯାଉଥିବା ମୁଣ୍ଡରେ ମନେପକେଇବାକୁ ଚେଷ୍ଟାକଲା ଗତ ରାତିର କଥା । ତଳେ ପରାହେଇଥିବା ପତଳା ବିଛଣାଟି ଆଜି ଲୋଚାକୋଚା ହେବା ଦୂରେଥାଉ, ମଝିରେ ଦେଢ଼ ହାତ ଓସାର ଚାଦର ସିଧା ସମତୁଲ ହେଇ ଅଛି, ଭାଙ୍ଗଟିଏ ସୁଦ୍ଧା ପଡ଼ିନାଇଁ ।

ଆଉଜା କବାଟ ଖୋଲି ଓଦା ବାଳକୁ ତଉଲିଆରେ ପୋଛୁପୋଛୁ ପଶିଆସିଲା ମୁନ୍ତାର, କାନ୍ଥ ର୍‍ୟାକ୍‌ରୁ ସାର୍ଟ ପ୍ୟାଣ୍ଟ ନେଇ ବଦଳାଇଲା । କାନ୍ଥରେ ଟଙ୍ଗା ସାନ ଦର୍ପଣଟି ଆଗରେ ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ସତେକି ନିଜ ପ୍ରତିବିମ୍ବକୁ କହିଲା, "ମୋତେ ଶିଘ୍ର ଯିବାକୁ ହେବ, ଫେରୁ ଫେରୁ ରାତି ହେବ ।"

ତରତରରେ ଷ୍ଟୋଭ୍ ଜଳାଉଥିଲା ଫାତିମା, ସ୍ୱରକୁ ପାରୁପର୍ଯ୍ୟନ୍ତ ହାଲୁକା କରି କହିଲା, "କ'ଣ ଟିକେ ଖାଇଦେଇ ଯାଅ, ଦି ମିନିଟ୍‌ରେ ଦେଉଚି ।"

ଜୋତା ଗଳେଇ ବାହାରି ଯାଉଯାଉ ମୁକ୍ତାର କହିଲା, "ନାଇଁ, ଥାଉ ।"

ଷ୍ଟୋଭ୍ ଲିଭାଇଦେଇ କବାଟ ବନ୍ଦକଲା ଫାତିମା । ଥକା ପାଦରେ ଝର୍କା ପାଖକୁ ଗଲା, ପୁରୁଣା ଓଢ଼ଣୀରେ ତିଆରି ପର୍ଦ୍ଦା ଆଡ଼େଇ ଚାହିଁଲା ପଦାକୁ । ବାହାରେ ନିତିଦିନିଆ ବ୍ୟସ୍ତତାକୁ ଫେରିଯାଉଥିବା ବମ୍ବେର ସକାଳଟିଏ । ଫିଟିପଡୁଚି ତା'ର ହାଉଯାଉ କୋଠା ବାଡ଼ି ରାସ୍ତା ବଜାର, ଲକ୍ଷେ ବାଟ ଫିଟେଇଦେଉଚି କେଉଁ ବାଟୋଇର ପାଦ ତଳେ । ଆଉ କାହାକୁ ବା ଚପିନେଉଚି ଚରିଆଡୁ, ବୁଜିଦେଉଚି ସବୁ ବାଟ ଅଣନିଃଶ୍ୱାସିଆ କରି ।

ବାହାରୁ ମୁହଁ ଫେରେଇ ଫାତିମା ନିଜ ଘର ଭିତରକୁ ଚାହିଁଲା । ଝରକା ପାଖେ ଗୋଟିକ ବୋଲି ଅଣଓସାରିଆ ଖଟରେ ଖେଳେଇ ହେଇ ପଡ଼ିଚି ଖାତା କାଗଜପତ୍ର । ସେଇଠି ଥୁଆ ଅଇଁଠା କପ୍‌ଟିକି ଉଠାଇ ନେଉନେଉ କେମିତି ଗୋଟାଏ ଥକାପଣ ଆବୋରି ପକେଇଲା ତାକୁ । କପ୍‌ଟି ତଳେ ଥୋଇଦେଇ ଖଟ ଉପର ସେଇ ଟିକକ ଜାଗାରେ ବସିପଡ଼ିଲା ସିଏ । ଖାତାଟିଏ ଉଠେଇନେଇ ଦି ଚରି ପୃଷ୍ଠା ଓଲଟାଇ ଦେଖିଲା । ପୁଣି ତାକୁ ବନ୍ଦକରି ଥୋଇଦେଲା । ଅସଜଡ଼ା କାଗଜପତ୍ରରୁ ଗୋଛାଏ ଗୋଟିଏ କଡ଼କୁ କରିଦେଇ ସେଇଠି ସୋରାଏ ବୋଲି ଜାଗାରେ ଫାତିମା ଆସ୍ତେକିନି ଗଡ଼ିପଡ଼ିଲା, ଆଉ ତା' ଖୋଲା ପାଟି ଦେଇ ଥଣ୍ଡା ନିଃଶ୍ୱାସଟିଏ ବାହାରିଗଲା । ଆଖିପତା ତଳେ ଦିଶିଗଲା ଏମିତି ଖାତାପତ୍ର ଭରିଥିବା ବିଛଣାଟିଏ କାହିଁ କେତେଦିନ ତଳର । ସେଇ ଦୃଶ୍ୟରେ ଦୁର୍ମୂଲ୍ୟ କାଗଜ ଯାକ ଆଡ଼େଇଦିଆଯାଇ ଝିଅଟିଏ ଲାଗି ଜାଗା କରାଯାଇଥିଲା, ଫାତିମା ଲାଗି । ଏବେ ଏଇ ଖଟଟି ଏକାଠି ହେବାଲାଗି ନୁହେଁ, କେବଳ ପଢ଼ାଟେବୁଲଟିଏ, କାଗଜପତ୍ର ରଖିବା ଜାଗାଟିଏ ଭଳି ହିଁ ବ୍ୟବହାର ହୁଏ । ମୁକ୍ତାର ଯେବେ ଏଠି ଦିନ ଦିନ ଧରି କାମ କରୁଥାଏ, ଫାତିମା ତା' କାଗଜପତ୍ର ସଜାଡ଼ିଦେବାକୁ କି ଚଦରଟି ଝାଡ଼ିଦେବାକୁ ବି ଭରସେ ନାହିଁ ।

ଏଥର ନିଜ ଲାଗି ଅଳ୍ପ ଟିକେ ଜାଗାକରି ହାତଗୋଡ଼ ଜାକିଜୁକି ସେଇଠି ସେମିତି ଶୋଇଶୋଇ ଆପଣାକୁ ପଚରୁଚି ଫାତିମା, ହଉ ଯାହା ହେଲା ହେଲା । ହେଲେ ଏବେ ଆଗକୁ ବାଟ କେଉଁଚି ?

ଯେଉଁ କଳା ପର୍ଦ୍ଦା ତା' ଆସନ୍ତାକାଲିକୁ ଘୋଡ଼େଇ ପକାଉଥିବା ଭୟରୁ ବର୍ତ୍ତିବାକୁ ଧାଇଁ ପଳେଇଆସିଥିଲା ଫାତିମା, ଏଠିକି ଆସିଲା ପରେ ଆଉ ପ୍ରକାରେ ଅଜଣା କଳା ପର୍ଦ୍ଦା ଘେରିପକେଇଚି ତାକୁ । ତା' ଭିତରେ ସେ ହିଁ ଏକୁଟିଆ ରହିଥାଏ । ଆଉ ପର୍ଦ୍ଦା ବାହାରେ ଥାଏ ସାରା ଦୁନିଆ, ଏପରିକି ନିଜେ ମୁକ୍ତାର ବି, ଯାହାକୁ ନିଜଠୁ ଅଲଗା କରି ଭାବି ହିଁ ପାରୁନଥିଲା ସେ ସେବେ । ଏବେ ଥରକୁ ଥର ତା' ମନରେ ପ୍ରଶ୍ନ ଉଠେ, ମୁକ୍ତାରର ଦୁନିଆଁଟି କେମିତି ? ମୁକ୍ତାର ଆଖିଦେଇ ଯେଉଁ ଦୁନିଆଁଟିକି ସେ ଦେଖିବାକୁ ଚେଷ୍ଟା କରୁଥିଲା ଦିନେ,

ସେ ଏଣିକି ଆଉରି ଦୂର ଅପହଂଚ । ପ୍ରଶ୍ନ ଉଠେ, ମୁକ୍ତାର କ'ଣ କେବେ ଫାତିମାର ଆଖିଦେଇ ଦେଖିବାକୁ ଚେଷ୍ଟା କରିଚି କେବେ ? ତା' ଓଠରେ କଥା ପଇଟେ ନାହିଁ ମୁକ୍ତାରକୁ ପଚାରିବା ଲାଗି, ଯେ ସକାଳୁ ଏ ଘରୁ ବାହାରିଗଲା ପରେ ତମ ଦୁନିଆଁରେ କ'ଣ ଫାତିମା ବୋଲି କିଏ ଥାଏ ସତରେ ? ମୁଁ ଯେମିତି ବେଳେବେଳେ ରାତିରେ ଦୁଃସ୍ୱପ୍ନ ଦେଖେ, ଯେ ତମେ ଟ୍ରେନ୍‌ରୁ ବାଟରେ କୋଉଠି ଓହ୍ଲେଇଗଲ ଆଉ ମୁଁ ଏକୁଟିଆ ଆସି ପହଂଚିଯାଇଚି ଏ ଅଜଣା ନଗରୀରେ, ତମକୁ କ'ଣ କେବେ ଲାଗେନି ଯେ ହୁଏତ ତମ ଜାଣିଲା ଫାତିମାକୁ ପୁରୁଣା ସହରରେ ଛାଡ଼ିଆସିଲ ?

କେତେବେଳେ ଉଠି ପଦାକୁ ଗଲାବେଳକୁ ସିଡ଼ିରେ ରୀତା ତାକୁ ଦେଖି ପଚାରିଲା, "ଇଏ କ'ଣ ଭାଭୀ, ଏତେ ଡେରିରେ ଆଜି ଉଠିଲ ନା କ'ଣ ? ଦେହ ଭଲ ଅଛି ତ ?"

ଆଉ ଫାତିମାଠୁ ଉତ୍ତର ଶୁଣିବା ପୂର୍ବରୁ କହିଲା, "ଗଲ, ଶିଘ୍ର ଯାଇ ତିଆର ହେଇଯାଇ ଆସ । ଆମ ଘରକୁ ଆଜି ଭି.ସି.ଆର୍. ଆଣୁଚୁ, ଏକାଠି ତିନିଟା ସିନେମା ଦେଖେଇବ ।" ଦଉଡ଼ି ଚାଲିଯାଉ ଯାଉ ରୀତା ଫେରି ପଚାରିଲା, "ଆସୁଚ ତ ଫାତିମା ଭାଭୀ ? ଡେରି କରିବନି, ଲାଗ୍ ଲାଗ୍ ତିନିଟା ସିନେମା ଦେଖିବା ଆଜି ।"

ଚାଲ୍‌ରେ ଭି.ସି.ଆର୍. ଆଣି ସିନେମା ଦେଖାଯାଏ, ଆଖପାଖର ପଡ଼ିଶା ମିଶି ଚାନ୍ଦାରେ ଭଡ଼ା ଦିଅନ୍ତି । ସିଲେଇ ଆମଦାନୀରୁ ମିଳୁଥିବା ବମ୍ବେଜୀବନର ବିଳାସ ଭିତରୁ ଫାତିମା ଲାଗି ଏଇଟା ବି ଗୋଟିଏ । ଆଜି କିନ୍ତୁ ଫାତିମା ମନରେ ଟିକିଏ ହେଲେ ହଲଚଲ ହେଲାନି ଏକଥାରେ । ଉତ୍ତର ନଦେଇ ସେ ନିଜ ବାଟରେ ଚାଲିଗଲା ।

କିଛି ସମୟପରେ ଯେବେ ଘରଭିତରକୁ ପାଦ ବଢ଼େଇଲା ଫାତିମା, ତା'ର ଅଜବ ଗୋଟାଏ ଭୟ ହେଲା ଏକୁଟିଆ ସେଠିକି ପଶିବାକୁ । ଆଁ କରି ଅନେଇବସିଚି ତାକୁ ଏ ବଖୁରିକିଆ ସଂସାର । ବିନା ଆପତ୍ତିରେ ଏ ଅନ୍ଧକୂପରେ ବଳି ପଡ଼ିଯିବା ହିଁ କ'ଣ ତା' ନିୟତି ?

ଶିଘ୍ର ଶିଘ୍ର ତିଆର ହେଇପଡ଼ି କାନ୍ଥ ଥାକ କାଗଜ ତଳେ ଲୁଚେଇ ରଖିଥିବା ପଇସା କାଢ଼ି ଫାତିମା କବାଟରେ ତାଲା ପକେଇଲା, ବାହାରିପଡ଼ିଲା ସେପାଖେ ଦି ବଖୁରି ଛାଡ଼ି ରୀତା ଘରକୁ । ଅନ୍ତତଃ ଲୋକଗହଳି ମଝିରେ ବସି ରଙ୍ଗୀନ ପରଦା ଆଗରେ କଟିଯିବ କେଇଘଣ୍ଟା । ସଂଜବେଳକୁ ଫେରିବ ଆଜି ବଖରାକୁ । ଦିନଯାକ ପେଟରେ ପଛକେ ଦାନା ପଡ଼ି ନଥାଉ ।

# କେତେ କାଳି ଗଳିଯାଏ

ଆସନ୍ତାକାଲିର ଯେଉଁ ରୂପ ଦିଶୁଥାଏ ପୂର୍ବ ରାତିରେ, ସକାଳ ପାହିଲା ବେଳକୁ ସେଇ ରୂପ ନଥାଏ ହୁଏତ । ଦିନର ଆଲୁଅ ସାହସ ଦିଏ, ଅନ୍ଧାର ଭିତରୁ ଦିଶୁଥିବା ସେ ସକାଳର ରୂପକୁ ମୁହଁ ଟେକି ସିଧା କରି ଚାହିଁବା ଲାଗି ।

ଦିହେଁ ଜାଣିଥିଲେ ଯେ ଏଥରର ରାଗ କଳି ଯା ଆଗରୁ କେଇଥର ହେଇଥିବା ମୁହଁଫୁଲା ରୁଷାରୁଷି ନଥିଲା । ତା'ଠାରୁ ଢେର୍ ଭିନ୍ନ ଆଉକିଛି ଥିଲା । ତେବେ ଦିହେଁ ପରସ୍ପର ଆଡ଼କୁ ପାଦେ ଲେଖାଁ ଆଗେଇଲେ, ଆଉ ଦିନ କେତେଟାରେ ପୁଣି ଫେରିଆସିଲେ ସାଧାରଣ ଜୀବନକୁ । ହେଲେ ଦିହିଁଙ୍କୁ ଦେଖାଯାଉଥିଲା, ଏଥରର ଫାଟଟି । ଯାହା ପାଖାପାଖି ଦେହଦୁଇଟି ରହିଲେ ବି ମଝିରେ ଗହୀର ହେଇ ଦିଶୁଥିଲା, ଆଉ ଦିହେଁ ସେଆଡ଼କୁ ଚାହିଁ ନଚାହିଁଲା ପରି ରହୁଥିଲେ । ସକାଳୁ ଉଠି ଫାତିମା କହୁଥିଲା, "ତମେ ଗାଧେଇ ଆସୁଆସୁ ମୁଁ ଆଳୁପରଟା କରିଦେବି, ରାତିରୁ ଆଳୁ ସିଝେଇ ରଖିଚି । ତମକୁ ମୋ' ରାଣ, ଖାଇକି ଯିବ ।"

ଦି'ଦିନ ପରେ ପ୍ୟାକେଟ୍‌ରେ ଫାତିମା ଲାଗି ନୂଆ କୁର୍ତ୍ତାସୁଟ୍ ନେଇ ସେଦିନ ମୁକ୍ତାର ପହଂଚିଲା, ସାଙ୍ଗରେ କାର୍ଡ଼ଟିଏ ଫାତିମା ହାତରେ ଦେଇ କହିଲା, "ମେହଟା ସାହେବଙ୍କ ଫିଲ୍ମର ମହୁରତ୍ ଲାଗି କାର୍ଡ଼ ଆଣିଚି, ଦିହିଙ୍କ ଲାଗି । ଏ ଡ୍ରେସ୍‌ଟା ଦେଖିଲୁ, ଫିଟ୍ ହେଉଚି କି ନାଇଁ ।"

ମୁକ୍ତାରର ସେ କଅଁଳପଣକୁ ଦେଖି ବିଶ୍ୱାସ କରିପାରିଲାନାହିଁ ଫାତିମା, ହାବୁକାଏ କୋହ ଉଠି ତା'ର ଆଖି ଛଳଛଳ ହେଇଗଲା, କହିଲା, "ତମ ସ୍କ୍ରିପ୍ଟ ନେଇଚନ୍ତି କି ?"

"ଧେତ୍ ବୋକୀ, ମୋ' ସ୍କ୍ରିପ୍ଟ କୁଆଡୁ ନେବେ । ହେଲେ ମୋତେ ଆସିଷ୍ଟାଣ୍ଟ କରି ନେଇଚନ୍ତି, କହିଥିଲି ତ ତତେ । ତାଙ୍କ ସାଙ୍ଗେ କାମ କରିବାକୁ ମିଳିବ, ଆଗକୁ ବାଟ ଖୋଲିବ ।"

ଫାତିମା ଏଥି ଭିତରେ ଡ୍ରେସ୍‌ଟା ଖୋଲି ଦେଖୁ ଦେଖୁ କହିଲା, "କେତେ ବଡ଼ବଡ଼ିଆ ଲୋକ ଆସିଥିବେ । ମୁଁ ତାଙ୍କ ଭିତରେ କେମିତି ଦେଖାଯିବି ଯେ ?"

"ଦେଖାଯିବୁ କ'ଣ, ମିଶିଯିବୁ ପୂରା । ତୋ' ନିଜ ଚେହେରା ବିଷୟରେ ତ ତତେ ଜଣାନାହିଁ । କାହାଠୁ କମ୍ କି ତୁ ? ଏଥର ପେମେଣ୍ଟଟା ହେଇଯାଉ କି ତତେ ବିଉଟି ପାର୍ଲରକୁ ନେଇଯିବି ।"

ଫାତିମା ଢଙ୍ଗରେ ମୁହଁ ହଲେଇ କହିଲା, "ମୋତେ ସବୁ ମେକପ୍ ଆସେ, ଫେଶନ ଆସେ, ତମେ ଜାଣିନା । ନର୍ଗୀସ୍ ବୀ ମୋତେ ସବୁ ଶିଖେଇ ଦେଇଚନ୍ତି ।"

କହିଦେଇ ସେତିକିରେ ନିଜକୁ ରୋକିନେଲା ଫାତିମା । ଗୋଳେଇବା ଲାଗି ଆଉରି ଦିଇଟା କଥା ଯୋଡ଼ିଦେଲା, "ମୋର ବରଂ ଭଲ ଚପଲ ହଳେ ଦରକାର । ଏଇ ଚପଲରେ ଫିଲିମ୍ ମହୁରତ୍‌କୁ କ'ଣ ଯାଇହେବ ?"

କେତେଦିନ ଧରି ଦିହେଁ ଜଗିରଖି ପାଦ ପକଉଥିଲେ । ତଥାପି କୁଆଡୁ କେଜାଣି ପାଦତଳକୁ ଆସିଯାଏ ସେଇ ଫାଟଟି ।

ମୁକ୍ତାର ରାତିରେ ଫେରି ପଚାରେନାହିଁ ଆଜି ଦିନସାରା କ'ଣ କଲ ବୋଲି । ନିଜ ତରଫରୁ ଫାତିମା ବି କିଛି କହେନାହିଁ କେମିତି ସେ ଆଜି ଦିନଟି କାଟିଚି, ନା ନୂଆକିଛି ରୋଷେଇ କି ଘରସଜାରେ ମୁକ୍ତାରକୁ ଚମକେଇ ଦେବାର ଥାଏ । ମହୁରତ୍‌ରୁ ଫେରିବାପରେ ଫାତିମା ସେ ବିଷୟରେ ଖୁବ୍ ବେଶୀକିଛି ଗପ କରିପାରିଲାନାହିଁ, ଯେମିତି ମୁକ୍ତାର ଚାହୁଁଥିଲା । ପ୍ରଥମ କରି ତା' ହାତରେ ମଦ ଗିଲାସ ଦେଖି ଏମିତିରେ ଫାତିମାର ମନଟା ମରିଯାଇଥିଲା । ତହିଁକି ରୁନ୍‌ଝୁନ୍ ବୋଲି କିଏ ସେ ନୂଆ ଏକଟ୍ରେସ୍ ଟା ଥରକୁଥର ମୁକ୍ତାରର ହାତଧରି ଟାଣିବା । ଆଉ ନିଜେ ଫାତିମା ଏକକଡ଼ିଆ ହେଇ ବସି ଲୋକଙ୍କୁ ଅନେଇ ଅନେଇ ସବୁ ସମୟ କାଟିଦେବା । ବିନା କାରଣରେ ନିଜ ମେକପ୍ ଲଗା ମୁହଁଟାରେ ହସହସ ଭାବ ଘେନିଥିବା । ମନ ଖୁସି ଲାଗିବା ଦୂରେ ଥାଉ, ଏସବୁ କିଛି ଫାତିମା ଲାଗି ସହଜ ନଥିଲା । ଘରକୁ ଫେରି ସିଢ଼ି ଚଢ଼ିଲାବେଳକୁ ସତେକି ସେ ନିଜ ଭିତରେ ମହଣେ ଓଜନ ବୋହି ଚାଲୁଥିଲା ।

ସେଦିନ ରାତିରେ ଏକୁଟିଆ ଖୋଲା ଆଖିରେ ବିଛଣାରେ ପଡ଼ି ପଡ଼ି ଫାତିମାର ଝିଅଦିନର କଥାମାନ ମନେପଡୁଥିଲା ।

ଜବୀନା ସାଙ୍ଗରେ ଘଣ୍ଟା ଘଣ୍ଟା ଗପ । ଟିକିଏ ବେଳ ମିଳିଲେ ଦିହେଁ ମିଶି ଛାତ ଉପରକୁ ଧାଇଁଯାଇ କେତେ ସୁଖଦୁଃଖ, କେତେ ଖିଲିଖିଲି ହସ । ପୁଣି କଥାକଥାକେ ଜବୀନାର ପୋଖତ ମାଇପି ପରି ଘରସଂସାରର କଥା । କହୁଥିଲା ଜବୀନା, ମାଇପି ଜୀବନର ପରିପୂର୍ଣ୍ଣତା । ଅଲଗା । ତମ ଜୀବନରେ ଥିବା ପୁରୁଷ ଯାହା କହୁଥାଉ, ସେଥିରେ ଯାଏଆସେ ନାହିଁ, ତହିଁରେ ସତ ବଦଳି ଯାଏନାହିଁ । ଅସଲରେ ସବୁ ପୁରୁଷ ଚାହାନ୍ତି ଗୋଟିଏ କଥା । ଯେ

ତମେ ତାଙ୍କର ବୋଲ ମାନି ଚଳ । ମାନିଗଲେ କ୍ଷତିଟା ବା କ'ଣ ଯେ ? ଯେମିତି ହେଉ ଭଲରେ ଭଲରେ ଘରସଂସାର କଲେ ଗଲା । ଆଉରି ମନେପଡୁଚି, ଶୋଭନା କହେ, କବି ମାନେ ହେଉଛନ୍ତି ଖତରନାକ ଲୋକ । ସବୁ ଗଜଲରେ ତୁ ଦେଖିବୁ, ଥାଏ କ'ଣ ? ସୁନ୍ଦରୀ ମାନଙ୍କୁ ଦେଖି ଲୋଭ କରିବା ଓ ଲୁହ ଝରେଇବା । ନିଜେ କେତେ ଦୁଃଖ ପାଇଲେ, ସେଇଆ ହେଲା ତାଙ୍କ ଶାୟରୀର ଆଧାର, ବାକି ସମସ୍ତେ ଚୁଲିକି ଯାଆନ୍ତୁ । ଫାତିମା ସେତିକି ବେଳେ ମୁକ୍ତାର କଥା ମନକୁ ଆଣେ, କହେ, ନାଇଁ ମ, ପ୍ରେମିକାର କେତେ ପ୍ରଶଂସା ଥାଏ, ଦେଖିନୁ ? ଶୋଭନା କହେ, ଆଉରି କିଛି ନା । ଖାଲି ପ୍ରେମିକାର ରୂପ, ଆଉ ନିଷ୍ଠୁରତା । କିଓ, ତମେ ଯାହାକୁ ଚାହିଁଲ, ନ ପାଇଲ ବୋଲି ଦୁନିଆଁଟା ଦାୟୀ ନା କ'ଣ ? ତମକଥା କାଇଁକି ଆମେ ଶୁଣିବୁ ଯେ ? ତମ ଗୀତକୁ ଶୁଣିବୁ ହଁ । ଶୁଣିବାକୁ ଭଲ ଲାଗେ ବୋଲି ଶୁଣିବୁ । ହେଲେ ତମ କଥା ? ତୁଚ୍ଛା ମିଛ । ଜମା ବିଶ୍ୱାସ କରିବା କଥା ନୁହଁ ।

ହୋହୋ ହସ ହୁଏ ତା'ପରେ, କଲେଜରେ ଆମ୍ବ ଗଛତଳ ଆସରରେ ।

ଅନେକ ସମୟରେ ଗଲା କଥା ସବୁ ମନେ ପକାଏ ଫାତିମା । ଜବୀନାକୁ ଯେବେ ଚିଡ଼େଇଥିଲେ ସମସ୍ତେ, ବାହା ହେଉ ହେଉ ପିଲାଟିଏ କରିପକେଇବା କି ଦରକାର ଥିଲା, ଆଜିକାଲି ତ ଏତେ ଉପାୟ ଅଛି କିଛିଦିନ ଟାଳିଯିବାକୁ ବୋଲି କହି । ସେ ବେଖାତିରିରେ ଜବାବ ଦେଇଥିଲା, ମୋତେ ଜଣାଅଛି ସବୁ ଉପାୟ, ହେଲେ ମୋର ଛୁଆ ପିଲା ଦରକାର । ତହିଁରେ ଯାଇ ସ୍ୱାମୀକୁ ବାନ୍ଧି ରଖିହେବ । ରୂପରୁ କ'ଣ ପାଇବୁ । ସେଇଠୁ ସେ ପୋଖତ ମାଇପି ପରି ଉଦାହରଣ ଦେଇପକେଇଥିଲା, ଅମୁକକୁ ଦେଖୁନୁ, ତା' ମିଆଁ ତୃତୀୟ ବିବି ଆଣିଚି ଏଇ । ପ୍ରଥମ ବିବିର ଛୁଆପିଲା ଅଛନ୍ତି ବୋଲି ତା' ଘରେ ଦବଦବା ଅଛି, ତା' କଥା ତଳେ ପଡ଼ିବନି, ହେଲେ ଦ୍ୱିତୀୟ ବିଚରୀ ଏବେ କରିବ କଅଣ, ନା ତା' ପାଖରେ ପିଲା ଅଛନ୍ତି ନା ମିଆଁ ।

ଭାବି ଭାବି ଫାତିମା ଦେଖିବାକୁ ଚେଷ୍ଟା କରେ ପ୍ରିୟ ଛବିଟିଏର ଉହାଡ଼ରେ ରହିଥିବା ଭାଗ ଯାହା ଆଖିକି ଦିଶେନାହିଁ । ଯାହାକୁ ଜାଣିବା ଦିନୁ ସେ କେବଳ ଦେଖିଥିଲା କଳାକାରଟିଏକୁ, ସେଇଠି କେଡ଼େ ସାଧାରଣ ଲୋକଟିଏ ଅଛି । ଯାହାକୁ ଭାବୁଥିଲା ଠୋସ୍ ଦୁନିଆଁରୁ ଚାଖଣ୍ଡେ ଉପରେ ପବନରେ ଚାଲୁଥିବା ବିସ୍ମୟଟିଏ ବୋଲି, ଆଜି ଦେଖୁଚି କେଡ଼େ ସାବଧାନରେ ବଢ଼ାଏ ସେ ପ୍ରତି ପାହୁଣ୍ଡ । ବଜାରରୁ ଆଳୁ ପିଆଜ କିଣିବାକୁ ଭୁଲିଯାଉଥାଉ ପଛେ, ନିୟମ ମାଫିକେ ଜରୁରୀ ବଟିକା ଆଣିବା, କାଲି ଦିନଟି ଲାଗି ମାନଚିତ୍ର ତିଆରି କରିବା କଥା ସେ ଭୁଲେନାଇଁ କେବେ ।

# ସ୍ୱପ୍ନ ବିଳାସୀଠୁ ସ୍ୱପ୍ନ ବିକାଳୀ ଯାଏଁ

ସେଦିନ ବୋଷ୍ ଆଣ୍ଟିଙ୍କ ଘରେ ଫାତିମା ବଖାଣୁଥିଲା ତା'ର ମହୁରତ୍ ପାର୍ଟିର ଅନୁଭବ କଥା, ଆଉ ସେଠି ବସିଥିବା ଚରିପାଂଚଜଣ ଅଳ୍ପବୟସୀ, ଜଣେ ଅଧେ ମଧ୍ୟବୟସୀ ସବୁ ତା' କଥାକୁ ପିଇଯାଉଥିଲେ । ସେଠି ଜଣେ ନାରୀ ଥିଲେ ଯିଏ ସେଇ ଚାଲ୍‌ର ନୁହନ୍ତି, ବାହାରୁ କୋଉଠୁ ଆସିଥିଲେ, ଦେଖାଯାଉଥିଲେ ଫାତିମା ଦେଖିଥିବା ଫିଲିମ୍ ଜଗତରୁ ଜଣେ ଭଳି । ପଚାରିଲେ ଫାତିମାକୁ, "ତମେ ମୁକ୍ତାର ଖାନ୍‌ଙ୍କ ବିବି ତ ? ତମ ମିଆଁ ତ ବେଶ୍ ଜଣାଶୁଣା ହେଇଗଲେଣି ଏ ଭିତରେ, ଖୁବ୍ ପ୍ରମିସିଂ ବୋଲି ଲୋକେ କହୁଚନ୍ତି । ତମକୁ ଏଇ ମହୁରତ୍ ବା କି ଅପୂରୁବ ? ତମେ ତ ସେଭଳି ଲୋକଙ୍କ ଭିତରେ ଉଠାବସା କରନ୍ତ ।"

ଫାତିମା ଟିକିଏ ଥଥମତ ହେଇଗଲା । ଅଳ୍ପ ମୋଟୀ ହେଇ ସେ ନାରୀ ଜଣକ ସୁନ୍ଦର ଗହଣାରେ, ଜରି ଶାଢ଼ୀରେ ଝଲମଲ କରୁଥିଲେ । ଫାତିମାର ଲାଜେଇ ଯିବା ଦେଖି ସେ ହସିପକେଇଲେ, ନିଜେ ବସିଥିବା ସୋଫାକୁ ଡାକି କହିଲେ, "ତମେ ଫାତିମା ଏଠିକି ଆସିଲ, ମୋ' ପାଖକୁ । ଯେତିକି ମିଠା ମୁହଁ ସେତିକି ମିଠା ସଭାବ ।"

ସାଙ୍ଗ ହେଇ ତଳେ ଦରିରେ ବସିଥିବା ଫାତିମାକୁ ଗୀତା ଚିମୁଟି ଦେଇ କହିଲା, "ଯାଅ ମ ଭାଭୀ, ଡାକୁଚନ୍ତି ତମକୁ, ଉପରେ ବସିବ ଯାଅ ।"

ପାଖରେ ବସେଇ ତାଙ୍କ ସାଙ୍ଗେ କଥାବାର୍ତ୍ତା କରିବା ଭିତରେ ଫାତିମା ଜାଣିଲା ଯେ ସେ ହେଉଚନ୍ତି ସୋନଲ ସିଂ, ଫିଲିମ୍ ଦୁନିଆଁର ଲୋକଙ୍କ ଇଣ୍ଟରଭିଉ ନିଅନ୍ତି, ତାଙ୍କ ଉପରେ ଲେଖା ଲେଖି ଛାପନ୍ତି । ଫେରିଲା ବେଳେ ଗୀତା କହୁଥିଲା, "ବୋଷ ଆଣ୍ଟିଙ୍କ ଭାରି ସାଙ୍ଗ ସେ । ତମ ସାଙ୍ଗେ କେତେ ଗପ କଲେ, ତମେ ଭାରି ଲକି ।"

ଆଜିର କଥାଟା ବି ମୁକ୍ତାରକୁ କହିବ କି ନାଇଁ ଭାବି ଭାବି କହିଲାନାଇଁ ଫାତିମା । ଶୋଇଲା ବେଳେ ଖାଲି ଏତିକି କହିଲା, "ଏଠି ଚାଲ୍‌ରେ କଥାବାର୍ତ୍ତା ହେଉଚନ୍ତି ଯେ ତମକୁ କାଳେ ଫିଲିମ୍ ଜଗତରେ ସମସ୍ତେ ଚିହ୍ନିଗଲେଣି । କାଇଁ ମୋତେ କହିନା ତ ?"

ମୁକ୍ତାର ଖୁସି ହେଲା, ତାକୁ ପାଖକୁ ଜାକିନେଇ କହିଲା, "କିଏ ତତେ କହୁଥିଲା

ଏତେ କଥା ? ତୁଉଟା ବୋକାଟେ ।"

ଦିନାକେତେ ପରେ କିନ୍ତୁ ଫାତିମା ସୋନଲ ସିଂଙ୍କୁ ତା' ଘର ଦୁଆର ମୁହଁରେ ଦେଖି ଆଚମ୍ବିତ ହେଇଗଲା । ଖାଇସାରି ଗଡ଼ପଡ଼ ହେଉଥିଲା, କବାଟ ଠକ୍‌ଠକ୍ ହେଲାରୁ ଆସି ଦେଖିଲା ବେଳକୁ ଏଡ଼େ ନାହିଁନଥିବା ଅତିଥି । ଆଜି ସେ ବିଦେଶୀ ଫେଶନର ଡ୍ରେସ୍ ପିନ୍ଧିଥିଲେ, ଗହଣା ବି ଭିନ୍ନ ଥିଲା । ଆଖିର କଳାଚଷମା ଓହ୍ଲେଇ କହିଲେ, "ଭିତରକୁ ଡାକିବନି ମତେ ? ଏମିତି ଠିଆକରି ରଖିଥିବ ?"

ପଛେଇଯାଇ ବାଟ ଛାଡ଼ିଦେଲା ସିନା, କିଛି କଥା କହିବାକୁ ଫାତିମା ମୁହଁକୁ କଥା ଜୁଟୁନଥିଲା । ଏଠି ତା' ଘର ଭିତରକୁ ଡାକି ବସେଇବ ସେ କୋଉଠି ?

ଏତେବେଳକୁ ଭିତରକୁ ଆସିଯାଇସାରିଥିଲେ ସେ, ଖଟଉପରେ ଖେଳା କାଗଜପତ୍ରକୁ ଅନେଇ ତାଙ୍କ ଠାଣୀରେ ହସିଲେ ଆଉ କହିଲେ, "ବାଃ ! ପୂରା କଳାକାରଙ୍କ ଘର ଆଉ କ'ଣ ?"

ତରତରରେ ଟିଣ ଚଉକିଟି ଉପରେ ପଡ଼ିଥିବା ବହି କେତେଟା ଉଠାଇ ଫାତିମା ବସିବାକୁ କହିଲା । ଆଉ ଚଉକିଟିର ଅବସ୍ଥା ବି ତଦ୍ରୂପ, ଲୁଗାପଟା ଗୁଡ଼ିଏ ତା' ଉପରୁ କାଢ଼ି ନିଜେ ବସିଲା ଫାତିମା । ସୋନଲ ସିଂ କିନ୍ତୁ ଟିକିଏ ହେଲେ ଅପ୍ରସ୍ତୁତ କି ଆଶ୍ଚର୍ଯ୍ୟ ଦିଶୁନଥିଲେ । ଓଲଟି କହିଲେ, "ତମେ ଏଡ଼େ ବ୍ୟସ୍ତ କାଇଁକି ହେଉଚ ଯେ ? ବମ୍ବେରେ ଯେତେ ଆର୍ଟିଷ୍ଟ ବିଖ୍ୟାତ ହେଇଚନ୍ତି, ତାଙ୍କ କଥା ସବୁ ପଢ଼ିନା ତମେ ? ପୁରୁଣା ଯୁଗରେ ତ ଅଧିକାଂଶ ଅଭିନେତା, ସଙ୍ଗୀତଜ୍ଞ ସବୁ ଫୁଟ୍‌ପାଥ୍‌ରେ ରହୁଥିଲେ, ଦି'ଓଳି ଖାଇବାକୁ ପାଉନଥିଲେ । ସେ ଯୁଗର ଅଭିନେତ୍ରୀମାନଙ୍କ କଥା ଜାଣିନା ତମେ ?"

ଫାତିମା ମୁଣ୍ଡ ହଲେଇ ନାହିଁ କଲା, କହିଲା, "ମୁଁ ଖାଲି ସିନେମା ଦେଖେ, ଆଉ କିଛି ଜାଣେନା ।"

"ଜାଣେନା ମାନେ ?" ତା' ମୁହଁକୁ ଏଥର ଆଶ୍ଚର୍ଯ୍ୟରେ ଅନେଇଲେ ସୋନଲ୍ । "ତମେ ପରା ବମ୍ବେର ଜଣେ ପ୍ରତିଭାଶାଳୀ ଷ୍ଟ୍ରଗଲିଂ ଆର୍ଟିଷ୍ଟ ?"

"ନା ମୁଁ ନୁହଁ । ଆପଣ ବୋଧେ ଭୁଲ୍ ଶୁଣିଚନ୍ତି । ମୁକ୍ତାର ହେଉଚନ୍ତି ଆର୍ଟିଷ୍ଟ । ମୁଁ ତାଙ୍କ ସ୍ତ୍ରୀ ।"

"କାହିଁକି, ତମେ କାହିଁକି ଆର୍ଟିଷ୍ଟ ନୁହଁ ? କିଏ କହିଲା, ଆର୍ଟିଷ୍ଟ ହେବ ବୋଲି କିଏ ଲେଖେଇ ଆଣିଥାଏ କୋଉ ଶାହନଶାହଠୁ । ତମକୁ ଦେଖିଲାକ୍ଷଣି ମୁଁ ତ ଭାବିଲି ତମେ ଆକଟିଂ କରିବାଲାଗି ବମ୍ବେ ଆସିଚ । ମତେ ମିସେସ୍ ବୋଷ ତା'ପରେ କହିଲେ ତମ କଥା ।"

ଫାତିମାର ମୁଣ୍ଡ ଗୋଳମାଳିଆ ହେଇଯାଉଥିଲା । ଢୋକ ଗିଳି ପଚାରିଲା, "ଆପଣ

ଆସିଚନ୍ତି ମୁକ୍ତାରଙ୍କୁ ଭେଟିବେ ବୋଲି..."

"ନାଇଁ ନାଇଁ । ତମକୁ ଇ ଭେଟିବି ବୋଲି ମୁଁ ଆସିଚି ।"

ତା'ପରେ ଘଣ୍ଟାଏ କାଳ ଫାତିମା ସାଙ୍ଗେ ଗପ କଲେ ସେ । ଚା' ତିଆରି କରିବାକୁ କହିଲେ, ଷ୍ଟିଲ୍ ଗିଲାସରେ ଚା' ପିଇଲେ । ଗଲାବେଳେ ଫାତିମାକୁ ଜୋର୍‌ଦେଇ କହିଲେ, "ଏଇ ରବିବାରଟା ଯାଉ, ସୋମବାରକୁ ମୁଁ ଆସିବି ତମକୁ ସାଙ୍ଗରେ ନେଇଯିବି । ଆକଟିଂ ନକଲେ ନାହିଁ, ଯଦି ତମ ମନ ନାହିଁ କରୁଚି ନକର । ଅନ୍ତତଃ ମଡ଼େଲିଂ କରିବାରେ ତମର ଆପତ୍ତି କ'ଣ ?"

ସେ ଗଲାପରେ ଭିତରୁ କବାଟ ଦେଇ ସଂଜଯାଏ ସେମିତି ବସିରହିଲା ଫାତିମା । ମୁଣ୍ଡ ଭିତରେ ସେ ଥିବା ବେଳଯାକର ଗୋଟିଗୋଟି କଥା ରେକର୍ଡ଼ ଭଳି ବାଜୁଥାଏ ଥରକୁଥର । ଖାଲି ସଜ ବେଶ ହେଇ କାଳେ ଫଟୋ କେତେଟା ଉଠେଇବା କଥା । କେଡ଼େ ବଡ଼ ବଡ଼ ଘର ଝିଅସବୁ ଆଜିକାଲି ମଡ଼େଲିଂ କରୁଚନ୍ତି, ଅମୁକ କଥା ସମୁକର ନାଁ ଶୁଣିନା ? କେମିତି ବେଶ ହେବ, କେତେ ଦେହ ଦେଖେଇବ ନ ଦେଖେଇବ, ସବୁ ତମ ନିଜ ଇଚ୍ଛା ଉପରେ ନିର୍ଭର କରେ । ସେତିକିରୁ ପୁଣି ସବୁ ମିଳେ । ଟଙ୍କାପଇସା, ମାନସମ୍ମାନ, ସବୁ ଆସି ଆପେ ପହଂଚିଯାଏ ସଫଳ ମଡ଼େଲର ଗୋଡ଼ ତଳେ ।

ଏଥର ସେ ମନେ ମନେ ନିଶ୍ଚୟ କରିସାରିଥିଲା ଆଜିର କଥା ସେ ଜମା ଉଚ୍ଚବାଚ୍ୟ କରିବନି ମୁକ୍ତାର ଆଗରେ ବୋଲି । ମୁକ୍ତାର ଅବଶ୍ୟ ସେଦିନ ତା'ର ସେଇ ଅଲଗା ଦୁନିଆଁରେ ଥିଲା ଫେରିବା ପରଠୁ । ବେଶ୍ ଡେରି ବି ହେଇଯାଇଥିଲା ସେତେବେଳକୁ । ବାହାରୁ କୋଉଠୁ ଖାଇଦେଇ ଆସିଥିଲା । ଟିକିଏ ପିଇଦେଇ ବି । ସେ ବିଛଣାକୁ ଗଲାପରେ ଫାତିମା ଏକୁଟିଆ ନିଜଲାଗି ବାଢ଼ିଲା, ଚୁପ୍‌ଚାପ୍ ବସି ଖାଇଲା । ଆଉ ଭାବିଲା ସତରେ ସେ ଏଡ଼େ ବୋକୀ ଯେ ଭାବୁଥିଲା ମୁକ୍ତାରକୁ କେମିତି ଲୁଚେଇବ ଆଜି ଘଟିଥିବା କଥା । ଫାତିମା ଜୀବନରେ କ'ଣ ଘଟୁଚି ନ ଘଟୁଚି ଜାଣିବାକୁ କି ପଚାରିବାକୁ ତା'ର ବେଳ କାଇଁ ? କେବେ ବା ଥିଲା ?

ବିଛଣାକୁ ଗଲାପରେ ବି ମୁକ୍ତାର କିନ୍ତୁ ଶୋଇନଥିଲା । କ'ଣ ଗୋଟାଏ ପୁରୁଣା ଗୀତ ଗୁଣୁଗୁଣାଉ ଥିଲା । ଲାଇଟ୍ ଲିଭାଇ ଫାତିମା ଆସିପରେ ହଠାତ୍ ପଚାରିଲା, "ଆଚ୍ଛା କହିଲୁ, ଯେ କୌଣସି ପ୍ଲଟ୍ ସାଙ୍ଗେ କ'ଣ ଯେ କୌଣସି ସଙ୍ଗୀତ ମ୍ୟାଚ୍ କରିବ ?"

ଫାତିମା ଏ ଧରଣର କଥାବାର୍ତ୍ତାକୁ ସାମ୍ନା କରିଚି ଆଗରୁ, ପ୍ରକୃତରେ ଏପରି ପ୍ରଶ୍ନର ଉତ୍ତରରେ ବେଶୀକିଛି କଥା ତା'ଠାରୁ ଆଶା କରାଯାଏନି । ପଚାରିଲା, "କ'ଣ ତମର ଏ ନୂଆ ଫିଲିମ୍ ବିଷୟରେ କହୁଚ ? ମ୍ୟୁଜିକ୍‌ଟା ତମର ପସନ୍ଦ ହେଉନି କି ?"

"ଆରେ ପସନ୍ଦ ନାପସନ୍ଦର କଥା ପଡ଼ିନି । କଥା ହେଉଚି ମ୍ୟାଚ୍ କରିବ ନା ନାଇଁ । ଏଇ ଧର, ଯଦି ନୌଶାଦ୍‌କୁ କୁହାହେଇଥାନ୍ତା, ତମେ ମଧୁମତୀର ମ୍ୟୁଜିକ୍ ଦିଅ, କେମିତି ହେଇଥାନ୍ତା ? ବା ଧର, ମୁଗ୍‌ଲେ ଆଜମ୍‌ର ମ୍ୟୁଜିକ୍ ଦେଇଥାନ୍ତେ ସଲିଲ ଚୌଧୁରୀ ? କ'ଣ ସେ ଫିଲିମ୍‌ଟା ଏଡ଼େ ସଫଳ, ବିଖ୍ୟାତ ହେଇପାରିଥାନ୍ତା ?"

ଫାତିମାର ଏ ବିଷୟରେ ଜ୍ଞାନ ଥାଉ ନଥାଉ ଏତେଦିନରେ ବୁଝିଯାଇଥିଲା କେମିତି ମୁକ୍ତାରର କଥାରେ ରାଜି ବୋଲି ବତେଇବାକୁ ହେବ । କହିଲା, "ନାଇଁ, ସତକଥା । ଯେମିତି ଫିଲିମ୍‌କୁ ସେମିତି ମ୍ୟୁଜିକ୍ ନା ।"

ମୁକ୍ତାର କହିଲା, "ଠିକ୍ ଧରିଚୁ । ଏଇ ଆମର ଏବର ଫିଲିମ୍‌ଟାର ଅବସ୍ଥା ହେଲା ସେଇଆ । ତିଆରିକରୁଥିବା ଲୋକର ମୁଣ୍ଡରେ ବୁଦ୍ଧି ଥିଲେ ତ ?"

ଫାତିମାର ଆଖିରୁ ସେତେବେଳକୁ ନିଦ ଛାଡ଼ି ଆସିଲାଣି । ପଚାରିଲା, "ସେ କରୁ ଯେମିତି ଫିଲିମ୍ ତା'ର କରିବ । ତମେ ତମକୁ ମିଳିଲା କାମ ଭଲକରି କରିଦେଲେ ଯାଏ ।"

ନିଦ ଲାଗିଆସୁଥିବା ଗୋଳେଇହେଲା ସ୍ୱରରେ ମୁକ୍ତାର କହୁଥିଲା, "ଲୋକଟାର ପ୍ରତିଭା ବୋଲି କିଛି ନାଇଁ, ଏଡ଼େ ସଡ଼କଛାପ ଲୋକଟା ତଳେ ମୁଁ କେମିତି କାମ କରିବି କହିଲୁ ?"

ସୋମବାର ଆସିବା ଯାଏଁ ମୁକ୍ତାର ନା କିଛି ପଚାରିଲା ଫାତିମାକୁ, ନା ଫାତିମା ତାକୁ କହିଲା ସୋନଲ ସିଂଙ୍କ କଥା । ଅଥଚ ସୋମବାର ଦିନ ମୁକ୍ତାର ସକାଳୁ ତିଆର ହେବାକୁ ଡ଼େରି କଲା ଯେତେବେଳେ, ଫାତିମାର ତର ସହିଲାନି, ପଚାରିଦେଲା, "ଆଜି ତମର କାମକୁ ଯିବାର ନାହିଁ କି ? ନଅଟା ବାଜିଲାଣି ଯେ ।"

ମୁକ୍ତାର ବାହାରିଗଲା ପରେ ସେଦିନ ଘଟିଲା ଗୋଟାଏ ବିଚିତ୍ର ଘଟଣା । କି କାରଣରୁ କେଜାଣି, ପଡ଼ିଶାଘର ଖଣ୍ଡେରକର ଅଙ୍କଲ ଘରେ ଥାଆନ୍ତି । ଫାତିମା ଘରୁ ଭିତର ବାହାର ହେଇ ଦିନ ଏଗାରଟା ହେଲାବେଳକୁ ବାହାରେ କାଠ ରେଲିଂକୁ ଧରି ତଳକୁ ଚାହିଁଥାଏ ସୋନଲ ସିଂଙ୍କ ବାଟକୁ । ଦୂରରୁ ତାଙ୍କୁ ଦେଖିଦେଇ ହାତ ହଲେଇଲା ଫାତିମା, ସୋନଲ ବି ଟାକ୍ସିବାଲାକୁ ପଇସା ଦେଉଦେଉ ତାଆରି ଆଡ଼େ ଅନେଇ ହାତ ହଲେଇଲେ । ଅଳ୍ପଦୂରରେ ଛିଡ଼ାହେଇଥିବା ଖଣ୍ଡେରକର ସ୍ୱଗତୋକ୍ତି କଲାପରି କହିଲେ, "କାହାଘରକୁ ଆସୁଚି ସେ ଛପନ ଛୋରୀ ? ଇଏ କ'ଣ ଆମ ଚାଲ୍‌କୁ ବି ଆସିଲାଣି ?"

ତା'ପରେ ଫାତିମାକୁ ଅନେଇ ସିଧା ପଚାରିଲେ, "କ'ଣ ତମେ ଜାଣ ତାକୁ ?"

ତାଙ୍କ ସ୍ୱରରେ ଗୋଟେ ପ୍ରକାର ଟାଣ ଥିଲା, ଫାତିମା କେବଳ ଅନେଇରହିଲା ତାଙ୍କ ମୁହଁକୁ । ଏତେବେଳକୁ ଶିଡ଼ିରେ ଚଢ଼ି ଆସୁଥିଲେ ସୋନଲ ତାଙ୍କ ଦର୍ପ ମିଶା ଠାଣୀରେ ।

ତାଙ୍କରି ମୁହଁରେ ଖଣ୍ଡେରକର ପଚାରିଲେ ଫାତିମାକୁ, "ଇଏ ତମ ପାଖକୁ ଆସିଚନ୍ତି ଝିଅ ? ତମ ସ୍ୱାମୀ ଜାଣନ୍ତି ଏକଥା ?"

ଫାତିମାର ଗୋଡ଼ ସେଇଠି ପୋତିହେଇଗଲା ତାଙ୍କ କଥାରେ । ସୋନାଲଙ୍କୁ ଆଗରେ ଦେଖି ବି ପଦେ କଥା କହିଲାନି ସେ । ଭ୍ରୂକୁଂଚେଇ ସ୍ୱର ଉଷ୍ମେଇ ସୋନାଲ ପଚାରିଲେ, "କ'ଣ ଚାଲିଚି ଇଏ ? ମୁଁ କାହା ଘରକୁ ଆସିଲି ନ ଆସିଲି ଏଠିକା ଚାଲ୍‌ର ଲୋକ ଠିକ୍ କରିବେ ନା କ'ଣ ?"

ଫାତିମା ତଥାପି ଛିଡ଼ାହେଇଥିଲା ଚୁପ୍‌ଚାପ୍, ସୋନାଲ ସିଂଙ୍କ ମୁହଁରୁ ଆଖି ଫେରେଇ ନେଇ । ଖଣ୍ଡେରକରଙ୍କ ସ୍ତ୍ରୀ ଏତେବେଳକୁ ବାହାରକୁ ଚାଲିଆସିଥିଲେ । ତମତମ ମୁହଁରେ ଆଗନ୍ତୁକ ସାମ୍ନାରେ ସେଠି ମଝି ବାଟରେ ଛିଡ଼ା ହେଇଥିଲେ । ଗୀତା ବୋଧେ ଘରେ ନଥିଲା, କିମ୍ବା ପାଟି ଶୁଣି ବି ଭିତରେ ଲୁଚିଥିଲା । ଦି'ପାଖକୁ ଅନେଇ କିଛି କଥାକୁ ଅପେକ୍ଷା କଲାଭଳି ଠିଆହୋଇ ରହିଲେ ସୋନାଲ । ତା'ପରେ ବୁଲିପଡ଼ି କହିଲେ, "ଠିକ୍ ଅଛି । ମୁଁ ଯାଉଚି ଫାତିମା । ତମର ଯଦି ଏତେ ଡର ତମ ସାଇପଡ଼ିଶାର ଆଜେବାଜେ ଲୋକଙ୍କୁ, ମୋର ଏଠି କଛି କାମ ନାହିଁ ।"

ଶିଡ଼ିରେ ଓହ୍ଲେଇ ଯାଉ ଯାଉ ଆହୁରି ସ୍ୱର ଉଷ୍ମେଇ କହିଲେ ସେ, "ଦିନେ ତମେ ପସ୍ତେଇବ ଫାତିମା । କହିରଖୁଚି, ମୋତେ ଫେରେଇଦେଇ ଠିକ୍ କରୁନାହଁ ତମେ ।"

ଖଣ୍ଡେରକର ମୁକ୍ତାରକୁ କିଛି କହିନଥିଲେ ନିଶ୍ଚୟ । ତାଙ୍କ ସ୍ତ୍ରୀ କିନ୍ତୁ ଫାତିମା ପାଖକୁ ଆସି ବୁଝେଇଥିଲେ, "ଏ ବମ୍ବେ ସହର ଭଲ ଜାଗା ନୁହଁ ଝିଅ । ଅଜଣା ଅଶୁଣା ଲୋକଙ୍କୁ ଜମା ଘରେ ପୂରେଇବନି । ଆଉ ଏମିତି ସଜବାଜ ସ୍ତ୍ରୀଲୋକ କିଏ ତମ ସାଙ୍ଗେ ଉପରେ ପଡ଼ି ଯଦି କଥାକହିବେ, ତାଙ୍କୁ ନାଗସାପ ପରି ଦୂରରେ ରଖିଥିବ ।"

ଏତେବେଳକୁ ଫାତିମା ଅବଶ୍ୟ କଥାଟା ଉଣାଅଧିକେ ବୁଝିଯାଇଥିଲା । ଖାଲି ସେ ଭୟ କରୁଥିଲା ମୁକ୍ତାର କାନରେ କାଳେ କଥାଟା ପଡ଼ିଯିବ ବୋଲି ।

# ତହୁଁ ଦିନ ପରେ ଦିନ

ସୋନଲ ସିଂ ବମ୍ବେ ଜୀବନର ନୂଆ ପୃଷ୍ଠାଟିଏ ହେଇ ଆସିବ, ଏପରି କଥା ଫାତିମା ମୁଣ୍ଡକୁ କେବେ ଜୁଟିନଥିଲା । ସେଦିନ ଗୀତାକୁ ଚୁପ୍‌ଚାପ୍ କାକୁତି କଲାଭଳି କହିଲା ସେ, "ମଉସାଙ୍କୁ ଟିକେ କହିଦେବ ମୋ' ତରଫରୁ ପ୍ଲିଜ୍ । ମୁଁ ମାନୁଚି ମୋର ଭୁଲ୍ ହେଇଚି..."

ଗୀତା କିଛି ବୁଝିନପାରି ତା' ମୁହଁକୁ ଅନେଇଲା, "କୋଉ କଥାଟା ତମର ଭୁଲ୍ ହେଲା ଭାଭୀ ? କ'ଣ ହେଇଚି ଟିକେ ଖୋଲି କହିଲ ?"

ଫାତିମା ବୁଝାଇ କହିଲା, "ମଉସାଙ୍କୁ କହିବ, ମୁକ୍ତାରକୁ କିଛି କହିବେନି ସୋନଲ ସିଂ ମୋ' ପାଖକୁ ଆସିଥିଲା ବୋଲି । କାମ ଚାପରେ ସିଏ ଆଜିକାଲି ହଇରାଣ ହେଉଚନ୍ତି ତ, ଭାରୀ ଚିଡ଼ିଚିଡ଼ା ରହୁଚନ୍ତି ।"

ଗୀତାକୁ ନିଦ ମାଡୁଥିଲା, ଖଟ ଉପରେ ବସି ସିଲେଇ କରୁକରୁ ତାକୁ ବୋର୍ ଲାଗୁଥିଲା । ଦି'ପହରେ ଟିଭି ପ୍ରୋଗ୍ରାମ ବି ନାହିଁ । ଫାତିମା କଥା ଶୁଣି ତା' ଢୋଳ ଭାଙ୍ଗିଗଲା, ଟେଙ୍ଗାହେଇ ବସି ପଚାରିଲା, "ହଁ ହଁ, କ'ଣ ସବୁ କହୁଥିଲା ସେ ଛମକ ଛଲ୍ଲୋ, ମୋତେ ଟିକେ କହିଲ । ଜାଣିଚି ପରା ମୁଁ, ଜମା ଭଲ ମତଲବ ନାହିଁ ସେ ମାଇକିନାର ।"

ଫାତିମା ଏଥର ଟିକେ ଜୋର୍ ଦେଇ କହିଲ, "ତମକୁ ଜଣା ଥିଲା ଯଦି ମୋତେ କହିଲନି ମୂଳରୁ ? ସେଦିନ ବୋଷ ଆଣ୍ଟି ଘରେ ତମେ ନିଜେ କହିଲ..."

ଗୀତା ସିଲେଇ କାମ ରଖିଦେଇ କହିଲା, "ଯାହା କହ ସବୁଦିନ ଏ ସିଲେଇ କାମ ମୋତେ ପୋଷଉନି ଆଉ । ମୋତେ ଡାକିଥାନ୍ତା କି ସେ ସୋନଲ ସିଂ । ତମ ଚେହେରାଟା ଭଲ ବୋଲି ଡାକିପକେଇଲା, ଥରେ ଯାଇ ଦେଖିଆସୁନା କ'ଣ କହୁଚି ସେ ?"

ଫାତିମା ଦଣ୍ଡେ ରହିଯାଇ ଅନେଇଲା ଗୀତା ମୁହଁକୁ, କହିଲା, "କ'ଣ ତମେ ଥଟ୍ଟା କରୁଚ ନା କ'ଣ ମ ? ନିଜେ କହୁଚ ସୋନଲ ଭଲ ଲୋକ ନୁହଁ ବୋଲି ?"

ଖଟ ବାଡ଼କୁ ଆଉଜି ଏଥର ହାଇ ମାରି ଗୀତା କହିଲା, "କାହାକୁ ଜଣା କିଏ ଭଲ କିଏ ମନ୍ଦ ଭାଭୀ । ଏଠି ଆଜି ଜଣେ ଭଲ ତ କାଲି ମନ୍ଦ, ପୁଣି ପହରିଦିନ ତାକୁ ଯଦି କିଛି ମିଳିଗଲା କୋଉଠୁ, ସିନେମା କି ବିଜିନେସ୍‌ରେ ସକ୍ସେସ୍, ଲୋକ ତାକୁ ଭଲ କ'ଣ ଦେବତା ବୋଲି କହି ତା' ପଛରେ ଧାଇଁବେ । ସୋନଲ ଭଲ କି ଖରାପ ମୁଁ ଜାଣିନି, ହେଲେ ମୋ' ଜଣାଶୁଣା ଝିଅ କେତେଜଣ ଏମିତି ମଡ଼େଲ୍ ହେବେ ବୋଲି ଯାଇ କଲ୍‌ଗାର୍ଲ୍ ପାଲଟିଚନ୍ତି ।

ତାଙ୍କ ଚେହେରା ମୋହରା ବଦଳିଯାଏ ଦି'ଦିନରେ, ଢଙ୍ଗ ରଙ୍ଗ ଦେଖିଲେ ଜାଣିହେଇଯାଏ ଏମାନେ ଗଲେଣି ଅବାଟରେ ।"

ଫାତିମା ସିଲେଇ ରଖିଦେଇ ଖଟରୁ ଓହ୍ଲେଇଲା, କହିଲା, "ଯାଉଚି । ଆଜି ମୁକ୍ତାର ଶିଘ୍ର ଫେରିବେ ବୋଲି କହିଥିଲେ ।" କବାଟ ପାଖକୁ ଆସି ଗୀତା କହିଲା, "କିନ୍ତୁ ଗୋଟେ କଥା ସତ, ଶୁଣିବ ? ମୋର ଜଣେ ସାଙ୍ଗ ମଡ଼େଲିଂ କରୁଥିଲା, ଏଇ ଛୋଟକାଟିଆ ଧରଣର । ତା' ନିଜ ସାଇପଡ଼ିଶା ବଦ୍‌ନାମ କରୁଥିଲେ, କହୁଥିଲେ ବିଗିଡ଼ି ଗଲାଣି ବୋଲି । ସିଏ ଏବେ ଗୋଟେ ବଡ଼ ବଜେଟ୍ ସିନେମାରେ ବଢ଼ିଆ ସାଇଡ୍ ରୋଲ୍‌ଟାଏ ପାଇଚି, ହିରୋର ଭଉଣୀର ରୋଲ୍ । କିଏ ଜାଣେ ଆଗକୁ ଯାଇ ହିରୋଇନ୍ ନହେବ ?"

କଥା ଆଗକୁ ନ ବଢ଼େଇ ଫାତିମା ଫେରିଆସିଲା ତା' ଘରକୁ । ତା'ପର କେତେଦିନ ଧରି ଘର ଭିତର ଝରିଆଡୁ ତାକୁ ଶୁଭିଲା ଖାଲି ସୋନଲର କଥା । ଚୂନଛଡ଼ା ଝରିକାନ୍ଥ ଦିଶିଲା ରୂପେଲୀ ପରଦା ଭଳି । ରେଡ଼ିଓ ବଜେଇଲେ, ସିନେମା ପତ୍ରିକା ଖୋଲିଲେ ବି ତା' ଦେହରୁ ଉଙ୍କି ମାରିଲା ସୋନଲର ଛବି । ସୋନଲ ସିଂ ସିନା ଆଉ ଫାତିମା ଘରକୁ ଆସିଲେନି, ଫାତିମା ମନଭିତରେ କିନ୍ତୁ କିଏ ତାଙ୍କ ବାଟ ଚାହିଁରହିଲା । ତାଆରି ସାଥିରେ ସେ ପୁଣି ଭୟ କଲା କାଳେ ତା' ମନର କଥା କେତେବେଳେ ଖସିଯିବ ମୁକ୍ତାର ଆଗରେ ବୋଲି । ତା' ଆଖିରୁ କାଳେ ମୁକ୍ତାର ପଢ଼ିନେବ ବନ୍ଦ କୋଠରୀର ଜାଗା ଅରାକରେ ବାହାର ଆକାଶର ରଙ୍ଗ ପଡ଼ିଲାଣି ବୋଲି ।

ମୁକ୍ତାର ତ ସେଇ ଅପର ଜଗତ କଥା ଗପେ ସବୁଦିନେ, ଘରକୁ ଫେରି ଗଡ଼ପଡ଼ ହେଉହେଉ, ଖୁସି ମନରେ ଥିଲାବେଳେ । ସେଇ ଜଗତର କଥା ଯାହାକୁ ନଜାଣି ନଶୁଣି ବି ଫାତିମା ଆପଣାର ବୋଲି ମଣିଆସିଚି ମୁକ୍ତାରକୁ ଜାଣିବା ଦିନୁ । ଆଉ ଆଜିବି ଫାତିମା ତା' ନିଜ ପିଲାଦିନୁ ଜାଣିଥିବା ଜୀବନର କଥାକୁ ପର୍ଦ୍ଦା ଘୋଡ଼େଇଦେବାକୁ ଚେଷ୍ଟା କରେ, ସତେକି ତାହା ମୁକ୍ତାର ଦେଖିବାର ଯୋଗ୍ୟ ନୁହେଁ । ପୁଣି ଅନାହୂତ ସେଇ ଦୂରନ୍ତ ପରୀରାଇଜଟି ତା' ହାତପାଆନ୍ତାକୁ ଆସିବ ଆସିବ ବୋଲି ହେଲାବେଳକୁ ଏମିତି ଭୟ ମାଡ଼ିପଡୁଚି କାଇଁକି ତାକୁ ? ପାଦ ବଢ଼େଇଦେବାକୁ ମନ ଅଥୟ ହେଉଚି, ଏଣେ ଲାଗୁଚି ସେ କିମିଆ ରାଇଜକୁ ଛୁଇଁଲାକ୍ଷଣି ହୁଏତ ଭାଙ୍ଗି ଚୁରିହେଇଯିବ ସେ ଛବି, ପାଣି ଦେହରେ ଜହ୍ନର ଛାଇ ଭଳି ।

ଅଧରାତିରେ ଅଚାନକ ନିଦ ଭାଙ୍ଗିଯାଏ ତା'ର, ଯେବେ ଅକୁହା ପ୍ରଶ୍ନଟିଏ କୁଆଡୁ ଝଡ଼ ପବନ ଭଳି ଆସି ବାଡ଼େଇଦିଏ ତା' ମନର ଆଉଜା ଝରକାକୁ । ମୁକ୍ତାରଲାଗି ପରା ସାଇତା ଥିଲା ଏ ସପ୍ନ ? ୟାକୁ ନିଜ ହାତକୁ ନେବା ଠିକ୍ ନୁହେଁ ବୋଧେ ? ପଚାରି ଲାଗେ ସେ ନିଜକୁ ଅବିରତ, ଏଭଳି ରାଇଜ କଥା ମୋ' ମନକୁ ଆପେ ଆସିନଥିଲା ତ କେବେ । ଇଏ

ତ ମୁକ୍ତାର ମୁହଁରୁ ଶୁଣିଥିବା ସପ୍ନ ଯାହାକୁ ମୁଁ କଳେବଳେ ତା' ଆଖିଦେଇ ଦେଖିବାକୁ ଚେଷ୍ଟା କରିଆସିଚି । ବିଫଳ ହେଇଚି ବୋଲି ଆଜି ତା'ର ବିକୃତ ଛବିଟିଏ ଅନ୍ୟ ଜଣେ କିଏ ପୂରେଇଦେବାକୁ ବସିଚି କି ମୋ' ମନରେ ? କାଇଁକି ନା ଗୋଟେ ବନ୍ଦ ଗୋଲେଇ ଖଡ଼ିଗାର କିଏ ଟାଣିଦେଇଚି ମୋ' ଚାରିପାଖେ । ନା ନିଜ ପାଦ ଉଠେଇ ପାଦେ ଏଠି ଚାଲିପାରୁଚି ମୁଁ, ନା ଆଉ କାହାର ମାଟିରେ ମୋ' ଲାଗି ଜାଗା ଅଛି । ଛାଟିପିଟି ଅଣନିଃଶ୍ୱାସୀ କରିଦେଉଚି ଏ ନାହିଁନଥିବା ଜମାଟପଣ ।

ପଛରେ ଛାଡ଼ିଆସିଥିବା ଦିନମାନଙ୍କର ଛବି ବି ବନ୍ଦକବାଟ ଝରକାସବୁର କେଉଁ ସରୁ ଫାଙ୍କ ଦେଇ ହୁ ହୁ ପଶିଆସନ୍ତି ତା' ବଖୁରିକିଆ ଘରଭିତରକୁ । ମୁକ୍ତାର ନଥିଲାବେଳେ ତା' ଗୋଟା ସଂସାରକୁ ଅକ୍ତିଆର କରିପକାନ୍ତି ସେମାନେ । ତାଙ୍କୁଇ ଡରି ସେ ଘରୁ ପଦାକୁ ପଳାଏ, ଯା ତା' ଘରେ ସାଙ୍ଗସୁଖ ହୁଏ । ମୁହଁରେ ନାହିଁ କରୁଥିଲେ ବି ତାଙ୍କରି ଘରେ ବି ସିଲେଇକାମ ଦିଇଟା ହାତକୁ ନେଇନିଏ, ନିଜ ଘରକୁ ନଆଣି ସେଇଠି ବସି ସାରିଦିଏ । ପାଉଣା ଦେଲେ ମନା କରେନାହିଁ ।

ପୁଣି ସେଦିନ ମୁକ୍ତାରର ମୁହଁ ଶୁଖେଇ ଫେରିବା ଦିନରୁ ଗୋଟିଏ ଥିଲା । ସାର୍ଟ ଖୋଲି କାନ୍ଥଦେହରେ ଟାଙ୍ଗି ଦେବାବେଳେ ଫାତିମା ଲକ୍ଷ୍ୟ କଲା, କେଡ଼େ ଦୁର୍ବଳ ଦେଖାଗଲାଣି ମୁକ୍ତାର । ମୁହଁରେ ସେ ଚିକ୍‌କଣ ସୁକୁମାରପଣ ଆଉ ନାହିଁ, ଏଇ ଦି'ବର୍ଷ ଭିତରେ କେମିତି ହାଡୁଆ ଦେଖାଗଲାଣି । ଏଇ ସେଦିନର କଥା, ଦୂରରୁ ଭୀଡ଼ ଭିତରେ ବି କେଡ଼େ ଭିନ୍ନ ନିଖୁଣ ଚେହେରାଟିଏ ଥିଲା ଏ । ଘରୁ ବାହାରକୁ ଗଲା ମାତ୍ରେ ପ୍ରତି ମୁହୂର୍ତ୍ତରେ ଅନେଇଥାଏ ଫାତିମା ସେବେ, କୁଆଡୁ ଟିକିଏ ଦିଶିଯାଆନ୍ତା କି ଖାଲି ସେ ଚେହେରାଟା ।

ପାଖକୁ ଯାଇ ତା' ଦେହରେ ହାତ ଦେଇ ଫାତିମା ପଚାରିଲା, "ଏମିତି ଶୁଖିଲା ଦିଶୁଚ ଯେ, କ'ଣ ହେଲା କି ?"

ଥକ୍‌କା ହେଇ ତଳେ ସପ ଉପରେ ଗଡ଼ିପଡ଼ିଲା ମୁକ୍ତାର । କିଛି ଜବାବ ଦେଲାନି ।

କେତେବେଳକେ ଯେତେ ନିଜକୁ ଆକଟ କଲେ ବି ପଚାରିପକେଇଲା ଫାତିମା, "ମେହେତା ସାହେବଙ୍କ ଫିଲିମ୍ କେବେ ସରିବ ? ଆରଥରକୁ ତମ ସ୍କ୍ରିପ୍‌ଟ ନେବେ ପରା ?"

ଟିକିଏ ବେଳ ଗୁମ୍ ରହି ହଠାତ୍ ଉଠି ବସିଲା ମୁକ୍ତାର । କହିଲା, "ଛାଡ଼ିଦେଲି ମୁଁ ତାଙ୍କ କାମ ।"

ତଣ୍ଟି ଅଠା ଅଠା ହେଇଗଲା ଫାତିମାର । କହିଲା, "ଛାଡ଼ିଦେଲ ? ଫିଲିମ୍‌ଟାର ସୁଟିଂ ଚାଲିଥିଲା ପରା ? ପୂରା ହେବାଯାଏଁ ରହିଯାଇନଥାନ୍ତ ?"

ମୁକ୍ତାର କ'ଣ କହିବ ବୋଲି ହେଇ ନିଜ ବାଳ ଟାଣି ମୁଣ୍ଡ ଝୁଣିପକେଇଲା ।

ଏକାବେଳକେ ପାଟିକଲା, "ରହିଯାଇଥାନ୍ତି ? ଏଡ଼େ ସହଜ କାହା ତଳେ ମୁଣ୍ଡ ପୋତି କାମ କରିବା ? ଏମିତି ଲୋକ ତଳେ ଯାହାର ପ୍ରତିଭା ବୋଲି କାଣିଚାଏ ନାହିଁ ? କଥାବାର୍ତ୍ତାରେ ସଂସ୍କାର ନାହିଁ ? କଳାକାର ନୁହେଁ, ଗୋଟେ ଥାର୍ଡ଼କ୍ଲାସ୍ ଦୋକାନୀ ସେ । ତା' ତଳେ ଖଟିବି ମୁଁ ? କାହିଁକି ? ଘରେ କ'ଣ ମୋର ମୁଠାଏ ଖାଇବାକୁ ନଥିଲା ? ଏଇଥିଲାଗି ଘରଛାଡ଼ି ଆସିଥିଲି ମୁଁ ?"

କେତେବେଳକେ ପାଖକୁ ଆସି ଦେହରେ ହାତ ବୁଲାଇଦେଲା ଫାତିମା, କହିଲା, "ଉଠ ଗାଧେଇପଡ଼ । ଗରମ ଗରମ ରୁଟି କରୁଚି, ଚାଲ ଖାଇଦେବା । ତା'ପରେ ବାହାରୁ ଘେରାଏ ବୁଲିଆସିବା । ଆଉ କ'ଣ ଲୋକ ନାହାନ୍ତି ବମ୍ବେରେ, ତମ ଲେଖାକୁ, କାମକୁ ଜାଣିଥିବା ଚିହ୍ନିଥିବା ଲୋକ । ଯାରି ଲାଗି ଏତେ ଚିନ୍ତା କାହିଁକି ଯେ ।"

ହେଲେ ରାତିରେ ନିଦ ଆସେନାହିଁ ତା' ଆଖିକୁ । କେବଳ କାନ୍ଥଟିଏ ଭଳି ଅନ୍ୟକୁ ଭରା ଦେବାଲାଗି ଛିଡ଼ା ହେଇ ହେଇ ନିଜେ ଫାଟିବାକୁ ଆରମ୍ଭ କରିଥାଏ ସିଏ । ଆସନ୍ତାକାଲିଟିଏର କି ଛବି ବା ସେ ଦେଖେଇବ ଅନ୍ୟକୁ, ନିଜେ ଗୋଟାଏ ବନ୍ଦ କବାଟ ପଛରେ ଥାଇ ?

ପୁଣି ଯେତେ ଜଗିରଖି ଚଳିଲେ ବି ଅଣ୍ଟି ନିଆଁ ଲୁଚେନାହିଁ । ଦିନେ ମୁକ୍ତାର ଘରକୁ ଫେରି କବାଟ ବନ୍ଦକରି ଫାତିମାର ଦୁଇ କାନ୍ଧକୁ ଶକ୍ତ ଜାବରେ ଧରେ, ଦାନ୍ତ କାମୁଡ଼ି ପଚାରେ, "କିଏ ସେ ମାଇକିନା ଆସିଥିଲା ତୋତେ ଡାକୁଥିଲା କୋଉଠିକି ନେବ ବୋଲି, ମୋତେ କହିନୁ ଏକଥା । ଲୁଚେଇଚୁ କାହିଁକି ?"

ତା'ପରେ ପୁଣି ଚାଲେ ତୁହାଏ ପାଟି ତୁଣ୍ଡ ଲୁହ କୋହର ଦୃଶ୍ୟ । ଫାତିମା ପ୍ରଥମ କରି ମୁହଁକୁ ଆଣେ, "କ'ଣ ଚାହୁଁଚ ତମେ ? ମୁଁ ତମ ଉପରେ ବୋଝ ହେଇ ପଡୁଚି, ଅସଲ କଥା ସେଇଆ । ଚାଲ ମୋତେ ଛାଡ଼ିଦେଇ ଆସିବ ଆମ ଘରେ ।"

ବଙ୍କା ହସ ହସି ମୁକ୍ତାର ଅନାଏ ତାକୁ । ଫାତିମାର ମନେପଡ଼େ, ମୁକ୍ତାର ମୁହଁରେ ଏମିତି ବଙ୍କା ହସ ଥରେ ଦେଖିଥିଲା ସେ ଭୋପାଲରେ, ଗୋଟିଏ ଡ୍ରାମାରେ ସେ ପାର୍ଟ କଲାବେଳେ । ପରେ ଜବୀନାକୁ କହିଥିଲା ସେ, କେଡ଼େ ଅସନା ଦିଶୁଥିଲା ମୁକ୍ତାର ସେ ରୋଲରେ । ସେଇ ହସ ହସି ମୁକ୍ତାର ପଚାରୁଚି ଏବେ ତାକୁ, "ତୁ ଘରକୁ ଫେରିବୁ ? ଆଉ ଫେରିବାଲାଗି ବାଟ ଅଛି ତୋ'ର ?"

ହେଲେ ରାତିସାରା ସୁଁ ସୁଁ ହେଇ କାନ୍ଦିଥିବା ଫାତିମାକୁ ପାହାନ୍ତା ପହର ବେଳକୁ ଯେତେବେଳେ ପାଖକୁ ଟାଣିନିଏ ମୁକ୍ତାର, ପୁଣି ନିର୍ବିବାଦରେ ସେ ତା' କୋଳକୁ ଜାକିହେଇଯାଏ ଅମେରୁଦଣ୍ଡୀ ଜିଆଟିଏ ଭଳି ।

# କବାଟ ସେପାଖ ପାଦଶବ୍ଦ

ସେଦିନ ଘର କାନ୍ଥର ଗୋଟିକ ବୋଲି ଛବିଥିବା କ୍ୟାଲେଣ୍ଡରଟିରେ ସିଲେଇ ପାଉଣାଲାଗି ଦେଇଥିବା ଛକିଚିହ୍ନ ଦେଖୁଦେଖୁ ଫାତିମା ରହିଗଲା । ତଣ୍ଟିପାଖେ ନିଃଶ୍ୱାସ ଅଟକିଗଲା ତା'ର । ଏ ମାସର ଦିନ କେବେଠୁଁ ଗଡ଼ିଗଲାଣି, କେମିତି କେଜାଣି ଏଯାକେ ତା'ର ଖିଆଲ୍ ହେଇନି ସେକଥା ।

ଚୁପ୍‌ଚାପ୍ ଯାଇ ତଳେ ସପ ଉପରେ ଶୋଇଗଲା ସେ । ମିଶାମିଶି ଭାବନା ଛାତି ଭିତରେ । ଏ ଦି'ବର୍ଷ ହେଲା କେଇଥର ଚିନ୍ତାଟା ଆସିଚି ସତ, କିନ୍ତୁ ଭୟଟା ଏଡ଼େ ସତ ହେଇ ସାମ୍ନାକୁ ଆସିନି । ନିଜ ଦେହକୁ ନେଇ ଭୟ । ମନେପଡ଼ିଗଲା କୋଉ ଯୁଗ ତଳେ ଘଟିଥିବା ଏକାଭଳି କଥାଟିଏ, ଯେବେ ଦେହ ଧୋକା ଦେଇଥିବାର ଆପ୍ରାଣ ଭୟରେ ତାକୁ ବଂଚିବା ବିଷ ପରି ଲାଗିଥିଲା । ତେବେ ନା, ସେଭଳି ଭୟ, ଦୁଷ୍ଚିନ୍ତା ଆସୁନାଇଁ ଆଜି । କାଇଁକି ନା ଏବେ ଶୁଣୁଥିବା ସେ ପାଦଶବ୍ଦ ଆଉ ସେଭଳି ଭୟାନକ ଅବାଂଛିତର ନୁହେଁ ।

ଏଥର ହୁଏତ କବାଟ ଖୋଲି ଦିଆଯାଇପାରେ । ଏପରି କି ସ୍ୱାଗତ କରାଯାଇପାରେ ସେ ଅନାଗତକୁ । ଯଦିଓ ସେଭଳି ମନସ୍ଥିତି ତା'ର ଯେ ଅଛି ତା' ନୁହେଁ । ତଥାପି । ହୁଏତ ତା'ର ଆସିବାରେ ବଦଳିଯାଇପାରେ ଏ ଘରର ରୂପରେଖା ।

ସେଦିନ ଆଉ କୁଆଡ଼େ ନଯାଇ ଘରେ ଶୋଇରହିଲା ଫାତିମା । ସିଲେଇ କାମରେ ବି ମନ ଲାଗିଲାନି, ଫିଲିମ୍ ପତ୍ରିକାରେ ବି ନୁହେଁ । ରାତିରେ ପାଖକୁ ଲାଗିଯାଇ ମୁକ୍ତାର କାନରେ ଧୀରେକରି କହିଲା ସେ । କିଛି ଉପକ୍ରମଣିକା ନକରି, ଅନାୟାସ ।

ମୁକ୍ତାର ନିଶ୍ଚଳ ରହିଲା । ତା' ଛାତି କିନ୍ତୁ ଉଠ୍‌ପଡ଼ ହେବାର, ନିଃଶ୍ୱାସର ଗତି ବଢ଼ିଯିବାର ଜାଣିହେଉଥିଲା ।

ଫାତମା କହିଲା ପୁଣି – "କିଛି କହୁନ ଯେ ? କ'ଣ ଭାବୁଚ ?"

"ଭାବିବି ଆଉ କ'ଣ ? ଏବେ ତ ଏସବୁ କଥା ହେଇପାରିବନି ଫାତିମା ।"

ଫାତିମା ଏ ପ୍ରତିକ୍ରିୟା ଯେ ଅନୁମାନ କରିନଥିଲା ତା' ନୁହେଁ । ଗଳାରେ ଜୋର ଦେଇ କହିଲା, "ହୋଇପାରବନି ଆଉ କ'ଣ ଯେ ? ଆଲ୍ଲାଙ୍କ ଯାହା ମର୍ଜି ତାହା ହେବ ।"

ଅନ୍ଧାରରେ ମୁଲ୍ତାରର ମୁହଁ ଦିଶୁନଥିଲା । କେବଳ ସ୍ୱରରୁ ଫାତିମା ଜାଣୁଥିଲା କେମିତି ଦିଶୁଚି ଏବେ ସେ ଚେହେରା ।

ଦୁର୍ବଳ ସ୍ୱରଟି ପ୍ରାୟ ମିନତି କରୁଥିଲା ତାକୁ, "ଏମିତି ଆଲ୍ଲାଙ୍କ ହାତରେ ଛାଡ଼ିଦେଲେ ଚଳିବ ? ଜାଣିଚୁ ହାତରେ କାମ ନାହିଁ । ପଇସା ନାହିଁ । ପିଲାଟିଏ ଏବେ ଆମେ ପାଳିବା କେମିତି ଫାତିମା ?"

ଫାତିମା ସ୍ୱରରେ ଭୟ ନୁହେଁ, ଏକପ୍ରକାର ରାଗ ଥିଲା, "କ'ଣ ଆଉ କରିବା ତେବେ ?"

"କ'ଣ ଆଉ କରାଯାଇପାରେ ? କାଲି ଯିବୁ ତୁ କୁରେଶି ଆଣ୍ଟିଙ୍କ ପାଖକୁ । ଡାକ୍ତରାଣୀ କିଏ ପାଖରେ ଅଛନ୍ତି ତାଙ୍କ ପାଖକୁ ଯିବା । ତାଙ୍କୁ ବେଶୀ କିଛି କହିବୁନି, ହେଲା ?"

ବେଶ୍ କିଛିବେଳ ଚୁପ୍ ରହିଲା ଫାତିମା । କାନ୍ଦ ମଝିରୁ କହିଲା, "କ'ଣ କହିବେ କୁରେଶି ଆଣ୍ଟି ଜାଣିଲେ ? ବିନା ନିକାହରେ ରହୁଚି ତମ ସାଙ୍ଗେ । ଛି ମୋ' ଜୀବନ । ଏଇନେ ଆହୁରି ପେଟର ପିଲାକୁ ମାରିବାଲାଗି ତାଙ୍କ ସାହାଯ୍ୟ ମାଗିବି ? କାହିଁକି ଏତେ ପାପ କରିବି ମୁଁ ?"

ଆଉରି ଲୁହ କୋହର, ଆକ୍ଷେପ ଅଭିଯୋଗର ଝଡ଼ ତୁହାଏ ବହିଗଲା ସେ ବଖୁରିକିଆ ଘରେ । ଆଜି ପାଖଘରକୁ ଶୁଣାଯିବ ବୋଲି ବି ଏକ ଆରେକକୁ ଆଗଭଳି ତାଗିଦା ଦେଉନଥିଲେ ଦିହେଁ ।

ଦିହେଁ ବୁଝି ବି ବୁଝିପାରୁଥିଲେ ଆରେକ କ'ଣ ଚାହେଁ, କାହିଁକି ବା ଚାହେଁ ସେଭଳି । ରାତି କେତେ ହେଇଯାଇଥିଲା କେଜାଣି ଥକ୍କାରେ ଆଖି ଲାଗିଗଲାବେଳକୁ । ଦୁହେଁ ଶୋଇଥିବା ଗୋଟିକିଆ ବିଛଣାଟି ମଝିରେ ଆଜି କେବଳ ହାତେ ସମ୍ବଳ ଚାଦର ନଥିଲା । ଥିଲା ସତେକି ଗହୀର ଗୋଟାଏ ଖାଇ । ତେଣିକି ପାଦେ ଯିବାକୁ ଭୟ କରୁଥିଲେ ଦୁହେଁ, ଦୂରେଇ ରଖୁଥିଲେ ଆପଣାକୁ ।

ସକାଳ ପହରକୁ ମୁଲ୍ତାର ଆଖିଖୋଲି ଦେଖିଲା ଫାତିମା ଗାଧୋଇ ସାରିଲାଣି, ଷ୍ଟୋଭ୍ ଜଳେଇ ଚା' ତିଆରି କରୁଚି । ସେମିତି ଶୋଇରହି ଦରବୁଜା ଆଖିତଳୁ ମୁଲ୍ତାର ନିଘାକଲା ତାକୁ, ଅନ୍ଦାଜ କରିବାକୁ ଚେଷ୍ଟା କଲା କ'ଣ ଘଟିବାକୁ ଯାଉଚି ଏଇନା । ହେଲେ ଏଥର ଫାତିମା ଫେରିପଡ଼ି ମୁଲ୍ତାରକୁ ଯେଉଁ ଆଖିରେ ଚାହିଁଲା, ତହିଁରେ ଗତ ରାତିର ଝଡ଼ ନଥିଲା ।

ଥିଲା ଗୋଟାଏ ଉଦାସ ପଣ ।

ମୁକ୍ତାର ପୁଣିଥରେ ଆଖିବୁଜିଦେଇ ପଡ଼ିରହିଲା । ସକାଳ ହେବାକୁ ସେ ଡରୁଥିଲା ଅବା ।

ବିଛଣା ପାଖେ ଚା' ରଖିଦେଇ ଫାତିମା କହିଲା, "ମିଛଟାରେ ଏଡ଼େ ହୀନସ୍ତା ହେଲି ମୁଁ । ମୋର ପିରିଅଡ଼୍ ହେଇଗଲା ଏଇ ସକାଳୁ । ଆଲ୍ଲା ରକ୍ଷା କଲେ ମତେ । ଚିନ୍ତା ଗଲା ।"

ଆଖି ଖୋଲିଲା ମୁକ୍ତାର, ଏଡ଼େ ବଡ଼ ସୁଖବରଟିଏ ବିଶ୍ୱାସ ହେଉନଥିଲା ତା'ର ।

ଦିହେଁ ଏଥର ଲାଗିଗଲେ ମଝି ଖାଇକୁ କେମିତି ଭରିଦେବାକୁ ହେବ । ଯିଏ ଯେତିକି ପାରିଲା ଅଜାଡ଼ି ଦେଲା କିଛି କଥା । ଆଉଁସି ଲିଭେଇ ଦେବାକୁ ଚେଷ୍ଟା କଲେ ଦିହେଁ ଗତରାତିରେ ଏକ ଆରେକକୁ ଦେଇଥିବା ଧାରୁଆ କଥାର ଘାଆକୁ ।

ମୁକ୍ତାର ଫାତିମା ଗାଲରେ ମିଠା ଚପୁଡ଼ା ମାରିଲା । କହିଲା, "ତୁ ବସ୍ । ମୁଁ ଯାଏଁ ଆଉ କପେ ଲେମ୍ବୁ ଚା' ତିଆରି କରେଁ । ଆଜି ଆମେ ସେଲିବ୍ରେଟ୍ କରିବା ।"

ଫାତିମା ଛାତିରୁ ମିଛଟାରେ ପୁଣି ହାବୁକାଏ କୋହ ଉଠେଇଲା ।

# ନିଶ୍ଚିନ୍ତ ରାତିରେ ବିଷଧୂଆଁ

ଫାତିମାର ଗପଟା ବୋଧେ ଲେଖାଯାଇନଥାନ୍ତା, ଯଦି ସେ ଦୁର୍ଯୋଗର ଦିନ ମୁଁ ସେ ସହରରେ ନଥାନ୍ତି । ଭୋପାଲ ଗ୍ୟାସ୍ ଟ୍ରାଜେଡ଼ି ବୋଲି କୁଖ୍ୟାତ ସେ ଦିନଟି । ଉଣେଇଶ ଚଉରାଅଶି ଡିସେମ୍ବର ତିନିର ରାତି । ମୋ' ପୁଅର ଜନ୍ମଦିନ ଥାଏ ବୋଲି ପୂର୍ବ ଦିନରୁ ମୋର ତିଆରି ଚାଲିଥାଏ, ଭୋ୍ରୁ ଉଠିପଡ଼ି କଲେଜ ଯିବା ପୂର୍ବରୁ କେତେଟା କାମ ସାରିଦେବି ବୋଲି ବସିଥାଏ । ହେଲେ ଆଲାର୍ମ ବାଜିବା ପୂର୍ବରୁ ଉଠିବାକୁ ହେଲା । ରାତି ଅଧବେଳକୁ କୁକୁରଟା ଭୁକିଲା, ଶୁଏଇ ଦେଲାନାଇଁ । ତାକୁ ବାରିପାଖରୁ ଟିକେ ବୁଲେଇ ଆଣିବି ବୋଲି ଗଲା ବେଳକୁ ଆଖି ପୋଡ଼ିଲା କ'ଣ ଗୋଟେ ଧୂଆଁ ବାଜିଲା ଭଳି ।

ଭୋର୍ ତିନିଟା ହେବ ବୋଧେ, ଆଖାପାଖରେ ଗାଡ଼ି ଯିବାଆସିବା, ଲୋକଙ୍କର ପାଟିତୁଣ୍ଡ ଶୁଭିଲା । ସେଆଡ଼ିକି ବେଶୀ ନଜର ନଦେଇ ଭିତରକୁ ଚାଲିଆସିଲି, କବାଟ ଝରକା ବି ଭଲକରି ଦେଇଦେଲି । କୋଉଠି କ'ଣ ପୋଡୁଚି, କ'ଣ ସେ ହଲ୍ଲା କେଜାଣି । କେମିତି ଦକଦକ ଲାଗିଲା । ଆଉ ନିଦ ହେଲାନି, ଭାବିଲି ଯାଏ ରୋଷେଇ ଘରେ କାମ କେଇଟା ସାରିଦିଏ । କଲେଜରୁ ମୋର ଫେରୁ ଫେରୁ ଦିନ ଦିଇଟା ହେବ, ଆଉ ସମୟ ମିଳିବ କେତେବେଳେ ।

ପରଦିନ ଆଉ ପୁଅର ଜନ୍ମଦିନ ପାର୍ଟି ହେଇନଥିଲା । ସକାଳୁଆ ଚାକର ଆସି ପହଞ୍ଚୁଣୁ ଏଡ଼େ ବଡ଼ ପାଟିକଲା, "ବାଇସା, ଜାଣିଲେଣି, ପୁରୁଣା ସିଟି ଆଡ଼େ କୋଉଠି ଗ୍ୟାସ୍ ସିଲିଣ୍ଡର ଫାଟିଗଲା ଯେ କେଜାଣି ଦି'ଶହ କି ତିନିଶହ କି ଚାରିଶହ ଲୋକ ମରିଗଲେ ।"

ରାମ୍‌ଜୀର ଅନ୍ୟ ହଜାରେ ବୋକା କଥା ଭଳି ସେଦିନ ବି ମୁଁ ହସିପକେଇଲି, କହିଲି, "ଆରେ, ଏଡ଼େବଡ଼ ସିଲିଣ୍ଡରଟାଏ ଥିଲା କୋଉଠି, ଏକାବେଳକେ ଦି'ଚାରିଶହ ଲୋକ ମରିଯିବେ ?" ତଥାପି ଭାବିଲି ଆଖପାଖରେ କୋଉଠି ଫାଟିଥିବ ବୋଧେ ସିଲିଣ୍ଡରଟାଏ, କିଏ ଜାଣେ ତିନି ଚାରିଜଣ ଲୋକ ମରିଯାଇଥାଇ ପାରନ୍ତି । ନହେଲେ ଏଡ଼େ ଉଚ୍ଛନ୍ନ

ହେଲାଭଳି ପାଟିକରନ୍ତାନି ରାମ୍‌ଜୀ ଭଳି ଲୋକ ବି ।

ରାତି ନ ପାହୁଣୁ ଏଠୁ ସେଠୁ ଖବର ଆସିଲା, ପୋକମରା ଔଷଦ କାରଖାନାରେ ପାଇପ୍ ଫାଟିଯାଇ ବିଷଗ୍ୟାସ୍ ଚରିଯାଇଚି ଅଧରାତିରେ, ଘନ ମେଘ ଭଳି ଓହ୍ଲେଇଯାଇଚି ଧୂଆଁ ଆଖପାଖ ବସ୍ତି ଭିତରକୁ । ପୁରୁଣା ବସ୍ତିର ଗଳି ମାନଙ୍କ ଭିତରୁ ପୋକଜୋକ ଭଳି କିଲିକାଲିଆ ହେଇ ରାତିଅଧ ହାଡ଼କମ୍ପା ଶୀତରେ ହଜାର ହଜାର ଲୋକ ବାହାରି ଆସୁ ଆସୁ ରାସ୍ତା ଘାଟରେ ଛିନ୍‌ଛତ୍ର ହେଇଯାଇଚନ୍ତି । ପଡ଼ିଚନ୍ତି ଏଠିସେଠି, କେତେ ମରିଚନ୍ତି କେତେ ବା ଅଧଚେତା ହେଇ ଜାଲରୁ ବାହାରିଲା ମାଛ ପରି ହାଇଁପାଇଁ ହେଉଚନ୍ତି ନିଃଶ୍ୱାସ ଲାଗି ତା'ର ହିସାବ ନାଇଁ । ଯିଏ ଯାହା ଗାଡ଼ି ମଟର ପାଇଲେ ସହର ଛାଡ଼ି ପଳେଇଚନ୍ତି ଜୀବନ ବଞ୍ଚେଇବା ଲାଗି ।

ଆମ କଲୋନୀରୁ ଛଅ ସାତ କି.ମି. ଦୂରରେ ଥାଏ ୟୁନିଅନ କାର୍ବାଇଡ଼୍ କାରଖାନା । ଏଆଡ଼ିକି କିଛି କିଛି ଧୂଆଁ ତଥାପି ଆସିଥିଲା । ପରେ ଜାଣିଲି ଏ ଅଞ୍ଚଳରେ ବି କିଛି ଲୋକ ଫୋନ୍‌ରେ ଖବର ପାଇ ରାତିରୁ ନିଜ ନିଜ ଗାଡ଼ିନେଇ ବାହାରି ଯାଇଚନ୍ତି । ହେଲେ ସକାଳକୁ କିଛି ଜଣାଯାଉନି, ସବୁଆଡ଼ ଫର୍ଚ୍ଚା ।

ପିଲାଏ ବସ୍‌ଷ୍ଟାଣ୍ଡରୁ ଫେରିଆସିଲେ, ସ୍କୁଲ ବସ୍ ଚାଲୁନି । ରାସ୍ତାଘାଟ ଶୂନ୍‌ଶାନ । କ'ଣ ଗୋଟାଏ ବିପଦ ପଡ଼ିଚି କେହି ଠିକ୍‌ରେ କହିପାରୁନାହାନ୍ତି । ତଥାପି ସତେକି ଯୁଦ୍ଧଟାଏ ଘୋଷିତ ହେଇଯାଇଚି ଆମ ସହରରେ । କାଲି ରାତିରେ ବୋମା ପଡ଼ି ଉଜୁଡ଼ି ଯାଇଚି ଅଧେ ଇଲାକା । କେମିତି ଗୋଟେ ସାଇଁସାଇଁ ଭୟ ଭଳି ଆବହାଓ୍ୱା ଅଜଣା କାରଣରୁ ।

ବଜାର ଘାଟ ବନ୍ଦ, ଅଫିସ୍ ମାନ ଅଧିକାଂଶ ଖୋଲା ବି ଯାଇନାହିଁ । ଲୋକେ ଜମା କାମକୁ ଯାଇନାହାନ୍ତି ଆଜି, ବା ଫେରିଆସିଚନ୍ତି । କ'ଣ ପ୍ରକୃତରେ ହେଇଚି, କେତେ ଗୁଜବ କେତେ ସତ କିଛି ବୁଝାଯାଉନି । ଆମେ ସ୍ୱାମୀ ସ୍ତ୍ରୀ ଭାବିଲୁ ପାଖ ହସ୍ପିଟାଲ୍‌ରୁ ଘେରାଏ ବୁଲିଆସିଲେ କିଛି ଜଣାଯିବ ।

ଘରୁ ଦେଢ଼ କି.ମି. ଦୂରରେ ଅଞ୍ଚଳର ବଡ଼ ଡାକ୍ତରଖାନା । ସେଠି ଯାଇ ପହଞ୍ଚିଲା ବେଳକୁ ଅଦ୍ଭୁତ ଦୃଶ୍ୟ । ଗେଟ୍ ଭିତରକୁ ଯିବାକୁ ବାଟ ନାହିଁ ପ୍ରାୟ, ଲୋକ ଭିଡ଼ ସବୁଠି । ତଥାପି ପାଟିତୁଣ୍ଡ ନାହିଁ ଏତେ ଗହଳି ଥାଇ ବି । କେମିତି ଗୋଟାଏ ବୁଝିହେଉନଥିବା ଚୁପ୍‌ଚାପ୍, ଛାନିଆଁ ଭାବ ଲୋକଙ୍କଠି । ଧାଁ ଦଉଡ଼ ବ୍ୟସ୍ତତା ବି ସେଇ ଭିତରେ । ଡାରବାଡ଼ ଏପାଖୁ ରାସ୍ତାରୁ ଦେଖାଯାଉଚି, ପଡ଼ିଆ ସାରା ଲୋକ ଶୋଇଚନ୍ତି ମଳା ମଳା ହେଇ । ଆଖପାଖ କଲୋନୀରୁ ଲୋକ ସବୁ ବାଲ୍‌ଟି ମଗ୍ ନେଇ ଉଠିଆସିଚନ୍ତି, ମୁମୂର୍ଷୁ ଲୋକଙ୍କୁ ଘେରିଚନ୍ତି ଏଠି ସେଠି, ଲୋକଙ୍କୁ ପାଣି ପିଆଉଚନ୍ତି, ମୁହଁରେ ଛାଟୁଚନ୍ତି । ଡାକ୍ତର ନର୍ସ କି ୱାର୍ଡବୟ

ଲୋକ କେହି ବାହାରେ ତଦାରଖ କରିବାକୁ ନାହାନ୍ତି । ଭିତରେ ରୋଗୀଙ୍କୁ ଦେଖାରହାଁ କରିବାକୁ ନିଅଣ୍ଟ ପଡୁଥିବେ ନିଶ୍ଚେ । କୋଠା କାନ୍ଥପାଖକୁ ଲାଗି ଏ ମୁଣ୍ଡରୁ ସେମୁଣ୍ଡ ଯାଏଁ ଧାଡ଼ି ଧାଡ଼ି ଶୋଇଲା ଲୋକଙ୍କ ମୁଣ୍ଡରୁ ଗୋଡ଼ଯାଏଁ ଚଦର ଢଙ୍କା ଯାଇଚି । ଟ୍ରକ୍, ବସ୍ ମାନଙ୍କରୁ ଓହ୍ଲାଯାଉଥିବା ଲୋକଙ୍କ ଭିତରୁ କେତେକେ ସିଧା ବୁହାହେଉଚନ୍ତି ଚଦର ଢଙ୍କା ଧାଡ଼ିମାନଙ୍କୁ, ଅନ୍ୟମାନଙ୍କୁ ଶୁଏଇ ଦିଆଯାଉଚି ଖୋଲା ପଡ଼ିଆ ଭିତରେ ଯୋଉଠି ଜାଗା ମିଳିଲା ।

ପଚାରିଲେ ବିଶେଷ କିଛି କେହି କହିପାରୁନଥାନ୍ତି । ଆମ ରାମ୍‌ଜୀଠୁ ଯେତିକି ମିଳିଥିଲା ତା'ଠୁ ଅଧିକ ଖବର ଆଉ କିଛି ନାହିଁ । ଘେରାଏ ବୁଲି ଫେରିଆସୁଆସୁ ଭାବିଲି, ଆଉ କିଛି ସମୟ ପରେ ଖରା ନଇଁଯିବ, ମାଡ଼ିଆସିବ ଶୀତ । କୋଉଠିକି ଯିବେ ଏ ପଡ଼ିଆରେ ଶୋଇଲା ରୋଗୀମାନେ ? ଏତେ ଲୋକଙ୍କର ଚିକିତ୍ସା ଠିକ୍‌ରେ ହେଇପାରୁଚି ତ ? କି ରୋଗ ଇଏ ? ତେବେ ମୁଁ ଖାଲି ନୁହେଁ, ସାରା ଦେଶ ସେ ଦିନ ମାନଙ୍କରେ ସେଇ ଅପ୍ରତ୍ୟାଶିତ ପରିସ୍ଥିତିର ମୁକାବିଲା କରୁଥିଲା । କରିବାକୁ ବାଟ ପାଉନଥିଲା ।

ଇଆରି କିଛି ଦିନ ପରେ ପୁରୁଣା ସହରର ଡାକ୍ତରଖାନାରେ ମୋତେ ପୁଣି ଆସି ଭେଟିଲା ଏ କାହାଣୀର ପରବର୍ତ୍ତୀ ଅଂଶ । ଆମ କଲେଜରୁ ଭଲେଣ୍ଟିୟରଙ୍କ ଦଳରେ ମୁଁ ବି ଯାଉଥାଏ ହମିଦିଆ ହସ୍ପିଟାଲ୍‌କୁ । ଜନାନା ୱାର୍ଡ଼ରେ ରାତିରେ ରହିବା ପାଳିଥାଏ ମୋର ସେଦିନ, ଟିଣ ଚଉକି ଖଣ୍ଡେ ମିଳିଥାଏ ବସିବାକୁ । ତଳେ ପାଦ ପକେଇବାକୁ ଜାଗା ନଥାଏ ୱାର୍ଡ଼ ଭିତରେ କି ବାରଣ୍ଡାମାନଙ୍କରେ ।

ଅଧରାତି ହେବ, ହାଉ କିନି ଗୋଟାଏ ଚିତ୍କାର ଭଳି ଶୁଭିଲା ପାଖ ବେଡ଼୍‌ରୁ । ଢୁଳଉଥିଲି ମୁଁ, ଚମକି ପଡ଼ି ଉଠିଲି । କିଛି ବୁଝାପଡ଼ିବା ପୂର୍ବରୁ ଅତର୍କରେ ଡାକଦେଲି ନର୍ସକୁ । ଟିକିଏ ଦୂରରୁ ଶୁଭିଲା, "କିଛି ନୁହେଁ ମାଡ଼ାମ୍ । ଛାଡ଼ନ୍ତୁ, ସେ କିଛି ନୁହଁ ।"

ଖଣ୍ଡେ ଦୂରରେ ଭୂଇଁରେ ବସିଥିଲା ଯେଉଁ ଅଳ୍ପବୟସର ଝିଅଟି, ମୋତେ ହାତ ଠାରି କିଛି କହୁଚି ସେ, ହେଲେ ମୁହଁରେ ଶାଲ୍‌ଟା ଚପି ହସିଲାଗିଚି ବି । ନିଦବାଉଳାରେ ମୋତେ କିଛି ବୁଝାପଡୁନି, ସେଇ ଭିତରେ ପୁଣି ଲାଗିଲାଗି କେଇଥର ହାଆଉ କିନି ସେଇ ଚିତ୍କାର । ମୁଣ୍ଡର ଶାଲରେ ଅଧା ମୁହଁ ଘୋଡ଼େଇଥିବା ଝିଅଟି ମୋ' ପାଖକୁ ଉଠିଆସିଲା, ଆଉ ହାତରେ ଦେଖେଇଦେଲା ସେ ଚିତ୍କାର ଆସୁଥିବା ଦିଗକୁ, ହସଚାପି ମୋତେ ତୁନିତୁନି କହିଲା, "କିଛି ନୁହଁ ମାଡ଼ାମ୍, ବ୍ୟସ୍ତ ହୁଅନ୍ତୁନି । ହେଇ ସେ ମାଇପିଟି ଛିଙ୍କୁଚି, ଏମିତି ରଡ଼ିକରି ଛିଙ୍କେ ସିଏ ।"

କହିଦେଇ କୁରୁକୁରୁ ହେଇ ହସିପକେଇଲା ଝିଅଟି, ୱାର୍ଡ଼ର ସେ ଗୁନ୍ଧା ବାତାବରଣକୁ ଚମକେଇଦେଲା ତା' ସୁଲୁସୁଲୁ ପବନ ଭଳି ହସ । ମୁହଁରୁ ଶାଲ୍‌ଟା ଖସିଗଲାରୁ ମୁହଁଟା ଚିହ୍ନା ଚିହ୍ନା ଲାଗିଲା । ପଚାରିଲି, "ତମକୁ ଦେଖିଚି କୋଉଠି କହିଲ ?"

"ମୋତେ ନୁହଁ, ମୋ' ଦିଦିକୁ ଆପଣ ଚିହ୍ନନ୍ତି । ଫାତିମା, ଲକ୍ଷ୍ମୀବାଈରେ ପଢୁଥିଲା । ଆପଣ କିଏ ମୁଁ ଜାଣେ ମାଡ଼ାମ୍ ।"

ବେଶୀ ଗପସପ କଲାଭଳି ପରିବେଶ ନଥିଲା । ତଥାପି ନିଜକୁ ରୋକି ପାରିଲିନି । ପଚାରିଲି, "ଫାତିମା କୋଉଠି ବାହା ହେଲା ? ଆଉ ପଢ଼ିଲା ନା ନାଇଁ ?"

ତା' ମୁହଁର ହସ ଲିଭି ଯାଇଥିଲା । ମୋ' ପ୍ରଶ୍ନର ଉତ୍ତର ନଦେଇ ତଳକୁ ମୁହଁ ପୋତିଲା । କହିଲା, "ନାଇଁ, ଆଉ ପଢ଼ିଲା କୋଉଠୁ ! ଏଇଠି ଆମ ସାଙ୍ଗେ ଅଛି ସେ, ଘରେ ।"

ତାଙ୍କ ଘର ଉପରଦେଇ ବହିଯାଇଥିବା ଝଡ଼ ବିଷୟରେ ସେଦିନ କହିଲା ସେ । ହେଲେ ଫାତିମା ବିଷୟରେ ଜମା କିଛି ନୁହଁ । ଶେଷରେ କହିଲି, "ତମ ମାଆଙ୍କୁ ଜଗିବା ଲାଗି ଫାତିମା ବି ଆସୁଥିବ ତ ? ମୁଁ ବି ଏଠିକି ଆସୁଚି ପ୍ରାୟ । ତାକୁ କହିବ ନା, ଦେଖାକରିବ ମୋତେ ।"

ମୁଣ୍ଡ ଟୁଙ୍ଗାରି ମୋ' ଆଖିକୁ ନ ଚାହିଁ ସେ ଜବାବ ଦେଲା ଅଧା ମନ ଥିଲା ପରି, "ହଉ । କହିବି ମାଡ଼ାମ୍ ।"

ହେଲେ ତା' ପରଦିନ ନୁହେଁ, ବେଶ୍ କିଛିଦିନ ପରେ ଫାତିମାକୁ ଭେଟିଲି ସେଇଠି । ସେଇ ଧଇଁ ପେଲୁଥିବା, ଅଧା ଚେତାରେ କୁହୁଳୁଥିବା ରୋଗୀମାନଙ୍କ ଭିତରେ ବସିଥିଲୁ ଆମେ ପାଖାପାଖି । ଗୋଟିଏ ଲେଖାଁ ଟିଣ ଚଉକିରେ, ଡାକ୍ତରଖାନା ଭିତର ଧୀମା ରାତି ଆଲୁଅ ତଳେ । ପୁଣି ଥରେ କାହୁଁ ଆସି ଫାତିମାର କାହାଣୀଟି ଆଗକୁ ପାଦ ବଢ଼େଇଲା । କାଗଜ ଦେହରେ ରୂପ ପାଇଲା ଆହୁରି ଅନେକ ବର୍ଷପରେ ଯଦିଓ ।

## ନିର୍ଣ୍ଣୟର କେତେ ଭାଗ ଥାଏ ସମୟ ହାତରେ ?

କେତେଦିନ ସେମିତି ବିତିଗଲା, ଆହୁରି ବିତିଯାଇଥାନ୍ତା କେତେଦିନ କେଜାଣି । ଯଦି ସେଦିନ ପଡ଼ୋଶିନୀ ଜଣକ ଫାତିମାକୁ ପଚାରିନଥାନ୍ତେ, "ତମ ବାପଘର କୋଉଠି କହିଲ ଝିଅ ? ଭୋପାଲ ପାଖରେ କୋଉଠି ପରା ?"

"କାହିଁକି, କ'ଣ ହେଲା କି ଭୋପାଲରେ ?"

"ଜାଣିନା କି, ଖଣ୍ଡପ୍ରଳୟ ହେଇଯାଇଚି ପରା ସେଠି ।"

କୋଲ ମାରିଯାଉଥିବା ହାତ ଗୋଡ଼ ନେଇ ଶୁଣିଲା ଫାତିମା । କ'ଣ ଗୋଟାଏ ଗ୍ୟାସ୍ କାରଖାନାରୁ ବିଷ ଗ୍ୟାସ୍ ବାହାରିଯାଇ କାଳେ କାହିଁରେ କେତେ ଲୋକ ମରିଯାଇଚନ୍ତି ସେଠି । ବାଟ ଘାଟରେ ସବୁ ଲୋକ ମରିପଡ଼ିଚନ୍ତି କାଳେ ।

ଖବରକାଗଜରେ ବିଶେଷ କିଛି ଖବର ନାହିଁ ଏବେବି । ଟ୍ରେନ୍ ବସ୍ ସବୁ ଯୋଗାଯୋଗ ସେଠିକି ବନ୍ଦ ହେଇଯାଇଚି । ଭୟରେ ଅନ୍ୟ ସହରରୁ କେହି ଭୋପାଲ ଆଡ଼େ ଯାଉନାହାନ୍ତି ।

ମୁକ୍ତାର କେଇଦିନ ହେଲା ଡେରିରେ ଫେରୁଥିଲା । ନୂଆ କାମ ଗୋଟାଏ ନେଇଥିଲା କାହାପାଖରେ, ତେବେ ଖୁବ୍ ଗୋଟାଏ ଖୁସି ନଥିଲା ସେଥିରେ । ସେଦିନ ଟିକିଏ ଶିଘ୍ର ଫେରିଆସିଥିଲା, କାମରେ ଚିନ୍ତାରେ ଚେହେରା ମଉଳି ଯାଇଥାଏ । ଆସୁ ଆସୁ ପଚାରିଲା ଫାତିମା, "ଭୋପାଲରେ କ'ଣ ଗୋଟାଏ ବଡ଼ ଦୁର୍ଘଟଣା ଘଟିଯାଇଚି ବୋଲି କହୁଚନ୍ତି ଏଠି । ରେଡ଼ିଓରେ ବି କହୁଥିଲା । କ'ଣ ହେଲା ଜାଣିଚ କି ?"

ଫାତିମା କେଇଥର ପଚାରିଲା ପରେ ଆଉ କେଉଁ କଥା ଭାବୁଥିଲା ଭଳି ଉତ୍ତର ଦେଲା ମୁକ୍ତାର, "କ'ଣ ଗୋଟାଏ ଗ୍ୟାସ୍ ଟାଙ୍କି ଫାଟିଚି କାଳେ, ଶୁଣିଥିଲି । କାର୍ବାଇଡ଼ ଫ୍ୟାକ୍ଟ୍ରି ପାଖ ବସ୍ତିରେ ଲୋକ ମରିଚନ୍ତି । ହେଲେ ଆମ ଘର ସବୁ ତ ସେଠୁ ଦୂର । ଖବର ନନେଇ ମୁଁ କ'ଣ ତୁନିହେଇ ବସିଚି ।"

ଖବର ମିଳିଲା ଦିନ ଦିଇଟାରେ, ତେବେ ଟିଭି ରେଡ଼ିଓ କି ଖବରକାଗଜରୁ ପରିଷ୍କାର ଖବର କିଛି ବୁଝାପଡୁନଥିଲା । ପ୍ରଥମେ ଶହେ କି ପଚାଶ ଲୋକ ମରିଚନ୍ତି ବୋଲି ଯାହା ବାହାରିଥିଲା, ପ୍ରତି ଓଳି ସେ ସଂଖ୍ୟା ବଢ଼ି ବଢ଼ି କେଇ ହଜାରକୁ ଗଲା । ଫାତିମା ଏଣିକି ଅଥୟ ହେଲା, "କ'ଣ କରିବା ? କାହାଠୁ ଟିକେ କିଛି ଖବର ନିଅନ୍ତ । ଚାଲ ଚାଲିଯିବା ଭୋପାଲ ।"

ମୁକ୍ତାର ଚିନ୍ତିତ ଥିଲେ ବି ଧରା ପଡେଇବାକୁ ଚାହୁଁନଥିଲା । କହିଲା, "ଦରକାର ହେଲେ ମୁଁ ଯିବି । ଦିହେଁ ଯିବା କେମିତି ?"

ତା'ପରେ କହିଲା, "ରହ, କିଛିଦିନ ଯାଉ । ଆମେ ଯିବା ନହେଲେ ଏକାଠି । ଏବେ ତ ସେଠିକି ଟ୍ରେନ୍ ରାସ୍ତା ଘାଟ ସବୁ ବନ୍ଦ, ବାହାର ଲୋକଙ୍କୁ ସେଠିକି ଯିବା ମନା । ମୋ' ମନରେ କ'ଣ ଚିନ୍ତା ନାହିଁ ନା କ'ଣ ?"

ହେଲେ ତା' ପରଦିନ ଫେରିଲାବେଳକୁ ମୁକ୍ତାର ମୁହଁରେ ହସ ଥାଏ । କହିଲା ତାକୁ ଟୀମ୍ ସାଙ୍ଗରେ ବାହାରକୁ ଯିବାକୁ ହେବ ସୁଟିଂରେ । "ଶକିଲ୍ ସାହାବଙ୍କ ନାଁ ଶୁଣିଚୁ ତ ? ସେ କହିଲେ ତାଙ୍କର ଯୋଉ ବିଖ୍ୟାତ ଉର୍ଦ୍ଦୁ ନଭେଲଟା ଟିଭି ସିରିଆଲ ହେଉଚି ତା'ର ଡାଇଲଗ ଲେଖିବି ମୁଁ । ତାଙ୍କ ହାତରେ ଏବେ ବହୁତ କାମ କିନା । ମୁଁ ଲେଖିବି ଡାଇରେକ୍ଟରଙ୍କୁ ପସନ୍ଦ ହେଲାଭଳି, ସୁଟିଂ ବେଳେ ସାଥିରେ ରହିବାକୁ ପଡ଼ିବ ସେଥିଲାଗି । କାମ କରିବାର ଅନୁଭବ ବି କିଛି ମିଳିବ । ଚିହ୍ନା ପରିଚୟ ବି ବଢ଼ିବ ।"

ତା' ଉଚ୍ଛାଟ ଦେଖି ଭୋପାଲ କଥା ପଚାରିବ କେମିତି ସେକଥା ଭାବୁଚି, ମୁକ୍ତାର ପୁଣି କହିଲା, "ତୁ ଆଉ ଚିନ୍ତା କରନା । ଭୋପାଲ ଖବର ମୁଁ ରଖୁଚି । ମୁଁ କ'ଣ ଏକୁଟିଆ ଭୋପାଳରୁ ଆସି ରହୁଚି ବମ୍ବେରେ ନା କ'ଣ ?"

ଦି ତିନିଦିନ ଲାଗି ଏଆର ବ୍ୟାଗ୍‌ଟାରେ ଲୁଗାପଟା ସଜାଡୁ ସଜାଡୁ କହିଲା ମୁକ୍ତାର, "ଏଥରକ ଶିକଲ ସାହାବଙ୍କ ସାଙ୍ଗରେ ଏକାଠି ମୋର କଣ୍ଟ୍ରାକ୍ଟ ଟା ବି ପକ୍କା ହେଇଯାଇଚି । ତେରଟା ଏପିସୋଡ଼ର ଲାଗ୍‌ଲାଗ୍ ସୁଟିଂ ହେବ । ଏତେଦିନକେ ବ୍ରେକ୍ ଗୋଟେ ମିଳିଚି ବୁଝିଲୁ ।"

ମୁକ୍ତାରକୁ ପଚାରି ତା' ମନ ଖରାପ କରିବାକୁ ଚାହିଁଲାନି ଫାତିମା । ତେବେ ଜାଣୁଥିଲା ସେ, ଦି'ତିନିବର୍ଷ ତଳେ ଅନ୍ୟ ଜଣେ ଲେଖକଙ୍କ ତଳେ ଡାଇଲଗ ରାଇଟର ହେବାକୁ ସେ ମଙ୍ଗିନଥାନ୍ତା । ଆଜି ଏ କାମ ନୁହେଁ, ହାତରେ ପାଇଥିବା କିଛି ଏଡ଼ଭାନ୍‌ସ ପଇସା ହିଁ ମୁକ୍ତାର ଲାଗି ବଡ଼ ବ୍ରେକ୍ । ସୁଟିଂ ଟୀମ୍ ସାଙ୍ଗେ ରହିବାର ସୁଯୋଗ ବି କିଛି କମ୍ ନୁହେଁ ତା' ଲାଗି ଏବେ ।

ସେଦିନ ପୁଣିଥରେ ଘର ମଣିଥିବା ଉଷୁମ୍ କୋଷା ଭିତରୁ ଗୋଡ଼ କାଢ଼ି ବାହାରି

ଆସିଥିଲା ଫାତିମା । ଷ୍ଟେସନ୍‌କୁ ବସ୍ ଧରି ଭୋପାଳକୁ ଟିକଟ କାଟିଥିଲା ଆପେ । କୁରେଶି ଆଣ୍ଟିଙ୍କୁ ଘର ଚାବି ଦେବାକୁ ଗଲାବେଳେ ଫାତିମା ହାତରେ ଛୋଟିଆ କପଡ଼ା ବ୍ୟାଗ୍‌ଟିଏ ଥିଲା କେବଳ । କହିଲା, "ଭୋପାଲ ଯାଉଚି ଆଣ୍ଟି । ଘରେ କିଏ ବଂଚି ଜାଇଁ ଅଛନ୍ତି ନା ନାଇଁ ଆଲ୍ଲାଙ୍କୁ ଜଣା ।" କ'ଣ ବୁଝିଲେ ସେ କେଜାଣି, ବେଶୀ କିଛି ଫାତିମାକୁ କହିବାଲାଗି ବୋଧେ ତାଙ୍କ ମୁହଁକୁ କିଛି ପଇଟିଲା ନାହିଁ ।

ଘରୁ ବାହାରିଲା ବେଳେ ସେଦିନ ବି ଫାତିମାକୁ ଖୁବ୍ ବେଶୀ ଦ୍ୱନ୍ଦ୍ୱର ସାମ୍ନା କରିବାକୁ ପଡ଼ିନଥିଲା, କାନ୍ଥରେ ଟଙ୍ଗା ମୁକ୍ତାରର ସାର୍ଟ ପକେଟ୍‌ରୁ କିଛି ଟଙ୍କା ନେଇ ନେଲାବେଳେ । ସେମିତି ଏକବସ୍ତ୍ରୀ ହେଇ ବାହାରି ଆସୁ ଆସୁ ସେ ଫେରିଚାହିଁ ଥିଲା ବଖରା ଭିତରକୁ । କ'ଣ ଭାବି ରହିଯାଇ ପୁଣି ନିଜ ଲୁଗା କେଇଖଣ୍ଡକୁ ଚଉଡି ଥାକ କଡ଼ରେ ରଖିଦେଲା, ସାଙ୍ଗରେ ସୌଖୀନ ଚୁଡ଼ି ମାଳି କେଇଟା ଯାହା କିଣାହେଇଥିଲା ଏକାଠି ମିଶି ସେତକ ବି । ଘରଟାକୁ ଟିକେ ସଜାଡ଼ି ଦେଲା । କିଏ ଜାଣେ, ଆଲ୍ଲା କଲେ କାଳେ ଫେରିବ, ଯଦି ମୁକ୍ତାର ନିକାହ କରିବାକୁ ଡାକେ । ହେଲେ କବାଟ ତାଲା ଦେଇ ଚାଲି ଯାଉ ଯାଉ ସିଡ଼ୀପାଖେ ଭୂଇଁରେ ବସିପଡ଼ିଲା ସେ । ଉଠିବାକୁ ବଳ ପାଇଲା ନାହିଁ କେତେବେଳ ଯାଏଁ । ତା'ପରେ ଧୀରେକରି ଉଠି ପୁଣି ଫେରିଆସିଲା ସେ, ଘରର ତାଲା ଖୋଲିଲା । ଥାକରୁ ନେଇ ବ୍ୟାଗ୍‌ରେ ଲୁଗା ଦି'ଖଣ୍ଡ ପୂରେଇଲା । ଗୋଟାଏ କଣକୁ ଲୁଗାପଟା ତଳେ ଧୂଳିମଳି ହେଇ କେତେଦିନୁ ପଡ଼ିଥିବା ବୁର୍ଖାଟିକୁ ହାତକୁ ନେଲା ।

ମୁକ୍ତାରର ଅସଜଡ଼ା ପଡ଼ା ଖଟ ଉପରେ ବସି ତା' କବିତା ଖାତାରୁ ପୃଷ୍ଠାଟିଏ ଚିରି ଲେଖିଲା ଚିଠି ଖଣ୍ଡିଏ ।

"କେହି ସାକ୍ଷୀ ନଥିଲେ ନାଇଁ, କିଏ କାଜୀ ପଛକେ ପଢ଼ିନଥାଉ ଆମଲାଗି ପବିତ୍ର ବହି, ମୁଁ ଜାଣେ ତମକୁ ମୁଁ ବାହା ହେଇଥିଲି । ଆଜି ସ୍ୱଇଚ୍ଛାରେ ଛାଡପତ୍ର ଦେଉଚି ।"

ତା'ପରେ ଲୁହ ଜାଲୁଜାଲୁ ଆଖିରେ କାଗଜ ଉପରେ ମଡ଼େଇ ମଡ଼େଇ ତିନିଥର ତଲାକ୍ ଶବ୍ଦକୁ ଲେଖିଥିଲା ଫାତିମା । ଖୋଲା ଚିଠିଟିକୁ ଖଟ ମଝାମଝି ତକିଆଟିଏ ଉପରେ ରଖିଦେଇ ତା' ଉପରେ କଲମଟି ଥୋଇଦେଲା ।

କିଛି ସମ୍ବୋଧନ କି ଇତି ନଥିଲା ଆଜିର ଚିଠିରେ ବି ।

# ଫେରି ଗ୍ଲହିଁବାର ବେଳ

ବମ୍ବେରୁ ଫେରିଆସିବାର ସେ ଦିନ । ଘରୁ ବାହାରି ନିଜ ଇଚ୍ଛାରେ ଏକୁଟିଆ ଗାଡ଼ି ଧରି ବାହାରିଯିବା ଜୀବନରେ ସେଇ ପ୍ରଥମ ଥିଲା ଫାତିମା ଲାଗି । ଷ୍ଟେସନକୁ ପହଞ୍ଚ ଧାଡ଼ିରେ ଛିଡ଼ାହେଇ ଭୋପାଳକୁ ଟିକଟ କାଟିବା, ଦିନଗୋଟାଯାକ ଅଖିଆ ଅପିଆ ଟ୍ରେନ୍‌ର ଜେନେରାଲ ଡବାରେ ବସିବା । ଲୋକଙ୍କ ଭିତରେ ଭୋପାଳର ନାହିଁ ନଥିବା ଦୁର୍ବିପାକ ବିଷୟରେ କଥାବାର୍ତ୍ତା ସବୁ ତୁନିହେଇ ଶୁଣିବା, ସବୁକଥା କେମିତି ଧୂଆଁଳିଆ ହେଇ ମନେଅଛି ତା'ର ।

ଭୋପାଲ ଛାଡ଼ିବାର ଦୁଇ ତିନି ବର୍ଷ ହେଇଗଲା, ଏ ଭିତରେ ଆଉ କୁଆଡ଼ିକି ଯିବା ହେଇନାଇଁ । କେତେ ଭିନ୍ନ ଥିଲା ଗତଥରର ସେଇ ଅଧାନିଦର ରେଳ ଯାତ୍ରାଟି । ପ୍ରାଣ ସଙ୍ଗୀଟି ଉପରେ ଆଉଜି ପଡ଼ି ଘରଛାଡ଼ି ଅଚିହ୍ନା ଜଗତ ଆଡ଼ିକି ଗୋଡ଼ କାଢ଼ିଥିବାର ସେ ସ୍ମୃତି – ଆଶା ଉଦ୍‌ବେଗ ପ୍ରେମ ଉଚ୍ଚାଟ ମିଶା ସେ ରାତିଟି, ଯାହାର ସିନ୍ଦୂରା ଫାଟିଥିଲା ନୂଆ ସପ୍ନର ସହରଟିରେ ।

ଆଜି ପୁଣି ଆପଣା ସଂସାର ବୋଲି ଜାଣିଥିବା ନିରାପତ୍ତାରୁ ବାହାରିଆସିଚି ସେ ଉଦୁଉଦିଆ ଖରାରେ । ଆଗରେ ପଛରେ କାହିଁ କିଛି ଦିଶୁନଥିବାର ଦିନଟିଏରେ ଗ୍ଲଲିଚି ସେ । ଏକଥା ଜାଣି ଯେ ପହଞ୍ଚିଲା ବେଳକୁ ଦିନ ଗଡ଼ି ଯାଇ ରାତି ହେଇଆସିଥିବ । ତେବେ ଏଥରର ଯାତ୍ରା ତ ନୀଡ଼ ବାନ୍ଧିବାର ସପ୍ନ ନୁହେଁ କି ନିଶ୍ଚିନ୍ତ ଛାତଟିଏର ଭରସା ନୁହେଁ । ଆଗପଛ କିଛି ଦିଶୁନଥିବା ଅନ୍ଧାର ଆଗରେ ଅଛି ଜାଣି ବି କୋଉ ଘରର ମାୟାରେ ଟାଣିହେଇ ଯାଉଚି ସେ କେଜାଣି । ଷ୍ଟେସନ ପରେ ଷ୍ଟେସନ ପାରି ହେଇ ହେଇ ଯାଉଥିଲା ବେଳେ, ଜନ୍ମରୁ ଆପଣାର ବୋଲି ଜାଣିଥିବା ସହରଟି ପାଖେଇ ଆସିଲାବେଳେ ଫାତିମା ଛାତିରେ ପର୍ବତ ପ୍ରମାଣ ଭୟ ମାଡ଼ିପଡୁଥିଲା । ନିଜକୁ ପୁଣି ବୁଝାଉଥିଲା ସେ, ଭାବୁଥିଲା ସତେକି

ଗୋଟାଏ ମିଛ ସମୟ ଦେଇ ଯାଉଚି ସିଏ । ଯାହା ଘଟୁଚି କି ଘଟିବାକୁ ଯାଉଚି କିଛିହେଲେ ସତ ନୁହଁ ।

ଡ଼ବାରେ ବସିଥିବା ଲୋକଙ୍କ ଭିତରୁ ମାତ୍ର କେଇଜଣ ଭୋପାଳରେ ଓହ୍ଲେଇବେ, ହେଲେ ବାଟସାରା ଗ୍ୟାସ୍ କାଣ୍ଡ ଆଉ ଲୋକଙ୍କ ଦୁର୍ଦ୍ଦଶା ହାହାକାର ବିଷୟକୁ ଛାଡ଼ି ଆଉ କିଛି କଥାବାର୍ତ୍ତା ହେଉନଥାଏ । ଜଣେ କହୁଥିଲା ତା' ଜଣାଶୁଣା କେଉଁ ମାଇପିଟିଏର କଥା, ଯିଏ ତା' ଝୁପୁଡ଼ି ବସ୍ତିରୁ ତିନୋଟି ପିଲାଙ୍କୁ ଅଧ ରାତିରେ ରେଜେଇ ତଳୁ ଟାଣିନେଇ କାଖେଇ ଘୋଷାରି ଧାଇଁଥିଲା ଆଖିବୁଜା, ଯୁଆଡ଼େ ଲୋକେସବୁ ଧୂଆଁରେ କାଶିକାଶି ଶୀତ ରାତିରେ ଫୁଙ୍ଗୁଳା ଦେହରେ ଧାଇଁଥିଲେ ଜୀବନ ବଂଚେଇବେ ବୋଲି । ଗୋଟି ଗୋଟି କରି ତିନି ପିଲା ତା'ର ନିସ୍ତେଜ ହେଇଗଲେ, ଆଖି ଓଲଟେଇ ଦେଲେ, ହାତରୁ କାଖରୁ ଖସି ପଡ଼ିଗଲେ କୋଉଠି ସେଇ ବାଟରେ... ଅଧା ଚେତାରେ ଧାଇଁଥିଲା ମାଇପିଟି ଧୂଆଁରେ ଅନ୍ଧ ହେଇ କିଛି ନଦେଖି ନ ବୁଝି... ।

କାନରେ ହାତ ଦେଲା ଫାତିମା, ଆଉ ସେ କାହାଣୀ ମାନ ଶୁଣିବାକୁ ତା'ର ଧୈର୍ଯ୍ୟ ନଥିଲା । ମୁହଁ ପୋତି ଆଖିବୁଜି ଏକଲୟରେ ଡାକିଲାଗିଲା ସେ ସେଇ ସର୍ବନିୟନ୍ତା ଖୁଦାଙ୍କୁ କେବଳ ।

ଭୋପାଳ ପହଂଚିଲା ବେଳକୁ ସଂଜ ଗଡ଼ିସାରିଥାଏ । କେମିତି ଅଲଗା ଖାଲିଖାଲି ଦିଶୁଥାଏ ଷ୍ଟେସନଟା, ସାରା ଅଂଚଳଟା । ରେଡ଼ିଓରୁ ଖବର ଶୁଣିଥିଲା ସେଇ ଦୁର୍ଯୋଗର ରାତିରେ ଟ୍ରେନ୍‌ରୁ ଓହ୍ଲେଇ ପଡ଼ିଥିବା ଲୋକମାନଙ୍କ ଶବ ମାନ ପରଦିନ ପ୍ଲାଟଫର୍ମରେ ଏଣେତେଣେ ପଡ଼ିଥିବାର କଥା । ଷ୍ଟେସନ କର୍ମଚାରୀଙ୍କଠୁ ପ୍ଲାଟଫର୍ମରେ ଶୋଇଥିବା ଯାତ୍ରୀ, ଭିକାରୀ ଓ ବୁଲା କୁକୁର ଯାକେ କେହି ବିଷ ଗ୍ୟାସ୍ ଦାଉରୁ ବର୍ତ୍ତିନଥିବା କଥା ।

ଓହ୍ଲେଇ ପଡୁ ପଡୁ ଫାତିମା ଦେଖିଲା ଜଣେ ଚିହ୍ନା ଲୋକଙ୍କୁ, ବାପାଙ୍କ ସାଙ୍ଗ ଦିଲୁଚାଚା, ଇତବାରା ଛକ ଉପରେ ତାଙ୍କ ଦୋକାନ ଅଛି । ଟ୍ରେନ୍‌ରୁ କାହାଲାଗି ଅପେକ୍ଷା କରୁଥିଲେ ବୋଧେ ସେ । ମୁହଁ ଉପରୁ ନକାବ ଉଠେଇ ଫାତିମା ତାଙ୍କ ପାଖକୁ ଯାଇ ସଲାମ କଲା, ତାଙ୍କ ଆଶ୍ଚର୍ଯ୍ୟ ଚାହାଣୀକୁ ଖାତିର୍ ନକରି ପଚାରିଲା, "ଘରେ ସବୁ ଖବର ଭଲ ତ ଚାଚା ?"

ସେ କ'ଣ କହିବେ ବୋଲି ମୁହଁ ଖୋଲି ପୁଣି ପାଟି ବୁଜିଦେଲେ । ମୁହଁର ଆଶ୍ଚର୍ଯ୍ୟ ମିଳେଇଯାଇ ନିସ୍ପୃହ ଭାବଟିଏ ଫୁଟିଲା, ପୁଣି କାହାକୁ ଖୋଜିବା ଭଳି ଏଣେ ତେଣେ ଅନେଇଲେ ସେ । ଫାତିମା ପୁଣି ବିକଳରେ ପଚାରିଲା, ଏଥର ଟିକେ ସ୍ୱର ଉଂଚେଇ, "ଚାଚାଜୀ, ଗ୍ୟାସ୍ କାଣ୍ଡ କଥା ଶୁଣି ଚାଲିଆସିଚି, ଆମ ଘରେ ସମସ୍ତେ କେମିତି ଅଛନ୍ତି ଖବର ପାଇଚ ?" ଆଖି ଫେରେଇ ଛେପ ଢୋକିଲେ ସେ, ସେମିତି ଶୁଖିଲା ଗଳାରେ କହିଲେ,

"ଫାତିମା ବେଟୀ, ଏକୁଟିଆ ଆସିଚୁ କି ? ହଉ, ଯା ଘରକୁ ଯା । ତୋ' ମା' ତ ଡାକ୍ତରଖାନାରେ, ଭାଇଭଉଣୀଙ୍କୁ ଯାଇ ସମ୍ଭାଳ ଯା ।" ଫାତିମା ଜୋର୍ ନିଃଶ୍ୱାସଟାଏ ଛାଡ଼ିଲା, ଏତିକି ଶୁଭଖବର ବି ଯଥେଷ୍ଟ । ଦିଲ୍ଲୁ ଚାଚା ଏଥର ଆଗେଇଗଲେ ଟ୍ରେନ୍ ଝରକାମାନଙ୍କ ଆଡ଼େ ଚାହିଁ ଚାହିଁ ।

ଡ଼ିସେମ୍ବର ରାତି, ଗରମ ଲୁଗା ଖଣ୍ଡେ ବି ପାଖରେ ନଥାଏ । କେବଳ ବୁର୍ଖା ଖଣ୍ଡିକୁ ଦେହରେ ଜାବୁଡ଼ି ଧରି ଶୀତରେ ଥରୁଥାଏ ଫାତିମା । ରିକ୍ସା, ଅଟୋ କିଛି ନଥାଏ ଷ୍ଟେସନ ବାହାରେ, ପୋଲିସ୍ ଗାଡ଼ି ଆଉ ଆମ୍ବୁଲାନସ ଭଳି କେତେଟା ବଡ଼ ଗାଡ଼ି ଯାହା । ଜଳଖିଆ କି ଫଳବିକାଳୀଙ୍କ ଠେଲାଗାଡ଼ି ବି ଗୋଟିଏ ହେଲେ ଦିଶୁନଥାଏ, ଗେଂଜାଗେଂଜୀ ହେଇ ଦୋକାନ ଦି'ଧାଡ଼ିରୁ ଅଧିକାଂଶର ସଟର ବନ୍ଦ । କେତେ ସମୟ ଜଗିଲା ପରେ ସ୍ପେଶାଲ ବସ୍‌ଟାଏ ମିଳିଲା, ସାହିରୁ ଖଣ୍ଡେ ଦୂର ବଡ଼ ରାସ୍ତା ଉପରେ ଓହ୍ଲେଇ ଚାଲିଚାଲି ନିଜ ଘରକୁ ଯାଉଥିଲା ଫାତିମା ।

କାଁ ଭାଁ ଲୋକ ଛାଡ଼ିଦେଲେ ଚାରିଆଡ଼ କେମିତି ଶୂନ୍‌ଶାନ । ହେଲେ ରାସ୍ତାଘାଟ ଘରଦ୍ୱାର ସବୁ ଆଗଭଳି ଥାଏ । ସାହି ମୁଣ୍ଡ ବରଗଛ, ଗଳି ଦି'ପାଖର ଘରଦ୍ୱାର, ଆଉ ତା' ନିଜ ଘରର କାନ୍ଥ, କବାଟ, କିଛିହେଲେ ବଦଳି ନଥାଏ । ନିଜ ଘର କବାଟରେ ହାତ ରଖିଲା ସେ, କାନେଇଲା ଭିତରକୁ । ଡାକିବାକୁ ସ୍ୱର ପଇଟିଲା ନାହିଁ, ଠକ୍‌ଠକ୍ କରି କବାଟ ବାଡ଼େଇଲା । ପ୍ରଥମେ ଖୁବ୍ ଆସ୍ତେ, ତା'ପରେ ଅସମ୍ଭାଳ କୋହ ସହିତ ଜୋର୍ ବିଧାମାରି ।

କେତେବେଳକେ କବାଟ ଖୋଲିଲା । ଭିତର ଅଗଣାଟା ଅନ୍ଧାର ଥିଲା, ବାରଣ୍ଡାର ଧିମା ବଲ୍‌ବଟା ଫିଉଜ୍ ହେଇଯାଇଚି ନା କ'ଣ ।

ସାମ୍ନାରେ କିଏ, ବାପା ? ସିଧା ମୁହଁକୁ ଚାହିଁବାକୁ ସାହସ ହେଉନି, ତଳକୁ ମୁହଁ ପୋତି ଛିଡ଼ା ହେଇରହିଲା ଫାତିମା ।

ଅପରିଚିତ ସ୍ୱରଟିଏ ଦୋଦୋପାଂଚ ହେଇ କହିଲା, "ଅପା ?"

ବଡ଼ କଷ୍ଟରେ ଫାତିମାର ମୁହଁରୁ ଫୁଟିଲା, "ହଁ ମୁଁ । କିଏ ସାଜିଦ୍ କିରେ ?"

ସାଜିଦ୍ ଢେଙ୍ଗା ହେଇଯାଇଥିଲା, ଗଳାଟା ବି ବଦଳିଯାଇଥିଲା । ଆଗପଛ ନ ବିଚାରି ପାଖକୁ ଲାଗିଗଲା ଫାତିମା, ଦି'ହାତରେ ତାକୁ ଆଉଁସି ପକେଇ କୋହରେ ଭାଙ୍ଗିପଡୁଥିବା ଗଳାରେ କହିଲା, "ଭଲଅଛୁ ତ ସଜ୍ଜୁ ଭାଇ ? କେଡେ ଖରାପ ଖବର ସବୁ ଶୁଣିଲି ଜହର ଗ୍ୟାସ୍ ବିଷୟରେ । ଘରେ ସମସ୍ତେ ଭଲ ଅଛନ୍ତି ତ ?"

ସେ ଉତ୍ତର ଦେଲାନାହିଁ, ଗୋଟାଏ ହାତରେ ଫାତିମାକୁ ପ୍ରାୟ ଆଡ଼େଇ ଦେଇ ଅଗଣା କବାଟଟା ଭିତରୁ ଦେଇଦେଲା ଆଉ ଘରଆଡ଼କୁ ବୁଲିପଡ଼ିଲା । ଫାତିମା ଯାଇ ତା' ପିଠିରେ ହାତ ଦେଲା, ପାଟିକଲା ଏଥର ଗଳା ଫଟେଇ, "ମୋ ସାଙ୍ଗେ କଥା କହିବୁନି କ'ଣ ପଣ

କରିଚୁ ? ତୋ' ଅପା ଫେରିଆସିଚିରେ ସାଜିଦ୍ ଭାଇ..."

ଫାତିମାକୁ ଫେରି ଚହିଁ ରହିଗଲା ସେ । ହାବୁକାଏ କୋହ ଭିତରୁ ଜବାବ ଆସିଲା, "ମୁଁ ରେହମାନ୍ । ସାଜିଦ୍ ଭାଇ ଆଉ ନାହିଁ ଅପା ।"

କ'ଣ ସବୁ ତା'ପରେ ପରେ ଘଟିଗଲା ଆଉ ମନେପକେଇଲେ ବି ପରିଷ୍କାର ମନେପଡୁନି ଫାତିମାର । ଭିତରୁ ହୀନା ଜରୀନା ବାହାରି ଆସିଲେ । ସେଇ ଅନ୍ଧାରରେ ଘର ବାରଣ୍ଡାରେ ଏକାଠି ଛାତି ଫଟେଇ କାନ୍ଦିଥିଲେ ସେମାନେ । ତାଆରି ଭିତରେ ଆଗପଛ ନଥିବା ଟୁକୁରା ଟୁକୁରା କୋହ ବାମ୍ଫ ମିଶା କଥାଗୁଡ଼ିକରୁ ହିଁ ଫାତିମା ଠଉର କରିଥିଲା, ଏକା ସାଜିଦ୍ ନୁହେଁ, ବାପା ବି ଆଉ ସେଇ କାଳ ରାତି ପରେ ଫେରିନାହାନ୍ତି ।

ପୁଣି ସେଇ କାନ୍ଦବୋବାଳି ମଝିରେ ଘର ଭିତରୁ ଜେଜେମାର ସ୍ୱର ଶୁଭୁଥିଲା, "କିଏ କିରେ ରେହମାନ ? ତୋ' ମା' ଆସିଲା କି ଡାକ୍ତରଖାନାରୁ ? କିଏ ସେ ଆସିଚି ସେଠି ? କିଏ ଜବାବ ଦିଅରେ ମୋତେ ।"

ପ୍ରଶ୍ନ ଉତ୍ତର ଓଜର ଆପତ୍ତି ଗତ ଆଗତ ସବୁ ଗୋଳେଇପୋଳେଇ ହେଇଯାଉଥିଲା ସେ ଛାଇଅନ୍ଧାରରେ । ଘର ଭିତରେ ଖଟ ଉପରେ ଖୁଣ୍ଟପରି ବସିଥିଲେ ଦାଦୀ ମା', ଚିହ୍ନିହେଉନଥିଲା ତାଙ୍କ ଚେହେରା । ତାଙ୍କ ପାଖେ ଯାଇ ଚଟାଣରେ ବସିପଡ଼ିଲା ବସିଲା ଫାତିମା, ତାଙ୍କ ଦୁଇଗୋଡ଼କୁ କୁଣ୍ଢେଇ ଧରି କହିଲା, "ଦାଦୀ ମା', ମୁଁ ଆସିଚି, ତମ ଫାତିମା ।"

କାନ୍ଦବୋବାଳି ଶାନ୍ତ ପଡ଼ିଯାଇଥିଲା କେତେବେଳୁ । ଥମ୍‌ଥମ୍ ହେଉଥିଲା ଘର ଭିତରଟା । ଚୁପ୍‌ହେଇ ରହିଥିବା ଖୁଣ୍ଟଭଳି ପ୍ରତିମାଟି କେତେବେଳେ ହଲଚଲ ହେଲା, ଶୀରାଳ ହାତଟିଏ ଫାତିମାର ମୁଣ୍ଡ ଗାଲ ମୁହଁ ଯାକ ଆଉଁସି ପକେଇଲା । ଆଗ ଅପେକ୍ଷା ଯଥେଷ୍ଟ ଭିନ୍ନ, ବୟସରେ ଜର୍ଜର ସ୍ୱରଟିଏ ଶୁଣିଲା ଫାତିମା, "ଆସିଲୁ ଝିଅ । ଘର ମନେପଡ଼ିଲା ଏତେ ଦିନକେ ? ଆସନ୍ତୁ ନାଇଁ କେମିତି ଯେ ? ବାପଘରକୁ ବିପଦ ପଡ଼ିଲେ ଝିଅ ଦେହ କ'ଣ ସହିବ ? ଯେତେ ରାଜରାଣୀ ପରି ଘର କରିଥିଲେ ବି ଆମ ଝିଅ ଆମକୁ ପର କରିଦେବ ନାଇଁ, ମୁଁ ଜାଣେପରା ।"

ଫାତିମା ଅନେଇଥିଲା ସେ ମୁହଁକୁ । କେମିତି ସାମ୍ନା କରୁଚି ଦାଦୀମା' ଏଇ ଆଜିକୁ, ଜୀବନର ଏ ଅବସ୍ଥାରେ ? ଏ ସ୍ୱର, ଶାନ୍ତ କଥା କ'ଣ ଦୁଃଖରେ ବିହ୍ୱଳ ବିମୂଢ଼ ମା'ଟିଏ ର ? ତାକୁ ଆଉଁସି ଲାଗିଚି ଏବେବି ଶୀରାଳ ହାତଟି । କହିଚାଲିଚି ସେ ଦୁର୍ବଳ ଥରିଲା ସ୍ୱରଟି । "ଆରେ କ'ଣ ଟିକେ ଖାଇବାକୁ ଆଣରେ ଆମ ଝିଅ ଲାଗି । କେତେବୋଟରୁ ରେଳ ଗାଡ଼ି କରି ଧାଇଁଆସିଚି ମୋ' ଫାତିମା । କିଛି ଖାଇନଥିବୁ ତ ବେଟୀ । ପାଟିକୁ କିଛି କ'ଣ ଖାଇବା ଯାଉଥିବ ?"

ଫାତିମା ପଚାରିଲା, "ମୋ' ଉପରେ ତମେ ରାଗିନ ତ ଦାଦୀମା' ?"

ଦାଦୀମା' ତାକୁ ଟିକେ ଉଠେଇବାକୁ ଚେଷ୍ଟା କଲେ, କହିଲେ, "ଆ, ଏଠି ପାଖରେ ବସ୍ । ସେଠି କାହିଁକି ବସିଚୁ ? ତୋ' ମିଆଁକୁ କାହିଁ ଦେଖୁନି ତ ? ଆଣିନୁ କି ତାକୁ ?"

ଫାତିମା ଉଠି ଜେଜେମା ପାଖରେ ବସିଲା । ଧୀର ସ୍ୱରରେ କହିଲା, "ନାହିଁ ସେ ଆସିପାରିଲେନି । କାମ ଚାପରେ ।"

ବୁଢ଼ୀ ପାନ ବଟୁଆ ଖୋଲି ଖାଲି ଦୋକ୍ତା ଟିକିଏ ପାଟିରେ ପକାଇଲେ । କହିଲେ, "ହଉ ନଆସୁ । ପରେ ଆସିବ କେବେ । ତୋ' ମା' ତ ଡାକ୍ତରଖାନାରେ । ଜହର ଗ୍ୟାସ୍ ଢୋକିଦେଇଚି । ଭଲ ହେଇଯିବ, ତୁ ଚିନ୍ତା କରନା ।"

ପୁଣି ବଡ଼ପାଟିରେ ଡାକି ପଚାରିଲେ ଦାଦୀମା', "ଆରେ ରେହମାନ, ତୋ' ମା' ପାଖକୁ ଖାଇବା ନେଇ ଗଲୁ କି ନାହିଁ ? ଏତେ ରାତି ହେଲାଣି ପରା ।"

ଦାଦୀମା' କିନ୍ତୁ ଆଦୌ ପାଟି ଫିଟେଇଲେ ନାହିଁ ଅବ୍ବୁ କି ସାଜିଦ୍ ବିଷୟରେ ।

# କୋଳେଇ ନେଉଥିବା ଘର

ଘର ଫାତିମାକୁ କୋଳେଇ ନେଉଥିଲା ବିନା ଓଜର ଆପତ୍ତିରେ । ମଝିରେ ବିତିଥିବା ସମୟ କଥା କହିବାକୁ ପଚାରିବାକୁ କାହାପାଖେ ଫୁରସତ୍ ନଥିଲା । ଦିନ କେତେଟାରେ ଆଉ ପ୍ରକାରେ ଜୀବନର ଗୁଳା ପଡ଼ିଆସୁଥିଲା, ହେଉପଛେ ସେ ଆବୁଡ଼ା ଖାବୁଡ଼ା, ଚକ ଜମା ଆଗକୁ ଗଡ଼ିବାକୁ ନାହିଁ କରୁଥାଉ ତହିଁରେ । କେବେହେଁ ଦେଖିନଥିବା, ଭାବିନଥିବା ଗୋଟାଏ ବାଟ ଧରି ଚାଲିଥିଲା ଜୀବନ । ବଦଳିଥିବା ପରିବାର, ଅଜବ ଗୋଟାଏ ପରିବେଶରେ ।

ଘର ଅବିକଳ ସେମିତି ଥିଲା । ସେଇ ନିଜ ଦେହଠୁ ବଳି ପରିଚିତ କାନ୍ଥ ବାଡ଼ ଖଟ ପଲଙ୍କ, ବାରଣ୍ଡାକଡ଼ ଚଦେରଢ଼ଙ୍କା ସିଲେଇ ମେସିନ, ଅଗଣାରେ ଭଙ୍ଗା ଚନ୍ଦିନୀର ଅଣଓସାରିଆ କୁଅଟି, ଯାହାକୁ ପଛରେ ପକାଇଦେଇ ସେ ଚାଲି ଯାଇଥିଲା । ଫେରିଲାବେଳକୁ ସେ ଘରେ ରହିଲା ଲୋକ ଆଉ କେହି ଆଗଭଳି ହେଇ ନାହାନ୍ତି । ବାରଣ୍ଡାରେ ରେହମାନ ବାପାଙ୍କ ଚଉକିରେ ବସିରହୁଚି ଶୂନ୍ୟକୁ ଚାହିଁ । ଲହଲହକା ହେଇ ବଢ଼ିଯାଇଚି, ପୂର୍ବର ଗୋଲ ପିଲାଳିଆ ମୁହଁଟା ଲମ୍ବା ହାଡୁଆ ହେଇ ଅଳ୍ପ ନିଶ ଦାଢ଼ିରେ ଆଉ ଗୋଟିଏ ମଣିଷ ଭଳି ମନେହେଉଚି । ହୀନା ଜରୀନା ଆଗଭଳି ଅକାରଣ କିଲିକାଲିଆ ହେଇ ଘରଯାକ ଦଉଡୁ ନାହାନ୍ତି, ସମୟ ପାଇଲାକ୍ଷଣି ଅମ୍ମିର ଗାଳିକୁ ପରୱା ନକରି ଅଗଣାରେ ଚେକର ଖେଳୁନାହାନ୍ତି । ହୀନା ଦି ଟିକିଆ ରିବନ ଦିଆ ବେଣୀ ଛାଡ଼ି ଗୋଟିକିଆ ଲମ୍ବ ବେଣୀ ପାରୁଚି, ଧୀରସ୍ଥିର ସ୍ତ୍ରୀଟିଏ ଭଳି ହାବଭାବ । ଜରୀନା ବଢ଼ିଆସିଲାଣି, ବୁର୍ଖା ଓଢ଼ିବାଭଳି ଦେହ ହେଲାଣି । ଫ୍ରକ୍ ଛାଡ଼ି ଫାତିମାର ପୁରୁଣା ରଙ୍ଗଛଡ଼ା ସାଲୁଆର କୁର୍ତା ପିନ୍ଧୁଚି । ଚୁପ୍‌ଚାପ୍ ସଭିଏଁ, ବର୍ତ୍ତମାନକୁ ମାନିବାକୁ ଏବେବି ତିଆର ନୁହେଁ ମନ ।

କିଛି ଗୋଟାଏ ଘଟିବାକୁ ଅଛି ଅବା ତଥାପି । ବାପା ବୋଧେ ସେଇ ସଦର ମଂଜିଲରେ ଚେସ୍ ଖେଳରେ ମାତି ଘରକୁ ଆସିବା ଭୁଲିଯାଇଚନ୍ତି ନା କ'ଣ, ସମସ୍ତେ କାନେଇ ବସିଚନ୍ତି

ତାଙ୍କ ପାଦଶବ୍ଦକୁ, ଅନେଇଚନ୍ତି ତାଙ୍କ ବ୍ୟାଗ୍ ଭିତରୁ ଆଜି କ'ଣ ସବୁ କିଣାହେଇ ଆସିଥିବ ବଜାରରୁ, ଡାଲି ପରିବା ସହିତ ଅଗ୍ୟନକ ବାହାରିଯିବ ଗରମ ଜଲେବି । ଆଉ ଚାହିଁବସିଚନ୍ତି ସାଇକଲ ଘଣ୍ଟି ବଜେଇ ସାଜିଦ୍ କେତେବେଳେ କବାଟ ବାଡ଼େଇବ, ବଡ଼ ପାଟିରେ ଡାକିବ, ଅମ୍ମି, ଭାରି ଭୋକ, କ'ଣ ଖାଇବାକୁ ଦେଇଚି ଆଜି ?

ସ୍କୁଲ କଲେଜ ସବୁ ବନ୍ଦ ଅଛି । ଦି'ଭଉଣୀ ଘରକାମରେ ଲାଗିଥାନ୍ତି, ରୋଷେଇଘରେ କାମ କରୁକରୁ ଟୁପୁରୁ ଟାପୁରୁ ହେଉଥାନ୍ତି ସତେକି ବଡ଼ ପାଟିରେ କଥା କହିଲେ କ'ଣ ଗୋଟିଏ କେଉଁଠି ଭାଙ୍ଗିଯିବ । ଫାତିମା ତାଙ୍କ ଭିତରକୁ ଯିବାକୁ ସହଜରେ ଭରସି ପାରେ ନାହିଁ । ମା' ଡାକ୍ତରଖାନାରେ ପଡ଼ିଚି, ଆଉରି ହଜାର ହଜାର ଗ୍ୟାସ୍ ଢୋକିଥିବା ରୋଗୀଙ୍କ ଭଳି । ମୁଗଡ଼ାଲିର ପାଣିଆ ଖେଚୁଡ଼ି ଡବାରେ ନେଇ ଯିବାକୁ ହୁଏ ତା' ପାଖକୁ ଦୁଇବେଳା । ପାଳି କରି ତା' ପାଖେ ରହିବାକୁ ହୁଏ । ଫାତିମା ହିଁ ପ୍ରାୟ ରହେ ତା' ପାଖେ, ତେବେ ମା' ତାକୁ ଚିହ୍ନି ପାରୁଚି କି ନାହିଁ ସେକଥା ଠିକ୍ କରି ଜାଣିପାରୁନଥାଏ ସେ । ଅଧା ଚେତା ଅଧା ଶୋଇଲା ପରି ମା' ରହିଥାଏ, କାଶୁଥାଏ, ବେଳେ ବେଳେ ଆଖି ଖୋଲି ବଲବଲ ଅନାଏ ଚାରିଆଡ଼କୁ ।

ଧଇଁ କାଶ ପେଲିଲା ଭଳି କାଶୁଥାନ୍ତି ସବୁ ରୋଗୀମାନେ । ସାଇଁ ସାଇଁ ଶୁଭୁଥାଏ ତାଙ୍କ ନିଃଶ୍ୱାସ, ପଂଜରା ଭିତରେ ଚାପିହେଇ କୋଉ ଫାଙ୍କଦେଇ ବାହାରୁଚି ଅବା ସେ ପବନ, ଝରକା ଫାଙ୍କଦେଇ ଝଡ଼ ବତାସ ପବନ ଗଲାଭଳି । ପ୍ରତି ୱାର୍ଡ଼ରେ ଅଧିକା ଖଟ ପଡ଼ିଥାଏ । ଚାଲିବାକୁ ବାଟ ନଥାଏ । ଅନେକ ରୋଗୀଙ୍କ ଆଖିରେ ପଟି ବନ୍ଧା ଥାଏ, ଦେହରେ ନଳୀ ବୋତଲ ଲାଗିଥାଏ । ଯୋଉଠି ଜାଗା ମିଳିଲା ତଳେ ଚଟାଣରେ, ବାହାର ବାରଣ୍ଡାରେ ଧାଡ଼ି ଧାଡ଼ି ହେଇ ପଡ଼ିଥାନ୍ତି ରୋଗୀ । କାହାକୁ ହସ୍‌ପିଟାଲ ବିଛଣା ମିଳିଥାଏ, କିଏ ବା କନ୍ଥା କମ୍ବଳ ଯାହା ମିଳିଲା ତା' ଉପରେ ଶୋଇଥାଏ । ଏତେ ରୋଗୀଙ୍କ ଲାଗି ନର୍ସ ଧାଈ ନଥାନ୍ତି । କାହାର ପରିବାର ଲୋକ ପାଖେ ଥାଆନ୍ତି, ଅନେକେ ପଡ଼ିଥାନ୍ତି ସ୍ୱେଚ୍ଛାସେବୀଙ୍କ ଭରସାରେ ।

ଫାତିମା ଶୁଣିଲା ସେ କାଳରାତିରେ ତା' ନିଜ ପରିବାର ଉପରେ ବହିଯାଇଥିବା ବିଷାକ୍ତ ବତାସ କଥା । ଅଧରାତିରେ ପାଟିତୁଣ୍ଡ ଶୁଣି ନିଦ ଭାଙ୍ଗିଲା ବେଳକୁ ଆଖି ନାକ ପୋଡ଼ି ଛାତି ରୁନ୍ଧି ହେଇଯାଉଚି, ଲାଇଟ୍ ଜଳେଇଲା ବେଳକୁ ଧୂଆଁରେ ପୂରିଯାଇଚି ଘର । ବାହାର ରାସ୍ତାରେ ଲୋକ ଧାଇଁବାର, ଡକାହକା ହେବାର ଶୁଣି ବାପା କବାଟ ଫିଟେଇଲେ । ନିଃଶ୍ୱାସ ବିକଳରେ ଅଗଣାକୁ ବାହାରି ଆସିଲେ ଘରଯାକ ଲୋକ, ହେଲେ ଘନ କୁହୁଡ଼ି ପରି ସେ ଧୂଆଁରେ ଆଉରି ଅଣନିଃଶ୍ୱାସିଆ ଅବସ୍ଥା । ସେଇ ଗୋଟିଏ କଥା ଶୁଭୁଚି ଘୋ ଘୋ ପାଟିତୁଣ୍ଡ ଭିତରୁ, ପୋକମରା ବିଷ – କାର୍ବାଇଡ଼ ଫ୍ୟାକ୍ଟ୍ରି – ଟାଙ୍କି ଫାଟିଯାଇଚି – ପଳାଅ

ପଳାଅ । କାରଖାନା କର୍ମଚାରୀ ସଭିଏଁ ପଳେଇସାରିଲେଣି, ରୋକିବାକୁ ଆଉ କେହି ନାହିଁ ସେଠି । ୟା ଆଲ୍ଲା – ହେ ପ୍ରଭୁ – ରକ୍ଷାକର – । ଏ ସହର ସୀମା ଛାଡ଼ି ପଳେଇଲେ କେଜାଣି ଜୀବନ ବଂଚିବ । ବାପା ବାହାର ପାଖୁ ଧାଇଁଆସି କହିଲେ, ଜଫର ମିଆଁ ତା' ଟ୍ରକ୍ କାଢ଼ିଚି, ଚାଲ ସମସ୍ତେ, ପଳେଇଗଲେ ବଂଚିବା । ଦାଣ୍ଡକୁ ଗଲାବେଳକୁ ରିକ୍ସା, ଗାଡ଼ି, ଅଟୋ ଯିଏ ଯାହା ପାଇଲା ପିଲାକବିଲା ନେଇ ପଳଉଚନ୍ତି । କିଛି ନଥିଲା ଲୋକେ ପାଦରେ ଧାଇଁଚନ୍ତି ଜୀବନ ବିକଳରେ ।

ଦାଦୀମା' ଯାଇଥାଏ ଲକ୍ଷ୍ନୌର ପିଇସୀଙ୍କ ଘରକୁ, ତାଙ୍କ ଝିଅ ବାହାଘର ବୋଲି ନିଜେ ପିଇସା ଆସି ନେଇଯାଇଥାନ୍ତି ତାକୁ ଦଶଦିନ ତଳୁ । ବାପା ଆଉ ସାଜିଦ୍ ମିଶି ସାଇ ଲୋକ ଭର୍ତ୍ତି ଟ୍ରକ୍ ଉପରକୁ ଗୋଟି ଗୋଟି କରି ଚଢ଼େଇଲେ ସଭିଙ୍କୁ । ଶାଲ କମ୍ବଳ ଘୋଡ଼େଇ ହେଇ ମୁହଁରେ ଲୁଗା ଚାପି ଟ୍ରକ୍ ଡାଲାର ଜକାଜକି ଭୀଡ଼ ଭିତରେ ଜାଗା କରିନେଲେ ସେମାନେ, ଅମ୍ମି, ସାଜିଦ୍, ହୀନା, ଜରୀନା ଆଉ ରେହମାନ । ଶେଷକୁ ମୁହଁରେ ଘୋଡ଼େଇଥିବା ଶାଲ ଭିତରୁ ବାପା ରାସ୍ତାରୁ ପାଟିକରି କହିଲେ, "ଯାଅ, ଆଲ୍ଲା ଅଛନ୍ତି । ମୁଁ ଘର ଜଗିଚି ।" ସେଇକ୍ଷଣି ଘରଯାକ ସଭିଏଁ ପାଟିକଲେ, "ନାଇଁ, ତାଲା ପକେଇଦେଇ ତମେ ଆସ ସାଙ୍ଗରେ, ନହେଲେ ଆମେ ବି ରହିବୁ ।" ବାପା ରାଗିଲେ, କାଶୁ କାଶୁ ଆଖି ଦେଖେଇ କହିଲେ, "ପାଟି ବନ୍ଦ କରି ଶୁଣ । ଗାଡ଼ିରେ ଜାଗା ନାଇଁ, ତମକୁ ଛାଡ଼ିଦେଇ ପୁଣି ଲେଉଟିବ । ଆଉରି ଲୋକ ଅଛନ୍ତି, ମୁଁ ଯିବି, ଯଦି ଧୂଆଁ ସଫା ନହେଇଥାଏ ।" ସାଜିଦ୍ ଆଉ ରେହମାନ ପାଟିକଲେ, "ମୁଁ ବି ରହିଯିବି । ମୁଁ ବି ।" ଅମ୍ମି କହିଲା, "ମୁଁ ରହିଯାଏଁ ବାପାଙ୍କ ସାଙ୍ଗରେ, ତମେସବୁ ଯାଅ ।" ସେତେବେଳକୁ ଆଉ ଗାଡ଼ି ଡାଲାରେ ପାଦ ପକେଇବାକୁ ଜାଗା ନ ଥାଏ । ଲୋକେ ପାଟିକରୁଥାନ୍ତି ଗାଡ଼ି ଛାଡ଼, କିଏ ଡାକୁଥାଏ ତା' ରହିଗଲା ଘର ଲୋକକୁ । ପାଟିତୁଣ୍ଡ କଥା କଟାକଟି ଭିତରେ ଟ୍ରକ୍ ଛାଡ଼ିଦେଇଥିଲା ।

ପାଖ ସହର ହୋଶଙ୍ଗାବାଦ ନହେଉ ପଛେ ବୁଧନୀ ଯାଏ ପହଂଚିଗଲେ ବି କୋଉଠି ନା କୋଉଠି ଜାଗା ମିଳିଯିବ ରାତିକ ମୁଣ୍ଡ ଗୁଂଜିବାକୁ । ଟ୍ରକ୍ ମୁଣ୍ଡରେ ବସିଥିବା ପୁରୁଷ ଲୋକେ ଜାଣନ୍ତି କୋଉଠିକି ଯିବେ, ପଛ ଡାଲାରେ ବସିଥିବା ଲୋକଙ୍କ ଜାଣିବାର ଜୁ ନାହିଁ । ସହରତଳି ଦୋକାନ ବଜାର ପାରିହେଉ ହେଉ ରାସ୍ତାରେ ଗାଡ଼ି ମଟରର ଜାମ୍ ଲାଗିଗଲାଣି । ବାଟଯାକ ପିଲାକବିଲା ନେଇ ଆଖିବୁଜା ଧାଇଁଥିବା ଦଳ ଦଳ ଲୋକ ହାତ ଦେଖେଇ ନେହୁରା ହେଉଚନ୍ତି ଟ୍ରକ୍ ବସ୍ ଜିପ୍ ଟେମ୍ପୋରେ ଲଦିହେଇଥିବା ଲୋକଙ୍କୁ – ଆମକୁ ବି ନେଇଯାଅ । ପିଲାଛୁଆଙ୍କୁ ନେଇ ରିକ୍ସା, ସାଇକଲ ପେଲି ଧାଇଁଚନ୍ତି ଆହୁରି ଲୋକ ।

ଗାଡ଼ି ଅଟକିଯାଇ ଆଗକୁ ବଢ଼ିପାରୁନଥାଏ । ଅମ୍ମିର ହାଉଳି ଶୁଭିଲା, "ମୋତେ ଓହ୍ଲେଇ

ଦିଅ, ମୁଁ ଘରକୁ ଯିବି । ଅବ୍ବୁକୁ କେମିତି ଏକୁଟିଆ ଛାଡ଼ିଦେଲ ସେ ବିଷଧୂଆଁରେ ?" ଘର ଜଗି ଏକୁଟିଆ ରହିବା ଲୋକ ଅବଶ୍ୟ କେବଳ ବାପା ନଥିଲେ, ସବୁ ଘରେ ଜଣେ ଅଧେ ପୁରୁଷ ଘର ଜଗିବାକୁ ରହିଯାଇଥିଲେ । ଧୂଆଁ ଟିକକ ପରେ ଛାଡ଼ିଯିବ ନଚେତ ପରେ ସୁବିଧା ଦେଖି ବାହାରିଆସିବେ ବୋଲି ମନରେ ଭରସା ଥିଲା । ଖାଲି ଅମ୍ମି ନୁହେଁ, ସେତେବେଳକୁ ଆଉରି କେତେକେ ବିକଳ ହେଲେଣି ଘରେ ଛାଡ଼ି ଆସିଥିବା ବାପ ଭାଇଙ୍କ ଲାଗି, ଓହ୍ଲେଇ ଫେରିଯିବା ଲାଗି ଜିଦି କଲେଣି । ସାଜିଦ୍ ବି ମାଆକୁ ନେଇ ଓହ୍ଲେଇଗଲା ଟ୍ରକ୍‌ରୁ । କଥା ଦେଇଗଲା, "ଅବ୍ବୁଙ୍କୁ ନେଇ ଆମେ ଆସୁଚୁ । ମୋ' ସାଙ୍ଗ ରଶିଦ୍ ଘରେ ଦିଇଟା ଗାଡ଼ି ଅଛି, ସେମାନେ ଜିପ୍‌ରେ ଯାଇଥିବେ, ସ୍କୁଟରଟା ନେଇନେବି ତା' ଘରୁ ।"

ତା'ପର ସେମାନଙ୍କର କ'ଣ ହେଲା ଆଉ କେହି ଜାଣିନାହାନ୍ତି । ପରଦିନ ଦିପହର ବେଳକୁ ସେଇ ଟ୍ରକ୍‌ରେ ଫେରିଆସିଥିଲେ କିଛି ଯାଇଥିବା ଲୋକେ । ସକାଳ ପହରକୁ ପ୍ରାୟ ବିଷ ଧୂଆଁର ମେଘ ଚାଲିଯାଇଥିଲା । ସାହି ପରେ ସାହି ଘରସବୁ ଫୁଙ୍ଗୁଳା ପଡ଼ିଥିଲା, କେହି ନଥିଲେ ସେଠି । ସଂଜବେଳକୁ ଖବର ମିଳିଥିଲା, କବରସ୍ଥାନରେ ଶହଶହ ଶବଙ୍କ ଭିତରେ ଚିହ୍ନଟ ହେଇଚି ତାଙ୍କ ବାପାଙ୍କ ଶବ । ରାସ୍ତା ଘାଟ ଆଉ ଗଳି କନ୍ଦି ମାନଙ୍କରୁ ଗୋଟାଉଥିବା ଲାସ୍‌ବୁହା ଗାଡ଼ି ନେଇଯାଇଚି ତାଙ୍କ ଜୀବଛାଡ଼ିଯାଇଥିବା ଦେହକୁ ବି । ଦି'ଦିନ ପରେ ସୁଲତାନିଆ ଜନାନା ହସ୍‌ପିଟାଲରୁ ଖବର ମିଳିଥିଲା ଅମ୍ମି ସେଇଠି ଅଛି, ରାସ୍ତାରେ ଅଚେତ ପଡ଼ିଥିବା ବେଳେ ଆମ୍ବୁଲାନ୍‌ସ ଉଠେଇନେଇଚି ବୋଲି ।

ସାଜିଦ୍‌ର ଖବର କେହିହେଲେ ଦେଇପାରିନଥିଲେ । ସହର ଯାକର ଡାକ୍ତରଖାନା କାନ୍ଥରେ ଓ କବରସ୍ଥାନରେ ମରାଯାଇଥିବା ପୋଷ୍ଟର କାଗଜରେ ଛପା ମାଳ ମାଳ ଫଟୋରେ ତା'ର ଫଟୋ ନଥିଲା । ହେଲେ କେତେ ଶବ ତ ଲାଓ୍ୱାରିସ ପୋତା ହେଲେ, ପୋଡ଼ା ହେଲେ ଆଉରି ଶହ ଶହ ଶବଙ୍କ ସାଙ୍ଗେ । ଜୀଅନ୍ତା ଲୋକଙ୍କୁ ଦେଖିବାକୁ କେହି ନଥିଲା ବେଳେ ଅଚିହ୍ନଟ ଶବଙ୍କୁ ରଖାଯିବ କୋଉଠି । ଖାଲି ତ ମଣିଷ ନୁହନ୍ତି, ଗାଈ ଗୋରୁ କୁକୁର ବିଲେଇଙ୍କ ଶବ ବିଛାଡ଼ି ପଡ଼ିଥିଲା ଚାରିଆଡ଼େ, ତାଙ୍କ ବ୍ୟବସ୍ଥା ବି ଶୀଘ୍ର ନହେଲେ ନଚଳେ । ଡାକ୍ତରଖାନା ମାନଙ୍କରେ ଧାଡ଼ି ଧାଡ଼ି ଶୁଆଇଦିଆଯାଇଥିବା ଶବମାନଙ୍କ କପାଳରେ ଧଳା ଚିହ୍ନଟର କାଗଜ ମାରି ଫଟୋ ଉଠାଯିବା ପରେ ଅନ୍ତିମ ସଂସ୍କାରର ବନ୍ଦୋବସ୍ତ କରିଦିଆଯାଇଥିଲା, ସେମାନଙ୍କର ଧର୍ମ ଅନୁମାନ କରି । ସେଇ ଶବଙ୍କ ଫଟୋମାନଙ୍କରୁ ଲୋକଙ୍କୁ ଚିହ୍ନଟ କରିବା କଥା । ସବୁ ଡାକ୍ତରଖାନାରେ ବି ରୋଗୀ ପଡ଼ିଥିଲେ ଯାହାଙ୍କୁ ଚିହ୍ନିବାଲାଗି ବନ୍ଧୁ ପରିଜନ କେହି ଆସିନଥିଲେ ।

ତେର ଚଉଦ ବର୍ଷର ରେହମାନ ଆଉ ତା' ଉପର ଦି'ଭଉଣୀ ହୀନା, ଜରୀନା

ଫେରିଥିଲେ ଘରକୁ ।

ବିପତ୍ତି ଏକାବେଳକେ ପାଖଆଖର ଅନେକ ଲୋକଙ୍କ ଉପରେ ପଡ଼ିଥିଲେ ତା'ର ପ୍ରଭାବ ଅଲଗା ହୁଏ । ଅଜଣା ଶତ୍ରୁ ସ୍ୱୟଂ ମୃତ୍ୟୁ ହେଇଥିଲେ ବି, ପୁଣି ସେଇ ଶତ୍ରୁ ସର୍ବଶକ୍ତିମାନ ବୋଲି ଜାଣିଥିଲେ ବି ସମସ୍ତେ ମିଶି ଏକାଠି ଲଢୁଥିବାର ଏକପ୍ରକାର ଭ୍ରମ ତିଆରି ହେଇଯାଏ । ଦୁଃଖରେ ଛାତି ଫାଟିଯାଉଥିବା ବେଳେ ବି ଆଖପାଖ ଲୋକଙ୍କୁ ସେଇ ଦୁଃଖ ଭୋଗୁଥିବାର ଦେଖିଲେ ମଣିଷ ଛାତିରେ ସହିବାଲାଗି କାହୁଁ ବଳ ଆସିଯାଏ । ବିତୁଥିବା ସମୟ ତାକୁ କହେ, ଏପରି ଘଟିବା ବି ହୁଏ ।

ୟାକୁ ଟାଳିବାକୁ ହେବ, କଣ୍ଟାଝଟା ସବୁ ଆଡ଼େଇବାକୁ ହେବ । ମାଡ଼ ଖାଇ ତଳେ ପଡ଼ିଯାଇଥିବା ଲୋକ ଯେତେ ଘାଇଲା ହେଲେ ବି ଟିକିଏ ବେଳ ପରେ ପୁଣି ଉଠେ, ନିଜ ଦେହ ମୁଣ୍ଡ ଆଉଁସି ବାଟ ଚାଲେ । ଫାତିମା ମାନିନିଏ, ଏଇଟି ହିଁ ତା' ଆଗରେ ଥିବା ବାଟ ଏବେ ।

ରାତିରେ ଶୋଇଲା ବେଳେ ଆଖିବୁଜିଲା କ୍ଷଣି ତା' ଆଗରେ ଉଭାହୁଏ ଛାଡ଼ିଆସିଥିବା ଆରେକ ଘର । ନିଜ ବିଷୟରେ ଭାବିବାକୁ, ନିଃଶ୍ୱାସ ମାରିବାକୁ ବେଳ ନାହିଁ, ଅଥଚ ମୁକ୍ତାର ଯାଏନାହିଁ ତା' ମନଭିତରୁ । ସବୁ କାମ ସବୁ କଥା ଭିତରେ ଉଙ୍କି ମାରୁଥାଏ ବୟସ ହେଲାଦିନୁ ତା' ମନର ମଝିଆସନ ମାଡ଼ି ବସିଥିବା ମଣିଷଟି ।

ଘାରୁଥାଏ ତାକୁ ଛାଡ଼ିଆସିଥିବା ସଂସାର । ପୁଣିଥରେ ବୁଝାପଡ଼େ ତାକୁ କଥାଟିଏ, ଯେଉଁ ସତଟିକି ସେ ଅଙ୍ଗେ ନିଭେଇସାରିଚି ପୂର୍ବରୁ, ଯେ ଘର ବୋଲି ଆପଣାର କରି ଯେଉଁଠି ଉଜେଇଁ ଦେବ ତମେ ନିଜକୁ, ସେଇଟି ସଦାବେଳେ ତମ ହାତରେ ନଥାଏ । ପୁଣି ଘର ଛାଡ଼ି ବାହାରି ଆସିଲାକ୍ଷଣି କ'ଣ ଘର ସତରେ ଛାଡ଼ିଦିଏ ମଣିଷକୁ ?

# ଅଚିହ୍ନା ଆପଣା ଗାଁ

ଉପର କାନ୍ଥ ଥାକରୁ କାଢ଼ି ଖଟ ଉପରେ ଗଦା ହେଇଥିବା କାଗଜମାନଙ୍କରୁ ଖୋଜୁଥିଲା ଫାତିମା, କ'ଣ ନାଆଁ ତାରିଖ ସବୁ ସେଥିରୁ ଦରକାର ବୋଲି ଶାରୁଖ୍ ଚଚା କହିଯାଇଚନ୍ତି । ଗ୍ୟାସ୍ କାଣ୍ଡର କ୍ଷତିପୂରଣ ବାବଦରେ ଟଙ୍କା ମିଳିବ ବୋଲି ଫର୍ମ ଭରାଯିବାଲାଗି କେତେଟା କାଗଜ ଦରକାର କାଳେ । ସେସବୁ କୋଉଠି ଅଛି, ଅଛି ଅବା ନ ଅଛି ଘରେ କାହିରିକି ଜଣା ନାହିଁ । ବାପାଙ୍କ ଛଡ଼ା କେହି ବୋଧେ କେବେ ହାତ ମାରିନଥିବେ ସେ କାଗଜ ପତ୍ରରେ, ସେଥିରୁ ଗୋଟି ଗୋଟି କରି ପଢ଼ି ଦେଖୁଥିଲା ବେଳେ ତାକୁ ପିଠିରୁ ହଲେଇ ଦେଇ ଜରୀନା ଡାକିଲା, "ଅପା ଉଠ୍ ଏଥର, ପରେ ହେବ ସେସବୁ ।" ଜରୀନାର ବାଁ ହାତରେ ଖାଇବା ଥାଳି, ଡାହାଣ ହାତ ଅଇଁଠା । କହିଲା, "ଚାଲିଲୁ ତୁ, ଅମ୍ମି ଜମାରୁ ଖାଉନାଇଁ, ଜିଦି କରି ବସିଚି ସେମିତି । ନେ ତୁ ଖୁଆଇ ଦେବୁ, ତୋ' କଥା କାଳେ ଶୁଣିବ । ମୁଁ ଯାଏଁ ବାସନ ଦିଇଟା ମାଜିଦିଏଁ, ଗଦାଏ ଜମା ହେଇ ରହିଲାଣି ।"

ତଳେ କାନ୍ଥକୁ ଆଉଜି ଚୁପ୍ ହେଇ ବସିଥିଲା ଅମ୍ମି । ଡାକ୍ତରଖାନାରୁ ତା'ର ଆସିବା କେତେଦିନ ହେଇଗଲାଣି, ସେମିତି ପିଠି କୁଜେଇ ମୁହଁ ପୋତି ହେଇ ବସିରହୁଚି, ରହି ରହି କାଶୁଚି ଘଡ଼ ଘଡ଼ ହେଇ, ସାଇଁ ସାଇଁ ହେଇ ନିଃଶ୍ୱାସ ନେଉଚି । ଶୁଖି କଳା କାଠ ପାଲଟିଯାଇଚି, ଆଖି ପଶିଯାଇଚି କୋରଡ଼ରେ । ଫାତିମା ଥାଳି ନେଇ ଅମ୍ମି ପାଖରେ ବସିଲା, ବୁଝେଇ କହିଲା, "ସକାଳୁ ଆସି ଦିପହର ହେଲାଣି, କିଛି ନଖାଇଲେ ଦେହ ଆଉରି ଦୁର୍ବଳ ହେଇଯିବ ଅମ୍ମି । ଖାଇଦିଅ ମୋ' ସୁନାଟି ।"

ଅମ୍ମିର ମୁହଁ ପାଖେ ଗୁଣ୍ଡା ଟେକିଧରି ରହିଥାଏ ଫାତିମା, ଅମ୍ମିର ପାଟି ସେମିତି ବୁଜାହେଇଥାଏ, ପେଜୁଆ ଆଖି ଅଧାନିଦରେ ଥିଲାଭଳି ଦେଖୁଥାଏ ସାମ୍ନା ଚଟାଣକୁ । ଏକଥା ନୂଆ ନୁହେଁ, ଜହର ଗ୍ୟାସ୍ ଢୋକିଥିବା ରୋଗୀମାନଙ୍କ ଏଭଳି ଅବସ୍ଥା ଘରେ ଘରେ । ଜରୀନା ରୋଷଘରୁ ପାଟିକଲା, "ଅପା, ଚାଲ୍ ଆମେ ଖାଇଦେବା, ଭୋକ ହେଲାଣି । ରେହମାନ

ଆଉ ହୀନା ଦିଦିଙ୍କର ଆସୁଆସୁ ସଂଜ ହେବ ।"

ଓଷଦ ଆଉ ଅଟା ଡାଲି ଚାଉଳର ରାଶନ ଲାଗି ଧାଡ଼ିରେ ଠିଆହେବାଲାଗି ଯାଇଚନ୍ତି ରେହମାନ ଓ ହୀନା । ପୁରୁଷ ଓ ସ୍ତ୍ରୀଙ୍କ ଲାଗି ଭିନ୍ନ ଭିନ୍ନ ଧାଡ଼ି । ନିଜେ ଦିନଟିଏ ନଗଲେ ଆଉ କିଏ ଅମୁକ ଲାଗି ନେଉଚି କହି ନେଇଯିବ ତାଙ୍କ ଭାଗ । ବନ୍ଧୁ ବାନ୍ଧବ ତ କମ୍ ନାହାନ୍ତି ଆମେ ଘରଲୋକ ବୋଲି କହି ଭାଗ ନେଇଯିବା ଲାଗି ।

ଫାତିମା ପୁଣି ଧୀରେକରି ପଚାରିଲା, "କାଇଁକି ଖାଉନୁ ଅମ୍ମି, ରାଗିଚୁ ମୋ' ଉପରେ ? ତୋ' ଦୁଷ୍ଟ ଝିଅ ଫାତିମା ଉପରେ ରାଗିଚୁ ଏଯାଏଁ ?"

ଦୃଷ୍ଟି ଉଠେଇଲା ଅମ୍ମି, ମୁହଁ ଖୋଲିଲା କ'ଣ କହିବ ବୋଲି, ହେଲେ ଛାତି ଭିତରୁ ଲଟିକାଶ ଉଠିଆସିଲା ତୁହାକୁ ତୁହା । ଫାତିମା ଗୁଣ୍ଡା ଥୋଇଦେଇ ପାଣି ଗିଲାସ ନେଲା ମା' ମୁହଁକୁ, ବାଁ ହାତରେ ପିଠି ଆଉଁସି ଦେଲା । ଟିକିଏ ବେଳ ପରେ ଅମ୍ମିର ମୁହଁ ଧୋଇଦେଇ ବିଛଣାରେ ଶୁଆଇଦେଲା ବେଳେ କିଛି ନହେଲା ଭଳି ସେ ପଚାରିଲେ ସେଇ ସାଇଁ ସାଇଁ ସ୍ୱରରେ, "ଫାତିମା ବେଟୀ, କେତେବେଳେ ଆସିଲୁ ତୁ ? କେଡ଼େ ସର୍ବନାଶ ହେଇଗଲା ଜାଣିଚୁ ନା ? ଭଲ ହେଲା ତୁ ନଥିଲୁ ସେଦିନ । କେବେ ଆସିଲୁ ?"

ଇଏ ପ୍ରଥମ ନୁହେଁ, ଘରକୁ ଆସିଲା ଦିନୁଁ ବେଳେବେଳେ ଅମ୍ମି ଏମିତି ପଚାରୁଚି । ହେଲେ ଉତ୍ତର ଦେଲାବେଳକୁ ଅଧା ଶୁଣୁଚି ଅଧା ନାହିଁ ।

ଫାତିମା ଅମ୍ମିର ଗୋଡ଼ ଖଟ ଉପରେ ସିଧା କରିଦେଇ ଚଦର ଖଣ୍ଡେ ଘୋଡ଼ି ଦେଉଦେଉ କହିଲା, "କେତେଦିନୁ ଆସିଲିଣି ପରା । ତମେ ଶୋଇପଡ଼, ପରେ ଉଠିଲେ କଥା ହେବା ।"

ପାଖ ବଖରାରୁ ଦାଦୀ ମା'ର ଚିଡ଼ା ସ୍ୱର ଶୁଭିଲା, "କାଇଁକି ଆଣିଲ ତାକୁ ଡାକ୍ତରଖାନାରୁ ? ସେଇଠି ପଡ଼ିଥାଆନ୍ତା, ସରକାରଠୁ ଓଷଦ ପତ୍ର ଖାଇବା ପିଇବା ତ ପାଉଥାଆନ୍ତା ? ଏଠିକି ଘରକୁ ନେଇଆସି ଆଉରି ଗୋଟାଏ ମୁସିବତ୍ । ଯାଇ ଛାଡ଼ିଦେଇଆସ ତାକୁ ସେଇଠି । ସେ ଘରେ ରହିଲେ ବା କୋଉ କାମର ?"

ଓଠରେ ଆଙ୍ଗୁଠି ଦେଇ ଦାଦୀମା'କୁ ଇଶାରା କଲା ଫାତିମା, ଚୁପ୍‌ଚୁପ୍ କରି କହିଲା, "କ'ଣ ଏମିତି କହୁଚୁ ଦାଦୀ ? ଅମ୍ମି ସବୁ ଶୁଣୁଚି, ବୁଝୁଚି ।"

ଦାଦୀମା' ଆଉରି ବଡ଼ ପାଟିରେ କହିଲା, "ବୁଝୁଚି କିଏ ନାଇଁ କରୁଚି କି ? ବୁଝୁଚି ଯଦି ଏମିତି ପେଖନା କରି ପଡ଼ିରହୁଚି କାଇଁକି ? ସମସ୍ତେ ଯଦି ତାକୁ ସେବା କରିବେ ଘରର ଦାୟିତ୍ୱ କିଏ ନେବ ?"

ଫାତିମା ଅଧୈର୍ଯ୍ୟ ସ୍ୱରରେ କହିଲା, "ତମେ ସେକଥା କାଇଁକି ଚିନ୍ତା କରୁଚ

ଦାଦୀମା' ?"

ଦାଦୀମା' ଏଥର ଚଢ଼ା ସ୍ୱରରେ ଜବାବ ଦେଲେ, "ମୁଁ ଚିନ୍ତା କରିବିନି, ଆଉ କିଏ କରିବ, ତୁ ? ଏ ଘରେ ଆଉ କିଏ ଅଛି ଚିନ୍ତା କରିବା ଲାଗି ମୋ' ଛଡ଼ା ? ତୋତେ ଏ ଘରର ଚିନ୍ତା ଲାଗିଲାଣି କେବେଠୁ ଶୁଣେ ?"

ଏମିତି ଘାଘଡ଼ା ଫଟା ସ୍ୱର ଦାଦୀମା'ର ଗଳାରୁ ବାହାରିପାରେ, ଆଜିଯାକେ ଧାରଣା ନଥିଲା ଫାତିମାର ।

ତୁନି ହେଇ ବାହାରିଆସିଲା ଫାତିମା । ବାରଣ୍ଡା କଡ଼ରୁ ସିଲେଇ ମେସିନ୍ ଉପରେ ଢଙ୍କା ଚଦର ଘୁଞ୍ଚେଇ ତାଆରି ପାଖରେ ବସିପଡ଼ିଲା । ମନେପଡ଼ିଲା କୋଉ ପିଲାଦିନର ଗପଟିଏ । ବୋଧେ ଚୀନଦେଶର ଗପଟିଏ, ସାହିତ୍ୟ ବହିରେ ଥିଲା । ସାନ ପିଲାଟିଏ ସମୁଦ୍ର କୂଳରେ ମନଖୁସିରେ ବୁଲୁଥିଲା । କାହୁଁ କଇଁଚଟିଏ ଉଭାହେଲା ଆଉ ହାତଠାରି ଡାକିଲା ତାକୁ, ଆ ମୋ' ସାଥିରେ ନେଇଯିବି ତୋତେ କୁହୁକ ରାଇଜକୁ । ଖେଳରେ ଖେଳରେ କଇଁଚ ପିଠିରେ ବସି ଚାଲିଯାଇଥିଲା ପିଲାଟି ସମୁଦ୍ର ଢେଉ କାଟି କାଟି, ପାତାଳ ପୁରୀରେ ଥିଲା ସେ କୁହୁକ ରାଇଜ । ହେଲେ ଦିନ ତିନିଟା ପରେ ପୁଣି ଫେରିଆସିଲା ଯେବେ ନିଜ ଭୂଇଁକୁ, ତା'ର ଚିହ୍ନିଥିବା ଜାଣିଥିବା ଗାଁ ଗଣ୍ଡା ସଂସାର ଆଉ କିଛି ହିଁ ନଥିଲା । ପୂରାପୂରି ଅଚିହ୍ନା ରାଇଜଟିଏ ସେଠି । ନୂଆ ଲୋକ, ନୂଆ ବେଶବାସ ଘର ଦ୍ୱାର । ଚିହ୍ନା ମୁହଁଟିଏ ବି କୋଉଠି ନାହିଁ । ଧନ୍ଦି ହେଲା ପିଲାଟି, କାହିଁଗଲା ତା'ର ଛାଡ଼ିଯାଇଥିବା ଗାଆଁ, କାହାନ୍ତି ସେ ଲୋକବାକ, କାହିଁ ଗଲା ତା'ର ଛାଡ଼ିଯାଇଥିବା ସେ ଜୀବନ । ସମୁଦ୍ର ପାଖକୁ ଫେରିଗଲା ବେଳକୁ ସେ କଇଁଚ ବି ଆଉ ନାହିଁ, ତା' ନାଁ ଧରି ଯେତେ ଡାକିଲେ ବି କେହି ଆଉ ଶୁଣିବାକୁ ନାହିଁ ।

କବାଟ ବାଡ଼େଇଲାଣି ପୁଣି କିଏ, ହେଇଥିବେ ପୁଣି ସେଇ ସ୍ୱେଚ୍ଛାସେବୀ । କିଏ ସେ କୋଉ ଦଳର ଠଉର କରିବା କଷ୍ଟ, କୋଉ ଦଳର କଥା ମାନିବ କାହାକୁ ମନା କରିବ ଜାଣିବା ମୁସ୍କିଲ୍ । ମୁଣ୍ଡରେ ଓଢ଼ଣୀ ଦେଇ ଫାଳେ କବାଟ ଖୋଲି ପଚାରିଲା ଫାତିମା, "କହନ୍ତୁ କ'ଣ କହିବାର ଅଛି ?"

"ସଲାମ୍ ଦିଦି, ଫର୍ମ ମିଳିଯାଇଚି ତ ?"

"ହଁ, ଚାରି ଥର ଆସି ଲୋକ ଫର୍ମ ଦେଇ ଗଲେଣି । ହେଲେ ଭରିବାଲାଗି କାଗଜପତ୍ର ସବୁକଥା ଆମ ପାଖେ ଥିଲେ ତ ?"

"କିଛି କଥା ନାଇଁ ଦିଦି, ଆମେ ହେଉଚୁ ତମରି ସାଇର ଦଳ । ଆରମ୍ଭରୁ ଆମେଇ ତମ ଘରେ ରାଶନ ଦେଇ ଆସୁଚୁ ନା ନାଇଁ ? ଅନ୍ୟ ମାନଙ୍କ କଥା ତମେ ଶୁଣିବା ଦରକାର ନାଇଁ । ଯେତିକି ଖବର ଯେମିତି ପାରୁଚ ଶିଘ୍ର ଭରି ଦେଇଦିଅ ଆମକୁ, କିଛି ଚିନ୍ତା ନାଇଁ ।

ଆମେ ଚାହୁଁ ଆମ ଲୋକ ସମସ୍ତଙ୍କୁ ଜଲ୍‌ଦି କେମିତି ମିଳୁ ତାଙ୍କ କ୍ଷତିପୂରଣ ।"

ଫାତିମା ନରମ ଗଳାରେ କହିଲା, "କାଲି ସୁଦ୍ଧା ଭରିଦେଇଥିବି ଭାଇ । ଆପଣ ଆସିବେ ନା ଆମେ ଯାଇ ଜମାକରିଦେବୁ ଗ୍ୟାସ୍ ରାହତ ଅଫିସ୍‌ରେ ?"

"କାଲିକି ଆସିବୁ ଆମେ ଅପା । କିଛି ଚିନ୍ତା ନାହିଁ ।"

ରୋଷେଇ ଘରେ ଫାତିମା ପଚାରିଲା ଜରୀନାକୁ, "ତୋର ମନେଅଛି ତ, ଏଇମାନେ ଦେଇଥିଲେ ନା ଖାଇବା ରାଶନ ସବୁ ?" ଖାଇବା ବାଢ଼ିଦେଉ ଦେଉ ଜରୀନା କହିଲା, "କିଏ ସେମାନେ ସବୁ ଆଣି ଦେଉଥିଲେ ଆଉ କ'ଣ ମନେଅଛି ଅପା । ତମେ ତ ନଥିଲ ସେତେବେଳେ । ଏଠା ଲୋକ କୋଉଠୁ ଦେଇଥାନ୍ତେ ଯେ ? ନୂଆ ସହରଆଡ଼ର ଲୋକେ ଥିଲେ ସବୁ । ସେମାନେ ଦେଇନଥିଲେ ଆମେ ତ ଭୋକ ଉପାସରେ ମରିଯାଇଥାନ୍ତୁ ।"

କାହାରି ମନେନାହିଁ, କେହି ହିସାବ ରଖିନାହିଁ ସେ କାଳରାତି ପରେ ପରେ କିଏ ସବୁ ଦେଇଥିଲେ, କେତେ କ'ଣ ଦେଇଥିଲେ, ନିଜ ନାଁ ଗାଁ ନ କହି ବିନା ପଚରା ଉଚରାରେ କାହିଁକି ହାତ ବଢ଼େଇଦେଇଥିଲେ ଲୋକେ ଅଚିହ୍ନା ଲୋକଙ୍କ ଆଡ଼େ । ଯୁଦ୍ଧ ପରେ ରାଜ୍ୟରେ ବଂଚିଯାଇଥିବା ଲୋକଙ୍କ ଅବସ୍ଥା ନିଶ୍ଚେ ଏଇଭଳି ହେଉଥିବ । ନିଜ ପର ମିତ୍ରଭାବ ବୈରଭାବ ଭୁଲାଇଦିଏ ବୋଧହୁଏ ସେଭଳି ସମୟ । ଏଇକ୍ଷଣି ବଂଚିବାର ଚିନ୍ତା, ଯୁଝିବାଲାଗି ବଳ ଆଣିଦିଏ ଏକାଠି ଲଢ଼ିବାର ବିଶ୍ୱାସ । ନିଜ ଲାଗି ବଂଚୁଥିବା ଭିତରେ ପୁଣିଥରେ କେଉଁଦିନୁ ପୋତିହେଇ ରହିଥିବା ମଣିଷପଣିଆ ଟିକିଏ କାହୁଁ ବାହାରିପଡ଼େ, ହାତ ପାଆନ୍ତାରେ ଯାହା ଥାଏ ବାଣ୍ଟିନିଏ ମଣିଷ ଦୁଃଖରେ କୁହୁଳୁଥିବା ପାଖଲୋକଟି ସାଙ୍ଗରେ, ନିଜ କୋରଡ଼ ଭିତରୁ ବାହାରି ସଂପ୍ରସାରିତ ହୋଇଯାଏ ମୁଁ ଟି ।

ତେବେ ବେଶୀବେଳ ରହେନାହିଁ ସେ ଭାବ । କାହୁଁ ମୁଣ୍ଡକାଢ଼ି ପୁଣି ବହୁଗୁଣରେ ଫଣା ଟେକେ ଆପଣା ଲାଗି ଲୋଭ । ନିଜ ନିଜ ଖୋଳପା ଭିତରକୁ ଫେରିଆସେ ହେତୁ ପାଇଲା ଦିନୁ ସ୍ୱାର୍ଥର ଦଉଡ଼ିରେ ବନ୍ଧାଛନ୍ଦା ବାମନ ମଣିଷଟି । ପାଖ ଲୋକକୁ ଲୁଚେଇ ପୁଣି ସାଉଁଟିବାକୁ ଆରମ୍ଭ କରେ ଆପଣାଲାଗି କେଇ ମୁଠା ପାଦତଳର ଧ୍ୱଂସାବଶେଷ ଭିତରୁ ।

କାଲିର ଟିକି ଝିଅ ଜରୀନା ଜ୍ଞାନ ଦିଏ ଫାତିମାକୁ – "କାହା କଥା ଆମେ ଶୁଣିବାନି ଅପା, ଏମାନେ ସମସ୍ତେ ନିଜ ଫାଇଦା ଲାଗି ଆସୁଚନ୍ତି । କାଲି ଶୁଣିଲୁନି ଜିପ୍‌ରେ ଠେଙ୍ଗା କ'ଣ କହୁଥିଲା ।"

ଖରା ନଇଁ ଆସିଲାବେଳକୁ ହୀନା ଫେରିଲା ଏକୁଟିଆ । ଛାନିଆଁରେ ଫାତିମା ପଚାରିଲା ତାକୁ, "ରେହମାନ କାହିଁ, ତୁ ଏକୁଟିଆ ଆସୁଚୁ ବାଟରେ ? ତୋ'ର ଡର ଭୟ ନାହିଁକି ଜରୀନା ? କାଲିଠୁ ମୁଁ ଯିବି, ତୋ'ର ଯିବା ଦରକାର ନାହିଁ ।"

ହୀନା ନିଶ୍ଚିନ୍ତରେ କହିଲା, "କାହିଁ ଏଡ଼େ ବ୍ୟସ୍ତ ହେଉଚ ଯେ ଅପା ? ସବୁ ଝିଅମାନେ ଯାଉଚନ୍ତି ଗ୍ୟାସ୍ ରାହତ ଅଫିସ୍‌କୁ । ମୋ' ସାଙ୍ଗରେ ଆଉମାନେ ଥିଲେ ଏଇ ଛକ ଯାଏଁ । ସମସ୍ତଙ୍କ ଘରେ କ'ଣ ଖାଲି ପୁରୁଷ ଲୋକ ଅଛନ୍ତି ଲାଇନ୍ ଦେବାକୁ ?"

"ହେଲେ ରେହମାନ କାହିଁ ? ସକାଳୁ ଯାଇଚି ଅଖିଆ ଅପିଆ ?"

"ସେଠୁ ତାକୁ ସ୍ଲୋଗାନ୍ ଜୁଲୁସ ବାଲା ଡାକିନେଇଗଲେ, ତାଙ୍କରି ସାଙ୍ଗରେ ଯାଇଚି ସେ । କହୁଚନ୍ତି ଯିଏ ଜୁଲୁସରେ ଯିବ ତାକୁ ଆଗ ପଇସା ମିଳିବ ।"

"ହଉ ଯାଉ ସେ ଅପା, ସମସ୍ତେ ତ ଜୁଲୁସରେ ଯାଉଚନ୍ତି । ଆସିଲୁ ହୀନା, ହାତ ମୁହଁ ଧୋଇ ଋଲିଆ ଖାଇଦେ ଆଗ ।" ଜରୀନା ବୟସ୍କା ମୁରବୀ ଭଳି ତାକୁ ପାଚିକରୁଚି ।

ପୁଣିଥରେ ଯାଇ ସିଲେଇ ମେସିନ ପାଖରେ ଚୁପ୍ ହେଇ ବସୁଚି ଫାତିମା । ହୀନା ଆଉ କଲେଜ ମାଡ଼ିଲା ନାହିଁ, ମ୍ୟାଟ୍ରିକ୍ ପରେ ତା' ପାଠରେ ଡୋର ବନ୍ଧା ହେଲା । ଜରୀନାର ଏଇ ନବମ ହେଲା । ରେହମାନର ସ୍କୁଲ ସରିବାକୁ ଆହୁରି ଅନେକ ଡେରି । ସ୍କୁଲ ଯାଉଚି କି ନାହିଁ ସେ କେଜାଣି ।

କବାଟରେ ହାତ ମାରୁଚି କିଏ ସେ । ରେହମାନ ନା ପୁଣି ସେଇ ଶାରୁଖ୍ ଋଚା ? ଫାତିମା ତା' ଜେଜେ ବୁଢ୍ୱୀଙ୍କ ପାଖକୁ ଯାଇ ପଋରୁଚି, "କ'ଣ ଦାଦୀମା', କୁଆଡ଼େ ଗଲା ତମ ମୁରବୀ ପଣିଆ ? ସବୁଦିନେ ଏ ଶାରୁଖ୍ ଋଚା ସଂଜବେଳଟାରେ ଆସୁଚନ୍ତି କାହିଁକି ଯେ ?"

# କେତେ ଦିଗରୁ ବହୁଥାଏ ପବନ

ଦାଦୀମା ଲାଗି ହିଁ ଲେଖା ଯୋଖାର ଘର ଶାରୁଖ୍ ଆଣିଥିଲେ ଦୋକ୍ତା ଆଉ କିମାମ୍ ମସଲା । ଏକୁଟିଆ ନୁହେଁ, ସାଙ୍ଗରେ ରେହମାନକୁ ଆଣିଥିଲେ । ହୋ ହୋ ହେଇ ହସୁ ହସୁ ଅଗଣାକୁ ପଶିଆସି କହିଲେ, "ଦେଖ କାହାକୁ ଧରି ଆଣିଚି । କିରେ ଏଡ଼େ ବ୍ୟସ୍ତ ହେଇ ରାତି ଦିନ ଧାଇଁଚି କାଇଁକି ଏ ଟୋକାଟା । ଶାନ୍ତିରେ ମା' ପାଖରେ ଜେଜେମା ପାଖରେ ବସୁନି କାଇଁକି, ଇସ୍କୁଲ ନଗଲା ନାଇଁ ।"

ରେହମାନ ଝାଳନାଳ ହେଇଯାଇଥିଲା, ବସିପଡ଼ି ଥକ୍କା ସ୍ୱରରେ କହିଲା, "ଆମେ ଛାଡ଼ିବୁନି ଫିରିଙ୍ଗି କମ୍ପାନୀକୁ ତମେ ଦେଖିବ । ଶୁଣିଲ ନାଇଁ ଆମ ଇର୍ଫାନ୍ ଭାଇ କ'ଣ କହୁଥିଲେ ଆଜି ଜୁଲୁସ୍‌ରେ ।"

ଶାରୁଖ୍ ଘର ନିଶ୍ଚିନ୍ତରେ ପାନ ଘେବାଇ କହିଲେ, "ଆରେ ଦିନ କେଇଟାରେ କ୍ଷତିପୂରଣ ପଇସା ଆସିଯିବ, ଚିନ୍ତା କରନି । ଫିରିଙ୍ଗୀ କମ୍ପାନୀ ବଳେ ପଇସା ଦେବ, ଯିବ କୁଆଡ଼େ ? ସଂସାରରେ ସବୁଠୁ ବଡ଼ ଇଣ୍ଡଷ୍ଟ୍ରିଆଲ ଦୁର୍ଘଟଣାଟି ଇଏ । ଆମରି ସହରରେ ହେଇଚି, ଭୋଗିଚୁ ଆମେ । ସରକାର ବାହାଦୂର ନିଜେ ଲଢୁଚନ୍ତି, ତମେ କାଇଁକି ମିଛଟାରେ ଉଠ୍‌ବସ ହଉଚ ? ପଇସା ଆସିବ ପ୍ରଚୁର, ଦିନକେତେଟା ଖାଲି ସବୁର କରିଯିବା କଥା । ଧୈର୍ଯ୍ୟ ଧର, ଦେଖ ଖାଲି କ'ଣ ହେଉଚି ଆଗକୁ ।"

ରାତିରେ ରୋଷେଇ କରୁକରୁ ହୀନା କହିଲା, "ଅପା, ସିଲେଇ କାମ ବନ୍ଦ ହେଇଯାଇଚି କୋଉଦିନୁ । ବାପା ଚାଲିଗଲେ, କିଛି ବ୍ୟବସ୍ଥା କରିଦେଇ ଗଲେନାଇଁ । ସରକାରୀ ରାହତ ଅଫିସରୁ ସେଇ ପ୍ରଥମ ଯାହା ଦି'ତିନି ହଜାର ଟଙ୍କା ମିଳିଥିଲା, ସରିଗଲାଣି । କ'ଣ କରିବା ?"

ଫାତିମା ଘରକୁ ଫେରିଲା ଦିନୁ ଶୁଣୁଥିଲା ଯେ ଗଲା ଦି'ବର୍ଷ ହେଲା ହୀନା ଲାଗି ପ୍ରସ୍ତାବ ଆସିଚି କେତେଆଡୁ, ପ୍ରତିଥର ମନେହେଇଚି ଏଥର ନିଶ୍ଚେ କିଛି ଫଇସଲା ହେଇଯିବ । ପ୍ରତିଥର ଫସର ଫାଟିଯାଇଚି । ଫାତିମାର ମନରେ ଆଙ୍କି ହେଇଯାଉଚି କେମିତି ହେଇଥିବ ସେ ଦୃଶ୍ୟ ସବୁ । ତାକୁ ଏକଥା ବି ଅଜଣା ନୁହେଁ ଯେ ହୀନା ଲାଗି ଖୁବ୍ ଭଲ ପ୍ରସ୍ତାବ ଆସିନଥିବ । ବଡ଼ଝିଅ ନିକାହ ନକରି ଘରୁ ଲାପତା ହେଇଗଲା ଘରକୁ ସହଜରେ ଭଲ ବରଘର ଆସିବେ ଅବା କେମିତି ।

ଶୋଇବାକୁ ଗଲାବେଳକୁ ଆଉରି କେତେଥର ପରି ଆଜି ବି ଦାଦୀମା' ପଚାରୁଚି, "ତୋ ସାମୀ ତୋତେ ବାପଘରକୁ ପଠେଇଦେଇ ତୁନି ହେଇ ବସିଚି କେମିତି ? ତା' କଥା କିଛି କହୁନୁ ଯେ ତୁ ?"

ଫାତିମା ବିଛଣାରେ ଗଡ଼ି ପଡୁ ପଡୁ ଆଜି ବି କହୁଚି, "କ'ଣ ଆଉ କହିବି ଦାଦୀମୀ' ? ସେ ମୋ' ଉପରେ ରାଗିଚନ୍ତି । ନେବାକୁ ନ ଆସିଲେ ମୁଁ ଆଉ କରିବି କଅଣ ? ଏମିତି ଅବସ୍ଥାରେ ତମକୁ ସବୁ ଛାଡ଼ିଦେଇ ପଳେଇବି ?"

ଆଜି କିନ୍ତୁ ଲାଇଟ୍ ଲିଭେଇ ଅନ୍ଧାର ହେବା ପରେ, ମାଆର ଧଇଁ କାଶ ଟିକିଏ ଶାନ୍ତ ହେଇଯିବା ପରେ ଜେଜେମା ପଚାରିଲା, "ଫାତିମା ବେଟୀ, ସତ କହିଲୁ, ତୋ'ର ତା' ସାଙ୍ଗରେ ବାହାଘର ହେଇଥିଲା ତ ? ଘରୁ ତ ଲୁଚି ପଳେଇଥିଲୁ ତୁ କାହା କଥା ନମାନି । ହେଲେ ସେଠି ଯାଇ କାଜୀ ଆଗରେ ତମେ ଦିହେଁ ନିକାହ କରିନେଇଚ ତ ଝିଅ ?"

ଦାଦୀମା'ଠୁ ଶେଷରେ ସେଇ ପ୍ରଶ୍ନ ଆସିଚି ଯାହାକୁ ସେ ଡରୁଥିଲା ଏଯାଏଁ । ଜାଣିଥିଲା ସେ, ଏଇ ପ୍ରଶ୍ନ ଆସିବ ଦିନେ । ଆସିନଥିଲା ଏଯାଏଁ ଘରର ଅବସ୍ଥା ଲାଗି । ହେଲେ ଜେଜେମା'ର ପରଳିଆ ଆଖିକୁ ଫାଙ୍କି ଦେବ କେତେଦିନ କଥାଟି ?

ନିଦରେ ବାଉଳି ହେଲାଭଳି ଗୁଁ ପୁଁ ହେଇ ଫାତିମା ଜବାବ ଦେଲା, "କ'ଣ ସବୁ ତୁ କହୁଥାଉ ଦାଦୀମା । ମୁଁ ଶୋଇବି ଯାଉଚି ।"

ନିଶ୍ଚୁପ୍ ଅନ୍ଧାରରେ ଅତି ସ୍ପଷ୍ଟ ଶୁଭିଲା ଦାଦୀମା'ର ପ୍ରଶ୍ନ, ଏଥର ଘର ବୋଝରେ ଘାଘଡ଼ା ନୁହେଁ କି ଭଙ୍ଗାଭଙ୍ଗା ନୁହଁ । ସିଧା ସଳଖ ଚିହ୍ନା ଗଳାରେ ପଚାରୁଥିଲା ସେ, "ତୋ ମିଆଁ ଥରେହେଲେ ଆସିଲା ନାଇଁ କାଇଁକି ଝିଅ ? ନିକାହ ଯଦି କଲ ଘରକୁ ଆସିଲ ନାଇଁ କେବେ ଏକାଠି ?"

ଏଥର ଚିତ୍ ହୋଇ ଶୋଇ କଳା ଅନ୍ଧାର ଛାତକୁ ଅନେଇ ଉତର ଖୋଜିଲା ଫାତିମା । ଦାଣରୁ କୋଉଠୁ ଟେନାଏ ଆଲୁଅ ଆସି ଛାତର ଗୋଟାଏ କଣରେ ପଡୁଥିଲା । ସେଇଠି ଆଖି ରଖି ଉତର ଦେଲା ସେ, "ଆମର ଅବସ୍ଥା ଭଲ ନୁହେଁ ଦାଦୀମା' । ବଡ଼ ଅଭାବରେ

ଚଳୁଥିଲୁ ଏଠୁ ଗଲାଦିନୁ । ହାତରେ ପଇସା ଥିଲେ ସିନା ଆସନ୍ତୁ । ଡର ଲାଗୁଥିଲା ବାପାଙ୍କୁ, ମାଆଙ୍କୁ ବି । ତାଙ୍କର ତ ଜମାରୁ ପସନ୍ଦ ନଥିଲା ସେଠି, ତୁ କଣ ଜାଣିନୁ ?"

ଦାଦୀମାର ପରଳ ଢଙ୍କା ଆଖି ରାତି ଅନ୍ଧାରରେ ବି ଆହୁରି କିଛି ଦେଖିପାରେ ତା' ନିଜ ପିଲାଙ୍କ କଥା ପଛପାଖେ, ଏକଥା ଫାତିମାର ଅବୁଝା ନଥିଲା । କେତେବେଳର ଚୁପ୍ କାଟିଦେଇ କହିଲା ଦାଦୀମା', "ବାହା ନ ହେଇ ସ୍ତ୍ରୀ ପୁରୁଷ ଏକାଠି ରହିବା ବଡ଼ ଦୋଷ ଝିଅ । ଆମର ଭୋଜିଭାତ ଲୋଡ଼ା ନଥିଲା । ନିକାହଟା କରିପକେଇଥାନ୍ତ ସିନା । ସେତିକି ଜାଣିଥିଲେ ତୋ' ବାପା ଯିବା ପୂର୍ବରୁ ଶାନ୍ତି ପାଇଥାନ୍ତା ।"

ଫାତିମା ଏଥର ମୁହଁ ବୁଲେଇ ତକିଆରେ ମାଡ଼ି ଅତର୍କିତ ଭାଙ୍ଗିପଡ଼ିଲା କାନ୍ଦରେ । ଅନ୍ୟ କାହା କାନରେ ସେକଥା ପଡୁ ନପଡୁ ନିସ୍ତବ୍ଧ ରାତିରେ ଆଉ କିଛି ହେଲେ ସ୍ୱର ନଥିଲା ତା' ବ୍ୟତୀତ ।

କେତେବେଳକେ ଦାଦୀମାର କଥା ପୁଣି ଶୁଭିଲା, ଏଥର ପୁଣି ଜରାଜୀର୍ଣ୍ଣ ଥରିଲା ସ୍ୱରଟିଏ – "ଯାହା ଗଲା ଗଲା । ଭାବିଲେ ଆଉ କି ଲାଭ । ତୋ' ବାପ ଭାଇ ଯିବାର ତ ଚାରିମାସ ଯାଇସାରିଲାଣି । ଏଥର ନିକାହଟା କରିପକା ବେଟୀ ।"

କୋହକୁ କୌଣସିମତେ ଢୋକିପକେଇ ଅନନ୍ୟୋପାୟ ହେଇ ଫାତିମା କହିଲା, "ଆଉ କିଛି ଏବେ ହେଇପାରିବନି ଦାଦୀମା' । ଆମର ତ ତଲାକ ଯାଏଁ କଥା ଗଲାଣି । କହିବାକୁ ଗଲେ ସରିଲାଣି ଆମର ଏକାଠି ଜୀବନ, ଛାଡ଼ପତ୍ର ହେଇସାରିଲାଣି ।"

ତୁନିତାନି ବଢୁଥିବା ରାତିରେ ଏଥର ଆଉକିଛି ହେଲେ ଶୁଣାଗଲା ନାହିଁ । କେତେବେଳକେ ଫାତିମା ନିଜେ ହିଁ ପଚାରିଲା, "ଦାଦୀମା', ଘର ଛାଡ଼ି ଚାଲିଗଲି, ସେତେବେଳେ ତୋତେ ପଚାରିଲି ନାହିଁ, ଦୋଷ ମାନୁଚି । ମୋ' ବୁଦ୍ଧି ବାମ ହେଇଥିଲା ।"

ଦାଦୀମା' ଉତ୍ତର ଦେଲା ନାହିଁ । ଅନ୍ଧାରରେ ଅଣ୍ଡାଳି ଖଟ ତଳେ ରଖା ପାନ ବଟୁଆରୁ ଗୁଆ ଆଉ ଧୂଆଁପତ୍ର ଟିକେ ନେଇ ପାଟିରେ ପକାଇଲା । ତକିଆ ଉପରେ ମୁଣ୍ଡର ବୋଝ ଲଦିଦେଇ କହିଲା, "ସେଇ ଆଲ୍ଲା ବୁଝିବେ ସବୁ । ଆମ କହିବାରେ ଚାହିଁବାରେ କ'ଣ କିଛି ହେଲାଣି ?"

କିଏ ସେ କେଜାଣି ଗଳିବାଟରେ ସାଇକଲ ଟିଣି ଟିଣି କରି ଯାଉଚି । ଯେତେ ନାହିଁ କଲେ ବି ମନେପଡ଼ିଯାଉଚି ଗଲା ଦିନ । ପ୍ରେମରେ ପଡ଼ିଥିବାର ସେ ଦିନମାନ । ରାତିରେ ମୁନ୍ନାର ଗଳିବାଟ ଦେଇଯାଏ, ସାଇକଲ ଘଣ୍ଟି ବଜାଏ ଟିଣିଟିଣିଟିଣି । କହିରଖିଥାଏ ଫାତିମାକୁ, ଏମିତି ବଜେଇବି ମୁଁ, ତିନିଥର ଲେଖାଁ ଟିଣିଟିଣିଟିଣି । ତମେ ଜାଣିବ ଯେ ମୁଁ ଯାଉଚି । ରାତିରେ କାନ ପାତି ଶୁଣେ ଫାତିମା ସେ ସ୍ୱରକୁ । ଥରେ ଯାଏ ବାଜିବାଜି । ଦଶ

ପନ୍ଦର ମିନିଟ୍ ଯାଇଥିବକୁ ନାଇଁ ପୁଣି ଥରେ । ଥରେ ରାତି ବାରଟା ପାଖାପାଖି ବାଜିଲା ଘଣ୍ଟି । ଗଳିରେ ପାଖ ଘରୁ ଜଣେ କିଏ ବଡ଼ପାଟିରେ ଧମକ ଦେଲା, "କିଏ କିରେ ସେଠି ? ଘଣ୍ଟି ବଜଉଚି ରାତି ଅଧରେ, ବସିବ ପିଠିରେ ମାଡ଼ଟାଏ ଯେ ରସିକାମି ଛାଡ଼ିଯିବ ।" ଛାତି ଧଡ଼ପଡ଼ ହୁଏ ଫାତିମାର । ତା' ପରଦିନ କେଉଁ ବାଗରେ ମୁକ୍ତାରକୁ ଖବର ପଠାଏ, କେତେ ଆଳରେ ଟିକିଏ ବେଳଲାଗି ହେଉପଛେ ଭେଟେ, ଏତିକି କହିବାଲାଗି ଯେ ରାତିରେ ଆଉ ଆମ ଗଳିରେ ଘଣ୍ଟି ବଜେଇବନାଇଁ । ମୁକ୍ତାର କହେ, "କୋଉଠି ବଜେଇବି ତେବେ, ବରଗଛ ତଳେ ?"

ଫାତିମା ହସିପକାଏ ମୁହଁରେ ଓଢ଼ଣୀ ଜାକି । ଭୁରୁ କୁଂଚେଇ କହେ, "ତା'ହେଲେ ମୋତେ ଶୁଭିବ କେମିତି ଏତେ ଦୂରରୁ ?" ମନେଅଛି, ଏକ୍ୱାରିୟମରେ ଭେଟିଥାଆନ୍ତି ସେମାନେ ଏଇ କଥାବାର୍ତ୍ତା ବେଳେ । ମଛଲୀଘରର ଅନ୍ଧାରୁଆ ଗଳିମାନଙ୍କ ଭିତରେ କାଚ କାନ୍ଥ ପଛପାଖେ ପହଁରୁଥିବା କେତେ ରଙ୍ଗର ମାଛମାନଙ୍କୁ ଦେଖୁଥାଆନ୍ତି ଦିହେଁ । ମୁକ୍ତାର ପଚାରେ, "କେଉଁ ମାଛ ତମର ପସନ୍ଦ କହ, ହାଟରୁ ଆଣିଦେବି, ଖାଇ କହିବ କେମିତି ଲାଗିଲା ।" ଫାତିମା ମୁହଁ ବିଚିକାଇ କହେ, "ଛିଃ, ଖାଇବା କଥା ତମର ମନକୁ କେମିତି ଆସୁଚି । ଏଡ଼େ ସୁନ୍ଦର ମାଛମାନ କୋଉଠି ଥାଆନ୍ତି କେଜାଣି, ମୋର ତ ମନ ହୁଏ ପାଖରେ ରଖନ୍ତି ଏମିତି ମାଛମାନଙ୍କୁ, ଦିନ ରାତି ଦେଖୁଥାଆନ୍ତି ।" ମୁକ୍ତାର ତା' ପରଦିନ କେଉଁଠୁ ମାଛଟାଏ ନେଇ ଘରେ ପହଂଚି ଯାଇ ଫାତିମାର ବାପାଙ୍କୁ ମିଛ କହିଥିଲା, "ଆମ ଗାଁ ପୋଖରୀରୁ ମାଛ ଆସିଥିଲା ମଉସା, ଆପଣଙ୍କ ଲାଗି ଗୋଟାଏ ନେଇ ଆସିଲି, ନାଇଁ କରିବେନି ।" ଆଜି ରାତି ଅଧରେ ସେ କଥା ମନେପଡ଼ିଲା ବେଳକୁ ଆଖିରୁ ଗରମ ଲୁହଧାର ବହି ତକିଆ ଓଦାହେଲା ବେଳେ ବି ମୁହଁକୁ ହସ ଚାଲିଆସୁଚି । ଦେଖା ହେଲା ପରେ ଫାତିମା କହିଥିଲା, "ଛି ଛି, ତରକାରୀ ଲାଗି ମାଛ ନୁହଁ, ମୋତେ ଗୋଟେ ନୀଳ ମାଛ ଆଣିଦେବ, ପୋଷିବି ।" ମୁକ୍ତାର ଭାବିଲାଭଳି ହେଇ କହିଲା, "ସେଇ ମଛଲୀ ଘରେ ଚାକିରୀଟାଏ କରିବାକୁ ହେବ ଆଉ କ'ଣ ?" ତା'ପରଠୁ ମୁକ୍ତାର ନୀଳରଙ୍ଗର ମାଛ ଆକାର ଗୁଡ଼ିଟିଏ ଉଡ଼େଇଥିଲା ଆକାଶରେ, କେଉଁଠୁ ବରାଦ କରି ତିଆରି କରାଇଥିଲା । ନିଜ ଘର ଛାତରୁ ଆକାଶରେ ତରକେଇ ତରକେଇ ଉଡ଼ୁଥିବା ସେଇ ମାଛ ଗୁଡ଼ିଟି କଥା ବି ମନରେ ଅଙ୍କା ହେଇରହିଚି ଫାତିମାର । ମୁକ୍ତାର କହେ, "କାଲି ରାତିରେ ଜହ୍ନକୁ ଦେଖିଥିଲ ? ମୁଁ ଯାଇ ବରଗଛ ଚଉତରାରେ ବସିଥିଲି, ଅଧରାତି ଯାଏଁ । ତମେ ଥରେ ମୋ' ପାଖକୁ ଆସିଗଲେ କଅଣ ହେଇଯିବ କହିଲ ?" ଫାତିମା ଉତ୍ତରରେ ଜବାବ ଦିଏ, "କ'ଣ ଆଉ ହେବ ? ମୋ' କଥା ଭାବିବା ବନ୍ଦ କରିଦେବ ଆଉ କ'ଣ ? ଆଉ କାହା ଲାଗି ପୁଣି ସାଇକଲ ଟିଣିଟିଣି

କରିବ, ଆକାଶରେ ଗୁଡ଼ି ଉଡ଼େଇବ, ମୁଁ ଯଦି ତମ ପାଖରେ ଥିବି ?"

ଜେଜେମା ପଚାରୁଚି, "ଶୋଇନୁ କି ବେଟୀ ? କେତେ ରାତି ଯାକେ ଆଉ ଅନିଦ୍ରା ହେବୁ ? ସକାଳ ପାହୁ କି, ମୁଁ ଶାହିଦ ହାତରେ ଖବର ପଠେଇବି ନବାବ ମଂଜିଲକୁ । ମୁକ୍ତାରର ମାଆ ପାଖକୁ ପ୍ରସ୍ତାବ ପଠେଇବି ।"

କେତେଦିନକେ ମୁକ୍ତାରର ନାଆଁଟା କାହା ମୁହଁରୁ ଶୁଣୁଚି ଫାତିମା । ଝଡ଼ଟା ଛାତି ଭିତରେ ଯେମିତି ଉଠିଥିଲା ସେମିତି ପୁଣି ବନ୍ଦହେଇଯାଉଚି । ମୁହଁ ପୋଛି କହିଲା ସେ ଏଥର ରୋକଠୋକ, "ତୋ ମୁଣ୍ଡ ଖରାପ ହେଇଗଲାଣି ଦାଦୀମା' । ତଲାକ୍ ସରିଲା ପରେ ପୁଣି କ'ଣ ବାହାଘର ହୁଏ ନା କ'ଣ ? କହିଲି ପରା ଆମର ତଲାକ୍ ସରିଚି ।"

ଦାଦୀମା' ଶାନ୍ତ ସ୍ୱରରେ କହିଲା, "ନିକାହ ଯଦି ହେଇନି ପୁଣି ତଲାକ୍ ହେଲା କେମିତି ? ମୁଣ୍ଡ ତୋ'ର ଖରାପ ନା ମୋର ? ଆଜିକାଲିକା ପିଲାଙ୍କ ଯେଉଁ ସଂସାରଛଡ଼ା କଥା ।"

ପାଖ ଘରୁ ମାଆର ସ୍ୱର ଶୁଭିଲା, "କିଏ ସେ ସେଠି କଥା କହୁଚି କିରେ ? ଫାତିମାର ସ୍ୱର ପରି ଶୁଭୁଚି ତ ?"

ଫାତିମା ଜବାବ ଦେଲା, "ହଁ ଅମ୍ମି, ମୁଁ କହୁଚି । ତୁ ଶୋଇପଡ଼ ।"

ଅମ୍ମି ସେଘରୁ କହିଲା, "ଫାତିମା ବେଟୀ, ତୁ କେବେ ଆସିଲୁ ? ତୋ' ଅବ୍ବୁ କେଡ଼େ ବ୍ୟସ୍ତ ହେଉଥିଲେ କୁଆଡ଼େ ଗଲୁ ବୋଲି । ମୁଁ କହୁଚି ସେ ଫେରିଆସିବ ।"

# ବୋଲରେ କି ଥାଏ ନିଜ ଲୁହ ଅବା ହସ

ହୀନା ଯାଇ ଚଉକ ବଜାରରୁ କପଡ଼ା କିଣି ଆଣିଚି, ତା' ସାଙ୍ଗ ଝିଅ କେଇଜଣ ମିଶି ବୋଝକ ଯାକ ନୂଆ ପ୍ୟାକେଟ୍ ଆଣି ବାରଣ୍ଡାରେ ଥୋଇଦେଲାବେଳେ ହସ ଖୁସିରେ ଫାଟିପଡୁଥିଲେ । ସମସ୍ତଙ୍କ ହାତରେ ସଦ୍ୟ ବଜାରରୁ କିଣା ଜିନିଷ ପତ୍ର । ଆଜି ସମସ୍ତଙ୍କୁ ଗ୍ୟାସ୍ ରାହତ ଅଫିସ୍‌ରୁ ପଇସା ମିଳିଚି, ପ୍ରତିଘରର ମୁଣ୍ଡପିଛା ହିସାବ କରି ଗତ ତିନିମାସ ଲାଗି କଞ୍ଚା ପଇସା ହାତରେ । ପୁଣି ଆଖପାଖରେ ଥିବା ଲୋକେ ଆଉ ସରକାରୀ ବାବୁମାନେ ବାରମ୍ବାର ବୁଝାଇ କହିଚନ୍ତି, ଏଇଟା ପୂରା କ୍ଷତିପୂରଣ ଜମାରୁ ନୁହେଁ । କେବଳ ଯେଉଁମାନେ କ୍ଷତିଗ୍ରସ୍ତ ହେଇଚନ୍ତି ତାଙ୍କୁ ସାମୟିକ ସହାୟତା ।

ଫାତିମା ଆଉ ଜରୀନା କାଗଜ ମୁଣି ସବୁ ଖୋଲିଲା ବେଳେ ହୀନା କହୁଚି କୋଉଟା କାହାଲାଗି । ହାଲୁକା ପ୍ରିଣ୍ଟ ଦିଇଟା ମାଆର ଆଉ ଜେଜମା ଲାଗି ତିଆରିହେବ । ଫାତିମା ଡାକ ପକେଇଲା, "ଅମ୍ମି, ଦେଖି ଯା କେଡ଼େ ସୁନ୍ଦର କନା ସବୁ ଆଣିଚି ହୀନା ।"

ତଳେ ବସିପଡ଼ି କପାଳରୁ ଝାଳ ପୋଛୁପୋଛୁ ହୀନା ଉଚ୍ଚାଟରେ କହୁଚି, "ରୋଷେଇ ଘର ଲାଗି ଯାହା ସବୁ କିଣିବାର ଅଛି ଲିଷ୍ଟ କରିଦେଇଥିବା ଆଜି, କାଲି ଯାଇ ଆଣିବା । ଆଜି ରାତି ହେଇଯିବ ବୋଲି ସହଳ ପଳେଇଆସିଲୁ । ଏଇ ରୋଶନୀ ଛାନିଆଁ ହେଲା ବୋଲି ନା –"

ଜବାବରେ ରୋଶନୀ, ଗୋରୀ ହେଇ ପାତଳୀ ଝିଅଟିଏ, ଖିଲିଖିଲି ହସି କହୁଚି, "ବାପ୍‌ରେ ବାପ୍, ଚଉକରେ ଏତେ ଲୋକ କହଳି, ଏତେ ଦୋକାନ ବଜାର, ମୁଁ ତ କେବେ ଯାଇନଥିଲି । ଆମ ଘରେ କେବେ ବଜାରକୁ ଛାଡ଼ନ୍ତିନି ।"

ଆରେକ ଝିଅ କହୁଚି, "କାହା ଘରେ ଛାଡ଼ନ୍ତି ଯେ । ଏବେ ଆଉ ସେସବୁ ଧରିବସିଲେ କାହା ଘର ଚଳିବ ?"

ହୀନା କହୁଚି ପୁଣି, "କେତେ ଜିନିଷ ସବୁ ଆସିଚି ବଜାରକୁ, ରାସ୍ତା କଡ଼ଯାକ ପର୍ବତ

ପ୍ରମାଣ ଲୁଗା, ଜିନିଷ ବିକ୍ରି ଚାଲିଚି । ଯାଇଥିଲେ ଦେଖିଥାନ୍ତୁ ଅପା, ମନେହେବ ଲୋକ ଇଦ୍ ବଜାର କରୁଚନ୍ତି ।"

ଏମିତି ଝିଅ ଦଳଟିଏ, ବିନା ମୁରବୀରେ ବଜାରକୁ ଯିବା ଆଗେ ସାଧାରଣ କଥା ନଥିଲା । କାହାରି ଦେହରେ ବୁର୍ଖାଟିଏ ବି ନାହିଁ, ନିତିପିନ୍ଧା ପୁରୁଣା ରଙ୍ଗଛଡ଼ା ଲୁଗାପଟା ସଭିଙ୍କର ଯହିଁରେ କେବେ ସେମାନେ ଘରୁ ବାହାରୁନଥିବେ ଆଗେ । ରାହତ ଅଫିସରୁ କଥାବାର୍ତ୍ତା ହେଇ ବାହାରିଯାଇଚନ୍ତି ବଜାରକୁ । କୋଉଦିନୁ ଦୋକାନ ବଜାରରୁ ମନଖୋଲି ଜିନିଷ କିଣାହେଇନଥିବ ତାଙ୍କ ଘରେ ସବୁ, ମୁରବୀଙ୍କ ଭିତରେ କାହାଘରେ କିଏ ଅଛନ୍ତି କାହା ଘରେ କିଏ ନାହିଁ । ହାତକୁ ପଇସା ଆସିଲାକ୍ଷଣି ଆଉ ସମ୍ଭାଳା ପଡ଼ିନଥିବ ।

ଜରୀନା ମୁହଁ ଫୁଲେଇ ରଷିଲା ସ୍ୱରେ କହୁଚି, "ମୋତେ କାଇଁକି ନେଲୁନି ସାଂଗରେ । ମୁଁ ବି ଯାଇଥାନ୍ତି..."

ଫାତିମା ଗୋଟିଗୋଟି କନା ସବୁ ଖୋଲି କହୁଚି, "ଭଲକଲୁ ଚଉକରୁ କିଣିଆଣିଲୁ । ପାଖ ବଜାରରେ ଏସବୁ ବହୁତ ଦାମ୍ ହେଇଥାନ୍ତା ।"

ଭିତରୁ ଜେଜେମା ସାଙ୍ଗରେ ଅମ୍ମି ବି ବାହାରିଆସିଚି ପାଟିଗୋଳ ଶୁଣି । ସାଙ୍ଗ ଝିଅମାନେ ତରତର ହେଇ ବାହାରିଗଲେଣି ଯେଝା ବ୍ୟାଗ୍ ମାନ ନେଇ । ହୀନା, ଜରୀନା, କପଡ଼ା ସବୁ ନିଜ ଦେହରେ ପକେଇ ପରଖୁଛନ୍ତି କାହାଲାଗି କେଉଁ କନାରୁ ତିଆରି ହେବ ସାଲୁଆର କୁର୍ତ୍ତା । ଜେଜେମା ଦେହରେ, ଅମ୍ମି ଦେହରେ ଲଗେଇ ବି ଦେଖୁଛନ୍ତି । କାହିଁ କେତେ ଦିନ ପରେ ସିଲେଇ ମେସିନ୍ କଣଟି ଉଲୁସି ଉଠିଚି ସତେକି ।

ଜେଜେମା ମୁହଁରେ ବି ହସ । ପଚାରୁଚି, "କିରେ ରେହମାନ କି ଦୋଷ କଲା, ତା' ଲାଗି ଲୁଗା କାଇଁ?"

ହୀନା ଏଡ଼େ ପାଟିରେ କହୁଚି, "ରେହମାନ ଜାମା ପିନ୍ଧିବ ମୋ' ବାଛିବାରେ? ସିଏ ପରା ନିଜକୁ କାହିଁରେ କ'ଣ ବୋଲି ଭାବିଲାଣି ।"

ତା'ପରେ ବର୍ଣ୍ଣନା କରୁଚି କେମିତି ସିଏ ଆଉ ରେହମାନ ତିନି ଘଣ୍ଟା ଲାଇନରେ ଛିଡ଼ା ହେବାପରେ ଶାରୁଖ ଚାଚା ଆଉ କିଏ ସବୁ ରାହତ ଅଫିସ୍‌ର ବାବୁଙ୍କ ଆଗରେ ତାଙ୍କ ଘର ଲୋକଙ୍କ କଥା ସବୁ କହିବାପରେ ହିସାବ କିତାବ କରାଯାଇ ଟଙ୍କା ଗଣି ଦିଆଗଲା । ସେଇଠୁ ରେହମାନ ତା' ସାଙ୍ଗରେ ଝକ୍ ଝକ୍ କଲା ପଇସା ଲାଗି, ଆଉ ତା' ସାଙ୍ଗମାନଙ୍କ ସାଙ୍ଗେ ଗଲା ଆପେ ସାର୍ଟ ପ୍ୟାଣ୍ଟ କିଣିବ ବୋଲି ।"

ଜେଜେମା ପଚାରୁଚି, "କେତେ ଟଙ୍କା ହେଲା, କେତେ ବଳିଲା, କିଛି ହିସାବ ହେବ ନା ନାଇଁ?"

ହୀନା କହୁଚି, "ସେସବୁରେ ତମର ମୁଣ୍ଡ ଖେଳେଇବା କି ଦରକାର ଦାଦୀମା' । ତମ ଲାଗି ଆଗ କୁର୍ତ୍ତା ତିଆରି କରିଦେବ ଅପା, ହେଲା ତ ? ଆଉ କାଲିକି ବନାରସୀ ପାନ, କିମାମ ସବୁ ଆଣିଦେବି ମୁଁ ।"

ଦାଦୀମା' ସ୍ୱର ଉଂଚେଇ ପଚାରୁଚି, "କ'ଣ ହେଲା, ସରକାର କେତେ ଟଙ୍କା ଦେଲା କିଛି ହିସାବ ଦେବୁ ନାହିଁ ? ଏତେ ଗୁଡ଼େ ପଇସା ପତ୍ର ସବୁ ଖର୍ଚ୍ଚ କରିବ ତମେ ଦିହେଁ କାଲିକା ପିଲା ?"

ତଳୁ ଉଠିପଡ଼ି ଖିଲିଖିଲି ହସି ହୀନା କହୁଚି, "ତମ ବାବଦରେ କିଛି ମିଳିବନି ଦାଦୀମା', ତମେ ପରା ଲକ୍ଷ୍ନୌରେ ଥିଲ ଗ୍ୟାସ୍ କାଣ୍ଡ ଦିନ, ଫେରିଲ ଯାଇ ସପ୍ତାହକ ପରେ । ପ୍ରଥମ ଲିଷ୍ଟ ଡାକ୍ତରଖାନାରେ ତିଆରି ହେଲା ବେଳେ ତମ ନାଁ କୋଉଠୁ ନିଆଯାଇଚି ଆଗ ?"

ଅମ୍ମି ବଲ ବଲ କରି ଅନେଇଥିଲା ଏଯାକେ । କେତେବେଳେ ପଚାରୁଚି, "ଏ ସବୁ କାହା ଘର ଲୁଗା ବରାଦ ଆସିଚି ବେଟୀ ? ଶ୍ରୀବାସ୍ତବ ଘର ଝିଅର ବାହାଘର ହେଉନାହିଁ କି ?"

ଫାତିମାର କିଛି କହିବାର ନଥିଲା । ଲୁଗାସବୁ ଚଉତି ଦେଇ ସେ ସିଲେଇ ମେସିନର ଘୋଡ଼ଣୀ ଖୋଲି ପୋଛିପୋଛି ଦେଲା, ତଳ ଡ୍ରୟାର ଖୋଲି କାଢ଼ିଦେଲା କଇଁଚି ଆଉ ଇଂଚିଟେପ୍ । ମାଆକୁ ଡାକି କହିଲା, "ଆସିଲୁ ଅମ୍ମି, ଏଠି ମୋ' ପାଖରେ ବସିଲୁ ଟିକେ । କାହାର କୋଉ ଡିଜାଇନ ହେବ ତୁ ନ ବତେଇଲେ ସିଲେଇ କେମିତି ହେବ ?"

ତଳେ ଥକ୍କା ହେଇ ବସିପଡୁଚି ଅମ୍ମି । କଥା କହିବାକୁ ଯାଇ କାଶରେ ନୟାନ୍ତ ହେଇପଡୁଚି । ମା' ପିଠିକୁ ଆଉଁସି ଦେଇ ଫାତିମା କହୁଚି, "ହଉ, ତୋର କିଛି କହିବା ଦରକାର ନାହିଁ । ସବୁଠୁ ବେଶୀ କ୍ଷତିପୂରଣ ତ ତୋଓରି ଦାବୀ, ତୋ' ଲାଗି ସବୁଠୁ ଦାମିକା କୁର୍ତ୍ତା କରିବା, ତା'ପରେ ଯାଇ ଆମର ସବୁ ହେବ ।"

ଭିତର ଘରୁ ଦାଦୀମା ଆଉ ହୀନାର ପାଟିତୁଣ୍ଡ ଶୁଭୁଚି । ତଳେ ଚଦର ବିଛେଇ କପଡ଼ାରୁ ଖଣ୍ଡେ ଖୋଲି ନାଲି-ନେଳୀ ପେନ୍‌ସିଲରେ ମାପ ଆଙ୍କୁଚି ଫାତିମା ।

ରୋଷେଇଘରକୁ ପଶିଯାଉଯାଉ ଜରୀନା କହୁଚି, "ଅପା, ଅବଦୁଲ୍ ହାତରେ କ୍ଷୀର ଚିନି ମଗେଇଦେଲି । ଅଦା ଲବଙ୍ଗ ଦେଇ ବଢ଼ିଆ ଚ' ତିଆରି ହେବ, ଅମ୍ମି ପିଇବ କି ନାହିଁ ପଚାରିଲୁ ।"

ଏତେବେଳକୁ ଅମ୍ମି ସୁକୁସୁକୁ ହେଇ କାନ୍ଦିଲାଣି । କହୁଚି, "ଫାତିମା ବେଟୀ, ସେ ନର୍ଗୀସ୍ ବେଗମ ସାଂଗେ କାମ ଛାଡ଼ିଦେ । ସିଏ ପରା ନିଜ ଘରସଂସାର କରିପାରିଲା ନାହିଁ, ତୋତେ କୁଆଡୁ ଠିକ୍ ବାଟ ବତେଇବ ?"

# କେତେ ବା ଭୂଇଁ ନିଜ ପାଦ ତଳେ

ସଂଜ ଗଡ଼ିଯାଇ ଅନ୍ଧାର ହେଲାପରେ ଯାଇ ରେହମାନ ଫେରିଲା ସେଦିନ, ଦି ହାତରେ ତା'ର ବଜାର ସଉଦା ଭର୍ତ୍ତି ବ୍ୟାଗ୍, ଆଉ ମୁହଁରେ ଏତେ ଜକଜକ ହସ ଯେ ଫାତିମା ଘରକୁ ଫେରିଲାଦିନୁ ତାର ଏ ରୂପ ଦେଖିନଥିଲା । ସାଙ୍ଗରେ ଶାରୁଖ ଗଣ୍ଡ, ସବୁଦିନ ଭଳି ଅକାରଣ ଠୋଠୋ ହସ ମଝିରୁ ତାକ ଦେଇ ଦେଇ ପଶିଆସୁଚନ୍ତି, "ଫାତିମା ବେଟୀ, ଦେଖ୍ ଆମ ରେହମାନ ମିଆଁର କରାମତି ଦେଖ୍ । ଭାଭୀ କୁଆଡ଼େ ଗଲ ।"

ହୀନା ଜରୀନାଙ୍କର ଆହୁରି ତୁହାଏ ହସଖୁସି, ବ୍ୟାଗ୍ ଭିତରୁ ନୂଆ ନୂଆ ସଂପଦ ଖୋଲିବାର ପାଳି । ଫାତିମା ଫେରିଗଲା ତା'ର କଇଁଚି କପଡ଼ା କୋଣକୁ । ଅମ୍ମି ଏବେବି ପାଖରେ ବସିଥାନ୍ତି, ହେଲେ ପୁରୁଣା ଦିନର କଙ୍କାଳ ରୂପଟିଏ । ସେ ଦିନ ମାନ ଭଳି ତାଙ୍କ ଆଖି ନିଘା କରୁନଥାଏ ଫାତିମାର କାମରେ ଲାଗିଥିବା ହାତକୁ, ନାଲି ନୀଳ ମାର୍କିଂ ପେନ୍‌ସିଲ ଖଣ୍ଡକ ନିଜେ ନେଇ ଫାତିମାର ତିଆରି ନକ୍ସାକୁ ସଂଶୋଧନ କରୁନଥାନ୍ତି ସେ । ବସିଥାନ୍ତି ପାଖରେ କେବଳ, ଚୁପ୍‌ଚାପ୍ ପିଠି କୁଜେଇ, ଶୂନ୍ୟରେ କୋଉଠି କିଛି ଦେଖୁନଥିବା ପେଜୁଆ ଆଖିରେ ।

ଭିତରୁ ଖୁସିଗପ ଶୁଭୁଚି । ରୋଷେଇଘରୁ ମାଂସ କଷା ହେବାର ବାସ୍ନା ଖେଳେଇ ହେଇଯାଉଚି ପବନରେ । ହୀନା ଆସି ଥାଳିଆରେ ଜଲେବି ସିଙ୍ଗଡ଼ା ଥୋଇଦେଇଗଲା, କହିଲା, "ଅମ୍ମି, ଖାଇଦିଅ, ଗରମ ଅଛି । ଅପା, ଆଗ ଖାଇଦେ ତୁ ବି ।"

ମନଧ୍ୟାନ ଦେଇ କପଡ଼ାରେ କଇଁଚି ଚଳାଉ ଚଳାଉ ଫାତିମା ଉତ୍ତର ଦେଲା, "ତୁ ତୋ' କୁର୍ତ୍ତା ଡିଜାଇନଟା କହିନୁ ଆଉରି, ପୁଣି ପରେ କହିବୁ ତୋ' ପସନ୍ଦର ହେଲାନାଇଁ

ବୋଲି ।"

ହୀନା କହିଲା, "ତୋର ଏତେଦିନ ପରେ ପୁଣି ନିଶା ଚଢ଼ିଚି ସିଲେଇର, ସେଇଆ କହୁନୁ। ମୋର ଆଉ ଜରୀନାର କୁର୍ତ୍ତା ପରେ ହେବ, ଆଗ ଅମ୍ମି ଆଉ ଦାଦୀମା'ର କରିବୁ ପରା ।"

ଫାତିମା ଆଖି ଉଠେଇ ହୀନାର ଫେରିଯାଉଥିବା ରୂପକୁ, ସବରେ ଆସିଥିବା ନୂଆ ଦମ୍ଭକୁ ଲକ୍ଷ୍ୟ କଲା । ସ୍କୁଲ ବି ଶେଷ କଲାନାଇଁ ହୀନା, କଲେଜ ମାଡ଼ିବା ଦୂରେ ଥାଉ । ବାପା କେମିତି କେଜାଣି ଏତେ ସପ୍ନ ଦେଖୁଥିଲେ ତାଙ୍କ ପିଲାଙ୍କୁ ନେଇ । ସାଜିଦ୍ ଏଇବର୍ଷ କଲେଜରେ ନାଁ ଲେଖେଇଥିଲା । କେଜାଣି ହୁଏତ କିଛି ଗୋଟେ ଭଲ ବାଟ ବାଛିଥାନ୍ତା । କିଛି ନହେଲେ ଅନ୍ତତଃ ବାପାଙ୍କ ମୁରବୀ ପଣିଆ, ମଜାଗତ ଶତରଂଜ ଶାୟରୀର ସଂସ୍କାର ନେଇଯାଇଥାନ୍ତା ଦି'ପୁଅଙ୍କୁ ଥୋଡ଼େବାଟ ଆଗକୁ ।

ନିଃଶ୍ୱାସଟାଏ ଛାଡ଼ି କଇଁଚି ଥୋଇଦେଇ ମା' ପାଖକୁ ଆସି କହିଲା, "ଚାଲ ଅମ୍ମି, ଭିତରେ ଖାଇବା । ଏଠି ଲୁଗା ଉପରେ ପଡ଼ିଲେ ମଇଳା ହେବ ।"

ମୁହଁ ଟେକି ଫାତିମାକୁ ଅନେଇଲେ ତା' ମା', ଉଜଳିଲା ହସନେଇ କହିଲେ, "ତୋ ଅବ୍ବୁ ଜଲେବି ଆଣିଚନ୍ତି । ଆଜି ଶତରଞ୍ଜ ଖେଳରେ ବାଜି ଜିତିଚନ୍ତି ନିଶ୍ଚେ ।"

ଫାତିମା ଅମ୍ମିର ହାତ ଧରି ଉଠେଇଲା, ତକ୍ଷଣି କୋହର ଗୁଳା ଭିତରୁ ସ୍ୱର ଫୁଟେଇଲା, "ହଉ ଚାଲିଲୁ ଏଥର । ଖାଇଦେବା ନହେଲେ ଥଣ୍ଡା ହେଇଯିବ ।"

ଭିତରେ ଖଟ ଉପରେ ଦାଦୀମା' ବସି ପାନ ପାକୁଳଉଚି । ଗୋଡ଼ ପାଖକୁ ବସିଚି ରେହମାନ । ଟିକିଏ ଛାଡ଼ି ଟିଣ ଚଉକିରେ ବସିଚନ୍ତି ଶାରୁଖ୍ ଚାଚା, କ'ଣସବୁ ବୁଝାଉଚନ୍ତି ବଡ଼ପାଟିରେ । ଶୋଭାଯାତ୍ରା ମାନଙ୍କରେ ବାକ୍ଷଣ ଦେଉଥିବା କଥାସବୁ ଦାଦୀମା' ଆଗରେ ଦୋହରାଉଚନ୍ତି ବୋଧେ ।

ଅମ୍ମିକୁ ତା' ବଖରାକୁ ନେଇଗଲାବେଳେ ସେ ବଡ଼ ପାଟିରେ ଡାକୁଚନ୍ତି, "ଆସ ଭାଭୀ, ବସ ଟିକେ ଆମ ପାଖରେ । ଏଥର ଘର ସମ୍ଭାଳିବାକୁ ହେବ ତମକୁ, ଆଉ ଫାଙ୍କିଦେଲେ ଚଳିବ ନାଇଁ ।"

ହୀନା ଜରୀନା ଆଖପାଖରେ ଯା ଆସ କରୁଚନ୍ତି, କାନ ଅଛି ସେଠି ହେଉଥିବା କଥାବାର୍ତ୍ତାରେ । ଅମ୍ମି ସେଇଠି ଦୁଆରବନ୍ଧଠି ଅଟକିଯାଇ ଭ୍ରୁରୁ କୁଞ୍ଚେଇ ଅନଉଚି ଶାରୁଖ୍‌କୁ, ପଚାରୁଚି, "ଇଏ କିଏ ସେ ? କାଇଁକି ଆସିଚି ଆମ ଘରକୁ ?"

ଶାରୁଖ୍ ତା' କଥାରେ ଠୋ ଠୋ ହସୁଚି । ଫାତିମା ତାକୁ ଭିତର ଘରକୁ ନେଇଗଲା ବେଳେ ଅମ୍ମି ପଚାରୁଚି," ସେ ଶାରୁଖ୍ କେବେଠୁଁ ଆମର ଏତେ ବନ୍ଧୁ ହେଲାଣି ? କାଇଁକି ଏଠି

ବସି ଜଳଖିଆ ଖାଉଚି ସେ ?"

ଅନ୍ନିକୁ ବୁଝେଇଲେ ସେ କ'ଣ ବୁଝିବ, ଜଳଖିଆ ସାଙ୍ଗରେ ତେଣେ କେତେ ସବୁ କଳ୍ପନା ଜଳ୍ପନା ଚାଲିଚି ଏଠି । ଫାତିମା କେମିତି କହିବ ଅନ୍ନିକୁ ଯେ ଶାରୁଖ୍ ଚାଚା ଜ୍ଞାନ ଦେଉଚନ୍ତି ତାଙ୍କ ପରିବାରକୁ, ସତେକି ହୀରା ଖଣିଟାଏର ସନ୍ଧାନ ସେ ଦେଇପାରୁଚନ୍ତି ତାଙ୍କୁ – "ତମ ପରିବାରର ଦି'ଦିଇଟା ପୁରୁଷ ଯାଇଚନ୍ତି । ଜଣେ ଘରର ମୁଣ୍ଡ ଆଉ ଆରଜଣକ ଘରର ବଡ଼ ପୁଅ, ଆମେରିକାନ କମ୍ପାନୀ ତାଙ୍କ ଜୀବନହାନି ଲାଗି ଯାହା କ୍ଷତିପୂରଣ ଦେବ ତାହା ତମମାନଙ୍କର କଳ୍ପନାର ବାହାରେ । ଅର୍ଜନକ୍ଷମ ପୁରୁଷ ହେଉଛି କ୍ଷତିପୂରଣ ତାଲିକାରେ ସବୁଠୁ ଉପରେ । ପୁଣି ଜୁଆନ୍ ପୁଅ, ରୋଜଗାର ଆସୁଥିବା ବଡ଼ ପୁଅ ମରିଯିବାଠୁ ବଡ଼ କ୍ଷତି ଭଲା ଆଉ କ'ଣ ହେଇପାରେ ?"

ଅନ୍ନିକୁ ଖୁଆଇ ଦେଉ ଦେଉ ଫାତିମା ଅନ୍ୟ କଥା କହି ତାକୁ ଭୁଲେଇବାକୁ ଚେଷ୍ଟା କଲା, "ତୋର ମନେ ଅଛି ନା ଅନ୍ନି, ଫୁଫୀ ଆସିଲା ବେଳେ ଆମେ କେମିତି ସିନେମା ଯାଉ ? ତୁ ତ କୋଉ ଯୁଗରୁ ସିନେମା ଦେଖିନଥିବୁ ନୁହେଁ ?"

କବାଟ ସେପାଖୁ ପାଟିକରୁଚନ୍ତି ଶାରୁଖ୍, "ଭାଭୀଙ୍କୁ କୁଆଡ଼େ ନେଇଗଲୁ ଫାତିମା ? ତାଙ୍କ ଲାଗି ତ କିଛି କମ୍ ପଇସା ମିଳିବାର ନାହିଁ । ଆସନ୍ତା ଗୁରୁବାରକୁ ମୁଁ ନିଜେ ଆସିବି, ରିକ୍ସା କରି ନେଇଯିବି ସାଙ୍ଗରେ । ସାମ୍ବାଦିକ ମାନେ ତାଙ୍କ ଇଣ୍ଟରଭିଉ ନେବେ ।"

ଏସବୁର ଆଲୋଚନା ପ୍ରଥମ କରି ହେଉନାହିଁ ଏ ଘରେ, ବା ଘର ବାହାରେ ଡାକ୍ତରଖାନାରେ, ରାହତ ଅଫିସ୍ ବାରଣ୍ଡାରେ, ସଭା ସମିତିରେ । ସବୁଠି ଆଜିକାଲି ଏଇ ଆଲୋଚନା । କାହା ନାଁ ତାଲିକାରେ ଉଠିଚି, କାହାର ନାହିଁ । କୋଉ ପର୍ଯ୍ୟାୟରେ କାହାକୁ ନିଆଯିବ, କିଏ କେତେ ପରିମାଣରେ ଢୋକିଚି ବିଷ ଗ୍ୟାସ୍, କି ପ୍ରମାଣ ସବୁ ତା' ପାଖେ ଅଛି ସେ କଥାର । ଫଟୋ, ଡାକ୍ତର ସାର୍ଟିଫିକେଟ୍, ସାକ୍ଷାତ୍କାର, ସେ କାଳରାତିରେ ସହରରେ ଥିବାର, ନିର୍ଦ୍ଦିଷ୍ଟ ସ୍ଥାନରେ ଥିବାର ପ୍ରମାଣ । କାହାର ମୃତ୍ୟୁରେ ବା ବିକଳାଙ୍ଗତାରେ କେତେ ଆନୁସଙ୍ଗିକ ଆର୍ଥିକ କ୍ଷତି ଭୋଗୁଚି ତା' ପରିବାର । ନାନା ଦଳର ନାନା ପ୍ରକାର ଶୋଭାଯାତ୍ରା ସବୁଦିନେ, ସହର ସାରା, ଦେଶର ରାଜଧାନୀରେ ।

ଦାଦୀମା ଆଉ ଫାତିମା ନଥିଲେ ସହରରେ, ତେଣୁ ତାଙ୍କୁ କିଛି ମିଳିବାର ନାଇଁ । କେବଳ ବାପାଙ୍କୁ ମୃତ ବୋଲି ଖାତାରେ ଲେଖାଯାଇଚି, ସାଜିଦ୍‌ର ମୃତ୍ୟୁର ପ୍ରମାଣ ମିଳିନାଇଁ ଏଯାକେ । ସ୍ବେଚ୍ଛାସେବୀମାନେ ଲଢୁଚନ୍ତି । ଶାରୁଖ୍ ଚାଚାଙ୍କ ଭଳି ଆଉ କେତେଆଡୁ ବି ଆଶ୍ୱାସନା ମିଳୁଚି, କେତେ କୁଆଡୁ ମିଳିବାକୁ ଅଛି ସେକଥା ନାନା ଦିଗରୁ ବିଚାର କରାଯାଉଚି । ଆଉ ସେଥିଲାଗି କିଭଳି କେତେ ସମୟ, ଆଉ ଟିକିଏ ଲେଖାଁ ପରିଶ୍ରମ ବି କରିବାକୁ ହେବ

ତା' ସୁଦ୍ଧା ବଢେଇ ଦିଆଯାଉଚି ।

ଯାଉ ଯାଉ ବାରଣ୍ଡା ପାଖରୁ ଶାରୁଖ୍ ଦୋହରାଉଚନ୍ତି, "ତମେ ଦେଖିବ ପିଲେ, ତମ ଦାଦୀମା'ଙ୍କ ନାଆଁ ବି ତାଲିକାରେ ଉଠେଇବାର ଭାର ମୋ' ଉପରେ ରହିଲା । ସିଏ ହେଲେ ଘରର ସବୁଠୁ ବଡ଼ ମୁଣ୍ଡ, ତାଙ୍କଠୁ ବଳି କ୍ଷତି ସହିଚି କିଏ ? ତମ ଶାରୁଖ୍ ଚଚା କ'ଣ କରୁଚି ତମେ ଖାଲି ଦେଖୁଥା –"

କହୁକହୁ ବାରଣ୍ଡା ତଳକୁ ପାଦ ବଢ଼େଇଲା ବେଳକୁ ଝୁଣ୍ଟି ପଡ଼ିଲେ ଶାରୁଖ୍, ହାଁ ହାଁ କହି ରେହମାନ ଧରି ପକେଇବା ସତ୍ତ୍ୱେ ପ୍ରାୟ ପଡ଼ିଗଲେ ତଳେ ପକ୍କା ଅଗଣା ଉପରେ । ସମସ୍ତଙ୍କର ବ୍ୟସ୍ତ ବିବ୍ରତ ହେବା, ଆରେ ଆରେ, ଦେଖିକି ଚଚା ବୋଲି କହିବା ଭିତରେ ଫାତିମା ବି ଉଠି ଚାଲିଆସିଥିଲା, ତା' ଆଖିରୁ ବାଦ୍ ଯାଇନଥିଲା ଅନ୍ୟମାନେ ମୁହଁରେ ଚପିନେଉଥିବା ହସ ।

ସମସ୍ତଙ୍କ ଅଲକ୍ଷ୍ୟରେ ଅମ୍ମି ବି ଉଠିଆସିଥିଲା ବାରଣ୍ଡାକୁ, ହଠାତ୍ ସମସ୍ତଙ୍କୁ ଚମକେଇ ଦେଇ ତା' ପାଟି ଶୁଭିଲା, "ଆଲ୍ଲାଙ୍କ ଦୟାରୁ ବଞ୍ଚିଗଲ ଶାରୁଖ୍ । ଯାଅ, ଘରକୁ ଯାଅ । ବୀବୀ ବିଚାରୀ ବାଟ ଚାହିଁଥିବ ।"

ନିଜ ପାଇଜାମା କୁର୍ତାରୁ ଧୂଳି ଝାଡ଼ୁ ଝାଡ଼ୁ ନିଜ ଅପ୍ରସ୍ତୁତ ମୁହଁକୁ ହସ ଟିକିଏ ଯଥାକଥା ଆଣି ଶାରୁଖ୍ ବାହାରିଗଲେ ।

# ମୋଡ଼ ବାଙ୍କ ଦେଇ ବାଟଚଲା

ପାହାନ୍ତା ପହରରୁ ଦାଦୀମା ବାହୁନା ଆରମ୍ଭ କରିଥିଲା, ଅନେକ ଦିନ ପରେ । ଏମିତି ହୁଏ ତା'ର । ଦିନା କେତେ ଠିକ୍ ଥାଏ, ଏମିତିକି ଦିନଯାକ ଆଜିକାଲି ସମୟ କାଟୁଥାଏ ଆଗଭଳି, ଆଉ ହଠାତ୍ ଦିନେ ପାହାନ୍ତାରୁ ତା'ର ସ୍ୱର ମେଲି କାନ୍ଦିବା ଆରମ୍ଭ ହେଇଯାଏ । ଆଗ ଆଗ ଅନ୍ୟମାନେ ବି ନିଜକୁ ରୋକି ପାରୁନଥିଲେ, ତା'ର କାନ୍ଦଣାର ସୁଅ ଭିତରକୁ ଓଟାରି ହେଇଯାଉଥିଲେ ଗୋଟି ପରେ ଗୋଟି ପରିବାର ଯାକ । ସେ କାଳ ରାତି ପରେ କିଏ କାହାକୁ ବୋଧ ଦେବାର ସମୟ ନଥିଲା କାହାପାଖେ । ବଡ଼ ଧରଣର ବିପଦ ଆପଦରେ ବନ୍ଧୁ ବାନ୍ଧବଙ୍କୁ ସଂଖୁଳିବାକୁ ଯିବାର ରୀତି ତ ପାସୋରି ପକେଇଥିଲେ ଲୋକେ । ତଥାପି ନିଜଠୁ ଅଧିକ ବିପତ୍ତି ଭୋଗିଥିବା ଲୋକଙ୍କୁ ଏଣିକି ପାଖଲୋକେ ବୋଧ ଶୋଧ ବି ଦେଉଥିଲେ । ଆଉ ଦୂର ସହରରେ ରହୁଥିବା ପରିଜନ ଆସି ବି ସଂଖୁଳି ଯାଇଥିଲେ ନିଜ ନିଜ ସଂପର୍କ ଓ ସୁବିଧା ମତେ । ଦାଦୀମା'ଙ୍କର ଦୁଇ ଝିଅ ଆସି କିଛି ଦିନ ଲେଖାଁ ମା' ପାଖରେ ରହି ନିଜ ନିଜ ଘରକୁ ବାହୁଡ଼ି ଯାଇଥିଲେ । ସାନ ପୁଅ ଏଭିତରେ, କୁଓ୍ୱେତ୍‌ରୁ ଆସି ରହିଯାଇଥିଲା ସପ୍ତାହେ, ପିଲାଙ୍କ ହାତରେ କିଛି ଟଙ୍କା ଦେଇ ଯାଇଥିଲା । ସମସ୍ତେ ଜାଣିଥିବା, ଶିଖିଥିବା ମତେ ବୋଧ ଦେଇଥିଲେ ବିଧିର ନିର୍ଦ୍ଦେଶକୁ ମାନିବା ଛଡ଼ା ଉପାୟ ନାହିଁ ବୋଲି କହି, ବିଦେଶୀ କମ୍ପାନୀକୁ ନିନ୍ଦିଥିଲେ, ରାଗ ଆକ୍ରୋଶ ବି ଦେଖାଇଥିଲେ । ପୁଣି ବାରାନ୍ତରେ ଆଶ୍ୱାସନା ଦେଇଥିଲେ କ୍ଷତି ପୂରଣର ।

ତଥାପି ଦାଦୀମା ଯେବେ ପାହାନ୍ତା ପହରୁ ବାହୁନା ଆରମ୍ଭ କରିଦିଏ, ଗୋଟି ଗୋଟି କରି ଘରସାରା ଲୋକେ ଗୋଡ଼ ଖସେଇଦିଅନ୍ତି ସେ ଘେରାବାଲିରେ, ଅସମ୍ଭାଳ ହେଇ ବୁଡ଼ିଯାଆନ୍ତି ଶୋକର ଗହୀରରେ । ମଝିରେ ଜଣେ କିଏ ଅଧୈର୍ଯ୍ୟ ସ୍ୱରରେ, ଏପରିକି ରାଗିଲା ତାତିଲା ଗଳାରେ ପାଟିକରେ, "ହଉ ବହୁତ ହେଇଗଲା ଦାଦୀମା । ଚୁପ୍ କର ଏଥର । ଯିଏ ଗଲା ଗଲା । ଆମକୁ ବଞ୍ଚିବାକୁ ଦେବୁ ନା ନାହିଁ ।"

ଦାଦୀମା' ଉପରେ କିଛିହେଲେ ପ୍ରଭାବ ପଡ଼େନାହିଁ ଏ ସବୁର । ତା' ବାହୁନା ଭିତରକୁ ଅବାରିତ ପ୍ରବାହରେ ପଶିଆସେ କାହିଁ କେତେ ଦିନର ସ୍ମୃତି ସବୁ – ତା' ପୁଅର ପିଲାଦିନଠୁ ନେଇ ବାହାଘର ଘରସଂସାର କରିବା ଦିନମାନଙ୍କ ସାଙ୍ଗରେ ଶେଷ ଦିନ ମାଆକୁ ଲକ୍ଷ୍ନୌ ଯିବାଲାଗି ଷ୍ଟେସନରେ ଛାଡ଼ିବାକୁ ଯିବା ଦିନ ଯାକେ, ନାତିର ରଜାପୁଅ ଭଳି ଚେହେରାଠୁ ଆରମ୍ଭ କରି ସାଇକଲରୁ ପଡ଼ି ଆଣ୍ଠୁ ଗଣ୍ଠି ଛିଡ଼େଇ ବାପଠୁ ମାଡ଼ ଖାଇଥିବା କଥା ଯାକେ ।

କ୍ରମେ ଅନ୍ୟ ମାନଙ୍କର କୋହ ଜୁଆର ଫେରିଯାଏ ଛାତି ଭିତରକୁ । ଦିନଚର୍ଯ୍ୟାରେ ଲାଗିଯାନ୍ତି ସଭିଏଁ । ଦାଦୀମା ଥକିଯାଇ ମୋଡ଼ି ମୋଡ଼ି ହେଇ ଏକୁଟିଆ ଧକେଇ ହେଉଥାଏ ତା' ବିଛଣା ଉପରେ କେତେବେଳ ଯାଏଁ, ଆଉ କେହି ନିଘା ରଖନ୍ତିନି । ଆରଘରେ ନିଜ ଖଟରେ ତୁନିତାନି ହେଇ ନିଶ୍ଚଳ ପଡ଼ିରହିଥାଏ ଆଉ ଜଣେ । ଅମ୍ମି ।

ନିଜ ଲୁହ ସାଙ୍ଗରେ ସେଦିନ ଫାତିମା ଅନ୍ୟ ମାନଙ୍କୁ ଦିଶୁନଥିବା ସ୍ମୃତି ସବୁର ଶୋକ ବି ବହିଯିବାକୁ ଦିଏ, ମୁହଁରେ ବାହୁନି ନ ପାରିଲେ ବି ମନ ଭିତରେ ଆଉଟାଇ ଆଣେ କେତେ ବିତିଯାଇଥିବା କ୍ଷଣମାନଙ୍କୁ । ପୁଣି ଦାଦୀମା'କୁ ବୋଧ ଶୋଧ ଦେଇ, ଗାଣ ନିୟମ ପକେଇ କ'ଣ ଟିକିଏ ଖୁଆଇ ପିଆଇ ଦିଏ । ନିଜ ହାତରେ ଥିବା ସମୟସବୁକୁ ତା'ପରେ ଖାପିଯିବାକୁ ଯାଏ ଏଣୁତେଣୁ କାମରେ, କଥାରେ । ମୁଣ୍ଡକୁ ପାରୁପର୍ଯ୍ୟନ୍ତ ବଞ୍ଚେଇ ରଖିବାକୁ ଚେଷ୍ଟା କରେ ଚିନ୍ତା ଉଦ୍‌ବେଗର କଳା ମେଘରୁ ।

ଆଜି ଦିନଟି କିନ୍ତୁ ଫାତିମା ଲାଗି ଟିକିଏ ଭିନ୍ନ ଥିଲା, ଶୋକର ପର୍ବ ପରେ ଫାତିମା ଗାଧୋଇ ପାଧୋଇ ଯାଇ ବସିଯାଇଥିଲା ସିଲେଇ ମେସିନ୍ ପାଖରେ ।

ହୀନା ଆସି କହିଲା, "ଅପା, ମୋ' କୁର୍ତ୍ତା ସିଲେଇ କଲାବେଳେ ବେକ ପାଖରେ ଟିକିଏ ଚୁମୁକି କାମ କରିଦେଇଥିବୁ । ମୁଁ ଯାଉଚି ରାହତ ଅଫିସ୍‌କୁ ।"

କବାଟ ପାଖରୁ ଫେରିଆସି ଆଲଣାରୁ ବୁର୍ଖାଟି ନେଇ ପିନ୍ଧି ନେଉ ନେଉ ହୀନା ପୁଣି କହିଲା, "କଳା କପଡ଼ା ନେଇଆସିବି ଆଜି, ବୁର୍ଖା ତିନିଟା ନିହାତି ଦରକାର । ଅମ୍ମିକୁ ଯଦି ସାମ୍ବାଦିକଙ୍କ ପାଖକୁ ନେଇଯିବାକୁ ହେବ, ତା' ଲାଗି ବି ତ ଗୋଟେ ଦରକାର ।"

ଫାତିମା କାମ ଉପରୁ ଆଖି ଉଠେଇ ପୁଣି ନିଘା କଲା ସେ ମୁହଁକୁ । ନିଜକୁ କଳା ପର୍ଦ୍ଦା ଭିତରେ ରଖିବାର ଉଦ୍ଦେଶ୍ୟ ସବୁବେଳେ ଏକା ନଥାଏ, କାଇଁକି କଥାଟା ମନକୁ ଆସିଗଲା ହୀନାର ଉତ୍ସାହ ଦେଖି । ତେବେ ଆଜି ସେ ତାକୁ କିଛି କହିଲାନି ।

ହୀନା ପାଖକୁ ଆସି କଟାଗଲିଥିବା ଚିକ୍‌କଣ କନାକୁ ଦେଖିଲା, କହିଲା, "ଏଇ ଗୋଟିକ ମୋ' ଲାଗି ବାଛିଥିଲି ମୁଁ, ମୋରି ଲାଗି ତିଆରି ହେବ, ତୋ'ର ମନେଅଛି ତ ଅପା ?" ଅଳ୍ପ ହସି କେବଳ ମୁଣ୍ଡ ଟୁଙ୍ଗାରି ହଁ କଲା ଫାତିମା । ହୀନା ଏଥର ନଇଁପଡ଼ି ସିଲେଇ

ଲାଗି କଟା କପଡ଼ାକୁ ମେଲି ଦେଖିଲା, କହିଲା, "ତୋତେ ଚୁଡ଼ିଦାର ସାଲୁଆର ତିଆରିକରି ଆସେ କି ଅପା ?"

ଫାତିମା ଟିକିଏ ଭୂରୁ କୁଞ୍ଚେଇ କହିଲା, "ଚୁଡ଼ିଦାର ଆମେ କେବେ ପିନ୍ଧୁଥିଲେ ? ମା' ରାଗିବନି ?"

ମୁହଁକୁ ଟିକିଏନାକୁ ବେଖାତିରିରେ ବଙ୍କେଇନେଇ ହୀନା ଜବାବ ଦେଲା, "ମାଆର କୋଉ ମୁଣ୍ଡ ଠିକ୍ ଅଛି ଯେ ତା' ରାଗିବା ନ ରାଗିବା କଥା ପଡ଼ିଚି ? ମୋର ଏଥର ଚୁଡ଼ିଦାର ଦରକାର, ସେ ପୁରୁଣାକାଳିଆ ଓସାରିଆ ସାଲୁଆର କେହି ଝିଅ ଆଜିକାଲି ପିନ୍ଧୁନାହାନ୍ତି, ଖାଲି ବୁଢ଼ୀ ଫୁଢ଼ୀ ମାନେ ପିନ୍ଧୁଛନ୍ତି ।"

ଫାତିମା ତା' କଥାର ଜବାବ ନଦେଇ କପଡ଼ା କଟାରେ ମନଦେଲା । ଆଲଣା ତଳୁ ଚପଲ ପିନ୍ଧୁ ପିନ୍ଧୁ ହୀନା ପୁଣି କହିଲା, "ଆଜି ମୋର ହଳେ ନୂଆ ଚପଲ ଆଣିବି । ସକାଳୁ ସଞ୍ଜଯାଏଁ ତ ଚପଲ ଘୋଷାରିବାରେ ଯାଉଚି ମୋର, କ'ଣ ହେଲାଣି ଯା'ର ଅବସ୍ଥା ଦେଖୁଚୁ ନା ?"

ବସିବା ଜାଗାରୁ ଉଠି ହୀନା ପଛରେ କବାଟ ବନ୍ଦ କରି ଫେରିଆସିଲା ବେଳକୁ ଫାତିମା ଭାବୁଥିଲା, କୋଉଠୁ ଆସୁଚି ହୀନାର ଏ ଦମ୍ଭ ? ଘରର ମୁରବୀପଣିଆ କ'ଣ ସେ ଆପେ ହାତକୁ ନେଇନେଲାଣି ? ନିଜକୁ ନାହିଁ କରିବା ସତ୍ତ୍ୱେ କଥାଟାଏ ମନ ଭିତରକୁ ପଶିଆସୁଚି ଆଜିକାଲି, ଯେ ଘରକୁ ଆସୁଥିବା ପଇସା ହୀନାର ହାତକୁ ହିଁ ଆସେ । ଆସନ୍ତା ମାସ ଏକୋଇଶ ପୂରିବ ତାକୁ । ମାଆର କି ଦାଦୀମା'ର ଅଧିକାର ସ୍ୱୀକାର କରେନାହିଁ ଆଇନ । ରେହମାନ ନାବାଳକ । ଫାତିମା ଘରେ ନଥିଲା ସେ କାଳ ରାତିରେ । ଫାତିମାର ଉପସ୍ଥିତି ପରିବାର ଭିତରେ ଆଉ ସ୍ୱୀକାର୍ଯ୍ୟ ନୁହେଁ ଏଠାକାର ସମାଜରେ, ମୁହଁରେ କୁହାନଗଲେ ବି ଏ ସତଟିକୁ ଫାତିମା ଆଉ ଆଖିବୁଜି ଦେଇପାରୁନାହିଁ ।

# ବଦଳିଭା କେତେ ମୁହଁ

ଗ୍ୟାସ୍ କାଣ୍ଡ ପରେ ପରେ ଭୋପାଳର ମୁହଁ ବଦଳିଯାଇଥିଲା । ଏକପ୍ରକାର ବିଖଣ୍ଡିତ ହୋଇଯାଇଥିଲା ବୋଲି କହିଲେ ବୋଧେ ଠିକ୍ ହେବ । ହଠାତ୍ ହାତରୁ ପଡ଼ି ଦର୍ପଣଟାଏ ଭାଙ୍ଗିଗଲେ ତା'ର ପ୍ରତି ଖଣ୍ଡ ଯେମିତି ଖଣ୍ଡିଏ ଲେଖାଁ ଛବି ଦେଖାଏ । ପୂର୍ବର ଗୋଟାପଣ ତହିଁରୁ କାହିଁରେ ନଥାଏ ଯଦିଓ ପୂରାପୂରି ଅଲଗା ବୋଲି ତାକୁ କହିହୁଏନି ।

ଆମ କଲେଜର ପ୍ରଫେସର ସଲ୍‌ମା ଖାନ୍ ସେଇଦିନୁ ପଡ଼ିଥାନ୍ତି ସୁଲତାନିଆ ହସପିଟାଲରେ ବୋଲି ତାଙ୍କୁ ଦେଖିବାଲାଗି ମୁଁ ମଝିମଝିରେ ଯାଏ । ନୂଆଭୋପାଳ ଅଞ୍ଚଳକୁ ବିଷଗ୍ୟାସ୍ ବିଶେଷ ଆସିନଥିଲା । ଏଇ ଅଞ୍ଚଳରୁ ସ୍ୱେଚ୍ଛାସେବୀମାନେ ଏବେବି ଯାଉଥାନ୍ତି ଗ୍ୟାସ୍ ମାଡ଼ରେ ଉଜୁଡ଼ିଥିବା ଇଲାକାମାନଙ୍କୁ । ଗଲା ଛଅମାସ ଭିତରେ ଆପେ ଚଳିଯାଇପାରିଲାଭଳି ରୋଗୀ ଯେଝା ଘରକୁ ଫେରିଲେଣି । ତଥାପି ସହରଯାକ ଡାକ୍ତରଖାନାମାନଙ୍କରେ ନୂଆ ୱାର୍ଡ଼ମାନ ଖୋଲିଚି ଗ୍ୟାସ୍ ପୀଡ଼ିତଙ୍କ ପାଇଁ । ସବୁଠି ଧାଡ଼ି ଧାଡ଼ି ବେଡ୍ ମାନଙ୍କରେ ଛଟପଟ ହେଉଚନ୍ତି ଛାତିକୁ ପବନ ଟାଣିପାରୁନଥିବା ହଜାର ହଜାର ଊର୍ଦ୍ଧ୍ୱଶ୍ୱାସ ଲୋକ । ବାହାର ଲୋକଙ୍କ ଲାଗି ଯଦିଓ ପୁରୁଣା ଖବର ହୋଇଗଲାଣି ତିନି ଡିସେମ୍ବର ଦୁର୍ଘଟଣାର କଥା ସବୁ । ସହରର ଲୋକଙ୍କ ଲାଗି ବି ପାଲଟିଗଲାଣି ପୁରୁଣା ଘାଆ ।

ସେତିକି ବେଳେ ଥରେ ସଲ୍‌ମା ବେଗମଙ୍କ ପୁଅ ମୋତେ ଡାକିବାକୁ ଆସିଥିଲା, କହିଲା, "ଘରେ ଆଉ କେହି ନାହାନ୍ତି ମାଡ଼ାମ୍, ଆଜିକ ସଂଜବେଳଟା ଆପଣ ଟିକେ ମାଆଙ୍କ ପାଖରେ ରହିଯାଆନ୍ତେ ଯଦି ।" କହିଲି, "ଚିନ୍ତା କରନା, ସଂଜ କାଇଁକି, ଆଜି ରାତିଟା ଡାକ୍ତରଖାନାରେ ରହିଯିବି । ପନ୍ଦର ବର୍ଷ ଧରି ଏକାଠି ଚାକିରୀ କରିଚୁ, କେତେ ସୁଖଦୁଃଖ ବାଣ୍ଟିଆସିଚୁ ଏକାଠି, ଏତିକି କରିପାରିବିନି ତାଙ୍କ ଲାଗି ?"

ଏ ଭିତରେ ଥରେ ଅଧେ ଫାତିମାର ଭଉଣୀ ସାଙ୍ଗେ ମୋର ଦେଖାହେଉଥିଲା । ସେଦିନ ଦେଖାହେଇଗଲା ଫାତିମା ସାଙ୍ଗେ । ସଲ୍‌ମାଙ୍କ ବେଡ୍ ପାଖେ ବହିଖଣ୍ଡେ ଧରି ମୁଁ ବସିଥାଏ, ପାଖକୁ ଆସି ମୁହଁ ଉପରୁ ବୁର୍ଖା ଟେକି ଜଣେ କିଏ ଗ୍ୟାସରରେ କହିଲା, "ମାଡ଼ାମ୍ ନମସ୍କାର । ମୁଁ ଫାତିମା । ମନେ ରଖିଥିବେ କି ନାଇଁ, ଲକ୍ଷ୍ମୀବାଈ କଲେଜରେ ପଢୁଥିଲି ।"

ମୋତେ ତାକୁ ଚିହ୍ନିବାକୁ ଟିକିଏ ବେଳ ଲାଗିଲା । ସେ ପରିଚୟ ଦେଇନଥିଲେ ହୁଏତ ଚିହ୍ନି ପାରିନଥାନ୍ତି । ତେବେ ଖୁବ୍ ବେଶୀ ଆଶ୍ଚର୍ଯ୍ୟ ହେଲିନାହିଁ । ଏମିତିରେ ତ ଘରସଂସାର ପାତିଲାକ୍ଷଣି ଅଧିକାଂଶ ଝିଅଙ୍କ ଦେହରେ ସଂସାର ଏଡ଼େ ଆଖିଦୃଶିଆ ଛାପ ମାରିଦିଏ ଯେ ପୂର୍ବ ଛବି ଚିହ୍ନିବା ସହଜ ହୁଏନାହିଁ । ପୁଣି ଏମିତି କାଳ ସମୟ ପଡ଼ିଚି ଏଠି ଯେ ପୁରୁଣା ମଣିଷଟିଏ ଦିଶିଯିବା, ଚିହ୍ନିହେଇଯିବା କିଛି ସାଧାରଣ କଥା ନୁହଁ ।

ରୋଗୀମାନଙ୍କ ଘରୁ ଖାଇବା ପିଇବା ନେଇ ଆସିଥିବା ଲୋକଙ୍କ ଗହଳଚହଳ କମିଆସିଥାଏ । ରାତିରେ ଜଗିବାକୁ ରହିଥିବା ଅଳ୍ପକିଛି ଲୋକଙ୍କୁ ଭିତରୁ କେତେକେ ଏଠି ସେଠି ଜାଗା କରି ଗଡ଼ିପଡ଼ିଥାନ୍ତି, ଜଣକେତେ ଚଉକି ମାନଙ୍କରେ ବସି ଢୁଳଉଥାନ୍ତି । ଫାତିମା କହିଲା ତା' ମା' ଭଲ ହେଉନାହାନ୍ତି, ଏମିତି ଡାକ୍ତରଖାନାରେ ଭର୍ତ୍ତି କରିବାକୁ ହେଉଚି ମଝିମଝିରେ, ଦେହ ଏତେ ଦୁର୍ବଳ ହେଇପଡୁଚି ଯେ ରକ୍ତ ଦେବାକୁ ପଡୁଚି ।

ମୁଁ ଜାଣିଥିଲି ଏମିତି ଘରେ ଘରେ ହେଉଚି ବୋଲି । ଅସଲ କଥା ହେଲା ଚିକିତ୍ସା ବୋଲି କିଛି ହେଇପାରୁନାଇଁ ଏଭଳି ରୋଗୀଙ୍କର । ଯାହା ଚାଲିଚି ସବୁ ଉଣାଅଧିକେ ପରୀକ୍ଷା ନିରୀକ୍ଷା ବୋଲି କୁହାଯିବ । କାଇଁକିନା ଫୁସ୍‌ଫୁସ୍‌ଟା ଝାଉଁଳି ପଡ଼ି ଦେହଭିତର ଅଙ୍ଗ ମାନ କ୍ରମେ ପକ୍ଷାଘାତ ହେଇଯାଉଥିବା ଏ ଅଜବ ରୋଗକୁ କି ଓଷଧ କାଟୁ କରିବ ଜଣାନଥିଲା କାହାରିକୁ । ଅମୋଘ ଥିଲା ସେ କୀଟନାଶକ ଗରଳ । ବଜାରରେ ତାକୁ କିଣୁଥିବା ଚାଷୀ କେବେ ପଚାରେନାଇଁ କି ପଦାର୍ଥ ସିଏ – କେଇ ଟୋପା ବାମ୍ଫେଇଯାଇ କିଆରୀ ଗୋଟାକର ପୋକଜୋକଙ୍କୁ ସମୂଳେ ନାଶ କରିଦିଏ ଯାହା । ଗରିବ ଦେଶଟିର ଅଖ୍ୟାତ ସହରତଳିରେ ବାଡ଼ଘେରା କେଇ ଏକର ଶୁଖିଲା ଜମି, ସାଦାସିଧା ଟିଣଛାତ ଚିମନୀ ଲଗା ଶେଡ୍ ଭଳି କେଇଟା ଘର । ଟ୍ରେନିଂ ପ୍ରାପ୍ତ ଦରପଢ଼ା ଲୋକେ ଚଳାଉଥିବା କାରଖାନା । କେତେ ଦାୟିତ୍ୱ ନେଇ ତଦାରଖ କରୁଥିଲା ସେ ଗୋରା କମ୍ପାନୀ ହାକିମ ଯିଏ କଦବା କେବେ ଆସୁଥିଲା ଶ୍ୟାମଳା ହିଲ୍‌ସର ବଣ ଘେରା ପ୍ରାସାଦକୁ, କିଏ ବା ସେକଥାର ଖବର ରଖୁଥିଲା । ମାଟିତଳ ଅକାତ କୂଅମାନଙ୍କରେ ଭରା ସମୃଦ୍ଧତମ ଦେଶର ବିଜ୍ଞାନ ସମ୍ଭୂତ ସେ ତରଳ ରସାୟନ । ମିଥାଇଲ୍ ଆଇସୋସାୟାନେଟ୍ । ରାତିଅଧରେ ପେଡ଼ିରୁ ବାହାରିଲା ସାପ ଭଳି ଖସି ପଳେଇଥିଲା ସିଏ କାହା କାବୁରେ ନ ରହି, ଆଉ ଫଣା ଟେକି ଉଦ୍‌ଗାରି ପକେଇଲା କେଇ

ଟନ୍ ହଳାହଳ ବିଷ ନିଶ୍ଚିନ୍ତରେ ଶୋଇଲା ସହର ଉପରେ । ଯିଏ ତା' ପେଟରେ ଥରକେ ଗଲା ଗଲା, ହେଲେ ଯିଏ ଘାଉଲା ହେଲା ତା' ଲାଗି ମଲମ ପୃଥିବୀରେ କାହା ପାଖେ ନଥିଲା । ନାଗ ସାପ ବିଷର ଓଷଦ ଅଛି, ହେଲେ ଯା'ର ନାହିଁ ।

ୱାର୍ଡ଼ର ପର୍ଦ୍ଦାଘେରା କୋଣଟି ଭିତରେ ବସିଥିଲି ମୁଁ, ସଲ୍‌ମା କେତେଦିନ ହେଲା ଅଚେତ ଅଛନ୍ତି ପ୍ରାୟ । ଧିମା ଆଲୁଅରେ ଆଉ ବହି ପଢ଼ିହେଉନଥିଲା, ଗରମ ଯୋଗୁଁ ନିଦ ବି ଆସୁନଥିଲା । ଧୀରେ କରି କେତେବେଳେ ପର୍ଦ୍ଦା ମୁହଁକୁ ଆସିଲା ଫାତିମା, ଡାକିଲା, "ମାଡ଼ାମ୍ ଆସନ୍ତୁ, ବାହାର ବାରଣ୍ଡାରେ ବସିବା, ସେଠି ଥଣ୍ଡା ଲାଗୁଚି ।" ଚଉକି ଦିଇଟା ଆଣି ପକେଇଲା ସିଏ । ଲମ୍ବ ବାରଣ୍ଡାରେ ଗୋଟିଏ ଅଧେ ବଲ୍‌ବ ଜଳୁଥାଏ, ଖଣ୍ଡେ ଦୂରରେ ତଳେ ବିଛଣା ପାରି ଶୋଇଥାନ୍ତି କେତେଜଣ । ସେଇଠି କାନ୍ଥ ସେପାଖେ ମାଳମାଳ ଧଇଁ ପେଲୁଥିବା, ଅଧା ଚେତାରେ କୁହୁରୁଥିବା ରୋଗୀମାନଙ୍କଠୁ ଟିକିଏ ଦୂରେଇ ବସି ସତେକି ଆମ ନିଃଶ୍ୱାସ ମାରିଲୁ ।

ଉପରେ ସୋରାଏ ନିର୍ମଳ ଆକାଶରେ ଅସଂଖ୍ୟ ନିର୍ଲିପ୍ତ ତାରା । ଫାତିମାର ଛାତିତଳ ରୁନ୍ଧା କଥାସବୁ ଏତେଦିନକେ ବହିଯିବାଲାଗି ବାଟ ପାଇଥିଲା ଅବା । ମୋ' ପାଖରେ ସାରା ରାତି ଧରି ସେଦିନ କହିଥିଲା ତା' କାହାଣୀ, ଚେନାଏଁ ଗୁଆଏ ଲେଖାଁ ଏଠୁ ସେଠୁ କରି । କହୁଥିଲା ସେ, କେମିତି ତା' ମନକୁ ଘାରି ରଖୁଚି ପ୍ରଶ୍ନଟିଏ, ଯେ ସତେ କ'ଣ ବଦଳିଯାଇପାରିଥାନ୍ତା ତା' ଜୀବନ, ଯଦି ସେଇ ସଂଜଟିରେ ଆଖିବୁଜା ପଦକ୍ଷେପଟି ସେ ନେଇନଥାନ୍ତା । କିମ୍ବା ଯଦି ଆହୁରି ଅଳ୍ପବୟସରେ ଏଡ଼ାଇଯାଇପାରିଥାନ୍ତା ସେ ଦାୟିତ୍ୱହୀନ ନିର୍ଣ୍ଣୟଟି ।

କହିଲା ସେ, – "ଏଇ ସାରା ସହରର ଜୀବନ ବି ତ ଓଲଟପାଲଟ ହେଇଗଲା ଗୋଟିଏ ମୁହୂର୍ତ୍ତର ଘଟଣାରେ, କାରଖାନା ପାଇପ୍ ମୁଣ୍ଡଟିଏ ଠିକ୍ ବେଳରେ ମରାମତି ହେଲାନାଇଁ ବୋଲି । କାହାର ଦାୟିତ୍ୱ ଥିଲା ସେ କାଳ ରାତିର ନିର୍ଣ୍ଣୟ ?"

ମୁଁ କହିଲି ତାକୁ, "ସବୁକିଛି ହାତରୁ ଖସିଗଲା ବୋଲି କାଇଁକି ଭାବୁଚ ଫାତିମା । ମୁଣ୍ଡ ଟେକି ଛିଡ଼ା ହୁଅ, ଆଗକୁ ବାଟ ଦିଶିବ । କେତେ ବା ତମର ବୟସ । ଅଧା ଛାଡ଼ିଥିବା ପାଠ ପୂରା କର ।"

ତା' କଥାରୁ ବୁଝିଲି, ତା' ପରିବାରର ଅବସ୍ଥା ଯାହା, ପୁଣି ତା' ଜୀବନର ବଦଳିଯାଇଥିବା ପରିସ୍ଥିତି ଏଭଳି ଯେ ମୁଣ୍ଡଟେକି ଘରୁ ବାହାରିବା ତା' ଲାଗି ଆଉ ସହଜ ନୁହଁ । ପୁରୁଣା ସହରର ଝିଅମାନେ ପ୍ରଥମ କରି ଏକୁଟିଆ ବିନା ପର୍ଦ୍ଦାରେ ଘରୁ ଗୋଡ଼ କାଢ଼ିବା ବେଳେ, ଘରର ଦାୟିତ୍ୱ ନେଉଥିବାବେଳେ ସେ ନିଜ ଖୋଲା ମୁହଁ ଅନ୍ୟ ଆଗରେ

ଦେଖାଇବାକୁ ଡରୁଛି । ପ୍ରତିଦିନ ତାକୁ ମନେହେଉଚି ଜୀବନ ଆଉରି ଆଉରି ଖସିଯାଉଚି ହାତଆଙ୍ଗୁଳି ଫାଙ୍କରୁ ବାଲି ମୁଠାଏ ଭଳି । କାତର ହେଇ ପଚାରୁଚି ମୋତେ ସେ, କିଛି ଉପାୟ ଅଛି କି ରୋକି ହେବ ୟା'କୁ ମାଡ଼ାମ୍ ? ଘରେ ଓ ସାଇପଡ଼ିଶାରେ ଯେଉଁ ପରିଚୟ, ସମ୍ମାନ ତା'ର ସ୍ୱାଭାବିକ ସ୍ଥିତି ବୋଲି ସେ ମାନିନେଇଥିଲା ହେତୁ ପାଇଲା ଦିନୁ, ଆଜି ଦେଖୁଚି ତା'ର ଛାଡ଼ିଯାଇଥିବା ଖାଲି ଜାଗା ଅରାକ ଆଉ ସେଠି ନାହିଁ ।

ମୁନ୍ତାର ଏ ଭିତରେ ସହରକୁ ଆସିଚି ବୋଲି ବି ସେ ଖବର ପାଇଚି, ହେଲେ ପାଖ ଗଳିରେ ନିଜ ଘରକୁ ଆସି ବି ସେ ଫାତିମାର ଖବର ନେଇନାହିଁ । ତୁନି ହେଇ ଶୁଣୁଥିଲି ମୁଁ ତା' କଥା । ମୋ' ପାଖେ ତା' ପ୍ରଶ୍ନର ଉତ୍ତର ବି ନାହିଁ, ଯେ ସତେ କ'ଣ ଆତ୍ମୀୟ ସ୍ୱଜନ ଅଜାଡ଼ିଦେଉଥିବା ସ୍ନେହ ସମ୍ମାନ ସବୁ ସେଇକ୍ଷଣି ଉଠାଇ ଫିଙ୍ଗିଦିଆଯାଇପାରେ, ଦୋକାନର ଜିନିଷରେ ମରା କମ୍ପାନୀର ନାଁ ଗାଁ ମୋହର ଭଳି ?

ଶେଷରେ ମୁହଁ ଘୋଡ଼େଇ କାନ୍ଦୁଥିବା ତା' ଦି'ହାତକୁ ଆସ୍ତେ ଟାଣିନେଇ କେବଳ ଏତିକି କହିଲି ମୁଁ, "ଏ ହାତ କ'ଣ ଖାଲି ନିଜ ଲୁହ ପୋଛିବାରେ ଲଗାଉଥିବ ଫାତିମା ? ନା ଆଉ କିଛି ବି କରିପାରିବ, କିଛି ଚିନ୍ତା କରିଦେଖ ଏଥର ।"

ସେଦିନ ଫେରିବା ପୂର୍ବରୁ ମୋତେ କହିଥିଲା ଫାତିମା, କେମିତି ଟିକେ ମଝିମଝିରେ ଏମିତି ଦେଖା ହୁଅନ୍ତା ବୋଲି । ତେବେ ତା'ପରେ ଅନେକ ଦିନ ଯାଏଁ ଆଉ ତା' ସହିତ ଦେଖା ହେଇପାରିନଥିଲା । ଦିନ କେତେଟା ପରେ ମୋ' ସହକର୍ମୀ ସଲ୍ମା ଚାଲିଯାଇଥିଲେ ଆରପାରିକି । ମୁଁ ସୁଲ୍‌ତାନିଆ ଜନାନା ହସ୍‌ପିଟାଲକୁ ଯିବା ବନ୍ଦ କରିଦେଇଥିଲି ।

# ନିଜ ନିଜ ଜାଗା

ସେଦିନ ମା'କୁ ଡାକ୍ତରଖାନାରେ ଛାଡ଼ି ସକାଳୁ ଘରକୁ ଫେରିଲାବେଳେ ଟିକିଏ ଉଣ୍ଢାସ ଲାଗୁଥାଏ ଫାତିମାକୁ । ସତେକି ଏବେବି ହାତରୁ ସବୁକିଛି ଚାଲିଯାଇନାହିଁ । ବଞ୍ଚିଲା ଭଳି ଦିନ କାଟିବାକୁ ଅଛି ଏବେବି । ରାତି ଅନିଦ୍ରା ପରେ ତିନି ଚାରି କିଲୋମିଟର ବାଟ ଚାଲି ଘରେ ପହଞ୍ଚିଲା ସେ । କାଲି ସଂଜବେଳେ ରେହମାନ ତା' ନୂଆ ମଟର ସାଇକଲ ପଛରେ ବସେଇ ହସପିଟାଲରେ ଛାଡ଼ି ଯାଇଥିଲା । ଆଜି ସକାଳୁ ଫାତିମା ଅପେକ୍ଷା କରିଥିଲା କିଛିବେଳ, ଘରୁ କେହି ମା' ଲାଗି ଜଳଖିଆ ନେଇ ଆସିବ କି ବୋଲି । ଶେଷରେ ନର୍ସ ଜିମାରେ ମା'କୁ ଛାଡ଼ି ପାଦରେ ଚାଲି ବାହାରିପଡ଼ିଲା । ହାତରେ ପଇସା ନାହିଁ ଅଟୋ କି ବସ୍ କରିବା ଲାଗି । ସାନ ଭାଇ ଭଉଣୀଙ୍କୁ ମାଗିବା ଲାଗି ଜିଭ ଲେଉଟେ ନାହିଁ । ଘରେ ପହଞ୍ଚିଲା ବେଳକୁ କବାଟ ଦରଆଉଜା ଅଛି, କାହିଁ କିଛି ଶୋର ଶବ୍ଦ ନାହିଁ ।

ଭିତରୁ ଅଗଣା କବାଟ ଦେଇ କୂଅ ପାଖେ ଗୋଡ଼ ଧୋଇଲାବେଳକୁ ନଜର ପଡ଼ିଗଲା, କାନ୍ଥ ପାଖ ସାନ ଅଧା ଖପର ଛାଉଣୀ କାଠଘରଟି ପାଖେ ଡେରା ହେଇଚି ତା'ର ପୁରୁଣା ସ୍କୁଟି ଖଣ୍ଡକ । ସାଜିଦ୍ ଚଲାଉଥିଲା କାଳେ ସେ ଗଲାପରେ । ସେ ଚାଲିଯିବାପରଠୁ ସେମିତି ପଡ଼ିରହିଚି । ହୀନା ଜରୀନା କେବେ ଚଲେଇବାକୁ ସାହସ କରିନାହାନ୍ତି । ମଝିରେ ଦିନେ ରେହମାନ ଚେଷ୍ଟା କରିଥିଲା ହେଲେ ଶୀତ କାକରରେ ପଡ଼ି ସେଇଟା ଖରାପ ହେଇଯାଇଚି । ହାତରେ ପଇସା ହେଲେ ତାକୁ ମରାମତି କରି ଚଲେଇବାର ଖିଆଲ ଆସିଚି ଫାତିମାର ମନକୁ, ତେବେ କଥାଟା ମୁହଁଯାଏଁ ଆଣିପାରିନାଇଁ ।

ଭିତରୁ ଦାଦୀମା'ର ସ୍ୱର ଶୁଣିଲା, "କିଏ ଫାତିମା ଆସିଲୁ କି ? ଏତେବେଳକେ ଘରକୁ ଫେରିବାକୁ ମନେ ପଡ଼ିଲା ?"

ଉତ୍ତରରେ କଥା କାଟି କିଛି ଲାଭ ନାହିଁ । ବୁର୍ଖା ଖୋଲି ବାରଣ୍ଡାକଡ଼ ଆଲଣାରେ ରଖୁରଖୁ ଫାତିମା ପଚାରିଲା, "ବାହାର କବାଟଟା ଖୋଲା ଥିଲା ଯେ, କୁଆଡ଼େ ଗଲେ ସମସ୍ତେ ?"

ଓଲଟି ପ୍ରଶ୍ନ କଲା ଦାଦୀମା' – "ସମସ୍ତେ ଆଉ କିଏ ? ଗଲେଣି ସବୁ ଯେ ଯାହାର କାମରେ । ତୋରି ବାଟ ଚାହିଁ ବସିଚି ମୁଁ, ତାଙ୍କୁ ସବୁ କହିଲି ଉଠିଯାଇ କବାଟ ଖୋଲିବାକୁ ମୋର ବଳ ନାହିଁ, ଆଉଜେଇ ଦେଇ ଯାଆ । ଏଠି ଅଛି କଅଣ ଯେ ଚୋର ଡକେଇତକୁ ଡରିବି ?"

ଚୁପ୍‌ଚାପ୍ କିଛି ବେଳ ସେମିତି ଛିଡ଼ାହେଇ ରହିଲା ଫାତିମା । ଯାଇପାରିବା ଲୋକେ ଯାଉଚନ୍ତି ବାହାରି ନିଜ ନିଜ ବାଟରେ । ଅଳ୍ପବୟସ୍କ ତିନିହେଁ, ନିଜେ ନିଜେ ବିଚାର କରି ଘର ଦାୟିତ୍ୱ ହାତକୁ ନେଇଚନ୍ତି । ମଣା କରିବାକୁ କେହି ନାହାନ୍ତି ସତେକି । ଦୁଆର ମଝିରେ ଛିଡ଼ା ହେଇଚି ଘରର ବଡ଼ ଝିଅ ଫାତିମା । ନା ନିଜ ଇଚ୍ଛାରେ ବାହାରିଯିବାର ବଳ ଅଛି ତା'ର, ନା ମନ ମାଫିକେ ଚଳିବାକୁ ରହିବାକୁ ସମ୍ବଳ । ରାତିସାରା ଅନିଦ୍ରାର ଥକାରେ ଦେହ ଭାଙ୍ଗି ପଡୁଚି । ଭାବୁଚି ଆଗ ଚାହା କପେ ପିଇବ, ନା ଗାଧୁଆ ପାଧୁଆ ସାରିବ ନା ଘରର ଝାଡୁ ପୋଛା । ପଚାରିଲା ଦାଦୀମା'ଙ୍କୁ, "ତମେ ଗାଧେଇ ନଥିବ ତ ଦାଦୀମା' ? ସକାଳୁ କିଛି ଖାଇଚ ନା ନାହିଁ ?"

ମୁହଁ ଫଣ ଫଣ ଜବାବ ଶୁଭିଲା ଦାଦୀମା'ଠୁ, "କିଏ ସେ ଅଛିବୁଝିବାକୁ ମୋ' କଥା ? ଚାହା ସାଙ୍ଗରେ ବାସି ରୁଟି ଦି'ଖଣ୍ଡ ଥୋଇଦେଇ ସ୍କୁଲ ଗଲା ଜରୀନା । କ'ଣ ସେ ନିଜେ ଖାଇଚି କି ନାଇଁ କେଜାଣି । ବଡ଼ ଦିହେଁ ବି ସୁଦୁ ଖାଲି ପେଟରେ ବାହାରି ଯାଇଚନ୍ତି ।"

ରୋଷେଇ ଘରକୁ ଯାଉ ଯାଉ ଫାତିମା ନରମ ଗଳାରେ କହିଲା, "ରହ ମୁଁ ଏଇଲାଗେ କ'ଣ ଟିକେ ତିଆରି କରୁଚି । ରେହମାନ ଆଉ ହୀନା କଥା ଚିନ୍ତା କରନା । ତାଙ୍କ ହାତରେ ପଇସା ଅଛି, କୋଉଠି ଖାଇଦେଇଥିବେ । ସେଇ ରାହତ ଅଫିସ୍ ପାଖରେ ସବୁ ଖାଇବା ଜାଗାମାନ ଖୋଲିଯାଇଚି କାଲେ ।"

ଦିପହର ଖିଆପିଆ ସାରିଲା ପରେ ଯାଇ ଦାଦୀମା' ପାଖରେ ଟିକିଏ ଗଡ଼ିପଡ଼ିବାକୁ ଫୁରସତ୍ ମିଳିଲା ଫାତିମାକୁ । ଆଖି ଲାଗିଆସିଲା ବେଳକୁ ଦାଦୀମା ପଚାରିଲା, "ତୋ ମା' କଥା କିଛି କହିଲୁ ନାଇଁ ଯେ ? ଡାକ୍ତର କ'ଣ କହିଲେ ? ବଞ୍ଚିବ ନା ନାଇଁ ?"

ନିଦୁଆ ଗଳାରେ ଫାତିମା କହିଲା, "ବଞ୍ଚିବ ନାଇଁ କାଇଁକି ଯେ । ଦି'ଦିନ ପରେ ଘରକୁ ଛାଡ଼ିଦେବେ । ନୂଆ ଓଷଦ କ'ଣ ଆସିଚି ଆମେରିକାରୁ ଯେ କାମ ଦେଉଚି କି ନାହିଁ ଦେଖୁଚନ୍ତି ।"

ଚିଡ଼ିଚିଡ଼ା ଉତ୍ତର ଦେଲା ଦାଦୀମା', "କ'ଣ ଆଉ କାଟୁ କରିବାର ଅଛି ? ତା' ମୁଣ୍ଡ ତ ବିଗିଡ଼ି ସାରିଚି । ଘରକୁ ଆଉ ଆଣ ନାଇଁ ତାକୁ । ପଡ଼ିଥାଉ ସେଇ ଡାକ୍ତରଖାନାରେ । ହଜାର ହଜାର ଲାୱାରିସ୍ ରୋଗୀ କ'ଣ ପଡ଼ିନାହାନ୍ତି ।"

କଡ଼ ଲେଉଟାଇ ଜେଜେମା'କୁ ପିଠିକଲା ଫାତିମା । କହିଲା, "ତମେ ଅମ୍ମି ଉପରେ କାହିଁକି ବିଗୁଡୁଚ ଦାଦୀମା' । ତା'ଭଳି କେତେ ଲୋକ ଅଛନ୍ତି, ତାଙ୍କ ମୁଣ୍ଡକୁ ଠିକ୍ ମାତ୍ରାରେ ଅମ୍ଳଜାନ ଯାଇପାରିନାହିଁ ବୋଲି ଅଚେତ ହେଇ ବି ଅନେକେ ପଡ଼ିଚନ୍ତି ସେଇଦିନୁ ।"

ଆଉରି କେତେଥର ପରି ଦାଦୀମା' ପୁଣି କହିଲେ, "ତା' ମୁଣ୍ଡ ତ ସେଇଦିନୁ ବିଗିଡ଼ିଥିଲା, ସେଇ କାଳ ରାତିରେ ଯେବେ ତା' ବାପ ମା' ଦେଶ ଛାଡ଼ି ପାକିସ୍ତାନ ପଳେଇଲେ । ତେର ଚଉଦ ବର୍ଷର ଝିଅଟାକୁ ଶଶୁରଘର ଜିମାରେ ଛାଡ଼ିଦେଇ ପିଲାକବିଲା ନେଇ ପଳେଇଲା ତା' ସ୍ୱାର୍ଥପର ବାପ ।"

ଫାତିମାର ଆଖିରୁ ନିଦ ଛାଡ଼ିଯାଇଥିଲା । ତା'ର ପୁଣିଥରେ ମନକୁ ଆସିଲା, ଅମ୍ମି ଯେଉଁ କାଳ ରାତି କଥା ଥରକୁ ଥର କହୁଚି, ସେଇଟା ଗ୍ୟାସ୍ କାଣ୍ଡର ରାତି ନା ଦେଶ ବିଭାଜନ ପରେ ଅମ୍ମିର ସମସ୍ତେ ବାପଘର ଲୋକେ ଯେବେ ନବାବଙ୍କ ସାଥିରେ ଦେଶ ଛାଡ଼ି ଚାଲିଗଲେ, ସେବେକାର କଥା ତା' ମୁଣ୍ଡକୁ ଆସୁଚି ? ପିଲାଦିନ ବିଭାପରେ ଗୌନା ବନ୍ଧାଣ ହେଇନଥିବା ଅଚିହ୍ନା ଶାଶୁଘରେ ଛାଡ଼ିଦେଇ ଚାଲିଗଲେ କାଳେ ତା' ବାପା । ବାପ ମା'ଙ୍କୁ ଛାଡ଼ି ଦିନଟିଏ କେବେ ରହିନଥିବା ସାଫିନା ସେଦିନ କେମିତି ରାତିଯାକ କାନ୍ଦିଥିଲା, ସେକଥା ଫାତିମାର କାନରେ ପଡ଼ିଚି । ସାଇପଡ଼ିଶା ବାହାର ଲୋକେ କହନ୍ତି, ସାଫିନାର ବୋବାଳି ଶୁଣିଥିଲେ ସେମାନେ ସାରା ରାତି ଧରି – "ଅମ୍ମି... ଅବ୍ବୁ... ମୋତେ ଛାଡ଼ି ଚାଲିଯାଅ ନାହିଁ... ସାଙ୍ଗରେ ନେଇଯାଅ..." । ଘରେ କେହି ସେ କଥା ଉଚ୍ଚବାଚ୍ୟ କରନ୍ତି ନାହିଁ କେବେବି । ସେଇ ରାତି ସାଙ୍ଗେ ମିଶିଯାଉଚି କି ଏବେ ଅମ୍ମିର ସ୍ମୃତି ?

ମନରୁ କାଢ଼ିଦିଏ ସେକଥା ଫାତିମା, ସତସତିକା ଏଭଳି ନିଷ୍ଠୁର ଚିତ୍ରଟିଏ ଆଙ୍କିବାକୁ ନାହିଁ କରେ ତା' ମନ । ଏଥରକ ପୁଣି ଜେଜମା ଆଡ଼କୁ ମୁହଁ ବୁଲେଇ ଶୋଇଲା ସେ, କହିଲା, "ତୁ ଆଉ ମତେ ଶୁଆଇ ଦେବୁନି । ତୋ'ର ଗପିବା ଦରକାର, ସେଇଆ କହୁନୁ ।"

ଆଜିକାଲି ଦାଦୀମା' ଏମିତି ପୁରୁଣା ଦିନ କଥାସବୁ ବେଶୀ ଗପେ । କିଛି ଜଣାଶୁଣା ଘଷରା କଥା, ଆଉ କିଛି ଅଜଣା ଅଶୁଣା, ଯେଉଁ କଥା ସବୁ ମୁହଁରେ ଧରା ହେଇନଥିଲା ବୋଧେ ଫାତିମାର ଜନ୍ମ ହେଲାଦିନୁ । ସବୁଦିନେ ଶୁଣିଆସିଚି ସେ ଦାଦୀମା'ର ପିଲାଦିନ କଥା, ତାଆରି ମୁହଁରୁ, ପରୀରାଇଜ କାହାଣୀ ଭଳି । ରାଜପରିବାର ସାଙ୍ଗେ ତା' ବାପଘରର କେଇ ପୀଢ଼ୀର ସମ୍ବନ୍ଧ କଥା । ସାଧାରଣ ଛୋଟକାଟିଆ କର୍ମଚାରୀ ଥିଲେ ବି ସେମାନେ ଥିଲେ ନବାବଙ୍କ ବିଶ୍ୱାସଭାଜନ । ଭୋପାଲ ରାଜ୍ୟର ରାଣ୍ଣୀ ବେଗମ୍ ସାହିବାଙ୍କ କଥା ବି ଯେତେ କହିଲେ ବି ଥକେ ନାହିଁ ଦାଦୀମା । ତଥାପି ଆଉ ଅନେକଙ୍କ ଭଳି ତା' ବାପଘର ନବାବଙ୍କ ସାଙ୍ଗେ ପାକିସ୍ତାନ ଯାଇନଥିଲେ । ଦେଶ ଭାଗ ବଣ୍ଟରା ହେବାବେଳେ ନବାବଙ୍କର

ବିଶ୍ୱସ୍ତ ପରିବାରସବୁ ତାଙ୍କ ସାଙ୍ଗେ ଦେଶଛାଡ଼ି ଚାଲିଗଲେ, ଓ ତା' ସହିତ ଫାତିମାର ପୂର୍ବ ପୀଢ଼ୀର ପରିବାର ଭାଗଭାଗ ହେଇଯାଇଥିଲେ । ମାମୁଘର ଲୋକେ କହିଲେ ସେମାନେ କେଇ ପୁରୁଷ ହେଲା ଭୋପାଲ ନବାବ ଘର ଲୁଣ ଖାଇ ଆସିଚନ୍ତି, ରାଜପରିବାର ଲାଗି ଲଢ଼ି ଜୀବନ ଦେଇଚନ୍ତି ତାଙ୍କ ବଂଶର ଲୋକେ । ଆଜି ତାଙ୍କୁ ଏକୁଟିଆ ଯିବାକୁ ଛାଡ଼ିଦେବେ କେମିତି ? ଆଉ ତା' ଛଡ଼ା, ସୀମା ଆରପାରି ନୂଆ ଦେଶରେ କେତେ ସୁଯୋଗ ମିଳିବାକୁ ଅଛି । ଏଠା ଲୋକେ ଛାଡ଼ିଯାଇଥିବା ଅବସ୍ଥା, ସ୍ଥିତିକୁ ଚାହିଁ ସେଠି ଭରଣା ମିଳିବ । ଘର, ଜମି, ଚାକିରୀ ମିଳିବ । ଏଣେ ଜେଜେମା' ଜେଜେବାପାଙ୍କ ପରିବାର ଭିତରୁ ଅନେକେ ଯିବାକୁ ନାହିଁ କଲେ । କହିଲେ, ପୂର୍ବପୁରୁଷଙ୍କ ଜମିବାଡ଼ି ଘରଦ୍ୱାର ଛାଡ଼ିଦେଇ ଚାଲି ଯିବୁ କେମିତି ? ଆତ୍ମୀୟ ସ୍ୱଜନଙ୍କ ସାଙ୍ଗେ ବନ୍ଧା ଛନ୍ଦା ଏ ଜୀବନକୁ ଛାଡ଼ିଦେଇ ? ଅଜଣା ଦେଶରେ ବାରବୁଲା ହେବାଲାଗି ?

ଅଠର ଉଣେଇଶ ବର୍ଷର ଫାରୁକ୍‌ର ପିଲାଦିନୁ ନିକାହ ହୋଇସାରିଥାଏ ସାଫିନା ସାଙ୍ଗେ, ହେଲେ ସେ ଯାଏଁ ପରିଚୟ ହେଇନଥାଏ । ଫାରୁକ୍ ହିଁ ଶୁଣେଇଦେଇଥିଲା ଘରେ ନିଜ ନିଷ୍ପତ୍ତି, ଯେ ତା' ସାଫିନାକୁ ସାଙ୍ଗରେ ନେଇ ଯାଇପାରିବେ ନାହିଁ ତା' ବାପଘର । ତା'ର ନିକାହ ଯେଉଁଠି ହେଇଚି ସେଇଠି ତାକୁ ସମର୍ପି ଦେବାକୁ ସେମାନେ ବାଧ୍ୟ । ନଚେତ୍ ସେ ନିଜେ ଘରଛାଡ଼ି ଚାଲିଯିବ ନୂଆ ଦେଶକୁ ।

ଫାତିମା ଆଜି ଭାବୁଚି, କେତେ କଷ୍ଟ ସେଥିଲାଗି ଅମ୍ମି ସହିଥିବ ଆଜୀବନ କିଏ ଜାଣେ, ହେଲେ ବାପଘର କଥା ତା' ମୁହଁରୁ କିଛି ସେ ଶୁଣିନାହିଁ ପ୍ରାୟ । ଗ୍ୟାସ୍ ମାଡ଼ରେ ମୁଣ୍ଡ ବିଗିଡ଼ିଯାଇଚି ବୋଲି ଏବେ ତା' ସାଙ୍ଗେ କାହାରି କଥାବାର୍ତ୍ତା ଅସମ୍ଭବ ହେଇଯାଇଚି । ହେଲେ ବିଚାରୀ ମନହେଲେ ଯେବେ ମୁହଁ ଖୋଲେ, କେତେ ଅଚିହ୍ନା କଥା ଚାଲିଆସେ ସେ ଭିତରକୁ, କେହି ସେଥିକି ନିଘା କରନ୍ତିନି ।

ଦାଦୀମା' ବି ଏଣିକି ଏକୁଟିଆ ବେଳେ ଫାତିମା ସାଙ୍ଗରେ କଥା ହୁଏ ପ୍ରାୟ, କୋଉ ପୁରୁଣା ଯୁଗର କଥା । କହେ ଭୋପାଳର ନବାବଙ୍କ ଭାରତରୁ ଅଲଗା ହେଇ ସ୍ୱତନ୍ତ୍ର ରାଜପାଟ କରିବାର ଯୋଜନା ଫସରଫାଟିବା କଥା । ପୁଣି ଅନେକଦିନୁ ରାଜପରିବାର ଲୋକେ ଇଂରେଜ ସରକାରଙ୍କ ହାତବାରିସୀ ହୋଇଥିବାର ଗୁମର ସବୁ । ଫାତିମା ଟିକିଏ ବେଳରେ ଚିଡେଇ ଯାଏ ସେସବୁ କଥାରେ । ତା'ର ଅଲଗା ରକମର ଗପ ଦରକାର । ପଚାରେ, "ଦାଦୀମା', କହନା, ସେଇ ଯୋଉ ଅସଲ ସୁନାରେ ବେଗମ୍ ସାହିବାଙ୍କ ନିକାହ ଲାଗି ଜରିଜାଲିର ଓଢ଼ଣୀ ତିଆରି ହେଇଥିଲା । କେମିତି ପରଦିନ ବରାତ ଆସିଲାବେଳକୁ ରାତାରାତି ଲାଗିପଡ଼ି ତିଆରି କରିଦେଇଥିଲେ ତାକୁ କାରିଗର ସ୍ୱାମୀନେ ।" ଦାଦୀମା' ସେଇଠୁ

ଗପେ ଆଉରି ଆଉରି କେତେକଥା । ଆଖପାଖରେ ସଂସାରଠୁ ଅଲଗା ହେଇ ସମୟ ଗଡ଼ିଯାଏ ଆଈ ନାତୁଣୀଙ୍କର । ଇଦ୍ ଦିନ ସୁନା ରୁପା ବାସନରେ ବିରିଆନୀ କବାବ ଖିଆ କଥା ଆସେ । ସରକାର ବେଗମଙ୍କର ବିନା ପର୍ଦ୍ଦାରେ ଘୋଡ଼ାଚଢ଼ାର କେତେ ଘଟଣା । ଆଉ ରାଣୀମାନେ ତିନି ପୀଢ଼ୀ ଧରି ପର୍ଦ୍ଦା ଭିତରୁ ରାଜ୍ୟ ଚଳେଇବାର କେତେ କୀର୍ତ୍ତି ।

ଫାତିମା ଏଥର କୁହାଏ ଦାଦୀମା'ର ମନ ତଳର ସବୁଠୁ ମିଠା କଥାଟି, "ହେଲେ ଦାଦୀମା', ତୁ ତୋ'ର ଏତେ ଖାନଦାନୀ ଘର ଛାଡ଼ି ଗାଉଁଲି ଟୋକାଟିଏକୁ ବାହାହେଲୁ ଯେ ?"

ଦାଦୀମା' କହିବସେ ପୁଣିଥରେ, ଆଉଟିକେ ରଙ୍ଗ ଲଗେଇ, ତା'ର ସେକାଳର ପ୍ରେମ ବିବାହର କାହାଣୀ – "କିଏ କହିଲା ମ ତୋ' ଜେଜେ ଗାଉଁଲି ଟୋକା ଥିଲେ ବୋଲି ? ସେ କାଳର ଫଟ ନାଇଁ, ନହେଲେ ଦେଖିଥାନ୍ତୁ ତାଙ୍କ ଚେହେରା ।" ଖୋଦ୍ ସରକାର ଅମ୍ମାଙ୍କ ସଇସ ହେଇ ନୂଆ ଆସିଥିଲା ସେଇ ଯୁବକଟି । ଯେତେବେଳେ ତାଙ୍କ ପ୍ରାୟ ଘୋଡ଼ାର ଦାୟିତ୍ୱରେ ଥାଇ ଲଗାମ ଧରି ନେଇ ନିତି ଆସୁଥାଏ ସେ, ବେଗମଙ୍କ ପାଖଲଗା ହେଇ ସାଙ୍ଗରେ ରହୁଥିବା ନହ୍ଲୀ ଝିଅଟିର ପ୍ରେମରେ ଭଲା କେମିତି ନ ପଡ଼ନ୍ତା ? ନିଜେ ସରକାର ବେଗମ କହିଲେ ତା' ବାପାଙ୍କୁ, ଝିଅକୁ ବାଧ୍ୟ କରନା, ବାଛିନେଉ ସେ ତା'ର ପସନ୍ଦର ଯୁବକକୁ । ପୁଣି ଜେଜେଙ୍କୁ ଭଲ ଦରମାର ଚାକିରୀ ମିଳିଲା । ଜମିଜମା ବି ମିଳିଲା । ଏଇ ଯୋଉ ଦେଖୁଚୁ ଘର, ଏଇ ଗଳି ସେବେ ଏମିତି ନିଉଛୁଣା ଥିଲା ? କେତେ ଗର୍ବର କଥା ଥିଲା ଏଠି ନିଜର ଘରଟିଏ କରି ରହିବା । ହେଲେ ଭାଗ୍ୟକୁ କାହାର ଜୋର ଅଛି ? କାହୁଁ ମାଡ଼ିଧରିଲା ଆସି ରାଜରୋଗ ଯକ୍ଷ୍ମା, ବର୍ଷ କେଇଟାରେ ଜେଜେଙ୍କ ସେ ରୂପ, ଦେହ ସୌଷ୍ଠବ କୁଆଡ଼େ ଗଲା । କ'ଣ କରିବୁ ଲୋ ଝିଅ, ରାଜଉଆସର ହାଉଆ, ସେ ଅୟସର ଛୁଆଁ ବାଜିଲେ କ'ଣ ଆଉ ଦେହ ସହେ ? ଖୋଦ୍ ରାଜପରିବାରର କେହି ପୁରୁଷ ଦାୟାଦ ବାଦ ପଡ଼ିନଥିଲେ ପରା ସେସବୁ ଅୟସ ଦୋଷରୁ, ସେଇଥିଲାଗି ଅଳ୍ପ ବୟସରେ ଯାଇଥିଲେ ସମସ୍ତେ । ଆଉ ନଇଲେ କାଇଁକି ଚାରି ପୀଢ଼ୀ ଧରି ସେ ରାଜବଂଶରେ ଖାଲି ଝିଅମାନେ ରାଜୁତି କରିଥାନ୍ତେ ?

ହଁ, ଜେଜେଙ୍କ ଦେଶ ନ ଛାଡ଼ିବାର ଆଉ ଗୋଟିଏ କାରଣ ଥିଲା ସେଇ ତାଙ୍କ ସ୍ୱାସ୍ଥ୍ୟ । ସେତେବେଳେ ଆଉ ତାଙ୍କ ଦେହର ଜୋର ନଥାଏ, ଦେଶ ଭାଗ ହେଲା ବେଳକୁ । ଭାବିଲେ ହଉ, ରାଜଦରବାର ପାଖେ ରହିବାର ଦମ୍ଭ, ସୁଖ ନ ମିଳିଲେ ନାଇଁ । ଜମି ବାଡ଼ି ଘର ଦ୍ୱାର ତ ଏଠି ଅଛି । ଏ ଦୁର୍ବଳ ଦେହ ନେଇ ନୂଆ ଦେଶକୁ ଗଲେ ଆଉ ଅଧିକ କ'ଣ ବା ମିଳିବ । ହେଲେ ବର୍ଷ ଦୁଇଟା ଗଲାନାହିଁ । ଦେହ ଆହୁରି ବିଗିଡ଼ିଲା । ଚିକିତ୍ସାରେ ଚାଲିଗଲା ହାତରେ ଯାହା ଟଙ୍କା ସୁନା ଥିଲା । ଜେଜେ ଚାଲିଗଲେ । ପାଞ୍ଚଟି ଟିକି ପିଲାଙ୍କ ସହିତ ଏକୁଟିଆ ଦାଦୀମା' ରହିଗଲା ଏଇଠି । ଦିନେ ଯେଉଁଠି ତା' ଘର ଲୋକଙ୍କୁ ରାଜଧାନୀର ବଡ଼ଦାଣ୍ଡରେ ଦଶଲୋକ

ବାଟ ଛାଡ଼ିଦେଉଥିଲେ, ସେଇଠି ସାନ ଗଳିଟିରେ ଅଚିହ୍ନା ଅଜଣା ମାଇପିଟିଏର ଜୀବନ କାଟିବାକୁ ହେଲା ତାକୁ ।

ଆଉରି କେତେ କାହାଣୀ । ଦାଦୀମା' ତ ପର୍ଦ୍ଦା ଆଢୁଆଳରେ ରହୁଥିବା ଆଉ ଦଶଟା ସ୍ତ୍ରୀଲୋକଙ୍କ ଭଳି ବଢ଼ିନଥିଲା । ଉଆସରେ ବେଗମ୍ ସାହିବାମାନଙ୍କ ଖାସ୍ ପାଖ ଲୋକଙ୍କ ଭିତରେ ଥିଲା । ହିସାବ କିତାବରେ ପାରଙ୍ଗମ ଥିଲା । ଯେତେ ପୁରୁଷ ଲୋକଙ୍କ ସାଙ୍ଗେ କାମ କଲେବି, ରାଜ୍ୟର ଶାସନ ଡୋରି ସମ୍ଭାଳୁଥିବା ବେଗମ୍ ସରକାରଙ୍କ ପାଖଲଗା ହେଇ ସ୍ତ୍ରୀ ଲୋକେ ହିଁ ରହୁଥିଲେ । ତାଙ୍କରି ଠାରୁ ସାହସ ଶିଖିଥିଲା ବୋଧେ ଦାଦୀମା' । ପୁଣି ଆଉରି ଗପ କହେ ସିଏ, ଯେ କାଳେ କୋଉ ଅଢ଼େଇଶ ବର୍ଷ ତଳେ ଆସିଥିଲେ ତା'ର ପୂର୍ବଜ, କୋଉ ଦୂର ଦେଶର ଅଶ୍ୱାରୋହୀ ଲଢୁଆ ସୈନ୍ୟଙ୍କ ସାଙ୍ଗେ । ହେଲେ ଯେତେ ଲୁଚେଇଲେ କ'ଣ କଥା ଲୁଚେ ଲୋ ଝିଅ, ଏଇଠା ଗଣ୍ଡ ଜାତିର ଝିଅଙ୍କୁ ସବୁ ନିକାହ କରି ଘର କରିଥିଲେ ସେମାନେ । ଆଖପାଖରେ ଗାଁକୁ ଗାଁ ସଭିଏଁ ଗୋଟିଏ ଜାତିରେ ମିଶିଗଲେ, ଆମେ ଗୋଟିଏ ରକ୍ତ ପାଲଟିଲୁ । ଯେଉଁ ପରିଚୟ ନିଜକୁ ବେଶୀ ସୁହାଏ, ତାକୁହିଁ ଜାବୁଡ଼ି ଧରି ମୁହଁ ଆଗରେ ଟେକିଧରେ ମଣିଷ । କେତେଆଡୁ କେତେ ରକ୍ତ ଆସି ମିଶେ ଆମ ଦେହରେ । ସେଥିରୁ ଗୋଟିଏ କାହାକୁ ଧରି ଗଉଁ କରନ୍ତି ଲୋକେ, ମୁଁ ୟା'ର ରକ୍ତ, ଅମୁକ ହଉଚି ମୋର ପୂର୍ବଜ । କ'ଣ ମିଳିବ ସେଥିରୁ? ଯେଉଁ ମାଲିକ ଦେହ ଦେଇଚି, ଜୀବନ ଦେଇଚି, ତାକୁଇ ମନରେ ରଖି ଜୀବନଟା କାଟିଦେଲେ ଗଲା । କ'ଣ ମିଳିବ ଇତିହାସର ମିଛ ସତରୁ, ଖାନଦାନର ବଡ଼ କି ଛୋଟପଣରୁ ଝିଅ ?

ଆଖିକୁଝେଇ ପବନରେ ଲେଖା କୋଉ ଯୁଗର କାହାଣୀ ପଢୁଥିବା ଭଳି ମନେହେଉଥିଲା ଦାଦୀମା' । ପର୍ଦ୍ଦା ଓଢ଼ି ବସ୍‌ରେ ଭଟସୁଅର ଗାଡ଼ିରେ ତାଲ୍ ଆରକୂଳ ଗଷ ଗାଁକୁ ଯାଏ ସେ ବିଧବା ନିଆଶ୍ରୀ ସ୍ତ୍ରୀଟିଏ, ଭାଗଲକ୍ଷ୍ମୀଙ୍କ କାମ ତଦାରଖ କରିବାକୁ । ପର୍ବ ପର୍ବାଣୀ ବେଳେ ଘରକୁ ଆସି ଡାକନ୍ତି ତାକୁ ଥିଲାବାଲା ଲୋକଙ୍କ ଘରେ ରୋଷେଇରେ ସାହାଯ୍ୟ କରିବାକୁ । ମିଠି ଇଦ୍‌ରେ ତା' ହାତର ପିଠାପଣା ଭଳି ଆଉ କେହି କରିପାରନ୍ତିନି । ରଇସ୍ ଘରମାନଙ୍କରୁ ଗାଡ଼ି ଘୋଡ଼ା ଆସେ ତାକୁ ଆଣିବାଲାଗି, ଦଶ କୋଡ଼ିଏ ସେର ଲେଖାଁ ମାଂସ ବଟାଯାଏ ଶିଳରେ, ଦି'ଶହ ଲେଖାଁ ଲୋକଙ୍କ ଲାଗି କବାବ ତିଆରି ହୁଏ ବକରା ଇଦ୍‌ରେ । ବଡ଼ଲୋକଙ୍କ ଘରେ ପ୍ରତି ପୁରୁଷ ଲୋକ ପିଛା ବୋଦା କଟାଯାଏ, ବାଣ୍ଟିଲେ ସରେନାହିଁ ଏତେ ପକୱାନ୍ ତିଆରି ହୁଏ ସେଠି ସବୁ । ଡେକଚି ସବୁରେ ଭରି ତା' ନିଜ ପିଲାଙ୍କ ଲାଗି ଦିଅନ୍ତି ସେମାନେ ବାଧ୍ୟ କରି । ବିରିଆନୀ, କବାବ, ପୟା ଝୋଳ ସାଙ୍ଗେ ଆଉରି ଦଶପ୍ରକାର କଷା ମାଉଁସ । କିସ୍‌ମିସ୍ ଖଜୁରୀ ଦିଆ ଗୋଲ ତକିଆ ଭଳି ଭୋପାଲୀ

ମିଠା ପାଉଁରୁଟି । ତା' ସାଙ୍ଗକୁ ସେଦିନ ମିଳେ ସସମ୍ମାନେ ଘରଯାକ ଲୋକଙ୍କ ଲାଗି ଚକଚକିଆ ଲୁଗାପଟା, ହାତରେ ଟଙ୍କା ।

ତାଙ୍କ ବଡ଼ପୁଅ ଫାରୁକ୍‌କୁ ଶେଷରେ ମୁନିମ୍ ଚାକିରୀ ଟିଏ ଜୁଟିଥିଲା ଆଶିୟାନା ଷ୍ଟୋର୍‌ରେ । ଭଉଣୀମାନେ ବାହାହେଇ ଚାଲିଗଲେ ନିଜ ନିଜ ଶାଶୁଘରକୁ । ମା' ପରଘରକୁ ଯାଇ କାମକରିବା କଥାଟା ଆଉ ଭଲ ଲାଗିଲାନି ପୁଅ ଦୁହିଙ୍କୁ । ହେଲେ ଦାଦୀମା' ଆଜି ସେ କଥା କହିଲାବେଳେ ତା' ସ୍ୱରରେ ଫୁଟୁଥାଏ ଗର୍ବ, ଆତ୍ମବିଶ୍ୱାସ । ସେ ସ୍ମୃତିରେ ଦାଦୀମା'ର ଲଜ୍ଜା କି ଗ୍ଲାନିର ଟେର୍ ପାଏନି ଫାତିମା ।

ବାହାର କବାଟ ଜଞ୍ଜିର ଶୁଣି ଫାତିମାର ଚଉଁକିନି ନିଦ ଭାଙ୍ଗିଲା । ଗପ ଶୁଣୁଶୁଣୁ ଆଖି ଲାଗିଯାଇଥିଲା କେତେବେଳୁ । ଉଠି ବାହାରକୁ ଆସିଲାବେଳକୁ ସଞ୍ଜ ହେଇଆସିଲାଣି । କବାଟ ଖୋଲି ଦେଖିଲା ଆଗରେ ହୀନା ଠିଆହେଇଚି, ହେଲେ ଅନେଇଚି ସେପାଖକୁ । ଗୋଟାଏ ହାତରେ ବ୍ୟାଗ୍‌ଟାଏ, ଆର ହାତ ଟେକି ବାଏ କରୁଚି ସେ ମଟରସାଇକଲରେ ସଦ୍ୟ ଚାଲିଯାଉଥିବା ଯୁବକ ଆରୋହୀକୁ । ଘର ଭିତରକୁ ପାଦ ଦେଲାବେଳେ ବି ମୁହଁରେ ତା'ର ମିଠା ହସ ଲାଖିରହିଥିଲା, ସାରା ମୁହଁ ସେ ହସରେ ଗୋଲାପୀ ଦିଶୁଥିଲା ।

ଫାତିମା ନିଜକୁ ରୋକି ପାରିଲା ନାହିଁ, "ସକାଳୁ ଯାଇଥିଲୁ ଏବେ ଘରକୁ ଫେରୁଚୁ ହୀନା ? କିଏ କି ସେ ଲୋକଟା ?"

ହସ ମଉଳିଗଲା ହୀନାର । ଭିତରକୁ ଚାଲିଯାଉ ଯାଉ ଓଲଟି ପ୍ରଶ୍ନ କଲା, "ମୋ କଥାରେ ଏତେ କାହିଁକି ମୁଣ୍ଡ ଘୂରଉଚୁ ଅପା ? କି ଅଧିକାରରେ ତୁ ମୋତେ ଶାସନ କରୁ କହିଲୁ ? ଘରେ ଆଉ କିଛି ତୋ'ର କାମ ନାହିଁ କି ?"

କହୁକହୁ ଗଳା ଭାଙ୍ଗିଗଲା ଫାତିମାର – "ଅଧିକାରରେ ନୁହେଁ ହୀନା, ମୋ ନିଜ ଅନୁଭବର ଘାଆ ଶୁଖିନାହିଁ ବୋଲି ତୋତେ ସେଇ ବାଟରେ ଯିବାକୁ ଦେଇପାରୁନାହିଁ ।"

ହୀନା ହସିଲା, ଏଥର ନାକ ଟେକା ଶାଣୁଆ ହସଟିଏ । କହିଲା, "ଚିନ୍ତା କରନା ଅପା । ତୋ' ବାଛିଲା ବାଟ ଆଡ଼କୁ ମୁଁ ଅନେଇବି ନାହିଁ କେବେବି ।, ସେତିକି ବୁଦ୍ଧି ମୋର ସବୁଦିନେ ଥିଲା ।"

ତା'ପର ଶୀତ ଦିନକୁ ହୀନା ଇତବାରା ବଜାର ପାଖ ମହମ୍ମଦ ଅଜିଜକୁ ବାହା ହେଇଗଲା । ଗାଡ଼ି ମରାମତି ଦୋକାନ ତାଙ୍କର । ନିଜେ ଆସି ପ୍ରସ୍ତାବ ଦେଇଥିଲା ଅଜିଜ୍ । ଘରେ ତାଙ୍କର ପରିବାରର ଅଧେ ଲୋକ ଗ୍ୟାସ୍ ପୀଡ଼ିତ । ଯେତେବେଳେ ଉଭୟ ପରିବାରର ସମ୍ପତ୍ତି ବାଡ଼ି ଓ ଆୟ ବିଷୟରେ କଥାବାର୍ତ୍ତା ହେଲା, କାହା ଘରେ କେତେଜଣ କୋଉ ସ୍ତରର କ୍ଷତିପୂରଣ ପାଇବେ ସେସବୁର ବି ବିସ୍ତାରରେ ଆଲୋଚନା ହେଇଥିଲା ।

# ଜୀଅନ୍ତା ମୂର୍ତ୍ତିଟିଏ

ସେଦିନ ବଜାରରୁ ଫେରିବା ବାଟରେ ଜରୀନା ସାଥିରେ ଲକ୍ଷ୍ମୀବାଈ କଲେଜ ବାଟ ଦେଇ ଯାଇଥିଲା ଫାତିମା । ତା' ପୁରୁଣା କଲେଜ । ହୀନା ବାହାହେଇଗଲା ପରେ ଜରୀନା ବି କାଳେ ପାଠ ଛାଡ଼ିଦେବ ବୋଲି ତା'ର ଭୟ ହେଉଚି । ମ୍ୟାଟ୍ରିକ୍ ପରୀକ୍ଷା ରେଜଲ୍ଟକୁ ଅପେକ୍ଷା କରିଚି ଜରୀନା । କଲେଜ ପାଠ ପଢ଼ନ୍ତୁ ବୋଲି, ତାଙ୍କ ପିଲାମାନେ ଡାକ୍ତର ଇଞ୍ଜିନିୟର ହୁଅନ୍ତୁ, କିଛି ନହେଲେ ଧୋବଧାବଳିଆ ବାବୁ ହୁଅନ୍ତୁ ବୋଲି ବାପାଙ୍କର କେତେ ଇଚ୍ଛା ଥିଲା । ସେ ନିଜେ ପାଠ ପଢ଼ିଥିଲେ କିଛିଦୂର, ହେଲେ ପରିସ୍ଥିତି ଲାଗି ଆଉ ଆଗେଇ ପାରିନଥିଲେ । ଫାତିମା ଘରିଆଡ଼କୁ ଅନାଏ । ଆଜିକାଲି ଯିଏ ପାରି ସିଏ କଲେଜ ଯାଉଚନ୍ତି । ଯାହା ଘରେ ଦେଖିବ ଡିଗ୍ରୀ ପାଇଲା ପିଲା ମାଳମାଳ । ଖାଲି ତାଆରି ବାପାଙ୍କ ଆଶା ରହିଯିବ ଅପୂର୍ଣ୍ଣ ହେଇ ? ଗଲା କେତେଦିନ ହେଲା ଜରୀନା ମୁଣ୍ଡରେ ପୂରେଇବାକୁ ଚେଷ୍ଟା କରୁଚି ସେ ଏତିକି କଥା । ଉଚ୍ଚାକାଂକ୍ଷା ବି ନୁହେଁ, ଖାଲି କଲେଜ ଜୀବନରେ କେତେ ମଉଜ, କେମିତି ଭିନ୍ନ ଜୀବନଟିଏର ବାଟ ଖୋଲିଯାଏ କଲେଜ ହତାରେ ପାଦ ଦେଲାକ୍ଷଣି, ସେତିକି କଥା ଜରୀନା ଯଦି ଜାଣିଯାଇପାରନ୍ତା ହୁଏତ କଲେଜ ଯିବାକୁ ମନ କରନ୍ତା ।

କଲେଜ ଆଗରେ ପହଞ୍ଚିଲା ବେଳକୁ କେମିତି ଗୋଟେ ଅପ୍ରସ୍ତୁତ ଭାବ ଆସୁଚି । ବମ୍ବେରୁ ପ୍ରଥମେ ନିଜ ଘରକୁ ଫେରିଲାବେଳେ ଯେମିତି ଡର ଲାଗୁଥିଲା, ସେଇଭଳି ଏକ ପ୍ରକାର କୁଣ୍ଠା । ଏଭଳି ଗୋଟେ ମାୟା ଏ କଲେଜ ଲାଗି ବି ମନରେ ବି ତା' ନିଜର ଅଛି ବୋଲି ସେ କେବେ ଭାବିନଥିଲା । କେଡ଼େ ସହଜରେ ଛାଡ଼ିଯାଇଥିଲା ସେ କଲେଜ ମାଟିକୁ । ମାୟା କାଟିବା ସେଡ଼େ ସହଜ ଥିଲା ତା' ନୁହେଁ, ତେବେ ଏ ସବୁଠୁ ବଳେଇ ପଡ଼ିଥିଲା ଘରର ମାୟା କାଟିବାର ଦୁଃଖ, ପାଠରେ ଡୋରି ବାନ୍ଧିବାର ଦୀର୍ଘଶ୍ୱାସ, ନର୍ଗୀସ ବେଗମଙ୍କ ପାଖେ କଥା ରଖିପାରିନଥିବାର ଗ୍ଲାନି, ଅବଶୋଷ । ସେସବୁ ଭିତରେ କଲେଜ ସତେକି ଖାଲି ସଉକିନୀଆ ଜିନିଷଟାଏ ଥିଲା, ସୁନ୍ଦର ଜାମାଟିଏ ଭଳି ।

ଗେଟ୍ ପାଖରେ ଦରୁଆନ୍ ସାବୀନା ବୀ ନଥିଲା, ଖରାଛୁଟୀରେ ଆସୁନଥିବ ବୋଧେ । ତାଲା ଖୋଲା ଥିଲା, ପୁରୁଷ ମାଳୀ କି ଚପରାସୀ ଜଣେ ଅଧେ ଦିଶୁଥିଲେ । ଗେଟ୍ ଖୋଲି ପଶିଲାବେଳେ କାମ କରୁଥିବା ମାଳୀଟି ଫେରି ଅନେଇଲା ଫାତିମାକୁ, ପୁଣି କାମରେ ମନଦେଲା । ଫାଟକରୁ ବଡ଼ କଲେଜ କୋଠାଆଡ଼କୁ ଆସୁଆସୁ ବଡ଼ ମୂର୍ତ୍ତିଟି ପାଖେ ରହିଗଲା ଫାତିମା । ରାଣୀ ଲକ୍ଷ୍ମୀବାଈଙ୍କ ଷ୍ଟାଚ୍ୟୁ । ଘୋଡ଼ା ଉପରେ ଢାଲ ତରବାରୀ ନେଇ ବସିଛନ୍ତି ରାଣୀ ଲକ୍ଷ୍ମୀବାଈ । ବାଁ ପାଖେ ଅଣ୍ଟାରେ ବନ୍ଧା ଶିଶୁ । ଘୋଡ଼ା ଆଗ ଦୁଇଗୋଡ଼ ଟେକି

ଛିଡ଼ାହୋଇଛି, ଧାଉଁ ଧାଉଁ ତା' ଲଗାମ୍ ଟାଣି ରୋକିଦିଆଯାଉଛି ସତେକି । କାଇଁକି କେଜାଣି ସେଇଠି ଫାତିମା ଛିଡ଼ାହେଇ ରହିଗଲା ଅନେକବେଳ । କଲେଜର ନାଁ ରାଣୀ ଲକ୍ଷ୍ମୀବାଈ କଲେଜ, ତାଙ୍କର ମୂର୍ତ୍ତି ଏଠି ଶୋଭାୟମାନ । ନାଁ ଲେଖେଇବାଦିନୁଁ ସମସ୍ତେ ଦେଖିଥାନ୍ତି । ମୋଟାମୋଟି ଜାଣିଥାନ୍ତି ତାଙ୍କ କଥା । ତଥାପି ଦେଖି ବି ଦେଖିନଥିଲା ମୂର୍ତ୍ତିଟିକୁ ସେ । ଏମିତି କି ତାକୁ ଯଦି ଏଇ ମୂର୍ତ୍ତି ପଛରେ ଥିବା କାହାଣୀଟି କହିବାକୁ କୁହାଯାଏ, ସେ ତିନିଧାଡ଼ି ବି ଭଲକରି କହିପାରିବ ନାହିଁ । କୋଉଠି ଜନ୍ମ ୟା'ଙ୍କର ? କାହିଁକି ଖଣ୍ଡା ଧରିଥିଲେ ? କୋଉ ଯୁଦ୍ଧ ସେ ? ଇଂରେଜଙ୍କୁ ଲଢ଼ିବା ଏମିତି କ'ଣ ବଳେଇପଡ଼ିଲା କି ? ତାଙ୍କ ରାଜ୍ୟର କଅଣ ହେଲା ?

ଜରୀନା ଖଣ୍ଡେ ବାଟ ଚାଲିଗଲାଣି, ଚାରିପାଖ ତୋଟା ବଗିଚା ବୁଲି ଦେଖୁଚି, ଦୂରରୁ ଡାକୁଚି ଫାତିମାକୁ । ଚାଲୁ ଚାଲୁ ଫାତିମା ଭାବୁଥିଲା କେତେକଥା, ଯାହାକୁ ସବୁ ଆସିଲା ବାଟରେ କୋଉଠି କେଜାଣି ହଜେଇଦେଇ ଆସିଥିଲା ।

ଇତିହାସ ବିଷୟଟିରେ ସେ କେବେବି ଭଲ ନଥିଲା । ବହିରେ ପଢୁଥିବା ବିଷୟସବୁ ସତ ବୋଲି ମଣୁନଥିଲା, ତହିଁର ଲୋକେ ସବୁ ଜୀଅନ୍ତା ହୋଇପାରିପାରନ୍ତି ବୋଲି ତା' ମନକୁ ସୁଦ୍ଧା ଆସେନାହିଁ । କେବଳ ପରୀକ୍ଷା ପ୍ରଶ୍ନରେ ଆସିବାଲାଗି ତିଆରି ସେ ପାଠସବୁ । ସେଇଭଳି ଏଇ ମୂର୍ତ୍ତିଟି । ଖାଁ ଖାଁ କରୁଥିବା ମହିଳା କଲେଜ ହତାଭିତରେ ଏଇ ଗୋଟିକ ବୋଲି ଚିହ୍ନା ଚେହେରା ଆଜି ତାକୁ ଦିଶୁଚି । କିଭଳି ନାରୀଟିଏ ହୋଇଥିବ ସେ ? ରାଜପରିବାରର ହେଇଥାଉ କି ଛଷାଭୂଷା ଘରର, ସାଧାରଣ ନାରୀର ବେଶ ପୋଷାକ ତ ଇଏ କେବେବି ହେଇନଥିବ । ଘୋଡ଼ାଟାପୁ ଟେକି ଶୂନ୍ୟକୁ ଲମ୍ଫ ଦେବାର ଏ ମୁଦ୍ରାରେ, ଛାତିରେ ସାଞ୍ଜୁ ପିନ୍ଧି ଖୋଲା ତରବାରୀ ଏମିତି ଉଞ୍ଚେଇଥିବାର ଦମ୍ଭ ନେଇ ଆଉ କେଉଁ ଶିଶୁର ମାଆ ଅଛି ? ଭଲା ଦେଖାଦେଇଥିବ ତାଙ୍କ ଯୁଗରେ ବି ? ମନେପଡୁଚି, ସ୍କୁଲ୍‌ରେ ପଢ଼ିଥିବା ହିନ୍ଦୀ ସାହିତ୍ୟ ବହିର କବିତାଟିଏ । କବିଙ୍କ ନାଁ ମନେଅଛି । ସୁଭଦ୍ରା କୁମାରୀ ଚୌହାନ । ଦେଶାତ୍ମବୋଧକ ବୀରଗାଥା । ଖୁବ୍ ଲଢ଼ୀ ମର୍ଦ୍ଦାନୀ ୱୋ ତୋ' ଝାଁସୀ ୱାଲୀ ରାନୀ ଥୀ । ଝାନ୍‌ସୀର ରାଣୀ ସିଏ, ମରଦଙ୍କ ଲଢ଼େଇ ଲଢ଼ିଥିଲା ବହୁତ, ମରଦଙ୍କ ସାଙ୍ଗରେ । ଦୀର୍ଘ ଛନ୍ଦମୟ କବିତାଟିରେ ଯୁଦ୍ଧ ପରେ ଯୁଦ୍ଧର ବର୍ଣ୍ଣନା, ସାରା କ୍ଲାସ୍ ଘୋଷିଥିଲେ, ଏକାଠି ଆବୃତ୍ତି କରାଯାଉଥିଲା । ଜଣ ପରେ ଜଣ ବିଶ୍ୱସ୍ତ ଅନୁଚରଙ୍କ ପରେ ନିଜେ ଶେଷରେ ଯୁଦ୍ଧରେ ପ୍ରାଣ ହାରିଦେବାର ଶୌର୍ଯ୍ୟ, କାରୁଣ୍ୟ । ଫାତିମା ତାଳ ଦେଇ ସମସ୍ତଙ୍କ ସାଙ୍ଗେ ଗାଉଥିଲା ସିନା, ସେ କବିତାରେ ନିଜ ଜୀବନର କିଛି ହେଲେ ଚିହ୍ନା କଥା ଦେଖିପାରିନଥିଲା ପିଲାଦିନେ ।

ଯୁବତୀ ରାଣୀଟିଏ । ନିଜ ରାଜ୍ୟକୁ ବଞ୍ଚାଇବବୋଲି ଦୁର୍ଦ୍ଦମନୀୟ ଇଂରେଜ ସରକାର

ବିରୁଦ୍ଧରେ ଯୁଦ୍ଧ କରିବାକୁ ତିଆର ହୋଇଗଲା । ତା' ପୁଣି ବନ୍ଧୁକ କମାଣ ଧରି ନୁହଁ, ଖଣ୍ଡା ତଲୁଆର ଧରି । ମୂର୍ତ୍ତିର ପିଠିରେ ବନ୍ଧା ପୁଣି ଶିଶୁଟିଏ । ଏମିତି ନିଶ୍ଚିତ ମୃତ୍ୟୁ ମୁହଁକୁ ଚାଲିଗଲା ସେ ପିଲାଟିକି ନେଇ ? କଲେଜ ଜୀବନରେ କେବେ ଥରେହେଲେ ରାଣୀ ଲକ୍ଷ୍ମୀବାଈଙ୍କ ବିଷୟରେ କିଛି କଥାବାର୍ତ୍ତା କି ଆଲୋଚନା ହେଇଥିବାର ତା'ର ମନେପଡୁନାହିଁ ।

ଜରୀନା ଡାକୁଚି ଖଣ୍ଡେ ଦୂରରୁ । ଚାଲୁ ଚାଲୁ ମୁଣ୍ଡ ଉପରେ ଗଛ ଗହଳ, କୋଇଲିର କୁହୁ । ଆମ୍ବ ଗଛସବୁରେ ଏବେବି ଦିଶୁଚି କଞ୍ଚା ପାଚିଲା ଆମ୍ବ । ମାଟିଉପରେ ଦଳା ମକଚା ଜାମୁକୋଳିରୁ ଗୋଟାଏ ଗନ୍ଧ ଆସୁଚି । ଏମିତି ଖରାଦିନଟିଏ ଆରମ୍ଭ ହେବା ପୂର୍ବ ବସନ୍ତରେ ଦିନେ କଲେଜ ପାଠ ପରୀକ୍ଷା ସବୁରୁ ମୁହଁ ବୁଲେଇନେଇ ଚାଲିଯାଇଥିଲା ଫାତିମା । ଥରଟିଏ ପଛକୁ ଅନେଇନି, ଭାବିନି ଏଇ ଛବିଟି କଥା । ତଥାପି ମୁଣ୍ଡର କୋଉ କୋଣରେ ସାଇତା ହେଇ ରହିଥିଲା ଗୋଟି ଗୋଟି ହେଇ । ତା' ଛାତି ଭିତରେ କାଣିଚାଏ ଜାଗା ବୋଧେ ଝୁରିହେଉଥିଲା ଏଠି କାଟିଥିବା ଦିନକେଇଟା ଲାଗି ।

ଖରା ବଢୁଥିଲା । ଘରେ ବୋଝେ କାମ ଅଛି । ଜରୀନାକୁ ଡାକି ଏଥର ଫେରିବା ବାଟରେ ପୁଣି ଥରେ ସେଇଠି ଟିକିଏ ଠିଆହେଇଗଲା ସେ । କହିଲା, "ଜାଣୁ ଜରୀନା, ଇଏ କାହା ମୂର୍ତ୍ତି ?" ଚାଲିଯାଉଯାଉ ଜରୀନା ଅଭ୍ୟସ୍ତ ସ୍ୱରରେ ଘୋଷା ଗାଇଲା, "ବୁନ୍ଦେଲେ ହର୍‌ବୋଲୋଁ କେ ମୁହଁ ହମ୍‌ନେ ସୁନୀ କାହାନୀ ଥୀ, ଖୁବ୍ ଲଢ଼ୀ ମର୍ଦାନୀ ୱୋ ତୋ'..." । ଫେରିବା ବାଟରେ ଫାତିମା ମୁଣ୍ଡକୁ ଆସୁଥିଲା, ବୁନ୍ଦେଲଖଣ୍ଡ ଅଞ୍ଚଳରେ ଲୋକକଥା ପାଲଟିଗଲେ ଯେଉଁ ନାରୀ, କିଭଳି ଦିଶିଥିବେ ସେ ସେତେବେଳେ । ଯେଉଁ କାମ କେହି କରିନଥିବେ, ସେଭଳି କାମ ସେ ନାରୀହେଇ କରିଥିବେ । ବିଶେଷ କିଛି ହାସଲ କରିପାରିଲେ ନାହିଁ ସେ ସେଇ ଯୁଦ୍ଧରୁ । ଜିତିବାର କୌଣସି ସମ୍ଭାବନା ନଥିଲା ବୋଲି ସେ ଜାଣିପାରିଥିବେ ମୂଳରୁ । ଚୁପ୍‌ଚାପ୍ ମୁଣ୍ଡପୋତି ଜୀବନଟି କାଟିଦେବାର ନିଷ୍ପତ୍ତି ତାଙ୍କ ପରିସ୍ଥିତିରେ ନାରୀ କ'ଣ ଅଧିକାଂଶ ପୁରୁଷ ବି ନିଅନ୍ତେ । ତଥାପି ନିଜ ଇଚ୍ଛାରେ ନିଷ୍ପତ୍ତିଟିଏ ନେଇଥିବେ ସେ, ପରମ୍ପରାକୁ ନମାନି, ହୁଏତ ପିଲାଦିନୁ ଗୁରୁଜନ କହିଥିବା, ସମାଜ ଶିଖେଇଥିବା କଥାକୁ ବି କାନ ନଦେଇ ।

ରାତିରେ ଶୋଇଲାବେଳେ ବି ମନକୁ ଘାରୁଥିଲା ସେଇ ମୂର୍ତ୍ତିଟିର ଦମ୍ଭ, ତେଜ । କାହିଁକି ତେବେ ମଣିଷ ଏତେବେଶୀ ଦାସ ହେଇଯାଏ ଆଖପାଖ ଲୋକଙ୍କ ଇଚ୍ଛାର, ତଥାକଥିତ ସଂସ୍କାରର ? ପରିବେଶର ବୋଲ ମାନି ସାରା ଜୀବନଟି କଟାଇଦିଏ କାହିଁକି ? ନିଜ ଲାଗି ନିଷ୍ପତ୍ତିଟିଏ ନେବା କ'ଣ ସତରେ ଏତେ ପରିଶ୍ରମସାପେକ୍ଷ ? ବୋଲ ମାନି ଚଳିବା, ସେଥିରେ ଜୀବନ ଉଜୁଡ଼ାଇଦେବା କ'ଣ ନିଜସ୍ୱ ନିଷ୍ପତ୍ତି ନେଇ ଚଳିବାଠାରୁ ବେଶୀ ସହଜ ସତରେ ?

# କାହା ଲାଗି କେଉଁ ବାଟ

ହୀନାର ବାହାଘର ସରିଲା ପରେ ଗଲା ବର୍ଷେ ଭିତରେ ଘରର ଅବସ୍ଥା ଆଉରି ତଳେଇ ଯାଇଚି ପ୍ରାୟ । ମଝିମଝିରେ କିଛି ଲେଖାଁ ପଇସା ରାହତ ଅଫିସ୍‌ରୁ ମିଳୁଚି ସତ, ହେଲେ ଆଉରିର ଆଶାରେ ସେସବୁ ଖର୍ଚ୍ଚ ହେଇଯାଇଚି ଅନାୟାସ । ଯେଉଁ ବିରାଟ ରକମର କ୍ଷତିପୂରଣ କଥା କୁହାଯାଉଥିଲା ତା'ର ଏଯାଏଁ ଦେଖା ଦର୍ଶନ ନାହିଁ । ତା'ଛଡ଼ା ବିଦେଶୀ କମ୍ପାନୀ ଯେଉଁ ମୋଟା ରକମ ମଝିମଝିରେ ଦେଉଚି, ତାକୁ ସରକାର ନାନା ଜରିଆରେ ନାନା ଉପଦେଷ୍ଟାଙ୍କ ମତ ଅନୁସାରେ ବାଣ୍ଟୁଚନ୍ତି, ଖର୍ଚ୍ଚ କରୁଚନ୍ତି ।

ରେହମାନର ଅଳ୍ପଟିକିଏ ଶ୍ୱାସ ଭଳି ଯାହା ଆରମ୍ଭ ହେଇଥିଲା ସେଇ ଗ୍ୟାସ୍ ରାତି ପରେ, ତା' ଏବେ ବଢ଼ିଚି । ଖରାତରାରେ ବୁଲି ଏଣେ ତେଣେ ଖାଇ ସ୍ୱାସ୍ଥ୍ୟ ଭଲ ରହୁନାଇଁ । ତାକୁ ଶୋଭାଯାତ୍ରାର ଆଗରେ ରିକ୍ସାରେ ବସେଇ ନେଇଚନ୍ତି ସେମାନେ, ଟିଭି ସାକ୍ଷାତ୍‌କାର ନେଇଚନ୍ତି । ତାଆରି ଭଳି ଆଉରି ଅଗଣିତ ଅଛନ୍ତି ଏଇ ସହରରେ । ଗୋଟିଏ ଦଳର ପୋଷ୍ଟରରେ ତା' ଛବି ଥିଲା ବୋଲି ଆର ଦଳ ତାକୁ ଧମକ ଦେଇଚନ୍ତି । ଘର ଆଗରେ ଶୋଧି ସାହିର ଦାଦା ପାଟିକଲା, "ପୋଷ୍ଟରରେ ଛପା ହେବୁ ବୋଲି ମଲୁ ହେଇ ପେଖନା କରୁଚୁ, ଲାଜ ମାଡୁନି ?" ଫାତିମାର ଭିତରଟା ଆଉଟି ହେଇଯାଏ । ରେହମାନ ପାଠରେ ମନ ଦିଅନ୍ତା କି । ଘରେ ଖାଆନ୍ତା ପିଅନ୍ତା । ଏସବୁ ଗଣ୍ଡଗୋଳରେ ନ ପଶନ୍ତା କି । ସମସ୍ତଙ୍କ ଆଗରେ ଦୟନୀୟ ପୋଷ୍ଟରଛବି ହେବା କି ଦରକାର ?

ଅପାର ଏ ଉପଦେଶ ରେହମାନକୁ କିନ୍ତୁ ଭଲଲାଗିନଥିଲା । ତାକୁ ଅପମାନ ଲାଗିଥିଲା, ସେମାନଙ୍କ ହାତରେ ପୋଷ୍ଟର ଛବି ବନିଥିବା କଥାଟା ନୁହେଁ, ଅପାର ସେଥିକି ଆଙ୍ଗୁଠି ଦେଖେଇଥିବା କଥାଟା । ସର ଉଞ୍ଚେଇ ଜବାବ ଦେଲା ସେ, "ଆଚ୍ଛା, ମୋ' କାମରେ ତମକୁ ଅପମାନ ଲାଗିଗଲା ନାଇଁ ଅପା ? ଆଉ ତମ କାମ ସବୁ ଆମକୁ ଭାରୀ ସମ୍ମାନ ଆଣିଦେଇଥିଲା ନାଇଁ ?"

ଘରର ରୂପରେଖ ବଦଳିଯିବା ସଙ୍ଗେ ସଂପର୍କମାନଙ୍କ ରୂପରେଖ ବି ବଦଳି ଯାଉଚି ଅବା । ପରସ୍ପରକୁ ଦେଖିବାର ଦୃଷ୍ଟି, କଥାକହିବାର ସ୍ୱର, ଭାଷା ବି ବଦଳିଯାଉଚି କ୍ରମେ । ଥାଉ, ତେଣିକି ଅନେଇଲେ ହିଁ ଅସହାୟ ଲାଗୁଚି, କେମିତି ଗୋଟାଏ ଭୟ ମାଡ଼ିପଡୁଚି ଆଜିକାଲି । ଆସନ୍ତାକାଲିର ଚିନ୍ତା ଆସିବାଆଗରୁ ସେକଥା ଆଡ଼େଇଦେବାକୁ ମନ ଡାକୁଚି ।

ଫାତିମା ଏକା ଥିଲାବେଳେ କଥା ହୁଏ ତା' ଜେଜେମା ସଙ୍ଗେ, ହେଲେ ନିଜ କଥା

ମୁହଁକୁ ଆଣେନି । ବାହାର କଥା ପକାନ୍ତି ଦିହେଁ । ଏମିତି ନଥିଲେ ତ ଏ ମଣିଷ ମାନେ । ଶୋଭାଯାତ୍ରା ଆଉ ନାରା ପଛରେ ଦିନଦିନ ମାଟି କରିଦେବା, କାମ ନକରି ବସି ଖାଇବା, ଏମିତି କେବେ ଥିଲେ ଏ ଲୋକେ ? ହଁ, ବିଦେଶୀ କମ୍ପାନୀର ଦୋଷରୁ ଏ ନିୟତି ଭୋଗିବାକୁ ହେଇଚି । ହେଲେ ଦାଦୀମା' କହେ, ପୂର୍ବ କାଳରେ ଦୁର୍ଭିକ୍ଷ କି ମହାମାରୀ ଭୋଗିବାକୁ ହେଉଥିଲା, ପଡ଼ିଉଠି ଲୋକେ ତ ପୁଣି ଠିଆହେଉଥିଲେ । ଏମିତି ପରମୁହଁକୁ ଚହିଁ ହାତପତେଇ ବସୁଥିଲେ କି ଲୋକେ ? ଆଲ୍ଲାତାଲା ଦୁଇ ହାତ ଦେଇଚନ୍ତି, କାମ କରି ଖାଇବା ବେଟୀ, ପରହାତଟେକାକୁ ଅନେଇ ରହିବାନାଇଁ । ମିଳିଯିବ ଯଦି କିଛି କ୍ଷତିପୂରଣ, ତାକୁ ନାଇଁ କରିବାନି ସିନା, ତେବେ ତାକୁ ଅନେଇରହି ହାତଗୋଡ଼ ଯୋଡ଼ି ବସିଥିବା ନ କ'ଣ ?

ବୁଲିବାଲି ଦାଦୀମା'ର କଥା ଅବଶ୍ୟ ସେଇ ଗୋଟିଏ ଜାଗାରେ ପହଞ୍ଚେ, ଟିକେ ମୁକ୍ତାରକୁ କେମିତି ଖବର ପଠାନ୍ତେରେ ବେଟୀ । ପିଲାଟା ଖରାପ ନୁହଁ । ତମ ଦିହିଙ୍କ ନିକାହଟା ହେଇଗଲେ ମୋ' ମୁଣ୍ଡରୁ ବୋଝ ଉଠିଯାଆନ୍ତା । ଏଇ ଘରେ ତୋ'ର ଆଉ କି କାମ ?

ଫାତିମାର ମନ ଯେ ସେଆଡ଼କୁ ନଯାଇଚି ତା' ମୁହଁ । ଜୋର୍ କରି ନିଜ ମନକୁ ଲଗାମ୍ ଦେବାକୁ ହୁଏ ତାକୁ । ମୁକ୍ତାର ଥରେ ନୁହେଁ, କେଇଥର ଏ ଭିତରେ ନିଜ ମାଆକୁ ଦେଖିବାକୁ ଆସିଚି । ଆସିଲାଦିନୁ ଫାତିମାର କାନରେ ପଡ଼ିଚି ଯେ ନବାବ ମଞ୍ଜିଲର ଲୋକେ ଅଧିକାଂଶ ବଞ୍ଚିଯାଇଥିଲେ, ସେଇ ରାତିରେ ବେଳ ଥାଉଁ ଥାଉଁ ପଳେଇଯିବାକୁ କାହାର ଗାଡ଼ିଟାଏ ମିଳିଯାଉଥିଲା ତାଙ୍କ ଭାଗ୍ୟକୁ । ତେବେ ମୁକ୍ତାରର ମା'ଙ୍କ କାଶ ଲାଗିରହିଚି, ଆଖିକି ବି ସେତେ ଭଲ ଦିଶୁନାଇଁ କାଳେ । ମଝିରେ ମୁକ୍ତାର ଆସି ତାଙ୍କୁ ଡାକ୍ତରଖାନା ନେଇଚି କେତେଥର, ତାଙ୍କଲାଗି କ୍ଷତିପୂରଣ ଫର୍ମ ଭରିଚି ସାଇ ଲୋକଙ୍କ ସାଙ୍ଗରେ ମିଶି । ଫେରିଯାଇଚି ଫାତିମାକୁ ଖବରଟିଏ ନଦେଇ । ଆଖପାଖ ଲୋକେ କିଏ କେତେ ରଙ୍ଗ ଲଗେଇ କଥା କହନ୍ତି । କାନରେ ପଡ଼େ । କାହାସାଙ୍ଗେ ଟିକେ ମନଖୋଲି କଥା କହିହୁଏ ନାହିଁ । ଅମ୍ମି ପାଖରେ ଅଛି, ହେଲେ ତା' ସାଥିରେ ଆଉ କଥାବାର୍ତ୍ତା କରିବା ବୃଥା । ଚିହ୍ନା ଦେହର ଛାଞ୍ଚ ଭିତରେ ଅଲଗା ମଣିଷଟିଏ । ଅଚିହ୍ନା ପ୍ରାୟ । ଏବେବି ସଂଜବେଳେ ଶାରୁଖ୍ ଘର ଆସିଲେ ସେ ଭ୍ରୁକୁଞ୍ଚେଇ ପଚାରେ, "ଇଏ କାଇଁକି ଆସୁଚି ଆମ ଘରକୁ ?" ହେଲେ ତା' କଥାକୁ ଆଉ କେହି କାନ ଦିଅନ୍ତିନି । ସେମିତି କାନ୍ଥକୁ ବାଡ଼କୁ କଥା କହୁଥାଏ ସିଏ ତା'ର ।

ଦିନ ଯାଉ ଯାଉ ବଦ୍ଧେ ଜୀବନର ନିତିଦିନିଆ ଖିଟ୍‌ଖିଟ୍ ଧୂଆଁଳିଆ ହେଇ ମନେପଡ଼େ । ଧୂଳି ଧୂଆଁ ଭିତରୁ ଫୁଟିଦିଶେ ମୁକ୍ତାରର ଚିହ୍ନା, ଅତି ପାଖରୁ ଦେଖିଥିବା ମୁହଁଟି । ଜାଣିବାକୁ ଇଚ୍ଛା ହୁଏ, କେମିତି ଦିଶୁଚି ଏବେ ମୁକ୍ତାରର ମନରେ ଫାତିମାର ଛବି ? ଲିଭିଗଲାଣି ନା ଅଛି କିଛି କିଛି ? ଆଉ କିଏ ନେଇନେଲାଣି କି ତା' ଜାଗା ? ଯେଭଳି ଜୀବନ ବଞ୍ଚେ ସେ

ବମ୍ବେରେ, କି ବା ଅପୂରୁବ ସେଠି ନୂଆ ସାଥୀଟିଏ ? କେଉଁ ସାହସରେ ଏବେ ଆପେ ଖବର ନେବାକୁ ଯିବ ଫାତିମା ?

ଘରୁ ବୁର୍ଖା ଘୋଡ଼େଇହେଇ ବାହାରେ ଫାତିମା, ତେବେ ଅନ୍ୟ ମାନଙ୍କ ଭଳି ରାହତ ଅଫିସରେ ତ ତା'ର କିଛି କାମ ନଥାଏ । ବଜାର ସଉଦା କରେ । ସାହିରେ ଆଖପାଖ ଘରକୁ ଯାଏ କିଛି ଆଳ ପାଇଲେ, ପଚରି ବୁଝି ଗୋଟିଏ ଅଧେ ସିଲେଇ କାମ ହାତକୁ ନିଏ । ସାଙ୍ଗରେ ମିଶି କାମ କରିବାକୁ କେହି ନଥାନ୍ତି ବୋଲି ହେଉ ବା ନୂଆ ଜାଗାସବୁର ଭରସା କରିଯାଇଥିବାରୁ ହେଉ, ସହଜରେ ଆଉ କାମ ମିଳେନାହିଁ । ବିନା ପ୍ରଶ୍ନରେ ଘର ଭିତର କାମଦାମ କରିବାର ଦାୟିତ୍ୱ କେବଳ ନେଇନେଇଥାଏ ସିଏ ।

ସେଦିନ ତାକୁ ଚମକାଇ ଦେଲା ରେହମାନ । ବାଆଁରେଇ ହେଲାଭଳି ପାଖରେ ଆସି ଛିଡ଼ାହେଲା । ଟିକିଏ କଷ୍ଟ ପଡ଼ିଲେ ତାକୁ ଆଜିକାଲି ଶ୍ୱାସ ଉଠାଏ । ହାତର ଛୁଞ୍ଚିକାମ ରହିଗଲା ଫାତିମାର, ପଚାରିଲା, "କ'ଣରେ ରେହମାନ ? ଆ ବସ୍ ଏଠି ।"

ରହମାନ ବସିଲାନି, ସେମିତି ଠିଆ ରହିଥାଏ ତଥାପି ତା' ନିଃଶ୍ୱାସର ଗତି ଆଉରି ବଢ଼ିଗଲା । କହିଲା, "ଅପା, ମୋର କଥାଟିଏ କହିବାକୁ ଅଛି ।"

ଫାତିମା କହିଲା, "କହିବୁ ଯେ, ପାଖରେ ବସ୍ ଟିକିଏ । ତୋ' ଗଳାଟା ବସିଚି କାହିଁକି, ନାରା ଦେଉଥିଲୁ ବୋଧେ କାଲି ଜୁଲୁସ୍‌ରେ ।"

ତଥାପି ବସିଲାନି ରେହମାନ । ସେମିତି ଭୁରୁ କୁଞ୍ଚେଇ କହିଲା, "ଆଣ୍ଡରସନ୍‌କୁ ଫାଶୀ ହେବ, ସେଇ ହେଉଚି ଆମର ପ୍ରଥମ ଦାବି ଏବେ । ପଇସା ନୁହଁ ।"

"କାହାକୁ ଫାଶୀ ହେବ ?"

ରେହମାନ ଅପାର ଅଜ୍ଞତାରେ ହସିଲା ଟିକିଏ । ବୁଝେଇଦେଲା ସଂକ୍ଷେପରେ, "ଆଣ୍ଡରସନ । ସେଇ ଗୋରା ରାକ୍ଷସ, କାରଖାନା ମାଲିକ, ଯାହାକୁ ଗ୍ୟାସ୍ କାଣ୍ଡ ପରେ ଆରେଷ୍ଟ କରିବାର ଥିଲା । ପଳେଇଲା ସିଏ ଦେଶରୁ । ଆମରି ସରକାର ତାକୁ ଯିବାକୁ ଦେଲା । ମାନେ ସାହାଯ୍ୟ କଲା ସ୍ପେଶାଲ ଉଡ଼ାଜାହଜ ଦେଇ । ତମେ ଏତିକି ସୁଦ୍ଧା ଖବର ରଖିନ ଅପା ?"

ଆଣ୍ଡରସନ୍‌ର ନାଁ, ଫଟୋ ତ ସହରଯାକ କାନ୍ଥ ବାଡ଼ରେ । ତେବେ ସେଥିନେଇ କେବେ ମୁଣ୍ଡ ଘୂରେଇନି ଫାତିମା । ଆଜି ସାନଭାଇକୁ କହିବାଲାଗି ତା'ର ସାହାସ ବି ହେଲାନି ଯେ, ହଉ ହେଲାବା ତାଆରି ହେଳା ଯୋଗୁଁ ଏତେ କାଣ୍ଡ ହେଲା । ଜୀବନ ବଞ୍ଚେଇ ପଳେଇଲା ସେ । ତା'ବୋଲି ସେଥିଲାଗି ତୁ ପାଠଶାଠ ଛାଡ଼ି ବାରବୁଲା ହେବୁ ? ନିଜ ଦେହମୁଣ୍ଡକୁ ଜଗିବୁନି ?

ରେହମାନର ବଦଳୁଥିବା ମୁହଁକୁ ପୁଣିଥରେ ଲକ୍ଷ୍ୟ କଲା ଫାତିମା । ପଚାରିଲା, "ହଉ ହେଲା । କହିଲୁ ଆଗ, କ'ଣ କହିବୁ ବୋଲି କହୁଥିଲୁ ?"

ଦୋଦୋପାଞ୍ଚ ହେଲା ରେହମାନ । ଫେରିପଡ଼ି କହିଲା, "ଥାଉ, ପରେ କହିବି ।"

ସିଲେଇ କାମ ଛାଡ଼ି ଉଠି ଛିଡ଼ାହେଲା ଫାତିମା । ପାଖକୁ ଆସି କହିଲା, "ନାଇଁ ଏବେ କହ, ମୋ' ସୁନା ଭାଇଟି । କ'ଣ କହିବାକୁ ଥିଲା ?"

ରେହମାନ ବୁଲିପଡ଼ି ବଡ଼ ପାହୁଣ୍ଡରେ ଘର ଭିତରକୁ ପଶିଗଲା । ତା' ପଛେ ପଛେ ଭିତରକୁ ଗଲା ଫାତିମା, କିଛି ଗୋଟାଏ କଥା ଅଛି ନିଶ୍ଚୟ । ଦାଦୀମା'ଙ୍କ ପାଖକୁ ଯାଇ ଠିଆହେଲା ରେହମାନ, ସାହସ କୁଳେଇଲା ପରି ହଠାତ୍ ବୁଲିପଡ଼ି କହିଲା, "ତମ ଲାଗି ଭଲ ପ୍ରସ୍ତାବଟିଏ ଆଣିଚନ୍ତି ଶାରୁଖ୍ ଚାଚା । ତମେ ରାଜି ହେଇଗଲେ ହେଲା ।"

ଆଁ କରି ଅନେଇରହିଲା ଫାତିମା । କବାଟ ପଛପାଖେ ଜରୀନା ଠିଆହେଇଚି, ଅନ୍ୟ ଆଡ଼େ କୁଆଡ଼େ ଚାହିଁଚି । ଦାଦୀମା' ଚୁପ୍ ହେଇ ଶୁଣୁଚନ୍ତି, ଫାତିମାର ମୁହଁ ଉପରେ ତାଙ୍କ ଦୃଷ୍ଟି । ଆରଘରେ ଅମ୍ମି ବସି କ'ଣ ଭୁଟୁରୁ ଭୁଟୁରୁ ହେଉଚି । କେତେବେଳକେ ଫାତିମା ନିଜ ସ୍ୱର ଫେରିପାଇଲା, "କ'ଣ କହୁଚି ଇଏ ଦାଦୀମା ? ମୋ' ଲାଗି ପ୍ରସ୍ତାବ ? ମାନେ ?"

ଦାଦୀମା' ଦୋକ୍ତା ଟିକିଏ ପାଟିରେ ପକେଇ ନିଶ୍ଚିନ୍ତ ସ୍ୱରରେ କହିଲା, "ଖରାପ କ'ଣ କହିଲା ? ପ୍ରସ୍ତାବ ଆସିଚି ତ ଟିକିଏ ବିଚାର କରିଦେଖିଲେ କ୍ଷତି କ'ଣ ? କେତେଦିନ ଆଉ ଅଭିଆଡୀ ହେଇ ବସିଥିବୁ ?"

ଫାତିମାକୁ ଏତେବେଳେ ଦେଖାଗଲା, ସମସ୍ତଙ୍କୁ ଜଣାଯିବା ପରେ ଶେଷରେ ତାକୁ ଜଣାଇଦିଆଯାଇଚି ପ୍ରସ୍ତାବ କଥାଟି ।

ରେହମାନ ଏଥର କହିଲା, "ବହୁତ ଭଲ ଜାଗା । ଶାରୁଖ୍ ଚାଚା କହିଚନ୍ତି –"

ତାକୁ କଥା ପୂରା କରିବାକୁ ନଦେଇ ଫାତିମା ସ୍ୱର ଉଷ୍ଟେଇ ପଚାରିଲା, "କିଏ ସେ ଶାରୁଖ୍ ଚାଚା ? ତାଙ୍କୁ ମୁଁ ଗୁରୁଜନ ବୋଲି ମାନେନାଇଁ । ସିଏ କିଏ ମୋ' କଥା ବିଚାର କରିବାକୁ ?"

ରେହମାନ ଦାଦୀମା'ଙ୍କୁ ଅନେଇଲା, "ଶୁଣ ଦାଦୀମା', କ'ଣ କହୁଚନ୍ତି ଶୁଣ ଆ'ଙ୍କ କଥା । ତମେ ଟିକେ ବୁଝାଅ ଅପାଙ୍କୁ ।"

ଦାଦୀମା' ପାଖରେ ଜାଗା ଦେଖାଇ ଫାତିମାକୁ କହିଲେ, "ଆ ବସ୍ ମୋ' ପାଖରେ । ପ୍ରସ୍ତାବ ଆସେ ଏକୁଟିଆ ଝିଅ ଥିଲେ, ନୂଆ କଥା ନୁହେଁ କିଛି । ଏମିତି ଛାନିଆଁ ହେଉଚୁ କାହିଁକି ?"

ଆ' ତା' ମୁହଁକୁ ଚାହିଁ କ'ଣ କହିବ ବୁଝି ନପାଇ ଯାଇ ଦାଦୀମା' ପାଖରେ ବସିଲା

ଫାତିମା । ଉଦାସ ଥିଲେ ବି ଶାନ୍ତ ଦିଶୁଚି ତାଙ୍କ ମୁହଁ, କିଛି ଆଶ୍ଚର୍ଯ୍ୟ ଭାବ ନାହିଁ ତହିଁରେ । ପଚାରିଲା, "ଦାଦୀମା', ତମକୁ ଜଣା ଅଛି ଏକଥା ? କେବେଠୁ ଏସବୁ ଆଲୋଚନା ଚାଲିଚି ମୋ' ପଛରେ ? ମୋତେ ଆଗରୁ କହିନା କାହିଁକି ?"

ଫାତିମା ପିଠିରେ ହାତ ଦେଇ ଦାଦୀମା' କହିଲେ, "ରେହମାନ ତ କିଛି ଖରାପ କଥା କହୁନି । ଥିଲାବାଲା ଲୋକ, ଆଗ ପକ୍ଷର ପିଲାଝିଲା ଅଛନ୍ତି, ହେଲେ ସେଇଟା ଖୁବ୍ ବଡ଼ କଥା ନୁହଁ ଝିଅ । ଘର ସଂସାର କଲେ ଯାଇ ସିନା ତୋ'ର ଦିନ କଟିବ, ନହେଲେ ଜୀବନଟା କଟିବ କେମିତି ଭାବିଦେଖିଚୁ ? ତୋ' ପରେ ତେଣିକି ଜରୀନା ଆଉ ରେହମାନଙ୍କ ଭବିଷ୍ୟତ ଅଛି ।"

କଥାଟା ତଥାପି ବୁଝାପଡୁନଥିଲା ଫାତିମାର । ଏଇ ଦୁର୍ବଳ ହାତଟାର ଏତେ ଦୁଃସାହସ ? ଦାଦୀମା'ର ହାତଟାକୁ ନିଜ ପିଠିରୁ ଗୋଟାଏ ଝଟକାରେ ଖସେଇନେଇ ଫାତିମା ଖଟରୁ ଉଠିପଡ଼ିଲା । ପଚାରିଲା, "ତମେସବୁ ମିଶି ମୋ' ଭବିଷ୍ୟତ ନିର୍ଣ୍ଣୟ କରିବ ? ମୋତେ ପଚାରିଚ କେବେ ଏ ବିଷୟରେ ?"

ହେଲେ ତା'ପରେ ଯେଉଁ ସ୍ୱରସବୁ ଚାରିଆଡୁ ଆସି ତା' ଉପରେ ବର୍ଷିଗଲା ମୁନିଆଁ ତୀର ବର୍ଚ୍ଛା ଭଳି, ଏକାବେଳକେ ନିରସ୍ତ ହେଇଗଲା ଫାତିମା । ବୁଝିଲା ସେ ଏକୁଟିଆ ଗୋଟିଏ ପକ୍ଷରେ ଛିଡ଼ା ହେଇଚି, ଆର ପକ୍ଷରେ ଅନ୍ୟ ସମସ୍ତେ । ତାଙ୍କ ମୁଖିଆ ଭଳି ନିଜେ ଦାଦୀମା' ବୁଝାଉଚନ୍ତି ତାକୁ, "ତୋର ଭବିଷ୍ୟତ ଚିନ୍ତା କ'ଣ ଘରସାରା ଲୋକଙ୍କ ନାହିଁ ଝିଅ ? ତୁ ବି ଘରର ଅନ୍ୟ ମାନଙ୍କ କଥା ଭାବିବୁ ନା ଖାଲି ନିଜକୁ ଯାହା ଭଲ ଲାଗିଲା ସେଇଆ କରିବୁ ?"

ଆଶ୍ଚର୍ଯ୍ୟରେ ଫାଟିପଡ଼ିଲା ଫାତିମା, ଏକୁ ଆରେକ ମୁହଁକୁ ଚାହିଁ ପଚାରିଲା, "ମୁଁ କେବେ ଭାବିନାଇଁ ତମମାନଙ୍କ କଥା ? କେବେ କିଛି କରିନାଇଁ ଘର ଲାଗି ? ଆଜି ଚାହତ ଅଫିସର ପଇସା ସିନା ମୋତେ ମିଳୁନି, କାମ କରି ଦି'ପଇସା ରୋଜଗାର କରିବା କଥା ତ ମୁଁ ହିଁ ଭାବୁଚି ଏ ଘରେ ?"

ଖେଙ୍କାରି ହେଲାଭଳି ରେହମାନ ଜବାବ ଦେଲା, "କିଏ ପଚାରିଚି ତମ ରୋଜଗାରକୁ ? ସେବେ ବି ଆପେ ଜିଦିକରି କୋଉ ହୋଟେଲ ଲାଗି ସିଲେଇ ଫିଲେଇ କରୁଥିଲ, ନିଜ ଖୁସିରେ । ବାପାଙ୍କର ଜମା ପସନ୍ଦ ନଥିଲା ସେକଥା । ସେଇଥିରୁ ମୁହଁ ବଢ଼ିଲା ବୋଲି ଘର ମୁହଁରେ କାଳି ବୋଳିଲ । ତମରି ଲାଗି ଯେତେକ ଦୁଃଖ ଅପମାନ ମିଳିଲା ବାପା ମା'ଙ୍କୁ, ଆମ ସମସ୍ତଙ୍କୁ ।"

ସେଇ ଭିତରେ ଜରୀନାର ସରୁ ସ୍ୱରଟିଏ ବି ଶୁଭିଲା ଫାତିମାକୁ – "ଆମ କଥା ତମକୁ ଶୁଣିବାକୁ ହେବ ଅପା... ତମ ଲାଗି ଆମେ କେତେ ସହିଚୁ..."

କୋହ ରୁନ୍ଧା ମୁହଁରେ ବି ନିଆଁ ହୁଳା ବାହାରିଗଲା ଫାତିମାର ଆଖିରୁ । ପାଟିକଲା ବେଳେ ସ୍ୱର ଭାଙ୍ଗି ଭାଙ୍ଗି ଯାଉଥିଲା, "କାଲିକା ପିଲା ତୁ ରେହମାନ, ମୋତେ ଶାସନ କରିବୁ ତୁ? ବାପା ପଚାରିଥିଲେ ମୁଁ ଜବାବ ଦେଇଥାନ୍ତି । ତୁ କିଏ ସେ? ଏବେ ମୁଁ ମୋର ରୋଜଗାର କରିବି, ଏଇଠି ରହିବି । ମୋ' କଥା କେହି ଚିନ୍ତା କରିବା ଦରକାର ନାହିଁ ।"

ଦାଦୀମା' ଅନ୍ୟ ଦି'ଜଣଙ୍କ କଥା ମଝିରୁ ବୁଝେଇବସିଲେ – "ଫାତିମା ବେଟୀ, ସେ ତୋ'ର ଭାଇ ପରା । ବାପ ନଥିଲା ଘରର ଦାୟିତ୍ୱ ତାଆରି ମୁଣ୍ଡରେ ନ ପଡ଼ିଲେ ଆଉ କାହାର ହେବ ?"

ପିଲାଦିନୁ ନିଜ ଦେହଠୁ ବଳି ବିଶ୍ୱାସ ଦେଇଥିବା ଘରର ଏ ରୂପ ଫାତିମା ସ୍ୱପ୍ନରେ ବି ଦେଖିନଥିଲା । ଦାଦୀମା' ମାନିନେଉଚନ୍ତି କାଲିକା ପିଲା ରେହମାନର ମୁରବୀପଣିଆ । ମୁହଁଟେକି ଅନେଇଲା ସେ ଏତେ ଭରସା କରିଥିବା ମୁହଁଟିକୁ, ଭୋପାଲ ସାମ୍ରାଜ୍ଞୀ ସରକାର ଅମ୍ମାଙ୍କ ଅନୁଚରୀ ଉଆସ ଭିତରେ ଘୋଡ଼ାଚଢ଼ା ଶିଖିଥିବା ତା' ଦାଦୀମା'ଙ୍କୁ । ଆଉ ସେତେ ବଳ ପାଉନଥିବା ସ୍ୱରରେ ସେ ପଚାରୁଥିଲା – "ତମେ ଏକଥା କହୁଚ ଦାଦୀମା' ? ତମେ ପରା ନିଜେ ବିଧବା ହେଇ ଯୁଆନ୍ ବୟସରେ ଘରର ଭାର ସମ୍ଭାଳିଥିଲ ?"

ଏକଥାରେ ତିନୋଟି ମୁହଁରୁ ଯେଉଁ ଜବାବ ଆସିଲା, ଫାତିମା ବୁଝୁଥିଲା ଯେ ବାହାର ଲୋକ କ'ଣ କହୁଚନ୍ତି, କି ମତାମତ ଦେଉଚନ୍ତି, ସେଇଥିରେ ହିଁ ଝିଅଟିଏ କରୁଥିବା କାମର ଭଲ ମନ୍ଦ ନିର୍ଣ୍ଣୟ କରାଯାଏ । ଘର ଲୋକଙ୍କର ହେଉଥିବା ଉପକାର ଅପକାରରେ ସବୁବେଳେ ତା'ର ଗୁଣ ନିର୍ଣ୍ଣୟ ହୁଏନି । ହୁଏ ସୁନାମ ଦୁର୍ନାମରେ ।

ଗୋଳିଆଗୋଳି ହେଇଯାଉଥିଲା ଚାରିଆଡ଼ର କଥା ଆକ୍ଷେପ ଅଭିଯୋଗ ସବୁ, ଅଚିହ୍ନା ପାଲଟିଯାଉଥିଲେ ଅତି ଆପଣାର ସ୍ୱରମାନ । ନିଜେ ଚିହ୍ନିପାରୁନଥିବା ସ୍ୱରରେ ଫାତିମା ଏଥର ପଚାରୁଥିଲା ତା' ଭାଇ ଭଉଣୀଙ୍କୁ," କି କ୍ଷତି ମୁଁ କରିପକାଉଚି ତମମାନଙ୍କର ? ମୋ' ନିଜ ଭୁଲ୍ ଲାଗି ନିଜେ ଦୁଃଖ ଭୋଗୁଚି । ହେଲେ ତମମାନଙ୍କ ଭଲ ଲାଗି ଚିନ୍ତା କରୁଚି, ଚେଷ୍ଟା କରୁଚି ଏବେବି । ଆମ ସଭିଙ୍କ ଭବିଷ୍ୟତ ଲାଗି ବାପା କେତେ କ'ଣ ଆଶା କରିନଥିଲେ ? ଖାଲି ମୁଁ ହିଁ ତାଙ୍କ ଆଶାମତେ ବଞ୍ଚିଲିନି ? ଆଉ ତୁ ରେହମାନ୍, କ'ଣ ପାଠଶାଠ ଛାଡ଼ି ନେତାଗିରୀ କରିବୁ ବୋଲି ବାପା ଚାହିଁଥିଲେ ?

ତା' ସ୍ୱରକୁ ଚପି ଆଖପାଖ କମ୍ପେଇଲା ପାଟିରେ ରେହମାନ ଜବାବ ଦେଲା, "ମୋ' ଭବିଷ୍ୟତ କଥା ମୋ' ଉପରେ ଛାଡ଼ିଦିଅ । ମୋ' କଥା ମୁଁ ବୁଝିବି । ବାପାଙ୍କ ଭଳି ପରଦୋକାନରେ ମୁନିମ୍ ହେବିନି । ଶାରୁଖ୍ ଚାଚାଙ୍କ ସାଙ୍ଗରେ ମିଶି କାମ କରିବି, ସେ କହିଚନ୍ତି ମୋତେ ତାଙ୍କ ବିଜିନେସ୍ ପାର୍ଟନର କରିବେ ।"

# ବଦଳୁଥାଏ ମାନଚିତ୍ର

ରାତି କେତେ ହେଇଥିବ କେଜାଣି, ଦାଦୀମା'ର ସ୍ୱର ଶୁଣିଲା ଫାତିମା, "ଏଥର ଶୋଇପଡ଼ ଝିଅ । ଆମେ କ'ଣ ସବୁ ତୋ'ର ଶତ୍ରୁ ? ତୋରି ମଙ୍ଗଳ ଲାଗି କହୁଚୁ ଆମେ, ବୁଝୁନୁ କାଇଁକି ?"

କାନ୍ଦୁରା ସ୍ୱରରେ ନିଜ ବିଛଣାରୁ ଫାତିମା ଉତ୍ତର ଦେଲା, "ଆମେ ବୋଲି କାଇଁକି କହୁଚ ଦାଦୀମା' ? ତାଙ୍କ ତରଫଦାରୀ କରୁଚ ତମେ, କାଲିକା ପିଲା ଦି'ଜଣଙ୍କର ? ମୋତେ ତାଙ୍କ କଥା ମାନି ଚଳିବାକୁ ହେବ ଏ ଘରେ ?"

ଦାଦୀମା' ନିଶ୍ଚିନ୍ତ ଗଳାରେ କହିଲେ, "କାହା କଥା ମାନ ବୋଲି ମୁଁ କହୁନାଇଁ । ବାହା ହେଇପଡ଼ ବୋଲି କହୁଚି । ଏମିତି ଏକୁଟିଆ କେତେଦିନ ରହିବୁ ?"

ଫାତିମା ଉଠି ବସିଲା, ପଚାରିଲା – "କିଏ ସେ ଲୋକ ? ସତ କହ, ତମେ କ'ଣ ଜାଣିଚ ତା' ବିଷୟରେ ଯେ ମୋତେ ବାହା ହେବାକୁ କହୁଚ ?"

ଟିକିଏ ଚୁପ୍ ରହି ଦାଦୀମା' କହିଲେ, "ହଉ ତୁ ନିଜେ ପଚାରି ବୁଝି ବିଚାରି ଦେଖ୍ । ମୂଳରୁ ମନା କରିଦେଉଚୁ କାଇଁକି ?"

ଫାତିମା ଉଠିଯାଇ ଦାଦୀମା'ର ଖଟକୁ ଲାଗି ତଳେ ବସିଲା । ଏଥର ଗୁହାରି କଲାଭଳି କହିଲା, "ମୁଁ ବୁଝିସାରିଲିଣି ଜରୀନାଠୁ । ଅଜଣା ଅଚିହ୍ନା ଦରବୁଢ଼ା ଲୋକଟାର ଘର କାଇଁକି ଯାଇ ସମ୍ଭାଳିବି ମୁଁ ? ଖାଲି ଅଭିଆଡ଼ୀ ଦୋଷ କଟିବ ବୋଲି ? ମୁଁ ଘର କରିଥିଲି ମୁକ୍ତାର ସାଙ୍ଗେ, ତମେ କ'ଣ ସଭିଏଁ ସେକଥା ଜାଣିଲେଣି । ହେଲା ପଛକେ ତା' ସାଙ୍ଗେ ରହିବା ଆଉ ହେବନାଇଁ, ତା'ବୋଲି ତଲାକ୍‌ଶୁଦା ଝିଅ କ'ଣ ବାପଘରେ ରହେନାଇଁ ?"

ଦାଦୀମା' ତା' ମୁହଁରୁ ଲୁହ ପୋଛିଦେଇ କହିଲେ, "ରହିବାକୁ କିଏ ମନାକଲା କି ବେଟୀ । ତେବେ ତଲାକ ପରେ ବର ମିଳିଗଲେ ପୁଣି ବାହାହେଇଯିବାର ନିୟମ ଅଛି । ମିଛଟାରେ ଏକୁଟିଆ ରହିବା ମାଇପି ଝିଅ ଲାଗି ଭଲ ନୁହେଁ । ଉପରଓ୍ୱାଲା ଦେଇଥିବା ଦେହକୁ ପଡ଼ିଆ ରଖିବା, ପିଲା ଜନ୍ମ ନକରିବା ସ୍ତ୍ରୀ ଲୋକଙ୍କ ଲାଗି ଦୋଷ, ଏକଥା ଜାଣିନୁ କି ?"

ଖଟ ଧାରରେ ମୁଣ୍ଡ ପୋତି ଫାତିମା ନେହୁରା ହେଲା, "ମୋତେ ଘରେ ରହିବାକୁ ଦିଅ ଦାଦୀମା' । କଥା ଦେଉଚି କାହାରି କିଛି କ୍ଷତି କରିବିନି, ଘରର ସାହାଯ୍ୟ କରିବି ।"

ଦାଦୀମା' ଲମ୍ବା ନିଃଶ୍ୱାସଟାଏ ଛାଡ଼ି କହିଲେ, "ତୁ ବୁଝୁନୁ କାଇଁକି ଝିଅ । ଏବେ ଆଉ ତୁ କଷ୍ଟରେ ଅର୍ଜି ଆଣିବା ଦି'ପଇସାରେ କାହାରି ସାହାଯ୍ୟ ହେଇଯିବ ନାହିଁ । ତୁ ବାହାହେଇଗଲେ ସମସ୍ତଙ୍କର ମଙ୍ଗଳ । ଜରୀନା ଲାଗି ବି ଭଲ ପ୍ରସ୍ତାବ ଆସିବ ତା'ପରେ । ହୀନାର ବାହାଘରେ ଆମେ କେହି ଖୁସି ନାହୁଁ ତୁ ଜାଣିଚୁ ।"

ଫାତିମା ଲୁହ ପୋଛି ସଳଖ ହୋଇ ବସିଲା । କହିଲା, "ମୋ ଅପଣା ଲୋକ ସମସ୍ତଙ୍କ ଲାଗି ମୋ ମନରେ ନିଜଠୁ ବଳି ଚିନ୍ତା ଅଛି ଦାଦୀମା' । ମୋ' ହାତରେ ଜୀବନଟା ଅବାଟରେ ଚାଲିଗଲା ବୋଲି ଜରୀନା, ରେହମାନ ମଣିଷ ହେବେନି କାଇଁକି ? ଜରୀନା କଲେଜରେ ପାଠ ପଢ଼ିବ, ମୁଁ ତାକୁ ବୁଝେଇବି । ଆଉ ରେହମାନର ବୟସ ବା କେତେ, ସିଏ ତା' ଭବିଷ୍ୟତ କଥା କ'ଣ ସ୍ଥିର କରିବ ? ତମେ ବି ତାକୁ କାଇଁକି ମୁହଁ ଦେଉଚ ଦାଦୀମା' ?"

ଦାଦୀମା' ତୁନି ରହିଲେ କେତେବେଳ । ନିଜ କପାଳରେ ହାତ ମାରି କହିଲେ, "ମୁଁ ଆଉ କ'ଣ ମୁହଁ ଦେବି ? ମୁଁ ନିଜେ ତ ଗୋଟେ ବୋଝ । ଏଇ ତୋ' ମା' ଆଉ ମୁଁ, ଏଇ ଯିବୁ ଯିବୁ ହେଇ ଲାଖି ରହିଚୁ । ପିଲାଙ୍କ କାନ୍ଧରେ ସବାର ହେଇ ଦିନ ଟାଣିବା କଥା । ତା' ପୂର୍ବରୁ ତମ ଦି'ଝିଅଙ୍କର ବନ୍ଦୋବସ୍ତ ହେଇଗଲେ ସିନା ଆଲ୍ଲାଙ୍କ ଦୟା ବୋଲି ଭାବିବି ?"

ଫାତିମା ଏଥର ନିଜ ଗଳାରେ ଟିକେ ଜୋର୍ ପାଇଲା, କହିଲା, "ଆଉ ରେହମାନର କଥା କିଏ ବୁଝିବ ? କେତେ ବା ବୟସ ହେଇଚି ତାକୁ ? ସତର ବର୍ଷ ପିଲା, ମ୍ୟାଟ୍ରିକ୍ ବି ପାସ୍ କରିନାଇଁ । କ'ଣ କରିବ ସେ ଏକୁଟିଆ ?"

ଦାଦୀମା' ଉତ୍ତର ଦେଲା, "ଶୁଣିଲୁ ପରା, ଶାରୁଖ୍ ତାକୁ କଥା ଦେଇଚି ତା' ବେଉସାରେ ମିଶେଇବ ।"

ଅନ୍ଧାରରେ ଦାଦୀମା'ର ମୁହଁକୁ ପଢ଼ିବାକୁ ଚେଷ୍ଟା କଲା ଫାତିମା, ପଚାରିଲା – "ଶାରୁଖ୍ କିଏ ସେ ଏଘରେ ? ସେ କାଇଁକି ଅବା ସାହାଯ୍ୟ କରିବ ଆମକୁ ? ରେହମାନକୁ ପୁଣି ଭାଗ ଦେବ ସିଏ ତା' ବେଉସାରୁ ?"

ଦାଦୀମା' ବୁଝେଇଦେଲେ । କାଇଁକି ସାହାଯ୍ୟ ନ କରିବ ? ଶାରୁଖ୍ ମିଆଁର ପାଞ୍ଚଟା ଝିଅରୁ ଗୋଟିକୁ ବାହାହେବ ରେହମାନ । ଏ ଘରଟି ରେହମାନର ହାତକୁ ଆସିବ, ଆଜି ନହେଲ କାଲି । ଆଉ ତା' ବାପାଙ୍କର ଓ ସାଜିଦ୍ ଭାଇର ଜୀବନହାନି ଲାଗି ଆମେରିକାନ କମ୍ପାନୀରୁ ମୋଟା ଅଙ୍କର ଟଙ୍କା ପାଇବ ସେ । ତା' ମାଆର ଓ ଦାଦୀମା' ଲାଗି କ୍ଷତିପୂରଣ ମିଳିବାର ଆଶା ଅଛି । ହଁ, ଦାଦୀମା'ର ନାଁ ବି ଗ୍ୟାସ୍ ରୋଗୀଙ୍କ ତାଲିକାରେ ଉଠିଯାଇଚି ।

ଜରୀନା ଯେଉଁଠିକି ବାହାହେଇ ଗଲେ ବି ତା' କ୍ଷତିପୂରଣ ଟଙ୍କା ସେ ପାଇବ । ଫାତିମାର କାହିଁରେ କିଛି ନାହିଁ ବୋଲି ଜାଣି ବି, ତା'ର ଗଲା କଥାସବୁ ଶୁଣିଥାଇ ବି ଯଦି ଏଇ ସହରର ଜଣେ ଲୋକ, ନିଜ ଘର ବେଉସା ଥାଇ ମୁଣ୍ଡ ଟେକି ଚଲିଲାଭଳି ଲୋକଟିଏ ତାକୁ ବାହାହେବାକୁ ରାଜି ଅଛି, ତାକୁ ବାହାହେଇ ଯିବା ଅକଲର କାମ ନା ନୁହେଁ ?

ଶୂନ୍ ପଡ଼ିଯାଉଥିବା ଫାତିମାର ଦେହକୁ ଆଉଁସି ଦେଇ ଦାଦୀମା' ଆଉରି ବୁଝେଇଲେ, "କାଲିକି ଯେତେବେଳେ ଏ ଘରକୁ ରେହମାନର ବୋହୂ ଆସିବ, ତୋ' ପିଠିରେ ପଡ଼ିବାକୁ ମୁଁ କି ତୋ' ମା' ତ ନଥିବୁ । ସେତେବେଳେ ତୋ' ଅବସ୍ଥା ଏଠି କ'ଣ ହେବ ଟିକିଏ ଭାବ । ତୋ' ହାତରେ ରାହତର ଦି'ପଇସା ଭଲା ଆସୁଥାଆନ୍ତା । ଶାରୁଖ୍ ଚେଷ୍ଟା କରିବ ବୋଲି କହୁଥିଲା, ତୁ ଓଲଟି ତାକୁ କଡ଼ା କଥା ଶୁଣେଇ ମନା କରିଦେଲୁ ।"

ଚୁପ୍ ରହିଲା ଫାତିମା । ଦାଦୀମା'ର ଆଉରି ମନଖରାପ ହେଲା ଭଳି କଥା କହିବାକୁ ଚାହୁଁନଥିଲା ସେ, ଯେ ଶାରୁଖ୍ ମିଆଁ ଏଡ଼େ ବଦାନ୍ୟ ନୁହେଁ ଯେ ବିନା ଦାମ୍ ନେଇ ଫାତିମାକୁ ସାହାଯ୍ୟ ଯାଚୁଥିଲା । ଥରେ ଅଧେ ନେଇ ଦେଲା ଜିନିଷର ଦାମ ଅସୁଲ କରିବା ଭଳି ଲୋକ ବି ନୁହଁ ସେ । ସାରା ଜୀବନ ଫାତିମାଠୁ ଗୋଲାମୀର ଚୁକ୍ତି କରିନେଇଥାଆନ୍ତା ଶାରୁଖ୍ ।

ଏଥର ଦାଦୀମା'ର କୋଳରେ ମୁଣ୍ଡଦେଇ ସେ ମିଁ ମିଁ ହେଇ କହିଲା ଫତିମା, "ମୋତେ ଭାବିବାକୁ ଦିଅ ଦାଦୀମା', ଏମିତି ହଇରାଣରେ ପକାଅ ନାଇଁ । ଟିକିଏ ସମୟ ଦିଅ ମୋତେ । ଆଲ୍ଲା ମୋ' କଥା ଶୁଣିବେ, ଦିନ ଏମିତି ସମାନ ରହିବନି ତମେ ଦେଖିବ ।" ହେଲେ ସେ ନିଜେ କହୁଥିବା କଥାସବୁର କିଛି ଯୁକ୍ତିଯୁକ୍ତତା ନଥିଲା ବୋଲି ସେ କହିଲାବେଳେ ବି ବୁଝିପାରୁଥିଲା ।

ରେହମାନ ସଞ୍ଜବେଳେ ଘରୁ ବାହାରିଯାଇଥିଲା ଯେଉଁ କେତେପଦ କଥା କହି କହି, ସେଆଡ଼ିକି କାନ ନଦେବାକୁ ଚେଷ୍ଟା କରି ବି ଫାତିମାର ଛାତି ଭିତରେ ଲେଖିହେଇଯାଇଥିଲା ସିଏ ପଥର ଗାର ଭଳି – "ତମେ ଦି'ଭଉଣୀ ବାହା ହେଇ ବିଦା ହେଇଯାଅ ଶିଘ୍ର । ତେଣିକି ମୋର ଆଉ କିଛି ଚିନ୍ତା ନାହିଁ । କ୍ଷତିପୂରଣ ଟଙ୍କାରେ ଘରର ରେନୋଭେସନ ହେଇଯିବ । ବିଜିନେସ ଲାଗି ପୁଞ୍ଜି ହେଇଯିବ । ଆମ ଘରେ ଜୀବନଯାକ ରହିବ ବୋଲି ଠିକ୍ କରିବାକୁ ତମେ କିଏ ସେ ? କିଏ କହିଲା ବାପା ଆଜି ବଞ୍ଚିଥିଲେ ବି ତମକୁ ଏଠି ରହିବାକୁ ଦେଇଥାନ୍ତେ ବୋଲି ?"

# ଦିନ ବଦଳେ ମେଘ ଭଳି

ମୁଁ ଫାତିମାକୁ ଯେବେ ପୁଣିଥରେ ଭେଟିଲି, ଏତେ ଅଲଗା ଦିଶୁଥିଲା ଯେ ବର୍ଷ କେଇଟା ତଳେ ସେଇ ମଣିଷକୁ ଡାକ୍ତରଖାନା ବାରଣ୍ଡାରେ ଭେଟିଥିଲି, ମୁଣ୍ଡ ଟେକି ବାଟ ଚାଲିବାକୁ ଦମ୍ଭ ଦେଇଥିଲି ବୋଲି ବିଶ୍ୱାସ ହେଲାନି । ଶାହନଶା ହୋଟେଲର ଅଡ଼ିଟୋରିୟମରେ ଗୋଟିଏ କ'ଣ କାର୍ଯ୍ୟକ୍ରମ ହେଉଥାଏ, କିଏ ସବୁ ନାଁ କରା ସଙ୍ଗୀତଜ୍ଞ ଆସୁଥାନ୍ତି ବୋଲି ଦାମୀ ଟିକଟ ହୋଇ ବି ଗୋଟିଏ ହେଲେ ସିଟ୍ ଖାଲି ନଥାଏ । ପୁଣି ମୁଖ୍ୟ ଅତିଥିମାନଙ୍କ ଭିତରେ ଏକାଧିକ ମନ୍ତ୍ରୀ ଆସୁଥାନ୍ତି, ତେଣୁ ଅଧଘଣ୍ଟାଏ ପ୍ରୋଗ୍ରାମ ପୂର୍ବରୁ ହଲ୍ ପୂରା ଭର୍ତ୍ତି । ତହିଁରେ ଯାହା ସାଧାରଣତଃ ହୁଏ, ଷ୍ଟେଜର ସାଜସଜ୍ଜା କାମ ଆଉରି ସରିନଥାଏ । ଦୂରରୁ ଦେଖି ଚିହ୍ନା ଚିହ୍ନା ଲାଗିଲା, ଭାବିଲି କିଏ ଏଇ ସୌମ୍ୟ ଅଳ୍ପବୟସ୍କା ମହିଳା ଜଣକ । ସାମ୍ନାକୁ ମୁହଁ କଲାକ୍ଷଣି ଦେଖିଲି ଫାତିମା । ୟା'ପୂର୍ବରୁ ତାକୁ ଶାଢ଼ୀ ପିନ୍ଧିବା ଦେଖିନଥିଲି, ଢିଲାକରି ବେକ ଉପରେ ଖୋସାଟିଏ ପାରିଥାଏ, କାନରେ ବେକରେ ହାଲ୍‌କା ଫେଶନ୍ ଗହଣା, ଚେହେରା ଆଖିରେ ପଡ଼ିଲା ଭଳି ଦିଶୁଥାଏ । କଲେଜ ବେଳର ପିଲାଳିଆ ପଣ କଟିଯାଇ ଏଥର ଆତ୍ମବିଶ୍ୱାସର ଛାପ ଥିବା ପୂର୍ଣ୍ଣ ବୟସର ମଣିଷଟିଏ । ହୋଟେଲ ତରଫରୁ ତାକୁ କିଛି ଦାୟିତ୍ୱ ଦିଆ ଯାଇଥାଏ ବୋଧେ, ଷ୍ଟେଜ୍ ତଳେ ଫୁଲ ଗମଲା ଆଦି ସବୁ ସଜାଇବା, ମାଇକ ବାକ୍ସ ଆଦି ରଖାଯିବା ଆଦି ତଦାରଖ କରୁଥାଏ । ଏତେ ଲୋକଙ୍କ ମଝିରେ ଛିଡ଼ା ହେଇ ସହଜ ଭାବେ ଅନ୍ୟ କର୍ମଚାରୀଙ୍କୁ କାମ କରାଉଥିବା ତା'ର ଏ ରୂପ ପୁଣି ମୋ' ଲାଗି ନୂଆ ଥିଲା ।

ପ୍ରୋଗ୍ରାମ ଆରମ୍ଭ ହେବାକୁ ଡେରି ହେଉଥାଏ, ବୋଧେ ମୁଖ୍ୟ ଅତିଥିମାନେ ଆସିନଥାନ୍ତି । ଏଥର ତା' ନଜର ପଡ଼ିଲା ମୋ' ଉପରେ, ଦୂରରୁ ମୁହଁରେ ହସ ଫୁଟାଇ ନମସ୍କାର କଲା ଫାତିମା । ପାଖକୁ ଆସି ମୁଁ କିଛି ପଚାରିବା ପୂର୍ବରୁ ତର ସହୁନଥିବା ପରି କହିପକେଇଲା ଯେ ଏଇଠି ଲେଡ଼ିଜ୍ କର୍ଣ୍ଣର ବୋଲି ଶୋ ରୁମ୍‌ରେ ତାକୁ କାମ ମିଳିଚି । ତା' ହାବଭାବରେ ଏଥର ନୂଆ ଉତ୍ସାହ ଥିଲା, ତେବେ କଲେଜ ବେଳର ଉଦ୍ଦୀପନା, ସବୁ କଥାଲାଗି ଝଲମଲ ଆଗ୍ରହ ଆଗରେ ଇଏ ଫିକା ଥିଲା ନିଶ୍ଚୟ । ତା'ଠି ଏକ ଉଦାସ ଗାମ୍ଭୀର୍ଯ୍ୟର ଛାପ

ଆସିଯାଇଥିଲା, ବୋଧେ ତା' ବୟସ ତୁଳନାରେ ଅଧିକ । କହିଲି, "କେତେ ଭଲ ଦେଖାଯାଉଚ ଫାତିମା । ମୁଁ ତ ଚିହ୍ନିପାରିନଥାନ୍ତି । ଖୁସିରେ ଅଛ ତ ?"

ମୋତେ ଦେଖିଲା ବେଳେ ମୁହଁରେ ଯେଉଁ ହସ ଫୁଟିଥିଲା, ତା'ର ସଜପଣ ଏଥର ମୋ' ପ୍ରଶ୍ନର ଉତ୍ତର ଦେଲାବେଳକୁ ଆଉ ନଥିଲା । କହିଲା, "ଚଳିଚି ମାଡ଼ାମ୍ ଏକପ୍ରକାର । ଆଗ ଅପେକ୍ଷା ଭଲରେ ଅଛି ।"

କଡ଼କିଆ ସିଟ୍‌ରେ ବସିଥିଲି ବୋଲି ସେ ଯା-ଆସର ମଝିବାଟରେ ଠିଆହୋଇ ମୋ' ପାଖକୁ ନଇଁପଡ଼ି କଥା କହୁଥିଲା । ସହରରେ ଆହୁରି ଦାମୀ ହୋଟେଲ ଥିଲେ ବି ସବୁଠୁ ପୁରୁଣା ଅଭିଜାତ ହୋଟେଲରେ ଗଣାଯାଏ ଶାହନଶା, ଏଠାକାର ଶୋ ରୁମ୍‌ରେ ଦାମୀକା ଫେଶନର ଡ୍ରେସ ସବୁ ବାହାରୁ ଆସିଲା ଲୋକେ କିଣନ୍ତି, ମୋତେ ସେକଥା ଜଣାଥିଲା । କହିଲି, "କେବେ ଆସି ତମ ଶୋ ରୁମ୍‌ର ଜିନିଷ ଦେଖିବି । ଏଠି ସବୁ ଜିନିଷ ବହୁତ୍ ଦାମୀ ପରା, କିଣି ନପାରେଁ ପଛକେ ତମ ହାତର କାରିଗରୀ ତ ଦେଖିବି ।"

ମୋ' ହାତ ପାପୁଲିକୁ ଦୁଇହାତରେ ଧରିପକେଇ ସେ ଏଥର କହିଲା, "ଆପଣ ଟିକେ ଆସି ଦେଖିଲେ ମୋ' ଲାଗି ଯଥେଷ୍ଟ ମାଡ଼ାମ୍, ପାଠ ଶାଠ ତ ମୋ' ଦେଇ ହେଲାନାଇଁ । କ'ଣ ଭାବୁଥିବେ ଆପଣ ମୋ' ବିଷୟରେ କେଜାଣି । ଏଣୁ ତେଣୁ ଯାହା ଟିକେ ପାରୁଚି କରୁଚି ।"

ମୋ ସାମ୍ନା ସିଟ୍‌ରୁ ଜଣେ ମହିଳା ତାକୁ ଅନେଇ ଚିହ୍ନା ହସଟିଏ ଦେଲେ, ପଚାରିଲେ, "ଆପଣ କହିଥିଲେ ଯୋଉ କଳା ମୋତିର ପର୍ସ ଆସିବ ବୋଲି, ଆସିଲା ?"

ମୁହଁରେ ହସ ଝଲକାଇ ଫାତିମା ଜବାବ ଦେଲା, "ଆହୁରି ବହୁତ ପର୍ସ ଆସିଚି ମାଡ଼ାମ୍, ଶୋ ରୁମ୍‌କୁ ଆସନ୍ତୁ ଦେଖିବେ । ମୋତିର ଟି-କୋଜି ବି ଆସିଚି, ଖୁବ୍ ସୁନ୍ଦର ।"

ତାକୁ ବଲବଲ ଅନେଇଥିବା ମୋ' ମୁହଁକୁ ଚାହିଁ ସେ ପୁଣି କହିଲା, "ଆପଣ ବି କେବେ ଆସନ୍ତୁ ନା ମାଡ଼ାମ୍ । ମୁଁ ଅପେକ୍ଷା କରିଥିବି ।"

ମୁଖ୍ୟ ଅତିଥି ଆସିଯାଇଥିଲେ, ପାଟିତୁଣ୍ଡ ବନ୍ଦ ହେଇ ମାଇକ୍ ଶୁଭିବାକୁ ଆରମ୍ଭ କରିଥିଲା ହଲ୍‌ରେ । ଫାତିମା ଆସ୍ତେକରି କହିଲା, "ମୁଁ ଯାଏ ମାଡ଼ାମ୍, ଘରକୁ ଫେରିବାକୁ ହେବ ମୋତେ ।"

ମୁଁ ବି ଧୀର ଗଳାରେ ପଚାରିଲି, "ଆଜିକାଲି ବି ବୁର୍ଖା ପିନ୍ଧି ସ୍କୁଟର ଚଢୁଚ ନା ନାଇଁ ?"

ଏତେବେଳକେ ଖୋଲା ହସଟିଏ ଫୁଟିଲା ତା' ମୁହଁରେ, କହିଲା, "ଆପଣ ତେବେ ମନେ ରଖିଚନ୍ତି ମାଡ଼ାମ୍ ? ସ୍କୁଟର ଆଉ ଚଢୁନି, ଘରେ ବିରକ୍ତ ହେଉଚନ୍ତି । ଅଟୋ ଠିକା କରିଚି ।"

ନମସ୍କାର କରି ଟିକିଏ ବାଟ ଯାଇ ପୁଣି ଫେରିଆସି ଫାତିମା ମୋତେ କହିଲା, "ଯେବେ ଆସିବେ ମୋତେ ହୋଟେଲ ଫୋନ୍‌ରେ ଡାକିଦେଲେ ଅପେକ୍ଷା କରିଥିବି ମାଡ଼ାମ୍, ବହୁତ କଥା କହିବାକୁ ଅଛି । ଆଉ କିଏ ଶୁଣିବ ମୋ' କଥା ? ନିଶ୍ଚେ ଆସିବେ ।"

ମୁଣ୍ଡ ଟୁଙ୍ଗାରି ଆଗ୍ରହରେ ହଁ କଲି । ଆଶ୍ୱସ୍ତ ଲାଗିବା ସହିତ ଗୋଟାଏ ଅଖାଡୁଆ ଦୋଷୀ ଭାବଟେ ବି ମନରୁ ଓହ୍ଲେଇଯାଉଥିଲା । ଗତଥର ଡାକ୍ତରଖାନାରେ କହିଥିଲି ଦେଖାହେବ ବୋଲି, ହେଲେ ତା' ସାଙ୍ଗେ ଆଉ ଦେଖା ହେଇନଥିଲା । ମୋ' ମନ କହୁଥିଲା ତା'ର ଭରସାର ଜବାବ ଅନ୍ତତଃ ମୋତେ ଦେବା ଦରକାର । ହେଲେ କୋଉଠି କାହାଠୁ ତା' କଥା ବୁଝିବି ଜଣାନଥିଲା, ନିଜ ଜୀବନରେ ଧନ୍ଦି ହେଇ ରହିଗଲି । ଅସଲରେ ଭେଟ ହେଇଗଲେ ବି ତହିଁରେ କିଛି ଲାଭ ହେବ ବୋଲି ଭାବିନଥିଲି ।

ମନେହେଇଥିଲା, ସୁନ୍ଦର ଜୀବନଟିଏ ଫୁଟିବା ଆଗରୁ ମଉଳି ଯିବାର ଆରମ୍ଭ ତ ବହୁ ପୂର୍ବରୁ ଦେଖିସାରିଚି, ସେ ଛବିରେ ଦୃଷ୍ଟି ଦେଇ କି ଲାଭ ଆଉ । ହେଲେ ଆଜି ସେ ଜୀବନର ନୂଆ ପରିଚ୍ଛେଦଟିଏ ଭଳି ଦିଶିଗଲା ଯାହା, ତା' ପୃଷ୍ଠା ଖୋଲିବାକୁ କ'ଣ ନାହିଁ କରିବି ? ଫାତିମାର ଡାକରା କହୁଥିଲା ଯେ ସତରେ ସେ ମୋ' ଲାଗି ଅପେକ୍ଷା କରିବ, ମୋ'ଠୁ ତାକୁ ଆଜିଯାଏଁ କିଛି ମିଳିଥାଉ କି ନ ମିଳିଥାଉ । ଆଉ କିଛି ଲାଗି ପଛେ ନହେଉ, ଏ ଭିତରେ ତା' କାହାଣୀ କେମିତି କେଉଁ ମୋଡ଼ ନେଇଚି ତା' ମୋତେ ଜାଣିବାକୁ ହେବ ।

# ନିଜ ଲୋକ ପର ଲୋକ

ବାହାଘର ଲାଗି ଆସିଥିବା ପ୍ରସ୍ତାବ ଫାତିମାର ମନା କରିଦେବାରେ କଥାଟାର ଇତି ହେଇନଥିଲା । ତା'ର ବାହାଘର ହେବା ନିହାତି ଜରୁରୀ ବୋଲି ଏକତରଫା ନିଷ୍ପତ୍ତି ଘରଲୋକେ ଶୁଣାଇଦେବାପରେ, ପାଟିତୁଣ୍ଡ ବଚସା ଖୁଣ୍ଟା ଦିଆଦେଇ ନିୟମିତ ହେଇଗଲା ପରେ କେମିତି ସେ ଘରେ ଚଳିବ ତାକୁ ବୁଦ୍ଧି ଦିଶୁନଥିଲା । ଯେତେ ମୁହଁ ପୋତି ନିତିଦିନିଆ କାମରେ ଲାଗିଗଲେ ବି ଆବହାଓ୍ୱା ଜମା ସହଜ ହୁଏନି । ଫାତିମା ନିଜକୁ ଚୁପ୍‌ଚୁପ୍ କହେ, ବେଶ୍, ସେ ଦାୟିତ୍ୱ ମୋର । ଦେଖିବି ମୋର କିଏ କ'ଣ କରିବ ଏଠି ।

ଦାଦୀ ଲାଗି ତା ପସନ୍ଦର ଜଳଖିଆ ତିଆରି କରିଦିଏ, ମିଠା ହସ ହସି କଥା କହେ । ବୁଢ଼ୀ ଅଗତ୍ୟା ପଚାରନ୍ତି, "ତୁ ଖାଇଲୁଣି କି ନାହିଁ ବେଟୀ ? ସକାଳୁ ଉଠି କାମରେ ଲାଗୁଚୁ, ଏମିତି ନିଜକୁ ହେଲା କଲେ ଚଳିବ ? କେଡ଼େ ଝଡ଼ିଗଲୁଣି ଦେଖିଲୁ..."

ହସିପକେଇ ଫାତିମା ଜବାବ ଦିଏ, "ଏଣିକି ଆଉ ବୁଢ଼ା ବର ବି ମିଳିବେନି, ନୁହେଁ ଦାଦୀମା' ?"

ଦାଦୀମା' ଦେଇ ଗମ୍ଭୀର ରହିବା ଆଉ ହୁଏନି । ଠୋ ଠୋ ହସିପକାଏ । ଫାତିମା ଦେହରେ ହାତ ବୁଲେଇଦେଇ କହେ, "ହଉ ହେଲା ଯାଉ ସେକଥା । ତୋ'ର ବିନା ରାଜି ଖୁସିରେ କିଏ ତତେ ବାହା କରିଦେବ ଝିଅ ? ତୁ ପରା ମୋ' ଲଡୁଆ ନାତୁଣୀ । ଆମ ସରକାର ବେଗମ୍ ମନେପଡ଼ନ୍ତି ତୋତେ ଦେଖିଲେ ।"

ଘରୁ ବାହାରିଯିବା ଆଗରୁ ଜରୀନା ହାତରେ ଖାଇବା ଥାଳି ନେଇ ଆସେ, କହେ, "ଅମ୍ମି ପୁଣି ଖାଉନି ଅପା, ତମେ କହିଲେ ଯାଇ ଖାଇବ । ସେଇ ସକାଳୁ ଯାଇ ସିଲେଇ କଣରେ ବସିଚି ।"

ଫାତିମା ହିଁ ବୁଝାଇ ସୁଝାଇ ପାରେ ଅମ୍ମିକୁ । ନହେଲେ ସେ ପୁରୁଣା କପଡ଼ା ଆଉ ସିଲେଇ ସରଞ୍ଜାମ ଖୋଳେଇ ଧରି ବସିଥାଏ, କହୁଥାଏ "ଏତେ ସିଲେଇ ବାକି ପଡ଼ିଚି, କେବେ

ସାରିବା ? ବାହାଘର ଓଢ଼ଣୀର ବରାଦ ନେଇଚେ ପରା ?" କେବଳ ରେହମାନ ସକାଳୁ ବାହାରିଯାଏ ଘରୁ, ଫେରେ ଯାଇ ରାତିରେ । ଫାତିମା ସାଙ୍ଗେ କଥା କହେନି ପ୍ରାୟ ।

ଘରିପାଖରେ ଛବି ଯେଭଳି ବଦଳିଯାଉଥିଲା, ତାକୁ ଆଉ ଅଦେଖା କରିବାର ବାଟ କାହିଁଥିଲା ? ପିଲାଦିନୁ ଜାଣିଥିବା ବାପାଙ୍କ ପଲଙ୍କ, ଅମ୍ମିର ରୋଷେଇଘର, ଶୋଇବାଘର ଝରକାରୁ ଦିଶୁଥିବା ଗଳିବାଟ, ଅଗଣାରୁ ଫର୍ଚ୍ଚା ଅରାଏ ଛାତ ସେଇ ଏକାଭଳି ଥିଲା, ହେଲେ ତା'ଠୁ ବେଶୀ ଆପଣାର ମୁହଁ ସବୁ ଏବେ ଦରଚିହ୍ନା ଲାଗୁଥିଲେ । ଯେବେ ଏକୁଟିଆ ଥିଲାବେଳେ ନିଜ ମନକୁ ଖୋଳିତାଡ଼ି ଦେଖିଲା ସିଏ, ମିଳିଗଲା ତାକୁ ସେଇ ମିଛ ଖଣ୍ଡିକ ଯାହାକୁ ସେ ନିଜହାତରେ ପୋତିଦେଇ ଭୁଲିଯାଇଥିଲା । ଏବେ ତାହା ଗଜେଇ ତାଳପତ୍ର ମେଲି ଉଭାହେଇଚି ତା' ଆଗରେ ସତେବା ।

କେଉଁ ଝିଅର ତା' ବାପଘରେ ଚିରଦିନ ଆଶ୍ରା ଥାଏ ଯେ ସେ ଆଶା କରିପକାଉଥିଲା ନିଜଲାଗି ? ତା' ନିଜ ଅତୀତରେ ଯେତେ ଅବିଗୁଣ କାଳିମା ଥାଉ, ସେତିକି ଥିଲେ କି ନଥିଲେ ବାପଘରେ ତା' ଆସନ ଟିକିଏ ହେଲେ ଏପାଖ ସେପାଖ ହେଇପାରିନଥାନ୍ତା । ଯଦି ସେ ବାପାଙ୍କ କଥା ମାନି ବାହାସାହା ହେଇ ବାହାରି ଯାଇଥାନ୍ତା, ହୁଏତ ମଝିମଝିରେ କୁଣିଆ ପରି ଆସୁଥାନ୍ତା ଏଇ ଘରକୁ ଦିନାକେତେ ଲାଗି । କେଉଁ କାରଣରୁ ତା'ର ତଲାକ ହେଇଥିଲେ ବି କିଛିଦିନ ଲାଗି ହିଁ ସମବେଦନା ମିଶା ଆଶ୍ରୟ ମିଳିଥାନ୍ତା ତାକୁ ବାପଘରେ । ତା' ନିଜ ଛାଡ଼ିଲା ଚିଠାଟି ଯଦି ମୁକ୍ତାର ତରଫରୁ ହିଁ ମିଳିଥାଆନ୍ତା ତାକୁ ନିକାହର କେଇବର୍ଷ ପରେ, ତେବେ ବି କ'ଣ ସତରେ ଏ ଘରକୁ ଫେରିପାରିଥାନ୍ତା ନିଜ ଘର ପରି ?

ଏଣିକି ସକାଳୁ ଘର କାମ ସାରିଦେଇ କିଛି ନା କିଛି କାମରେ ସାଇପଡ଼ିଶା କାହା ଘରକୁ ଯାଏ ସେ, ଏଠୁ ସେଠୁ ବୁଝିବାକୁ ଯାଏ କାହାଠୁ କିଛି ସିଲେଇ କାମ ମିଳିଯିବ କି ବୋଲି । କମ୍ ଦର ଯାଚିଲେ ବି କଥା କାଟେନି, ଚୁପ୍‌ଚାପ୍ ହାତକୁ ନେଇନିଏ ଯାହା କାମ ମିଳିଲା । ମୁହଁରେ ହସ ରଖି କହେ, ହଉ ମାଉସୀ, ଦିଅ ସିଲେଇ କରିଦିଏଁ, ମୋ' ଅମ୍ମିର କି ଦାଦୀମା'ର କୁର୍ତ୍ତା କ'ଣ ମୁଁ କରୁନାଇଁ, ଝିଅ ବୋଲି ଦେଇଦେବ ଯେତିକି ତମର ଖୁସି । ହୀନା ତା' ଶାଶୁଘରୁ ମଝି ମଝିରେ ବୁଲିବାକୁ ଆସେ, କହେ, "ଛାଡ଼ ଅପା କାଇଁକି ମିଛରେ ଏତେ ମେହେନତ କରୁଚୁ । ଆଜିକାଲି ରେଡ଼ିମେଡ଼ ପିନ୍ଧୁଚନ୍ତି ସମସ୍ତେ, ଫେଶନର ମିଳୁଚି, ଶସ୍ତା ବି ପଡୁଚି ।" ତାଆରି ହାତରେ ରଦ୍ଦି ବାଲାଠୁ ପୁରୁଣା ଫେଶନ ମାଗାଜିନ କେତେଟା କିଣାଇଆଣିଚି ଫାତିମା, ଏକୁଟିଆ ଦିପହରେ ସେଥିରୁ ନୂଆ ଡିଜାଇନ ଦେଖି କାଟି ରଖିଚି କପଡ଼ା ରଖା ଥାକ ତଳେ । ଡିଜାଇନ ବେକ ଥିବା ବ୍ଲାଉଜ ବି ତିଆରି କରୁଚି । ଯାହେତୁ ବଜାରରେ ରେଡ଼ିମେଡ଼ରେ ଭଲ ଫିଟିଙ୍ଗ୍ ମିଳେନି ବୋଲି ଆଜିକାଲିର କିଛି ଝିଅ ବୋହୂଙ୍କଠୁ

ଏବେ ବି ବରାଦ ମିଳୁଚି ତାକୁ ।

ଦିନେ ଦୋକାନରୁ ସଉଦା ନେଇ ଫେରୁ ଫେରୁ ପିଲାଦିନର ସାଙ୍ଗ ଜବୀନା ସାଙ୍ଗେ ଦେଖା ହେଇଗଲା ଗଳି ମୁଣ୍ଡରେ । ମୋଟୀ ହେଇ ଚେହେରା ବଦଳି ଗଲାଣି । ଦି'ହାତର ଓଜନିଆ ବ୍ୟାଗ ହାତରେ ସେଇଠି ବାଟ ମଝିରେ ଠିଆ ହେଇଗଲା ଫାତିମା । କହିଲା, – "ତୁ ଜବୀନା ? ମୋତେ ଚିହ୍ନି ପାରୁନୁ ନା କ'ଣ ?"

ଧାଇଁଆସି କୁଣ୍ଢେଇପକେଇଲା ଜବୀନା, ତା' ପିଠିପାଖେ ମୁହଁ ଲୁଚେଇଦେଇ କହିଲା – "କେମିତି କହିପାରୁଚୁ ଏକଥା ? ତୋତେ ଦେଖା କରିବାକୁ ଆସିବି ଆସିବି ହେଉଥିଲି, ବେଳ ମିଳୁନଥିଲା ।"

ତିନି ପିଲାର ମାଆ । ଜବଲପୁରରେ ଥଇଥାନ ହେଇଚି ତା' ସାମୀ । ବାପ ମା' ଗ୍ୟାସ୍ ବିଷରେ ଚାଲିଗଲେ । ସାମୀ ସ୍ତ୍ରୀ ଆସିଚନ୍ତି ଭାଇ ଦିହିଙ୍କର ବାହାଘର ଜରିବେ ବୋଲି, ନହେଲେ ଆଉ  କିଏ ଅଛି ?

ପୁଣିଥରେ ଘର ଛାତକୁ ଯାଇ ଦୁଇସଖୀ ଗପିଥିଲେ ଆଗ ଭଳି । କେତେ ପୁରୁଣା କଥା ଆଉଟେଇଥିଲେ । ଝିଅ ଦିନ ଭଳି ପୁରୁଖାଲୋକଙ୍କ ଆକଟିଂ କରିବା ଗୁଣ ଯାଇନଥିଲା ଜବୀନାର । ମାଳେ ଉପଦେଶ ଦେଲା, କୋଉ କଥା ମାଇପି ଜୀବନ ଲାଗି ଭଲ, କେଉଁଟି ଭେଲ । କେଉଁ କଥାକୁ ମାନି ଚଳିବ, କେଉଁ କଥା ପୁଣି ମାନିଲା ଭଳି ହେଇ ନିଜକୁ ସୁହାଇଲା ବାଟ ଧରିବ ବାଗ ଦେଖି । ସାତ ବର୍ଷର ଝିଅ ଆସି ଜବୀନାର ହାତ ଟାଣିଲା, ଅମ୍ମି ଚାଲ ଯିବା ।

ତା' ପଛେ ପଛେ ଆଉରି ଦୁଇ ପୁଅ ଝିଅ । ଯିବା ଆଗରୁ ବୁଝେଇଦେଲା ଜବୀନା, "ଭାଇ ଭଉଣୀଙ୍କ କଥାରେ ଛଳ କରନା ଫାତିମା । ଯାହା ସତ ସେଇଆ ସମସ୍ତଙ୍କ ମୁହଁରୁ ବାହାରିବ ଦିନେ ନା ଦିନେ । ତୁ ବେଳ ଥାଉ ଥାଉ ନିଜର କିଛି ବ୍ୟବସ୍ଥା କର । ତୋ' ସାନ ଭଉଣୀ ତ ବାହାହେଇଯିବ । ରେହମାନ କାଲି ଯଦି ବୋହୂ କରି ଆଣିବ ସେ ଶାରୁଖ୍ ମିଆଁର ଝିଅକୁ, ଭାବିଦେଖୁଚୁ ତ କ'ଣ ହେବ ତୋ' ଜୀବନ ?"

– "କ'ଣ କହୁଚୁ ତା'ହେଲେ ? ସେ ଦରବୁଢ଼ାଟାକୁ ବାହାହେଇଯିବି, ତା'ହେଲେ ଶାନ୍ତିରେ ରହିବି ନାଇଁ ?"

– "ଆରେ ତୁ ବମ୍ବେର ଫିଲିମ୍ ଦୁନିଆଁ ଦେଖିଆସିଚୁ । କ'ଣ ତୁ କରିବୁ ତତେ କିଏ ଜବରଦସ୍ତି କରୁଚି ? ଘର ଲୋକେ ତାଙ୍କ କଥା ବୁଝନ୍ତୁ, ତୋ' ବାଟ ତୁ ଦେଖ୍ । କହିବୁ ଯଦି ମୋ' ମିଆଁ ବି ଦେଖିବ ତୋ' ଯୋଗ୍ୟ ପାତ୍ର ଟିଏ..."

ତା' ପିଠିରେ ମିଠା ଚାପୁଡ଼ା ମାରି ଟାଣ ସରରେ ଫାତିମା କହିଲା, "ଖବରଦାର

ସେମିତି କଥା କହିଥିବୁ ଯଦି । ଯଦି ମୋର ସାଙ୍ଗ ହେଇଚୁ, ଏମିତି କେବେ ଆସି ଗପ କରିଯା ଯେବେ ଆସିବୁ । ମୁହଁ ଲୁଚେଇ ମୋତେ ନ ଭେଟି ପଳେଇଯିବୁନି ।"

ଦାଦୀମା' ଜବୀନାକୁ ଦେଖି ଆଖିରୁ ଲୁହ ପୋଛିଲେ, କହିଲେ, "ତୋ ସାଙ୍ଗକୁ ଟିକେ ବୁଝେଇ ଦେ ଝିଅ । ଏମିତି ଘରଦ୍ୱାର ନକରି ଘରେ ବସି ଝିଅ ପିଲାର କ'ଣ ଦିନ କଟେ ?"

ଫାତିମା ଟାଇଁ କିନି ଜବାବ ଦେଲା, "ମୁଁ ଏଠି ରହୁଚି ଦାଦୀମା', ଘରେ ବସିନି । ମୋ' କାମ କାହାରିକି ଦେଖାଯାଉନି ସିନା ।"

ଦାଦୀମା' ଆଉରି ଟାଇଁ ଟାଇଁ ଜବାବ ଦେଲେ, "ସେମିତିକା କାମକରି ତୋ' ଦିନ ମାନ କଟିଯିବ ସୁଖରେ ? ମୁଁ ସେତିକି ଦେଖି ଶାନ୍ତିରେ ମରିପାରିବି ?"

ଆଉ କଥା ବଢ଼ିବାକୁ ନ ଦେଇ ଫାତିମାର ହାତ ଧରି ଅଗଣାକୁ ଟାଣି ନେଇଆସିଲା ଜବୀନା । କହିଲା, "ଛାଡ଼ୁ ବିଚରାଙ୍କୁ, ବୁଢ଼ୀ ଲୋକ । ତୁ ଆଉ ଶାହନଶା ହୋଟେଲ ଆଡ଼କୁ ଯାଇଥିଲୁ ନା ନାହିଁ ?"

ତଳକୁ ମୁହଁ ପୋତି ନିଃଶ୍ୱାସ ଛାଡ଼ି ଫାତିମା କହିଲା, "ନର୍ଗୀସ ବେଗମ୍ ଭୋପାଳରୁ ଚାଲିଗଲେଣି, ବିଦେଶରେ ଅଛନ୍ତି, ଜାଣିନୁ କି ?"

ଏଥର ଝିଅ ଦିନ ଭଳି ମୁହଁ ଭଙ୍ଗୀ କରି ଜବୀନା କହିଲା, "ତୁ ଯେତେବେଳେ ନର୍ଗୀସ ବେଗମଙ୍କ ସାଙ୍ଗରେ ଦୋସ୍ତି କରିଥିଲୁ ନା ଫାତିମା, ଆମକୁ ସବୁ ଭାରୀ ଈର୍ଷା ହୁଏ ଜାଣୁ । ସେ ଏଡ଼େ ବଡ଼ ଘର ହୂର୍ ପରୀ, ଯାହାକୁ ଆମେ ଦୂରରୁ ଦେଖି ହାଁ କରି ଅନଉଥିଲୁ, ଆଉ ତା' ସାଙ୍ଗେ ଘଣ୍ଟା ଘଣ୍ଟା ବସୁଚି ଆମ ଗଳିର ଫାତିମା । ସେବେ ମୁଁ ଭାବେ, କେବେ ହାତକୁ ପଇସା ଆସିଲେ ଶାହନଶାର ଶୋ ରୁମ୍‌ରୁ ଡ୍ରେସ କିଣନ୍ତି । ହଉ ପଛେ ମୋ' ସାଙ୍ଗର ହାତ ତିଆରି ଡ୍ରେସ, କହିପାରନ୍ତି ତ ଭୋପାଳର ସବୁଠୁ ଦାମୀକା ଜାଗାରୁ କିଣିଚି ବୋଲି । ଏବେ ଦେଖ୍, ହାତକୁ ଟିକିଏ ପଇସା ଆସିଲା ବେଳକୁ ଶାହନଶାର ଦୋକାନ ବନ୍ଦ ।"

ଗଳି ମୁଣ୍ଡକୁ ବାଟେଇ ଦେବାକୁ ଗଲାବେଳେ ଫାତିମାର ସ୍ୱାମୀ ସୁଲେମାନ ଛିଡ଼ାହେଇଥିଲା, ସଲାମ କରି ପଚାରିଲା, "ଆମକୁ ଆଉ ଚିହ୍ନୁନ ବୋଧେ ଫାତିମା ଭଉଣୀ ।"

କହିବାକୁ ନଥିଲା କିଛି । ତଥାପି ଫାତିମାର ଉତ୍ତରକୁ ଅପେକ୍ଷା ନକରି ସେ କହିଲା, "ମୁକ୍ତାରର ଖବର କିଛି ରଖୁନ ବୋଧେ ତମେ । ଟିଭିରେ ତା' ସିରିଆଲଟା ଦେଖୁଚ ନା ନାହିଁ ?"

ଫାତିମାର ମୁହଁରୁ ବାହାରିଗଲା, "ସିରିଆଲ ? କାହିଁ ମୁଁ ଜାଣିନି ତ ?"

"କାହିଁକି ଜାଣିବ ? ଆମେ ତା' ସାଙ୍ଗମାନେ କିନ୍ତୁ ତାକୁ ଛାଡ଼ିନୁ ଭଉଣୀ, ଆଜି ବି ତା' ଲାଗି ଜାନ୍ ଦେଇଦେବୁ । ତାପରି ଟାଲେଣ୍ଟ ଥିବା ପିଲା ଏ ସହରରେ ନାହାନ୍ତି, ତମେ

ଦିନେ ଦେଖିବ ।"

ଏକଥା ଫାତିମା'ଠୁ ବଳି ଭଲା କିଏ ଅଧିକ ବିଶ୍ୱାସ କରିଥିଲା । ତେବେ ସେ କାହାକୁ ବା ବୁଝାଇବ ଯେ ଆଜି ବି ପ୍ରତିଦିନର ଭୋର୍ ନମାଜରେ ତା'ର ପ୍ରାର୍ଥନାଟିଏ ମିଶିଯାଏ ମୁକ୍ତାର ସଫଳ ହେଉ, ତା' ସ୍ୱପ୍ନ ସବୁ ସାକାର ହେଉ ବୋଲି । ଏଥର ତାକୁ ବୁଝା ପଡ଼ିଲା ଯେ ମୁକ୍ତାରର ନାଁ ଆସୁଚି ଅମୁକ ସିରିଆଲ ଶେଷରେ କିଏ ଜଣେ ଜଣାଶୁଣା ନିର୍ଦ୍ଦେଶକଙ୍କ ଆସିଷ୍ଟାଣ୍ଟ୍ ଭାବରେ । ଫାତିମା ଧୀରେ କରି କହିଲା ପ୍ରାୟ ସଫେଇ ଦେଲାଭଳି, "ଆମ ଘରେ ବ୍ଲାକ୍ ଆଣ୍ଡ ହ୍ୱାଇଟ୍ ଟିଭିଟାଏ ଅଛି, ସେଥିରେ କିଛି ସଫାକରି ଦିଶେନି । ପୁଣି ମୋର ଏତେ କାମ, ଟିଭି ଲାଗି ସମୟ କାହିଁ ?"

ସୁଲେମାନ ମୁକ୍ତାରର କଥା କହୁଥିଲା ବେଳେ ପୂର୍ବଭଳି ତା' ହାବଭାବରେ ଗୋଟାଏ ଅଭିନେତା ପଣ ଆସିଯାଉଥିଲା । ମୁଣ୍ଡବାଳକୁ ଆଙ୍ଗୁଳିରେ କୁଣ୍ଡେଇଆଣି କହିଲା, "ଭାରୀ କଷ୍ଟରେ ଅଛି ଆମ ମୁକ୍ତାର ଭାଇ । ଫିଲିମ୍ ଦୁନିଆ କ'ଣ ସବୁବେଳେ ପ୍ରତିଭାର ଦାମ୍ ଦିଏ ? କେତେ ପଲିଟିକ୍ସ ସେଠି । ହେଲେ ତମେ ଦେଖିବ, ଦିନେ ନା ଦିନେ ସେ ସକ୍ସେସ୍ ପାଇବ ।"

ପୁଣି ଜବୀନା ସାଙ୍ଗେ ମିଶି ଅଝଟ ହେଉଥିବା ସାନ ପୁଅକୁ ସମ୍ଭାଳୁ ସମ୍ଭାଳୁ ଗଲା ବାଟରୁ ମୁହଁ ଫେରେଇ ସୁଲେମାନ କହିଲା, "ହଉ ଭଉଣୀ, କେବେ କେମିତି ଟିକେ ଖବର ନେଉଥିବ ବିଚରା ମୁକ୍ତାରର ।"

# ପାଦେ ପାଦେ କରି ବାଟ ଚଲା

ସକାଳୁଆ ଅନ୍ନିକୁ ନୂଆ କୁର୍ତ୍ତାଟାଏ ଦେଇ ଚମକାଇ ଦେଲା ଫାତିମା । କେଉଁଦିନର ବଳକା ଟୁକୁରା କନା ସବୁର ମିଶାମିଶି ତିଆରି ଜାମାଟି ଦେଖି ଅନ୍ନିର ମୁହଁରେ ହସ ଫୁଟିଲା । କହିଲା, "ଏଠି ଅଣ୍ଟା ପାଖରେ ଟିକେ କୁଞ୍ଚ ଦେଲୁନି, ଆମେ ଯେମିତି ଆଗେ ପିନ୍ଧୁଥିଲୁ । ଆଉ ବେକ ପାଖରେ ଟିକିଏ ମୋତି କାମ କରିଦେବୁ ତ ଝିଅ ।"

ବେଳେ ବେଳେ ଏମିତି ଆଗଭଳି କଥାବାର୍ତ୍ତା କରେ ଅନ୍ନି, ଜମା କିଛି ନ ହେଇଥିଲା ଭଳି । କହିଲା, "ଅନ୍ନି, ମୋତେ ଭଲ ମୋତି କାମ କୋଉଠୁ ଆସେ ? ତୁ ସିନା ବେଗମ୍ ସରକାରଙ୍କ ସିଲେଇ ସେଣ୍ଟରରେ ଶିଖିଥିଲୁ ବୋଲି, ଆଜିକାଲି କିଏ ଆଉ ସେସବୁ ପିନ୍ଧୁଚି ?"

ଅନ୍ନି ସେଇକ୍ଷଣି ଜାମା ଖଣ୍ଡିକ ମୁଣ୍ଡ ଉପରୁ ଗଳେଇ ପକଉ ପକଉ କହିଲା, "ଶିଖିଲେ ସିନା ତିଆରି କରିବେ, ପିନ୍ଧିବେ ।"

ମାଆର କାନ୍ଧ ପାଖେ ଫନ୍ଦିହେଇଯାଇଥିବା ଜାମାକୁ ନିଜେ ପିନ୍ଧେଇ ଦେଉଦେଉ ଫାତିମା କହିଲା, "ତୁ ତ ଆଜିକାଲି ଜମା ସିଲେଇ କରୁନୁ ଅନ୍ନି । ଆମକୁ ଶିଖେଇ ଦେଲେ ସିନା ଶିଖନ୍ତୁ ।"

ନୂଆ ଜାମା ପିନ୍ଧା ନିଜ ଦେହକୁ ଆଉଁସି ଦେଉ ଦେଉ ଅନ୍ନି କହିଲା, "ରଙ୍ଗ ସୂତା କାଇଁ ? ଆଉ ଦେଖୁନି ତ ତୋ' ହାତରେ ? ଛୋଟ ମୋଟି ପେଣ୍ଟା କେଇଟା କିଣିଆଣ, ମୋତେ କିଏ କଢ଼ାଇରେ ପାରିବ ଦେଖିବି । ଆମଠୁ ତ ଏଠି ସଭିଏଁ ଶିଖିଚନ୍ତି ।"

ହାତରେ ଦୋକ୍ତା ମଳୁ ମଳୁ ଦାଦୀମା' କହିଲେ, "ତୋ ମା' ସତ କହୁଚି ଲୋ ଝିଅ । ତୋଓରି ଅଜା ଗୋସାଁ ଅଜା ପଣ ଗୋସାଁ ଅଜା ଘର ହିଁ ଭୋପାଳରେ ପହିଲେ ସିଲେଇ କାରିଗରଙ୍କୁ ତିଆରିଥିଲେ – ଖୋଦ୍ ପ୍ରଥମ ନବାବ ବେଗମ୍ କୁଦିସା ଜହାଁଙ୍କୁ ସୂତା କଟା, ସିଲେଇ କଢ଼ାଇ ଶିଖାଇଥିଲେ – କୋଉ ଦି'ଶହ ବର୍ଷ ତଳର କଥା ।"

ଫାତିମା ଜାଣେ, ଏଣିକି ଦାଦୀମା'ର କଥା ଆଉ ବନ୍ଦ ହେବାର ନୁହଁ । ଥାକରୁ ଲୁଗାଜାମା ପିନ୍ଧିବାକୁ କାଢୁକାଢୁ କହିଲା, "ଜାଣିଚି ଦାଦୀମା', ଅଠର ବର୍ଷର ନିରକ୍ଷର ବିଧବା

କେମିତି ପର୍ଦ୍ଦା ତଳୁ ରାଜଗାଦି ସମ୍ଭାଳିଲେ ତମେ କହିଚ । ରହ ମୋତେ ଏଇନା ତିଆରି ହେବାକୁ ହେବ ।"

ଶେଷଭାଗ କଥା କାନରେ ପଡ଼ିନଥିଲା ଭଳି ବୁଢ଼ୀ ପାଟିକି ଦୋକ୍ତା ପକେଇଦେଇ ଜାରୀ ରଖିଲେ, "ସେ ପର୍ଦ୍ଦା ବି କ'ଣ ବେଶୀଦିନ ରଖିଲେ ? ଛାଡ଼ିଦେଲେ ନା । ଜନାନା ହେଇ ରାଜ୍ୟ ସମ୍ଭାଳିଲେ, କୁଟୁମ୍ବର ପୁରୁଷଙ୍କ ପେଞ୍ଚ ଚକ୍ରାନ୍ତକୁ ପାଣି ଫଟେଇଦେଲେ । ଏସବୁ ଗୁଲିଗପ ନୁହଁ ଲୋ ଝିଅ, ମୋ' ଜେଜେବାପ ଗୋସାଁବାପଙ୍କ ଆଖିଦେଖିଲା, ଅଙ୍ଗେ ନିଭେଇଲା କଥା । ଏଡ଼େ ଧାର୍ମିକ ଥିଲେ ବେଗମ କୁଦିସା ଯେ କହିଲେ ଲୋକଙ୍କ ପଇସାରେ ମୁଁ ହାତ ଦେବିନି, ନିଜେ ସିଲେଇ କଢ଼ାଇ କରିବି, ଯାହା ପଇସା ମିଳିବ ନିଜ ଖର୍ଚ୍ଚ ତୁଲେଇବି । ସେଇଠୁ ବାହାରୁ ଅଣେଇଲେ ତୋ' ଅଜାଘର ପରିବାରଙ୍କୁ, ଜରିକାମ ମୋତିକାମ ଜାଣିଲା ବାଲା ଅସଲ କାରିଗର ଥିଲେ ସିଏ ।"

ଫାତିମା ଗାଧୁଆଘରୁ ଫେରିଲା ବେଳକୁ ବି ଦାଦୀମା'ର କଥା ସରିନଥାଏ, ଏଥର ଶ୍ରୋତା ଥାଏ କେବଳ ଅନ୍ନି ।

"ତୋର ମନେ ଅଛି ନା ନାଇଁ ସାଫିନା, ସହରଯାକ ଖୋଲିଥାଏ ସରକାର ବେଗମଙ୍କ ଜରଦୋଜି କାମ, ମୋତି କଢ଼ାଇ କାମର ସେଣ୍ଟର ସବୁ ? ଅନାବୃଷ୍ଟି ହେଲା ବୋଲି ବେଗମ ଖୋଲେଇଲେ । ନାଇଁ ମ ତୁ ତ ନିହାତି ପିଲା ଥିଲୁ । ମୋର ମନେଅଛି ସେ ଦିନସବୁ କଥା । ସହର ଲୋକଙ୍କ ହାତକୁ ଏତେ ପଇସା ଆସିଲା ଯେ ପେଟପାଣଟଣାର ଚିନ୍ତା ରହିଲାନି । ଏଠାକାର ହାତ କାମ ଦିଲ୍ଲୀଯାଏଁ ଗଲା ।"

ଏଥର ଫାତିମାଆଡ଼େ ମୁହଁ କଲେ ସେ, "ମୋ ହାତରେ କିନ୍ତୁ ସେସବୁ କାମ ହୁଏନାଇଁ, ବୁଝିଲୁ ବେଟୀ ଫାତିମା । ସେ ସବୁରେ ପାରଙ୍ଗତ ଥିଲେ ତୋ' ମାମୁଁଘର ଲୋକେ । ତୋ' ଆଈ ହାତର କାରିଗରୀ ତ ଖୋଦ୍ ବେଗମ୍ ସରକାର ପସନ୍ଦ କରନ୍ତି । ତୋ' ମା' ନ ଶିଖନ୍ତା କୁଆଡୁ ? ଛାଡ଼, କୁଆଡ଼େ ହଜିଗଲା ସବୁ ।"

କାନ୍ଥ ଦର୍ପଣ ଆଗରେ ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ଫାତିମା କହିଲା, "ଦର ବି ତ ହେଇଗଲାଣି ହାତ ଏମ୍ବ୍ରଡ଼ାରୀ, ମିଛଟାରେ ବେଶୀ ଦାମ୍ ଦେଇ କିଏ ତିଆରିକରିବ ନା ପିନ୍ଧିବ ।"

ଦାଦୀମା'ର ଦୃଷ୍ଟି ଏତେବେଳକେ ଫାତିମା ଉପରେ ପଡ଼ିଲା, ପଚାରିଲେ, "ତୁ ଏମିତି ସଜବାଜ ହେଇ କୁଆଡ଼େ ବାହାରିଲୁ ସକାଳୁ ସକାଳୁ ?"

ବ୍ୟାଗ୍ ଖଣ୍ଡିକ କାନ୍ଧରେ ପକାଇ ବାହାରି ଯାଉଯାଉ ଫାତିମା କହିଲା, "ଭାବିଚି ଟିକେ ହୋଟେଲ ଆଡ଼େ ଯାଇ ଆସିବି ଦାଦୀମା', କିଛି କାମ ମିଳିବ କି ନାଇଁ ବୁଝିବି । ତମ ଲାଗି ପାନ ଆଉ କିମାମ ଆଣିବା ଏଥର, ତମ ମୁହଁରେ ଦୋକ୍ତା ଗନ୍ଧ ମୋତେ ଭାରି ଖରାପ

ଲାଗେ ।"

ଏକଥା ଶୁଣି ସେ ଲୋକକୋଣ ମୁହଁରେ କେଉଁ ଭାବ ଫୁଟିଲା ଦେଖିବାକୁ ଆଉ ଅପେକ୍ଷା କଲାନି ଫାତିମା । ବାହାରି ଆସିଲାବେଳେ ଦାଦୀମା'ର ଘୋଷରା ସ୍ୱଗତୋକ୍ତି ଶୁଭୁଥିଲା, "ହଅ, ମୋର ସୁଖ ଭୋଗିବାକୁ ବଳେଇପଡୁଚି । ମୋ ପୁଅ କହୁଥିଲା କଣ ନା ଝିଅମାନଙ୍କୁ ପାଠ ପଢ଼େଇବ, ଡାକ୍ତର ହାକିମ କରେଇବ । ଜୋତା ମାଡ଼ି ଗାଡ଼ି ଚଢ଼ିବ ଆମ ଫାତିମା, ଦଶଜଣ ମରଦଙ୍କଠୁ ବଳି କାମ କରିବ, ସଲାମ ପାଇବ, ସରକାର ବେଗମ ଯେମିତି..."

ବାରଣ୍ଡା କଡ଼ରୁ ଚପଲ ପିନ୍ଧିଲା ଫାତିମା, ମୋଚି ହାତର ମରାମତି ଆଜିକ ଅନ୍ତତଃ ଚଳୁ । ଅଗଣା କବାଟ ଆଉଜେଇ ଦେଇ ଧୀରେକରି ପାଦ ବଢ଼େଇଲା ଦାଣ୍ଡକୁ ।

ପଇସା କିଛି ଅଛି ହାତରେ ବସ୍ ଲାଗି, ତେବେ ପାଗଟା ଭଲ ଅଛି । ଚାଲି ଚାଲି ଶାହନଶା ହୋଟେଲକୁ ଯାଇଥିଲା ସେ । ମୋଡ଼ ପାରିହେଇ ବଡ଼ ରାସ୍ତାରେ ପହଞ୍ଚିବା ପୂର୍ବରୁ ଲକ୍ଷ କଲା ଝଙ୍କାଳିଆ ବରଗଛଟାର କେତେଟା ଡାଳ କାଟିଦିଆଯାଇଚି । ତଳ ଚଉତରା ଉପରେ ଚାରିଛଅଟା ପିଲା ଏକାଠି ନଇଁପଡ଼ି ତାସ୍ ନା କଣଗୋଟେ ଖେଳୁଚନ୍ତି ।

ଅନେକ ଦିନ ପରେ, କେଜାଣି ପାଞ୍ଚବର୍ଷ ହେବ ସେଇ ବାଟ ଦେଇ ହୋଟେଲକୁ ଯିବା । ବିଶେଷ କିଛି ବଦଳିନି । ବଡ଼ ତାଲ୍ କୂଳ ହୋଟେଲର ପୁରୁଣା ମହଲଟି ସେମିତି ଦିଶୁଚି ଅବିକଳ, କେବଳ ସାମ୍ନା ବଗିଚାର ରୂପରେଖ କିଛି ବଦଳିଚି । ନାଲି ଆଉ ସବୁଜ ହେଜ୍ ଥିଲା ସେବେ, ବାହାର ଗେଟ୍‌ରୁ ଭିତର ପୋର୍ଟିକୋ ଯାଏଁ । ଏଥର ଧଳା ଆଉ ନାଲି ମନ୍ଦାରର ବାଡ଼ ତିଆରିହେଇଚି, ଦୁଇପାଖେ ଘଞ୍ଚ ସବୁଜବୁଦାର କାନ୍ଥ ଦେହରେ ଅଜସ୍ର ଫୁଲ ଫୁଟିଚି । ବାରଣ୍ଡାକୁ ଉଠିଲା ବେଳକୁ ନୂଆ ଦରୱାନ ଚାହୁଁଚି, ବେଶପୋଷାକରେ ଯତ୍ନ ନେଇଥିଲେ ବି ସାଧାରଣ ହୋଟେଲ ଆଗନ୍ତୁକ ଭଳି ସେ ଦିଶୁନି ନିଶ୍ଚୟ । ବାଁ ପାଖ ଫର୍ଦ୍ଦା ଅଫିସ ଘରେ ବସିଚନ୍ତି ପୁରୁଣା ମ୍ୟାନେଜର ରଘୁବୀର ବାବୁ, ସେମିତି ଚଷମା ପିନ୍ଧା ଚଉଡ଼ା ମୁହଁ, ମୁଣ୍ଡର ବଳକା ବାଳତକ ଝଡ଼ିଗଲାଣି ବୋଲି ଟିକେ ଯାହା ଅଲଗା ଦିଶୁଚନ୍ତି । କବାଟ ପାଖକୁ ଯାଇ ନମସ୍କାର କଲା ଫାତିମା । ଟେବୁଲ୍ ଉପରୁ ମୁହଁ ଉଠେଇ ଦେଖିଲେ ସେ, ଆଖିରେ ଚିହ୍ନା ଭାବ ଫୁଟିଲା, ହସ ହସ ମୁହଁରେ ବସିଲାଜାଗାରୁ ଉଠି ପଡ଼ିଲେ ପ୍ରାୟ, ବିଶ୍ୱାସ ନ ହେଲାଭଳି ପଚାରିଲେ, "ଫାତିମା ବେଟୀ, ଏତେଦିନ ପରେ । ସବୁ ଭଲ ତ ?"

ଅନେକଦିନ ପରେ ତା' ସୁଖଦୁଃଖ ବିଷୟରେ କିଏ ପଚାରୁଥିଲା ସତେବା । ନିଜ ପରିବାରର ବିପର୍ଯ୍ୟୟର କଥା ସବୁ ଯେତିକି ସମ୍ଭବ ଗାଇଗଲା ଫାତିମା । ତେବେ ଏ ସମୟରେ ପରିଚିତ ଲୋକଙ୍କ ଘରେ ଯେତେ ଦୁଃଖ ଆପଦ ପଡ଼ିଥିବା କଥା ଶୁଣିଲେ ବି ସେ

ବେଶୀ କିଛି ଆଶ୍ଚର୍ଯ୍ୟ କଥା ନୁହେଁ । କିଛିବେଳ ପରେ ଫାତିମା ଅବଶୋଷ କରୁଥିଲା, ହୁଏତ କିଛି ଦିନ ପୂର୍ବରୁ ସେ ଆସିପାରିଥାନ୍ତା । କଥା ବାଗରେ ନିଜକୁ ସୁହେଇଲାଭଳି କେତେଟା ପ୍ରଶ୍ନ ବି ପଚାରିଦେଉଥିଲା ସେ । ମ୍ୟାନେଜର କହୁଥିଲେ, ଶୋ ରୁମ୍ ଆଜିକାଲି ବନ୍ଦ । ନର୍ଗୀସ ବେଗମ ଗଲାପରେ ହୋଟେଲ ମାଲିକଙ୍କ ଘରୁ କେହି ଆଉ ଆଗ୍ରହ ଦେଖାଇଲେନି । ହୋଟେଲ ତ ଆଗଠୁ ଆହୁରି ଭଲ ଚାଲିଚି, ଭିତରେ ଯେଉଁ ଦିଇଟା ଚାରିକଣିଆ ବଗିଚାକୁ ଘେରି ଦୋହମଲା ଯାକ କୋଠରୀମାନ ଥିଲା, ଏବେ ଆଉରି ଗୋଟିଏ ବଗିଚା କରାଯାଇ ସେଇଭଳି ନୂଆ ପ୍ରସ୍ଥଟିଏ ତିଆରି ହେଇଚି । ବଗିଚାମାନ ଆଗଠୁ ସୁନ୍ଦର କରାଯାଇଚି, ଜାପାନୀଜ୍ ଷ୍ଟାଇଲରେ । ସେ କଡ଼କୁ ନୂଆ ଅଡ଼ିଟୋରିଅମ୍ ହେଇଚି ସହରର ଚାହିଦାମତେ । ବେଶ୍ ଚାଲିଚି, ଶୋ ରୁମ୍‌ରେ ଆଉ ଅଧିକା କ'ଣ ହୁଅନ୍ତା ଯେ ?

ତଥାପି ଯାଇ ପୁରୁଣା କଣଜାଗାଟି ଦେଖିଆସିବାକୁ ମନ ହେଲା ଫାତିମାର । ବନ୍ଦ ଥିଲେ ବି ବାହାରୁ ଏବେ ବି ସୁସଜ୍ଜିତ ଭଳି ଦେଖାଯାଉଚି କାଚ କୋଠରୀଟି । ଆଶ୍ଚର୍ଯ୍ୟ କଥା ଯେ ହେଙ୍ଗର ମାନଙ୍କରେ ଆଜି ବି ଝୁଲୁଚି କିଛି ପୁରୁଣା ଡ୍ରେସ୍ । ଏଥର ଟିକିଏ ନେହୁରା ମିଶା ଗଳାରେ ପଚାରୁଥିଲା ସେ ରଘୁବୀର ଜୀଙ୍କୁ, "ବିନା ଶୋ ରୁମ୍‌ରେ ଯଦିଓ ଭଲ ଚଳିଯାଉଚି, ତଥାପି ଆଉ କିଛି କ'ଣ ଆଶା ନାହିଁ ମଉସା ? ଲୋକେ ତ ପୁଣି ସେ ଜିନିଷମାନ ପସନ୍ଦ କରୁଥିଲେ । ପୁଣି ଆଜିକାଲି ଭୋପାଳକୁ ଟୁରିଷ୍ଟ ବି ବେଶୀ ଆସୁଛନ୍ତି ।"

ମ୍ୟାନେଜର କହିଲେ, "କିଏ କୁଆଡ଼େ ଗଲେ ସବୁ କାରିଗରମାନେ । ଝିଅମାନେ ତ ବାହା ହେଇ ପଳେଇଲେ ଅଧେ, ପୁରୁଷ ମାନେ ଅନ୍ୟ କାମ ଧନ୍ଦା ଧରିଲେଣି । ଗ୍ୟାସ୍ ରୋଗରେ ପଡ଼ିଲେ କିଛି, ଆଉ କେତେକେ ରାହତ ପଇସା ଖାଉଚନ୍ତି । ମୂଳରୁ କାମ କରିବାକୁ କିଏ ଅଛି ? କାହିଁକି ବା ଆଉ ?"

ହାତଯୋଡ଼ି ନମସ୍କାର କରି ଫାତିମା କହିଲା, "ବହୁତ ହଇରାଣରେ ଅଛି ମଉସା । ମୋର କରିପାରିବା ଭଳି କିଛି କାମ ଥିଲେ କହିବେ, ବଡ଼ ଉପକାର ହେବ ।"

ଉଦାସ ଦିଶିଲେ ରଘୁବୀର ଜୀ, କହିଲେ, "ତମେ ଗୁଣର ଝିଅ, ମୁଁ କ'ଣ ଜାଣିନି ? ହେଲେ ମୋ' ହାତରେ କ'ଣ ଭଲା ଅଛି କହିଲ ବେଟୀ ?"

ତଥାପି ଆପଣାର ଲୋକ ଜିଦି କଲାଭଳି ଫାତିମା କହିଲା, "ସପ୍ତାହେ ଦଶଦିନ ଛାଡ଼ି ଆସି ବୁଝିଯିବି ମଉସା ?"

ଚାଲିଯିବାକୁ ବସିଲାବେଳେ ଭିତରୁ କଳରୋଳ କରି ବାହାରିଆସିଲେ ଦଳେ ବିଦେଶୀ ଟୁରିଷ୍ଟ । ଗରମ ଦେଶକୁ ବୁଲିଆସିଚନ୍ତି ବୋଲି ତାଙ୍କ ପରିବ୍ରାଜକର ବେଶ୍ କହିଦେଉଚି । ଛାପିଛାପିକିଆ ଜାମା, ଢିଲା ହାଫ୍ ପ୍ୟାଣ୍ଟରେ ଅଧିକାଂଶ ପୁରୁଷ ଓ ନାରୀ । ମୁଣ୍ଡରେ ସବୁ

ଖରା ରୋକିବାକୁ ବଡ଼ ହ୍ୟାଟ୍, ଆଖିରେ କଳା ଚଶମା । ଭୋପାଲଠୁ ଘଣ୍ଟାଏ ବାଟ ସାଞ୍ଚି ସ୍ତୂପ ବୁଲିବାକୁ ଯାଇଥିଲେ କାଲି, ସହରର ଅନ୍ୟ ଦର୍ଶନୀୟ ସ୍ଥାନ ସହିତ ଗ୍ୟାସ୍ ଟ୍ରାଜେଡ଼ି ଲାଗି କୁଖ୍ୟାତ ପରିତ୍ୟକ୍ତ ୟୁନିଅନ କାର୍ବାଇଡ଼ କାରଖାନା ବି ଦେଖିଆସିଚନ୍ତି । ଆଜି ସଞ୍ଜବେଳେ ଯିବା ପୂର୍ବରୁ ଆଉ କ'ଣ ସବୁ କରାଯାଇପାରେ ବୋଲି ରିସେପସନ ପାଖରେ ପଚାରୁଚନ୍ତି । ପୁଣି କୋଉ ଗୋଟେ ଭଙ୍ଗାରୁଜା ପ୍ରାସାଦ ଦେଖିବା କିମ୍ବା ହ୍ରଦରେ ବୋଟିଂ କରିବାରେ ତାଙ୍କର ଆଗ୍ରହ ନାହିଁ । କୋଉଠି ସ୍ଥାନୀୟ ଜିନିଷ ମିଳିବା ଭଳି ଭଲ ବଜାର ଅଛି ପଚାରୁଚନ୍ତି । ଏଠାକାର ବିଶେଷ ତିଆରି କିଛି କିଣିବା ଭଳି ଅଛି କି ବୋଲି ବି ।

ସାହସ କୁଳେଇ ନିଜେ ତାଙ୍କ ପାଖକୁ ଗଲା ଫାତିମା, ଦି'ଜଣ ମହିଳାଙ୍କୁ ଖଣ୍ଡି ଖଣ୍ଡିକା ଇଂରାଜୀରେ ପଚାରିଲା, ଏଠି ଖୁବ୍ ସୁନ୍ଦର ମୋତିର ଲେଡ଼ିଜ ପର୍ସ ମିଳେ, ଭେଲଭେଟ ଅଥବା ରେଶମୀ କପଡ଼ା ଉପରେ ଧଳା କଳା ବାଇଗଣୀ ରଙ୍ଗ ମାଳିସବୁ ଗୁନ୍ଥାହେଇ ତିଆରି ହେଇଥାଏ । ଆଉରି ହାତ ତିଆରି ନାନା ଜିନିଷ ମିଳେ ଏଠିକା ବଜାରରେ । ଦେଖିଚନ୍ତି ଏଠିକା ବଜାର ?

ରଘୁବୀର ବାବୁ ପାଖକୁ ଆସିଲେ, ଚିହ୍ନା କରିଦେଲେ, "ଇଏ ଆମର ପୁରୁଣା କର୍ମଚାରୀ ଫାତିମା । ଲୋକାଲ ଜିନିଷ ବିଷୟରେ ତାଙ୍କର ଭାରୀ ଜ୍ଞାନ ।"

ଦଶ ମିନିଟ୍ ଭିତରେ ମ୍ୟାନେଜରଙ୍କ ମଧ୍ୟସ୍ଥତାରେ ସ୍ଥିର ହେଲା, ଦଳଟି ଯାକ ଚଉକ ବଜାର ବୁଲିବାଲାଗି ଯିବେ । ଟୁରିଷ୍ଟ ବସ୍‌ରେ ତାଙ୍କ ସାଙ୍ଗରେ ଯିବ ଫାତିମା । ଆଗପଛ ଦୋଦୋପାଞ୍ଚ ହେଉହେଉ ଦଳଟି ଯାକ ବାହାରିଲେ ବଜାର ବୁଲିବାକୁ । ଜଣେ କିଏ କହିଲା, "ଆମ ଟୁରିଷ୍ଟ ଗାଇଡ଼ ପରା କହୁଥିଲେ ସରକାରୀ ଏମ୍ପୋରିୟମକୁ ଯିବା ବୋଲି ?"

ବିନୟରେ ହସି ହସି ମ୍ୟାନେଜର କହିଲେ, "ସେଠିକି ଜି ତ ଯିବେ ସାର୍ ନିଶ୍ଚେ, ତେବେ ସେଇଟା ନୂଆ ସହର ମାର୍କେଟ୍‌ରେ, ମଡ଼ର୍ଣ୍ଣ ଦୋକାନ, ପୂରାପୂରି ଛକ ଉପରେ । ଏଠିକାର ପୁରୁଣା ବଜାର ସବୁ କେମିତି, କାରିଗର ମାନେ କିଭଳି, ସେସବୁ ବି ଦେଖିଆସନ୍ତୁ ଆଜ୍ଞା । ଏଠି ସପ୍ତାହର ପ୍ରତି ବାର ଅନୁଯାୟୀ ଅଛି, ରଜା ନବାବ ବସେଇଥିଲେ ବଜାର ମାନ... ବୁଧବାରା...ଇତବାରା... ।"

ସେଦିନ ପ୍ରଥମ କରି ବିଦେଶୀ ଲୋକଙ୍କ ଆଖି ଦେଇ ନିଜ ସହରକୁ ନୂଆକରି ଦେଖୁଥିଲା ଫାତିମା । ଛୋଟ ଛୋଟ ଦୋକାନ ମାନଙ୍କରେ ବିକ୍ରି ହେଉଥିବା ହାତ ତିଆରି ଜିନିଷ ସବୁ ସତେକି ଏଯାଏଁ ତା' ଆଖିରେ ପଡ଼ି ବି ପଡ଼ିନଥିଲା । ଅଣଓସାରିଆ ପୁରୁଣା ରାସ୍ତା ମାନଙ୍କଦେଇ ସାନ ଟୁରିଷ୍ଟ ଗାଡ଼ିଟି ଗଲାବେଳ ପୁରୁଣା କେଉଁ କୋଠା କି ମସ୍‌ଜିଦ୍‌ଟିଏକୁ ଗାଇଡ଼ ନିର୍ଲିପ୍ତ ସ୍ୱରରେ ପରିଚୟ କରାଇଦେବାବେଳେ ଫାତିମା ମୁଣ୍ଡକୁ

ଅନାୟାସ ଆହୁରି କେତେ କଥା ଜୁଟିଯାଉଥିଲା କହିବାଲାଗି । ଖିଆଲ ଆସୁଥିଲା ମନକୁ, ହୁଏତ ଏଇଠୁ କିଛି ବାଟ ଫିଟିଯିବ । ଏଣିକି ଆଉରି କିଛି ଲେଖାଁ ଖବର ସଂଗ୍ରହ କରିବ ସେ ଏ ଅଞ୍ଚଳ ଗୁଡ଼ିକ ବିଷୟରେ । ଯେଉଁଠୁ ପାରେ ସେଇଠୁ ହେଉ, ତାକୁ ଜାଣିବାକୁ ହେବ ପ୍ରତିଟି ପୁରୁଣା ମହଲ, ହମାମ୍, ସଡ଼କ ବଜାରର ପରିଚୟ, ଯାହା ଶୁଆପାଠ ଘୋଷା ଗାଇଡ଼କୁ ଜଣାନଥିବ ।

ଦିପହର ଖାଇବା ବେଳ ଗଡ଼ିବା ଉପରେ ହେଲାବେଳକୁ ଏଣୁତେଣୁ ସୌଖୀନ ଜିନିଷରେ ବୋଝେଇ ହେଇ ଦଳଟି ହୋଟେଲକୁ ଫେରିଲେ । ତାଙ୍କ ସାଙ୍ଗେ ମିଶି ରଘୁବୀର ବାବୁ ବି ଉଚ୍ଛ୍ୱସିତ ହୋଇ କହୁଥିଲେ, "ମୁଁ କହୁନଥିଲି ଆଜ୍ଞା, ସରକାରୀ ଦୋକାନରେ ଏସବୁ ଅରିଜିନାଲ ଜିନିଷ ଆପଣ କାହୁଁ ପାଇବେ ?"

ଫେରିବା ପୂର୍ବରୁ ଫାତିମା ଆଉରି ଦି'ପଦ କଥାବାର୍ତ୍ତା ହେଲା ମ୍ୟାନେଜରଙ୍କ ସାଙ୍ଗେ । ସେ ବି ଏଥର ରାଜିହେଉଥିଲେ ଯେ ହୁଏତ ଶୋ ରୁମ୍‌ଟା ପୁଣିଥରେ ଖୋଲିଦେବ, ଆଗ ଅପେକ୍ଷା ଆଉରି କେତେ ରକମ ଜିନିଷରେ ସଜେଇ ହେବ । ମାଲିକଙ୍କୁ କୁହାଯାଇପାରେ ।

ଫେରିବା ବାଟରେ ମୁଣ୍ଡ ଉପର ଖରା ଫାତିମାକୁ ଜଣାପଡୁନଥିଲା । ଘର ଭିତରେ ଥିଲାବେଳର ହାଉଯାଉ ହେଉଥିବା କଳା କଷରା ଛବିମାନ ତା' ମନର ପଛପାଖେ କୁଆଡ଼େ ଲୁଚିଯାଇଥିଲେ । ମୁଣ୍ଡ ଭିତରେ କୁଆଡୁ ଉଇଁ ଆସୁଥିଲେ କାହିଁ କେତେ ରଙ୍ଗର ନୂଆ ଛବିସବୁ । ଆଖି ମେଲି ଚାରିଆଡ଼କୁ ଆଉଥରେ ବିଦେଶୀ ଦୃଷ୍ଟିରେ ଦେଖିବାକୁ ବି ଏକପ୍ରକାର ମଜା ଲାଗୁଥିଲା ।

ବାଟରେ ରାହତ ଅଫିସ୍ ପଡ଼େ । କେତେ ଦିନ ହେଲା ସେଠି ତାଲା ପଡ଼ିଚି । କେଉଁ ଜୁଲୁସ ବାଲା ଭଙ୍ଗାରୁଜା କଲାରୁ ପୋଲିସ ଆସି ଲାଠି ଚାର୍ଜ ଲୁହବୁହା ଧୂଆଁ ଆଦି ଛାଡ଼ିଥିଲା । କିଛି ଲୋକେ ଧରାହେଇ ହାଜତକୁ ଗଲେ । ଆଜି ପୁଣି ଗହଳି କରିଚନ୍ତି ଲୋକେ, ନାରା ଦେଉଚନ୍ତି । କଡ଼ବାଟ ଦେଇ ମୁହଁ ପୋତି ସେତକ ବାଟ ପାରିହେଇଗଲା ଫାତିମା ।

# ନୂଆ ଛବି ଅଙ୍କାହୁଏ, ପୁରୁଣା ଫିକାପଡ଼େ

ତିନି ମାସ କାଳ ରାହତ ଅଫିସରୁ ମିଳୁଥିବା ମାସିକ ଟଙ୍କା ବନ୍ଦ ହେଇଯାଇଥିଲା କୋଉ ସବୁ କରାଣରୁ । ଆନ୍ଦୋଳନ କରୁଥିବା ଲୋକେ କହୁଥିଲେ ଆଜିକାଲି ଯୁଗରେ ଏତେ କମ୍ ପଇସାରେ ଚଳିହେଉ ନାହିଁ, ଆମର ଆଉରି ବେଶୀ ଟଙ୍କା ଦରକାର । ମାସିକ ଭତ୍ତା ବଢ଼ାଅ ।

ଆଉ ଦଳେ କହୁଥିଲେ ପୂରା କ୍ଷତିପୂରଣର ହାରାହାରି ଟଙ୍କା ହିସାବ କରି ଏକାଥରକେ ପ୍ରତ୍ୟେକଙ୍କୁ ଦେଇଦିଆଯାଉ, କମ୍ପାନୀ ସାଙ୍ଗେ ଫଇସଲା ହେବାପରେ ବଳକା ଟଙ୍କା ପୁଣି ପଛକେ ନେବା । ଏଇ ଟୋପେ ଲେଖାଁ ପିଇ ଦଣ୍ଡେ ଜୀଇଁବା କେତେଦିନ ଚାଲିବ ? ହାତକୁ ଏକାବେଳକେ କିଛି ଟଙ୍କା ଆସିଲେ କିଛି କାମ କି ବେଉସା ଆରମ୍ଭ କରିହେବ ।

ଆର ଦଳ କହୁଥିଲେ ଥରେ ବଡ଼ ରକମର ପଇସା ଦେଇଦେଲେ ଆଉ କମ୍ପାନୀ ବାକି ଟଙ୍କା ଦେବନାଇଁ, ସରକାର ବି ଥଣ୍ଡା ପଡ଼ିଯିବେ, ଆଉ ଲଢ଼ିବେନି । ବରଂ ଆମେ ମାସିକ ଭତ୍ତା ବେଶୀ ନେବୁ ଆଉ ଅପେକ୍ଷା କରିବୁ ।

ସରକାର ତରଫରୁ ବିଭିନ୍ନ ପ୍ରକାରର ଓକିଲାତି କରୁଥିଲେ ନେତା ଓ ବିଶେଷଜ୍ଞ ମାନେ । କ'ଣ କରାଗଲେ ଭଲ, କୋଉ ରଣନୀତି ଜନତା ଲାଗି ଲାଭପ୍ରଦ । ଏକାଠି ଟଙ୍କା ହାତକୁ ଆସିଲେ ଲୋକେ ଖଇରାତ କରିଦେବେ, ବ୍ୟାଙ୍କରେ ରଖାଯାଇ ଅଳ୍ପ ଅଳ୍ପ କରି ଛଡ଼ାଯିବା ଉଚିତ୍ । ସେଇ ଟଙ୍କାରୁ ପୁଣି ଗ୍ୟାସ ରୋଗୀଙ୍କ ଡାକ୍ତରଖାନାରେ, ଚିକିତ୍ସାରେ ବି ଖର୍ଚ୍ଚ କରାଯିବ ।

ଘରେ ପହଞ୍ଚିଲା ବେଳକୁ ଜରୀନା ନାଲି ଚାହା ଗିଲାସେ ଧରେଇଦେଇ କହିଲା, "ଅପା, ଘରେ ଦୁଧ, ଚିନି ନାହିଁ । ମୋ' ପାଖେ ଆଉ ପଇସାଟିଏ ନାହିଁ । ରେହମାନ ସିନା ଯାଇ ଭତ୍ତା କଥା ଟିକେ ବୁଝନ୍ତା ।"

ରେହମାନ ଅଗଣାରେ ବାପାଙ୍କ ଚଉକି ପକେଇ ବସିଥାଏ । ମୁହଁ ବିଚିକିଟି କରି କଷା ଚାହା ସୁଡୁକୁଥାଏ, ଭାଷଣ ଦେବା ଢଙ୍ଗରେ କହୁଥାଏ, "ଗୋଲି ମାର ସେ ଭତ୍ତାକୁ । ଏ

ଯାହା ମିଳୁଚି ସେ କିଛିନୁହଁ, ଆମେରିକାନ କମ୍ପାନୀ ଆମକୁ ଠକୁଚି । ଯା'ଠୁ ହଜାରେ ଗୁଣ ବେଶୀ ପାଇବାକୁ ଆମେ ହକ୍‌ଦାର । ତମେ ଜାଣ, ତା' ନିଜ ଦେଶ ଆମେରିକାରେ ଏମିତି କାଣ୍ଡର ଶହେ ଭାଗରୁ ଭାଗେ ହେଇଥିଲେ ଏତେବେଳକୁ ସେ ଆଣ୍ଡରସନ ସାହେବ ଦେବାଳିଆ ହେଇ ଜେଲ୍ କାଟୁଥାନ୍ତା ।"

ଦାଦୀମା ଚିଡ଼ିଚିଡ଼ା ସ୍ୱରରେ କହିଲେ, "ସେଥିରୁ କ'ଣ ମିଳିବ ବାପ ? ଆମ ଜୀବନ କେମିତି କଟିବ ସେକଥା ଭାବ ।"

ରେହମାନ କେତେଦିନୁ ଜୁଲୁସରେ ଯାଇନଥିଲା । ରାଗରେ ଚିହିଁକି କହିଲା, "ଏତେ ବଡ଼ ଅନ୍ୟାୟକୁ ଆମେ ସହିଯିବା ବୋଲି କହୁଚ ତମେ ସବୁ ?"

କାହାରି କିଛି କହିବାର ନଥିଲା । କେବଳ ଦାଦୀମା କହିଲେ, "ଯିଏ ସବୁ ଗଲେ ଫେରିଆସିବେ କି ଆଉ ? ତୋ' ବାପ ଭାଇ ଆଉ ଆସିବେ ? ଯାହା ଯୋଗୁଁ ସିଏ ଅକାଳରେ ମଲେ ତା' କଥା ଉପରବାଲା ବିଚାର କରିବେ । ତା' ପଇସା ନ ପାଇଲେ ଆମେ ଭୋକରେ ମରିବା ବୋଲି କଥା ଅଛି ? ଆମ ନିଜ ମେହେନତରେ କମେଇଲା ପଇସା ଯାହା ନୁହଁ ସେ ହେଲା ହାରାମ୍‌ର କମାଣି, ତାକୁ ଆମେ ଲୋଭ କରିବା କାହିଁକି ?"

ଏଇ ଯୁକ୍ତି ତର୍କ ଆଗରୁ ଅନେକଥର ହେଇସାରିଛି ନାତି ଆଉ ଜେଜେମା ଭିତରେ । ଏଥର ଅଧା ପିଆ ଚାହା ଗିଲାସକୁ ତଳେ କଚିଦେଇ ରେହମାନ ଉଠିପଡ଼ିଲା । ଘରୁ ଚାଲିଯାଉ ଯାଉ ଖେଙ୍କାରିହେଇ କହିଲା, "ତମ ବୁଦ୍ଧିରେ ପଡ଼ିଲେ ନା ଦାଦୀମା', ଜହର ଗ୍ୟାସ୍ ପିଇ ଦରମରା ହେଇ ବଞ୍ଚିଚନ୍ତି ଯେତେକେ, ସମସ୍ତେ ବିନା ଚିକିତ୍ସାରେ ମରିଯିବେ । କ'ଣ ନା ହାରାମ୍‌ର କମାଣୀ ।"

ସଞ୍ଜ ହେଲା ବେଳକୁ ଶାରୁଖ୍ ମିଆଁ ତାଙ୍କ ସ୍ତ୍ରୀ ଓ ଝିଅ ରେହାନାକୁ ନେଇ ବୁଲିବାକୁ ଆସିଥିଲେ । ସାଙ୍ଗରେ ପାଞ୍ଚଥାକର ବିଶାଳ ଟିଫିନ୍ କ୍ୟାରିଅର ଦାଦୀମା'ଙ୍କ ପାଖରେ ନେଇ ଥୋଇଦିଆଗଲା । ଖୋଲା ହେବା ଆଗରୁ ତା' ଭିତରୁ ଗରମ ମସଲା ଦିଆ ମାଂସ, ବିରିଆନୀର ବାସ୍ନା ବିଞ୍ଚିହେଇ ଘରସାରା ସଭିଙ୍କୁ କେତେଦିନର ଅଭାବ କଥା ମନେପକେଇଦେଲା । ନାକ ଦେଇ ସେ ସୁଗନ୍ଧ ଖାଲି ଜିଭର ନିଦ ଭାଙ୍ଗିଲା ତା' ନୁହଁ, ଘରର ନଥିବାପଣକୁ, ଚାଲିଯାଇଥିବା ଦିନସବୁକୁ ଆଉଟାଇପକାଇଦେଲା ।

ଓଢ଼ଣୀ ମୁଣ୍ଡରେ ଆଦବ ସହିତ ସଲାମ କରି ଦାଦୀମା'ଙ୍କ ହାତକୁ ବନାରସୀ ପାନପତ୍ର, କେଇ ପ୍ରକାର ଜର୍ଦା, କିମାମର ସାନ ବଡ଼ ଡବା ବଢ଼େଇଦେଲେ ଆଗନ୍ତୁକା । ଚେଷ୍ଟା କରି ବି ଗାମ୍ଭୀର୍ଯ୍ୟ ରଖିପାରୁନଥିବା ଦାଦୀମା ସେସବୁ ପାଖରେ ଥୋଇଦେଇ ଶାରୁଖ୍‌ର ସ୍ତ୍ରୀକୁ କୋଳେଇ ପକେଇଲେ, "ଏତେ ସବୁ କଥା ଆଣିବା କି ଦରକାର ଥିଲା ଫରିଦା । ତମେ

ପରା ଏଣିକି ଆମ ବନ୍ଧୁ ହେଲ । ରେହମାନର ଶାଶୁ ତମେ, ଆମ ଘର ଲୋକ । ତମ ଝିଅ ଶିଘ୍ର କେମିତି ଆସୁ ଏ ଘରକୁ ଇନ୍‌ଶାଆଲ୍ଲା । ମୁଁ ବଞ୍ଚି ଥାଉଥାଉ ଆସୁ ଯେ ତା' ହାତରନ୍ଧା ଖୁଏଇବ ।"

ରେହାନା ତୁନି ହେଇ ମୁଚୁମୁଚୁ ହସୁଥିଲା, କଣେଇ କଣେଇ ଏଣେ ତେଣେ ଚହୁଁଥିଲା । ତା' ନିଜର ହେବାକୁ ଯାଉଥିବା ଘରକୁ ଦେଖିନେଉଥିଲା ।

ଉଚ୍ଚ ଗଦ୍‌ଗଦ ସ୍ୱରରେ ତା' ମା' ରେହମାନର ପ୍ରଶଂସା କରୁଥିଲେ, ନିଜ ଝିଅର ଗୁଣଗ୍ରାମ ବର୍ଣ୍ଣନା କରୁଥିଲେ । ଦାଦୀମା' ବି ଗପ ଯୋଡ଼ିଥିଲା, କାଳ କେମିତି ଖରାପ ପଡ଼ିଚି ସେ କଥା ସବୁ କହୁଥିଲା । ଜରୀନା ବୋଧେ ପଡ଼ିଶା ଘରକୁ ଯାଇଥିଲା ଦୁଧ, ଚିନି ଆଣିବାକୁ । ଫାତିମା ଚୁପ୍ ହେଇ ବସିଥିଲା ଟିକେ ଦୂରରେ, ନା ତାଙ୍କ କଥାବାର୍ତ୍ତାରେ ସେ ଥିଲା, ନା ଥିଲା ତାଙ୍କ ସଂସାରରେ । ଫାତିମାକୁ ଦେଖେଇ ରେହାନାକୁ ତା' ମା' କହିଲେ, "ବଡ଼ ଦିଦି ପରା ସିଏ, ସଲାମ କଲୁ ନା ନାହିଁ ?"

କେତେବେଳକେ ଭିତର ଘରୁ ଅମ୍ମିର ସ୍ୱର ଶୁଭିଲା, "କିଏ ଆସିଚି ସେଠି ବେଟୀ ? ତୋ' ପିଇସୀ ଆସିଲେ କି ଲକ୍ଷ୍ନୌରୁ ?"

ଅତିଥିମାନଙ୍କର ଖିଆଲ ହେଲା ବୋଧେ, ଯେ ଝିଅର ଶାଶୁଙ୍କୁ ଏଯାଏଁ ଭେଟିନାହାନ୍ତି ସେମାନେ । ଦାଦୀମା' ପଡ଼ପାଟିରେ ଡାକିଲେ, "ଆଲୋ ତୋ' ବୋହୂ ଆସିଚି ଦେଖ୍ । ଆମ ରେହମାନର ଦୁଲହନ୍ ।"

ଭିତରକୁ ଗଲାବେଳକୁ ଅସ୍ଥି କଂକାଳସାର ଆଲୁରା କେଶବାସ ଭାବୀ ଶାଶୁଙ୍କୁ ଦେଖି ପ୍ରାୟ ଡରିଗଲା ରେହାନା । ଏତେ ଲୋକଙ୍କୁ ଦେଖି ପଦଟିଏ ବି କହିଲେନି ତା' ଶାଶୁ । ମା' ବାପାଙ୍କ ତାଗିଦାରେ ତାଙ୍କୁ ସଲାମ କରୁଥିବା ଝିଅଟି ମୁଣ୍ଡରେ ହାତ ବି ବୁଲେଇଦେଲେ ନାହିଁ । ଓଲଟି ଖଟଉପରେ ଖୁଟୁମୁଟୁ ହେଇ ସେମିତି ବସିରହିଲେ, ଆଉ ନିଜ କାଠିପରି ପତଳା ଦି ଗୋଡ଼କୁ କୁଣ୍ଢେଇ ଆଉରି ଜୋର୍ ଜୋର୍‌ରେ ଝୁଲିଲାଗିଲେ ।

# କଣ୍ଟାଝଟା ଭିତରେ ଖୋଲିଯାଏ ବାଟଟି

ସପ୍ତାହେ ଯାଏଁ ଆଉ ତର ସହିନଥିଲା । ଦୁଇଦିନ ପରେ ଯାଇ ପୁଣି ଶାହନଶା ହୋଟେଲ ମ୍ୟାନେଜରଙ୍କ ପାଖେ ପହଞ୍ଚି ଯାଇଥିଲା ଫାତିମା । ତେବେ ସେଇଦିନ ନୁହେଁ, ଆଉରି କେଇଥର କଥାବାର୍ତ୍ତା କଲାପରେ ଯାଇ ତା' କଥାର ଛାପ ଦିଶିଥିଲା । ପୁଣି ତା' ହାତକୁ ଦି'ପଇସା ଆସୁ ଆସୁ ଆହୁରି ଦୁଇବର୍ଷ କଟିଯାଇଥିଲା । ସହଜ ନଥିଲା ଏକତରଫା ନୂଆ ବେପାରଟିଏର ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ।

ଚଉକ ବଜାରରେ ତିଆରି ହେଉଥିବା ମୋତିର ପର୍ସ, ବ୍ୟାଗ ଆଦିର କାରିଗରଙ୍କୁ ଏକାଠି ବରାଦ ଦେଇ ଭଲ ସୂତା, ଜିପର ଲଗା ଜିନିଷ ତିଆରିକରେଇବା ଶ୍ରମ ସାପେକ୍ଷ, ପୁଣି ସମୟ ସାପେକ୍ଷ ବି । ସେଥିଲାଗି ହୋଟେଲ ମ୍ୟାନେଜର ଓ ମାଲିକଙ୍କୁ ବୁଝାଇ ତାଙ୍କ ପଇସା ସେଥିରେ ଲଗାଇବା ଆଦି ବି ଦିନକର କାମ ନଥିଲା । ନର୍ଗୀସ୍ ବେଗମ୍ ଥିଲାବେଳେ ଯେଉଁ କାରିଗରମାନେ ସିଲେଇ ଆଉ ଛୁଞ୍ଚିକାମ କରୁଥିଲେ, ସେମାନେ ଆଉ ନଥିଲେ । ନିଜ ଚେଷ୍ଟାରେ ସେମାନଙ୍କ ଘରକୁ ଯାଇ ଝିଅ ବୋହୂମାନଙ୍କୁ କାମ ଯାଚିଥିଲା ଫାତିମା । ଦରଶିଖିଲା ହାତମାନଙ୍କୁ ନୂଆ କାମ ଶିଖାଇବା, ସେମାନଙ୍କୁ ନିଜ ହାତରେ ଦି'ପଇସା ଅର୍ଜନ କରିବାର ଗର୍ବ ସହିତ ଚିହ୍ନା କରାଇଦେବାର ଦାୟିତ୍ୱ ବି ତାକୁ ହିଁ ନେବାକୁ ପଡ଼ିଥିଲା ।

ରଘୁବୀର ବାବୁ ହିଁ ନିଜେ ତାକୁ ଠିକଣା ଦେଇଥିଲେ ସେମାନଙ୍କର । ପୁଣି ତାଙ୍କ ସ୍ତ୍ରୀ ନିଜେ ଫାତିମା ସାଙ୍ଗରେ ଯାଇ ଏଇ ଘର ସେଇ ଗଳିର ଝିଅ ବୋହୂଙ୍କୁ ଚିହ୍ନା କରାଇଥିଲେ, "ୟା'ଙ୍କୁ ଏଠା ଲୋକ ଭୁଲିଗଲେଣି ଅପା, ମୁଁ ଚିହ୍ନେଇଦେଉଚି । ବେଗମ ସରକାର ସହରଯାକ ସିଲେଇ ଏମ୍ବ୍ରୟଡ଼ାରୀ ସେଣ୍ଟରମାନ ଖୋଲେଇଥିଲେ ଶୁଣିଥିବ ତ ? ବୁଢ଼ାବୁଢ଼ୀ ଲୋକେ ଏବେବି ମନେ ରଖିଚନ୍ତି, ସେ କୋଉ ଯୁଗର କଥା । ଖୋଦ ବେଗମ ନବାବମାନଙ୍କ ପୋଷାକ ପରିଛଦସବୁ ସୁନା ରୁପା ଜରିଦେଇ ତିଆରୁଥିଲେ ଯେଉଁମାନେ, ତାଙ୍କରି ଘର ଝିଅ ଇଏ ।"

ସେଇ ପରିବାରମାନଙ୍କରେ ସ୍ଥାୟୀ ଆୟ ଓ ଭରସା ଦେବାଲୋକେ ଚାଲିଯାଇଥିଲେ ସେଇ କାଳ ରାତିରେ । ସେଇଠୁ ହିଁ କାମ କରିବା ଲାଗି ଝିଅ ବୋହୂମାନେ ଆଗେଇଆସିବାକୁ ବେଳ ଲାଗିଲାନାହିଁ ।ଶାହନଶା ହୋଟେଲର ପୁରୁଣା ଶୋ ରୁମ୍‌ଟି ଖୋଲିଥିଲା ଏତେଦିନ ପରେ । ସଫା ସୁତୁରା କରାଇ ପୁରୁଣା ଗଦି ଚଉକିରେ ନୂଆ କୁଶନ ପକାଇ ସଜାଇଦିଆଯାଇଥିଲା । ନର୍ଗୀସ୍ ବେଗମଙ୍କ ଟେବୁଲ୍ ପାଖେ ବସିଲା ଫାତିମା ନିଜେ । ହେଲେ ସବୁଠୁ ବଡ଼ ସମସ୍ୟା ତା' ଲାଗି ଥିଲା ସବୁଦିନେ ସେଭଳି ଜାଗାରେ ବସିବା ଭଳି, ହୋଟେଲର ଅତିଥିମାନଙ୍କୁ ଭେଟିପାରିବା ଭଳି ବେଶପୋଷାକ ପିନ୍ଧି ଆସିବା ।

# ଗତରେ ପଡ଼େନି କେବେ ଜୀବନ

ଅନେକ ଦିନ ପରେ ସେଦିନ ବଢ଼ି ସକାଳୁ ଉଠି ବାହୁନି ବସିଲା ଦାଦୀମା' । ଭୋର୍‌ରୁ ପାଖ ମସ୍‌ଜିଦର ପରିଚିତ ଆଜାନ୍ ଶୁଣି ବି ନ ଶୁଣିଲାପରି ଶୋଇଥାନ୍ତି ଭାଇ ଭଉଣୀ ତିନିହେଁ । ଏଥର ଆଉ ଦାଦୀମା'ର ବାହୁନା ଶୁଣି ଛାତି ଭିତରୁ କୋହ ଉଠାଉ ନାହିଁ, ନୂଆ ଚମ କଅଁଳିସାରିଲାଣି ଛାତିଭିତରେ । ତଥାପି ଗହୀର ଚିହ୍ନଟା ପୋଡ଼ିଉଠୁଚି କାଇଁକି, କଅଁଳ ଅଛି ଏବେବି ଚମଟା । କାନ ଉପରକୁ କମ୍ବଳ ଘୋଡ଼େଇ ଆଣି ମୁହଁ ବୁଲେଇ ଶୋଇଲା ଜରୀନା । ରେହମାନ ପାଟିକଲା ଆରଘରୁ, "ଦାଦୀମା', ଆଖିବୁଜି ଶୋଇପଡ଼ ଟିକିଏ । ନିଦ ଆସୁନି ବୋଲି ଯେତେକ ଗଣ୍ଡଗୋଳ ।" ଫାତିମା ଉଠିଲା ଖଟରୁ, ଦାଦୀମା' ପାଖକୁ ଯାଇ ପିଠି ଆଉଁସିଦେଲା, କହିଲା, "ଭୋର୍ ସଜଦାର ବେଳ ପରା ଇଏ, କାନ୍ଦିଲେ ଗଲା ଲୋକେ ଦୁଃଖ ପାଇବେ ଦାଦୀମା' । ଯାଅ, ମୁହଁ ଧୋଇଆସ । ମୁଁ ଚହା କରି ଆଣୁଚି ।"

ଦାଦୀମା'ର ସ୍ୱର ଧୀମେଇ ଗଲା ସିନା, ଲମ୍ବିଚାଲିଲା ଗୁଡ଼େଇ ତୁଡ଼େଇ ହେଇ । ଅଭିଯୋଗର ତାଲିକା ଲମ୍ବିଚାଲିଥାଏ ସ୍ରଷ୍ଟାଙ୍କୁ ଉଦ୍ଦେଶ୍ୟ କରି, ଅଳ୍ପ ଦିନତଳର ପୋତାହେଇ ରହିଥିବା ଦୁଃଖ କ୍ଷୋଭ ଯେତକ ଫୁଟି ପଡୁଥାଏ ପଦାକୁ ଯେଉଁମତେ ହେଉ ବାଟ ଖୋଜି । ଫାତିମା ଖଟ ପାଖ ଷ୍ଟୁଲ୍‌ରେ ଚ' ରଖିଦେଇ ଗଲା, ଦାଦୀମା' ସେଆଡ଼େ ଅନେଇଲା ନାହିଁ ସୁଦ୍ଧା । ଏଥର ତା' କାନ୍ଦ ଭିତରକୁ ବଞ୍ଚିଥିବା ଲୋକେ ବି ପଶିଆସିସାରିଥିଲେ । ସେ ଭିତରେ ଥିଲା ତାଙ୍କ ନିରିମାଖୀ ବୋହୂ ଯିଏ ନିର୍ଲଜ୍ଜତାର ବାଡ଼ ବତା ଡେଇଁ ବୋଝ ହେଇ ରହିଥିଲା ବୁଢ଼ୀ ଶାଶୁଟା ଉପରେ, ସଂସାର ଦାଉରେ ଉବୁଟୁବୁ ହେଉଥିବା ପିଲା ତିନିଟାଙ୍କ ପିଠିରେ । ଆଉରି ଗାଳି ବର୍ଷା ଥିଲା ଯେତେକ ଲୋକଙ୍କୁ ଯାହାଙ୍କ ଦୋଷରୁ ତା' ସୁନାର ସଂସାର ଚୂନା ହେଇଗଲା । ଫାତିମା ରୋଷଘର କାମ ସାରିଦେଇ ଗାଧୁଆ ଘରେ ପଶିଲା, ଆଜି ଶିଘ୍ର ଯିବାକୁ ହେବ ହୋଟେଲକୁ । ହୋଟେଲର ବୟୋବୃଦ୍ଧ କର୍ମଚାରୀ ଇର୍ଫାନ୍ ମିଆଁ ଆଜି ଜଣେ

ବଟୁଆର କାରିଗର ଆଣିବେ ବୋଲି କଥା ଦେଇଚନ୍ତି । ବଡ଼ ଗୋଟାଏ ଅର୍ଡ଼ର ଆସିବ ଆସିବ ବୋଲି ହେଉଚି । ଫାତିମାର ଭାଗ୍ୟ ଫିଟିଯିବ ଏଇ କାମଟା ତା' ଦେଇ ହେଇଯାଏ ଯଦି ।

ପାଣି ଆସିନାଇଁ ପୁଣି ଦି'ଦିନ ହେଲାଣି । ପୁରୁଣା କୂଅପାଖ ଗାଧୁଆ ଘରେ ପଶିଥାଇ ବି ତା' ମନ ଯାଇ ପହଞ୍ଚିସାରିଥାଏ ଶାହନଶା ହୋଟେଲରେ ଛାଡ଼ିଆସିଥିବା ଅଧା କାମପାଖେ । ଏଣିକି ହାତରେ ମିଳିଥିବା କାମ ଖାଲି ତା'ର ଭବିଷ୍ୟତ ଲାଗି ଆଶା ନୁହେଁ, ଘରିଆତୁ ବିନ୍ଧିବାକୁ ଆସୁଥିବା ନାନା ପ୍ରକାର ଗୁଜବ ଆକ୍ଷେପର ତୀରସବୁରୁ ଆଡୁଆଳ କରୁଥିବା ଢାଲର କାମ ଦିଏ ବେଶି । ସେଥିରେ ପୁଣି ନୂଆ କରି କିଛି କରିବାକୁ, ଭାବିବାକୁ ବି ଆଳ ମିଳେ । ଝିଅଦିନେ, ସିଲେଇ କାମସବୁ ହାତକୁ ନେଲାବେଳେ ସେ କେତେ ପ୍ରକାର ଡିଜାଇନ ତିଆରି କରିପକାଉଥିଲା, ନିଜ ଇଚ୍ଛାମତେ ଛବି ଆଙ୍କିପକାଉଥିବା ରଙ୍ଗ ସୂତାରେ । ପାଶୋର ହେଇଆସିଥିବା ସେ ଛବିସବୁ ପୁଣି ଜୀଇଁ ଉଠୁଚି ମନରେ । ଏଇ ଅଣନିଃଶ୍ୱାସିଆ ଘରୁ ବାହାରିଯାଇ କେତେଘଣ୍ଟା କାଟିଦେବା ଲାଗି ବି ସୁଯୋଗ ମିଳୁଚି ଆଜିକାଲି ।

ଭଲ ଲୁଗା ବୋଲି ହାତ ଗଣନ୍ତା । ସେଇଥିରୁ ଓଢ଼ଣୀ, ସାଲୁଆର ଅଦଳ ବଦଳ କରି ପିନ୍ଧି ବାହାରିବାକୁ ହୁଏ । ଆଖି ଦୃଶିଆ ଚପଲ କି ହାତବ୍ୟାଗ୍ ଖଣ୍ଡେ ବି ନାଇଁ । ତିଆରି ହେଇ ଘରୁ ବାହାରିବା ଆଗରୁ କାନ୍ଥ ଦର୍ପଣ ଆଗରେ ନିଜକୁ ଥରେ ଦେଖିନେଲାବେଳକୁ ତା' ଆଖି ପଡ଼ିଲା, ଦାଦୀମା' ସେଯାଏ ଖଟରେ ଶୋଇଚି, ପାଖରେ ଚା' ଥଣ୍ଡା ହେଇ ସର ପଡ଼ିଗଲାଣି । ଅଦିନିଆ ସକାଳୁଆ କାନ୍ଦ ଥମିଗଲାଣି କେତେବେଳୁ, ହେଲେ ହାତଗୋଡ଼ ଜାକି ଶୋଇଚି କାହା ଉପରେ ରୁଷିଲାଭଳି । ପିଠିର ଉଠ୍‌ପଡ଼ରୁ ଦିଶୁଚି, ନିଦ ଲାଗିନି ତାକୁ । ଦି'ପଦ କଥା ଲୋଡୁଚି ନିଶ୍ଚେ, ତେବେ ଆଜି ଆଉ ତା' ସାଙ୍ଗେ ଗପସପ କରିବାକୁ ବେଳକାଇଁ ଫାତିମାର । ଜରୀନା ଆସୁଣୁ ଯାଉଣୁ ବୁଢ଼ୀଙ୍କୁ ବୋଧ ଦେଇଦେଇ ଥକ୍‌କି ଯାଇଥିଲା, ପଦେ ଦି'ପଦ କଡ଼ା କରି ବି ଶୁଣେଇଦେଇଥିଲା ବୋଧେ, ସେଇଥିରୁ ସେ ବିଗିଡ଼ିଯାଇଥିବେ । ରୋଷଘରେ ତରତରରେ କ'ଣଟିକେ ଜଳଖିଆ କଲାବେଳେ ଜରୀନା ପଚାରିଲା, "ତମେ ଅପା କ'ଣ ଏଡ଼େ ସକାଳୁ ବାହାରିଲଣି ? ଆସିବ ପୁଣି କେତେବେଳେ ?"

ଫାତିମାର ଖିଆଲ ହେଲା, ଦାଦୀମା'ର ମିଜାଜ ଆଜି ଠିକ୍ ନାହିଁ, ତରତରରେ ଖାଉଖାଉ ଜରୀନାକୁ କହିଲା, "ତୁ ଆଜିକ ଘରେ ରହି ଯା ମୋ' ସୁନାଟି । ସକାଳ ଓଳି କ୍ଲାସ ଯାଆନା, ମୁଁ ଦିପହରକୁ ଫେରିଆସିବି ।"

ମୁହଁ ଫୁଲେଇ ଜରୀନା କହିଲା, "ତା'ପରେ କହିବ କାହିଁକି ମୋ' ଦେଇ ପାଠ ହେଉନି ବୋଲି । ରେହମାନକୁ କହୁନା ଘର ଜଗି ରହୁ, ଖାଲି ନେତାଙ୍କ ଗୋଡ଼ାଣିଆ ହେଇ ତା'ର ବେଳ ଯାଉଚି ।"

ମୁହଁ ପୋତି ନିଃଶ୍ୱାସ ଛାଡ଼ିଲା ଫାତିମା । ପାଦରେ ଚପଲ ଗଳେଇଦେଇ ଘରୁ ବାହାରି ଯାଉଯାଉ କହିଲା, "ଦାଦୀମା' ପାଖେ ବସି ଟିକିଏ ଗ୍ଲ' ଜଳଖିଆ ଖୁଆଇଦେବୁ ଜରୀନା । ଆଜି ଜରୁରୀ କାମଟାଏ ଅଛି । ଦରମାଟା ବି ମିଳିଯାଇପାରେ । ଦାଦୀମା'ଙ୍କ ଲାଗି ଅଫଜଲ ଦୋକାନରୁ ବନାରସୀ କିମାମ୍ ଆଉ ମିଠା ପତ୍ରିର ପାନ ନେଇ ଆସିବି । କହିଦେବୁ ତାଙ୍କୁ ।"

ଆଜିକାଲି ଯେତେ ଚିନ୍ତା କି ଦୋଦୋପାଞ୍ଚ ମନରେ ଥାଉ ପଛକେ, ଘରୁ ଗୋଡ଼ କାଢ଼ି ଗଳିବାଟ ଡେଇଁ ବଡ଼ ସଡ଼କରେ ପାଦ ପକାଇଲା ବେଳକୁ ଫାତିମାର ମନ ଯାଇ ଅନ୍ୟ ରାଜ୍ୟରେ ପହଞ୍ଚିସାରିଥାଏ । ଏତେବାଟ ଚାଲିଚାଲି ଗଲା ବେଳକୁ ଅଧଘଣ୍ଟା ଲାଗିଯାଏ । ରାସ୍ତାରେ କାହିଁ କୁଆଡ଼କୁ ନ ଅନେଇ ସିଧା ବାଟ ଚାଲେ ଯେ, ଚିହ୍ନା ପରିଚିତ ମୁହଁ ଦିଶିଲେ ବି ନ ଦେଖିଲା ପରି ରହିଯାଏ । ଆଜି କିନ୍ତୁ ପାଖ ଦେଇ ଚାଲିଯାଉଥିଲା ଅଟୋଟିଏ ଖଣ୍ଡେ ବାଟ ଚାଲିଯାଇ ବ୍ରେକ୍ କଷିଲା, ଭିତରୁ ମୁହଁ କାଢ଼ି ଜଣେ ବୟସ୍କା ଡାକିଲେ ତାକୁ, "ଆରେ ଫାତିମା ବୀ, କେତେଦିନୁ ତମକୁ ଦେଖିନି । ଆମ ଘର ଆଡ଼େ ଆଉ ଆସିଲନି ଯେ ?"

ଚିହ୍ନା ଚିହ୍ନା ଲାଗୁଥିଲେ ବି ଫାତିମା ଠଉର କରିପାରିଲାନି କିଏ ସିଏ । ମହିଳା ଓହ୍ଲେଇପଡ଼ିଲେ, କହିଲେ, "ମୁଁ ରହିମ୍ କାରିଗରଙ୍କ ସ୍ତ୍ରୀ । ଆପଣ ଆସିନଥିଲେ ଆମ ଘରକୁ ? ମୋ କାମ ପସନ୍ଦ କରିଥିଲେ । ଆଉ ଆସିଲେନି ଯେ ?"

ମନେପଡ଼ିଲା ଫାତିମାର । କହିଲା, "ଏକୁଟିଆ ସବୁଆଡ଼େ ଯାଇହେଉଛି କୁଆଡୁ ? ଆଜି ଚାଲନ୍ତୁ ନା ମୋ' ସାଙ୍ଗେ, ଆମ ଅଫିସକୁ ଯିବା, କଥାବାର୍ତ୍ତା ହେବା ଆପଣଙ୍କ କାମ ବିଷୟରେ ।"

ବ୍ୟାଗ୍ ପତ୍ର ନେଇ କୋଉ ଆତ୍ମୀୟଙ୍କ ଘରକୁ ଯାଉଥିଲେ ସିଏ, ତଥାପି ଫାତିମାର କଥା ମାନିଗଲେ । ଦିହେଁ ଅଟୋରେ ବସୁ ବସୁ ମହିଳା ଆରମ୍ଭ କଲେ ତାଙ୍କ ଗପ, "ତମେ ସେଦିନ କହିଲ ସିଲେଇ, କଢ଼ାଇ, ଛୁଞ୍ଚିକାମର ଲୁଗା ତିଆରି ହେବ ପୁଣି ଶାହନଶାରେ ବୋଲି । ମୁଁ ସେବେଠୁଁ ବାଟଚାହିଁ ବସିଚି, ଶାଶୁଙ୍କ ପୁରୁଣା ବାକ୍ସରୁ କେତେଟା ଜରି କାମକରା ଲୁଗା ବାହାରିଲା କୋଉ ପୁରୁଖା ଅମଳର, ତମକୁ ଦେଖେଇବି ବୋଲି ରଖିଚି । ମୋତେ ବି ହାତକାମ ଆସେ, ମୋ' ଦି'ଝିଅଙ୍କୁ ବି । ବରାଦ ପାଇଲେ ଘରେ ତିଆରି କରି ଦେଇଦିଅନ୍ତୁ ଝିଅ, ଯେମିତି ତମେ କହିବ ସେମିତି, ଘରକୁ ଦି'ପଇସା ଆସନ୍ତା କେମିତି ଟିକେ ।"

ତାଙ୍କ ଘରେ ପୁରୁଷ କାରିଗର ଏବେ ଆଉ ଘରୁ ବାହାରି କାମ କରିବା ଯୋଗ୍ୟ ହୋଇ ନାହାନ୍ତି । ଫାତିମା ବୁଝିଲା, ଏଣିକି ସେ ନିଜେ ଗୋଡ଼ କାଢ଼ି ଲୋକଙ୍କ ପାଖକୁ ଗଲେ ନୂଆ କାମର ଅଭାବ ହେବନାହିଁ, କାରିଗର ଅଛନ୍ତି ପ୍ରତି ଅଭାବୀ ଘରେ । ପଚାରିଲା, "ଆପଣ ଜଣକ ଲାଗି ଏତେ ବାଟ ମୁଁ କ'ଣ ଯାଇପାରିବି ? ଆପଣଙ୍କ ସାହିରେ ଆଉ ଚାରି ପାଞ୍ଚ ଘର

ତିଆରି ହୁଅନ୍ତେନି କାମ କରିବା ଲାଗି ?"

ବୁଝାପଡ଼ିଲା, ଘରୁ ବାହାରି କାମ ଶିଖିବା ଲାଗି ବି ଘରଲୋକେ ଅନୁମତି ଦେବେନାହିଁ । କିଏ ଜଣେ, ଯଦି ଫାତିମା ନିଜେ, ତାଙ୍କ ଘରକୁ ସବୁ ଯାଇ ଶିଖେଇ ଦିଅନ୍ତା ପହିଲେ କିଛିଦିନ, ତେଣିକି ଆଉ କିଛି ଅସୁବିଧା ହୁଅନ୍ତା ନାହିଁ ।

ଫାତିମା ଆଶ୍ଚର୍ଯ୍ୟ ହେଲା । "ଏଇ ସହରରେ ପରା ଆମ ମା' ଜେଜେମା' ଅମଳରେ ସରକାର ବେଗମ୍ ସିଲେଇ ସେଣ୍ଟର ଖୋଲିଥିଲେ । ସେବେ କେମିତି ଝିଅ ବୋହୂମାନେ ଘରୁ ଗୋଡ଼ କାଢ଼ି ଯାଉଥିଲେ ?"

"ଯାଉଥିଲେ, କାହିଁକିନା ଖୋଦ୍ ବେଗମ୍ ସାହିବା ଯିଏ ଏ ଦେଶକୁ ରାଜୁତି କରୁଥିଲେ, ସେଇ ନିଜେ ଡାକରା ଦେଇଥିଲେ ଝିଅବୋହୂଙ୍କୁ । ସେବେ ମରୁଡ଼ି ଯୋଗୁଁ ସମୟ ଖରାପ ପଡ଼ିଥିଲାକିନା, ଝିଅ ବୋହୂଙ୍କ ହାତରେ କେମିତି ଟିକେ ରୋଜଗାର ହେଉ ବୋଲି, ସିଲେଇ କଢ଼ାଇର ସେଣ୍ଟରମାନ ଖୋଲାଇଥିଲେ । ସେଥିରେ ଘରର ପୁରୁଷ ଲୋକଙ୍କର ଆପତ୍ତି କରିବାକୁ ଜିଭରେ ହାଡ଼ ଥିଲା ?"

ଫାତିମା ପଚାରିଲା, "ଦିଦି, କୋଉ ପୁରୁଣା ଛୁଞ୍ଚକାମ ଆପଣ ମୋ' ଲାଗି ଖୋଜି ରଖିଚନ୍ତି ବୋଲି କହୁଥିଲେ ?"

ହୁସ୍ନା ବେଗମ୍ ଉଜଳିଲା ମୁହଁରେ କହିଲେ, "ଭୋପାଲୀ ସୁନା ଜାଲି, ଦେଖିଚ କେବେ ?"

ଭାବିଲା ପରି ହେଇ ଫାତିମା କହିଲା, "ଦାଦୀମା'ଠୁ ଶୁଣିଚି, ହେଲେ ମୁଁ ଦେଖିନି ସେ ଜାଲିକାମ ।"

– "ଆଉ ସେ କାମ ହେଉଚି ଯେ ଦେଖିବେ ? ମୋ' ପାଖରେ ଅଛି ଚିରା ଖଣ୍ଡେ, ସେମିତି ଜକଜକ ହେଉଚି । ଆସିବେ ମୋ' ଘରକୁ, ଦେଖେଇବି । ହେଲେ ମୋତେ ତିଆରି ଜଣାନାହିଁ । ଛୁଞ୍ଚକାମ ଖାଲି ନୁହେଁ ତ, ଛୁଞ୍ଚ ସହିତ ଆଙ୍ଗୁଠିରେ ଫାଶ ନେଇ ଗଣ୍ଠି ପାରି କରିବାକୁ ହୁଏ, ତା' ପୁଣି ଏକାରକମର ଫାଙ୍କ ଛାଡ଼ି ଛାଡ଼ିକା । ତମ ଦାଦୀମା ଜାଣିଥିବେ ।"

ହୋଟେଲ ପାଖ ହେଇଆସିଥିଲା । ଫାତିମା ଭାବୁଥିଲା, ଦାଦୀମା ଜାଣିଥିଲେ ମୋତେ କହିନଥାନ୍ତା ? ଜଣାଥିଲେ ଥାଆନ୍ତା ଅମ୍ମିକୁ, ତାଆରି ଥିଲା କାରିଗର ଘର । କୋଉଠି ଖଣ୍ଡେ ସେଥିରୁ ମିଳନ୍ତା କେମିତି, ଦେଖିଲେ ହୁଏତ ତିଆରି କରିଦେଇହେବ ।

ଶାହନଶା ଗେଟ୍ ପାଖରେ ପହଞ୍ଚି ହୁସ୍ନା ବେଗମ୍ ଦୋଦୋପାଞ୍ଚ ହେଲେ, କହିଲେ, "ତମେ ଓହ୍ଲେଇଯାଅ ଫାତିମା ବୀ, ମୁଁ ଯାଏଁ ।"

ତାଙ୍କ ହାତ ଧରି ମିଠା ଜିଦିରେ ଫାତିମା କହିଲା, "ଆସନ୍ତୁ ନା ମୋ' ସାଙ୍ଗରେ ।

ନହେଲେ ପୁଣି ଆସନ୍ତା କାମ ଆଶାରେ ବାଟ ଚାହିଁ ରହିବେ, କିଏ ଜାଣେ କେତେ ଦିନ। ଆସନ୍ତୁ ଆମ ଶୋରୁମ୍ ଦେଖିବେ। ଆପଣଙ୍କଠୁ ବି ମୁଁ କେତେଟା କାମ ଶିଖିବି ନା ନାହିଁ?"

ହୋଟେଲ ଶୋରୁମ୍‌ରେ ଜିନିଷ ଦେଖିସାରିଲା ବେଳକୁ ହୁସ୍ନାଙ୍କ ମୁହଁରେ ଏକପ୍ରକାର ଆତ୍ମବିଶ୍ୱାସ ଦିଶୁଥିଲା, କହିଲେ ସେ "ମୁଁ ବି ତମ ସାଙ୍ଗେ କାମ କରିବି ଫାତିମା। ମୋତେ ଆସେ ଏସବୁ ଛୁଞ୍ଚି କାମ, ଖାଲି ଅନେକ ଦିନୁ ଆଉ ଅଭ୍ୟାସ ନାହିଁ।"

ସେ ଗଲା ବେଳକୁ ବଟୁଆ ବେପାରୀ ଜଣକ ଟିଣ ବାକ୍ସଟିଏରେ ତା' ପସରା ନେଇ ଆସିଲା। ପୁରୁଣା ସହର ଚଉକ ବଜାରରେ ତା'ର କେଇ ପୁରୁଷର ଛୋଟକାଟିଆ ଦୋକାନଟିଏ, କେଇଦିନ ତଳେ ଫାତିମା ନିଜେ ଯାଇ ଅଳ୍ପ କେଇଟା ଅର୍ଡ଼ର ଦେଇଆସିଥିଲା, ସାମ୍ପଲ ନେଇଆସିବାକୁ ବି କହିଥିଲା। ମଖମଲ ସିଲ୍କ୍ ଓ ସାଟିନ୍ କନାର କେତେ ପ୍ରକାର ଥଳି ଆଗେ ବ୍ୟବହାର ହେଉଥିଲା ସ୍ତ୍ରୀ ଲୋକଙ୍କର ହାତବ୍ୟାଗ ଭାବେ, ପାନ ବଟୁଆ ଭାବେ ବି। ଗୋଟି ଗୋଟି କରି ହାତକୁ ନେଇ ଫାତିମା ପରଖିଲା, ପଚାରିଲା, "ଇଏ ତ କେଇଟା ମାତ୍ର, ଆଉ କେତେ ପ୍ରକାର ଡିଜାଇନ ବି ଥାଏ ପରା?"

ବେପାରୀ ଉତ୍ତର ଦେଲା, "ଏଇତ ଏତିକି ପ୍ରକାର ତିଆରି ହେଉଚି। ଆଉ କିଣୁଚି କିଏ?"

ଫାତିମା ଆଗରୁ କେଇଥର କହିଥିବା କଥାକୁ ପୁଣି ବୁଝେଇବସିଲା, "ଆଉ କେତେଟା ପ୍ରକାର ବି ତ ପିଲାଦିନେ ମୁଁ ଦେଖିଚି, ଚାରିକଣିଆ ଥାଏ, ଲମ୍ବାଳିଆ ଗୋଲ ବଟୁଆ ବି, ଉପରକୁ କୁଞ୍ଚ କୁଞ୍ଚ ହେଇ ବନ୍ଧା ହେଇଥାଏ, ଡୋରି ମୁଣ୍ଡରେ ଟିକି ଝାଲର ବି ଲାଗିଥାଏ..."

ତା' କଥାକୁ ପାସଙ୍ଗରେ ନ ପକାଇଲା ଭଳି ବେପାରୀ କହିଲେ, "ସେସବୁ ତିଆରି ହଉଥିଲା କୋଉକାଳେ। ଟଙ୍କା ଆଡ଼ଭାନ୍ସ ଦେଲେ ତିଆରି ହେବ।"

ନିଃଶ୍ୱାସ ପକାଇଲା ଫାତିମା। କେତେ ପ୍ରକୃତରେ ବିକ୍ରି ହେବ ସେ ନିଜେ ବି ଜାଣେନି, ହୋଟେଲ ମାଲିକଙ୍କୁ ମଙ୍ଗେଇବା ଲାଗି ସେତିକି ବିଶ୍ୱାସ ଓ ସାହସ ଦରକାର। ଯେତିକି ଆଣିଚି ରଖିନେଇ ବେପାରୀକୁ ବିଦାକରିଦେବା ଛଡ଼ା ଉପାୟ ନାହିଁ।

ମ୍ୟାନେଜରଙ୍କ ପୁରୁଣା ଆସିଷ୍ଟାଣ୍ଟ, ମାଲିକଙ୍କ ଦୂର ସମ୍ପର୍କୀୟା ବିଲକିସ୍ ବେଗମ୍ ଶୋ କେସ୍‌ର ଜିନିଷମାନ ପରଖୁ ଥିଲେ, ଫାତିମା ବୁଝିଲା ସେ ଅପେକ୍ଷା କରୁଥିଲେ କ'ଣ କହିବେ ବୋଲି। ତାଙ୍କ କଥା ପୂରା ନ ସରୁଣୁ ଫାତିମା ଦେଖିଲା, ସେପାଖେ ଲାଉଞ୍ଜ ସୋଫାରେ ବସିଚନ୍ତି ଗତମାସ ଆସିଥିବା ଦୁବାଇର ସେଇ ବ୍ୟବସାୟୀ ଜଣକ। ଭାରତୀୟ ମୂଳର ଭଦ୍ରଲୋକ ବୋଧେ, ଅନେକଦିନୁ ଯାଇ ବସବାସ କରିଥିବେ ଦୁବାଇରେ। ପଚାରିଲା ସେ, "ଏଇ ଭଦ୍ରଲୋକ ତ ଦେଖିସାରିଚନ୍ତି ଆମ ଜିନିଷ ସବୁ, କିଣିନେଇଥିଲେ ବି ବେଶ୍

ଗୁଡ଼ିଏ ଡ୍ରେସ୍ । ଆଉ କ'ଣ ଦେଖିବେ ?"

ବିଲକିସ୍ କହିଲା, "ଦେଖିବାକୁ ଚାହୁଁଚନ୍ତି ଯେତେବେଳେ, କିଛି ତାଙ୍କ ମନରେ ଥିବ ନିଶ୍ଚୟ । ହାଇଦ୍ରାବାଦରେ ନିଜ ଘର ଥିଲା, ଏବେ ଭୋପାଲରେ ନୂଆ କ'ଣ କାମ ନେଇଚନ୍ତି ମନେହେଉଚି । ତମେ ଶିଘ୍ର ସଜିଲ କରିନିଅ ଜିନିଷ, ମୁଁ କିଛିସମୟ ଭିତରେ ତାଙ୍କୁ ନେଇଆସୁଚି ।"

ଲାଉଞ୍ଜରେ ଆଉ ଦି'ତିନିଜଣ ସୁଟ୍ ଟାଇ ପିନ୍ଧା ଲୋକ ଏ ଭିତରେ ଆସି ତାଙ୍କୁ ଘେରି ବସିଯାଇଚନ୍ତି, ସେମାନଙ୍କର କୃତକୃତ୍ୟ ହାବଭାବ କହୁଚି ଦୁବାଇରୁ ଆସିଥିବା ଏ ଅତିଥି ଜଣେ ସଫଳ, ସମ୍ମାନାସ୍ପଦ ବ୍ୟବସାୟୀ । ଗତଥର ସେ ଶୋରୁମ୍‌କୁ ଆସିଥିବା ବେଳେ ଫାତିମା ଅନ୍ୟ ଯେ କୌଣସି ଅତିଥିଙ୍କ ଭଳି ହିଁ ତାଙ୍କୁ ସମ୍ମାନ ଦେଇଥିଲା । ଚେହେରା ଦେଖିଲେ ମନେହେବ ସେ ଏ ସହରର ଯେ କୌଣସି ଶିକ୍ଷିତ ସମ୍ପନ୍ନ ବ୍ୟକ୍ତି ହୋଇପାରିଥାନ୍ତି । ମୁଣ୍ଡବାଳ ପତଳା ପଡ଼ିଆସି କପାଳ ମୁଣ୍ଡ ମଝାମଝି ଯାଏଁ ଚାଲିଗଲାଣି, ମୋଟା ନହେଲେ ବି ସାଧାରଣ ସ୍ୱାସ୍ଥ୍ୟରୁ ଅଧିକ ବୋଲି କୁହାଯିବ । ପରିଚୟର ସେଭଳି ଗୁରୁତ୍ୱ ଥିବ ନିଶ୍ଚୟ, ନହେଲେ ହୋଟେଲ କର୍ତ୍ତୃପକ୍ଷ ଏତେ ଉତ୍ସାହ ଦେଖାନ୍ତେନି ।

ଥାକ ମାନଙ୍କରେ ତରତର ହାତରେ ଜିନିଷ ସଜାଡୁଥିବା ବେଳେ ନିଜେ ପଛରୁ ତାଙ୍କର ଅଭିବାଦନ ଶୁଣିଲା ଫାତିମା । ସଲାମ ଆଦାନ ପ୍ରଦାନ ପରେ ସେ କହୁଥିଲେ, "ମୁଁ ହବିବ୍ ମହମଦ୍ । ଗତ ମାସ ଦେଖାହେଇଥିଲା ଆପଣଙ୍କର ମନେ ଥିବ କି ନାହିଁ ।"

ପ୍ରତ୍ୟୁତ୍ତରରେ ପୁଣିଥରେ ନିଜ କପାଳ ପାଖକୁ ହାତପାପୁଲି ନେଇ ଫାତିମା କହିଲା, "ଆପଣଙ୍କୁ ଭୁଲିବି କେମିତି ? ଏତେ ଆଗ୍ରହୀ ଗ୍ରାହକ କ'ଣ ଆମକୁ ସବୁଦିନେ ମିଳନ୍ତି ? ଘରେ ଡ୍ରେସ୍ ସବୁ ପସନ୍ଦ ହେଲା ତ ?"

ଭଦ୍ରଲୋକ ଯାହା ଉତ୍ତର ଦେଲେ ଫାତିମାର ନିଃଶ୍ୱାସ ବନ୍ଦ ହେଇଗଲା ପ୍ରାୟ । ଏଠାକାର ଛୁଞ୍ଚିକାମ ଓ ଜରଦୋଜି ଜରିକାମର ଲୁଗାମାନ ତାଙ୍କ ପରିବାରରେ ପୁଣି ବନ୍ଧୁଗହଣରେ ଏତେ ପସନ୍ଦ ହେଇଚି ଯେ ସେ ଏଥର ଏଠୁ ବେଶ୍ କିଛି ଜିନିଷ ସେ ଦୁବାଇକୁ ନେଇଯିବାକୁ ଚାହାନ୍ତି ।

ଫାତିମା ନିଜ ଚାରିପାଖର ବଢ଼େଇ ଚଢ଼େଇ ଡିସ୍‌ପ୍ଲେ ହେଇଥିବା ସବୁ ଲୁଗା ଓ ଜିନିଷ ସବୁକୁ ଚାହିଁଲା । ଦୋଷ ମାନିଯିବା ଭଳି କହିଲା, "ଆମ ଶୋରୁମ୍‌ର ଆଙ୍କା ରୋନୋଭେସନ ଚାଲିଚି । ଯାହା ଗତଥର ଆପଣ ଦେଖିଯାଇଥିଲେ ତା'ଠୁ ବେଶୀ କିଛି ଅଛି ବୋଲି ମୁଁ କହିପାରୁନି ।"

ଭଦ୍ରଲୋକ ତା' ଆଳକୁ ସତେ କି ପୂର୍ବରୁ ପଢ଼ିନେଇଥିଲେ । କହିଲେ, "ଆପଣଙ୍କ

ଶୋରୁମ୍‌ର ପୁରୁଣା ଦିନ କଥା ମୁଁ ଜାଣିଛି । ବନ୍ଦ ହେଇଯାଇଥିଲା ମଝିରେ, ଆପଣ ପୁଣି ପୁନରୁଦ୍ଧାର ଚେଷ୍ଟାରେ ଲାଗିଚନ୍ତି । ମୋର ଇଚ୍ଛା ଯେ ଏଠା ମାର୍ଫତରେ ବଡ଼ ରକମର ଅର୍ଡ଼ର ନେଇ ଦୁବାଇକୁ କିଛି ଏକ୍ସପୋର୍ଟ କରାଯାଉ ।"

ଫାତିମାର ସମ୍ମୋହିତ ଭାବ କଟିବାପୂର୍ବରୁ ସେ କହିଲେ ଯେ ଏସବୁ ଲାଗି ଯାହା କାଗଜପତ୍ର, ସରକାରୀ ଅନୁମତି ଆଦି ଦରକାର ହୁଏ ସେଇଥିରେ ଲାଗିଚନ୍ତି ସେ ଗତଥର ଏଠିକି ଆସିଲାବେଳୁ । ହୋଟେଲ କର୍ତ୍ତୃପକ୍ଷ ଏ ସମ୍ବନ୍ଧରେ ଖୁବ୍ ଉତ୍ସାହୀ । ତାଙ୍କରି ପରାମର୍ଶରେ ଫାତିମା ସହିତ ବ୍ୟାପାରଟିର ସବୁ ଦିଗରୁ ଆଲୋଚନା କରିନେବାକୁ ଭଦ୍ରଲୋକ ଚାହୁଁଚନ୍ତି ।

ତା'ପରେ ଅନେକସମୟ ଧରି ଫାତିମାର କେବଳ ଶୁଣିବା ପାଳି । ମନ ଭିତରକୁ ଯାହା ଜୁଟୁଥିଲା ସଜେଇ ବାଗେଇ କହିବାକୁ ତା'ର ବଳ ପାଉନଥିଲା । ଖାଲି କହୁଥିଲା, "ମୋତେ କିଛି ସମୟ ଦିଅନ୍ତୁ ଆଜ୍ଞା । ଭଲ କରି ଡିଜାଇନ ମାନ ପ୍ରସ୍ତୁତ କରି ଦେଇଦେବି ।" ଭଦ୍ରଲୋକ କିନ୍ତୁ ଆଖିକୁ ସୁନ୍ଦର ଦିଶୁଥିବା ସାଦା ସିଧା କେତେଟା ଜିନିଷ ବାଛି କାମ ଆରମ୍ଭ କରିଦେବାକୁ ଚାହୁଁଥିଲେ । ପକେଟ୍ ଡାଏରୀ ଖଣ୍ଡକରେ ଟିପିନେଉଥିଲେ କେଉଁ ଜିନିଷର କେତେଟା ରଙ୍ଗ, କେତେଟା ସଂଖ୍ୟା ତାଙ୍କର ଖୁବ୍ ଶିଘ୍ର ଦରକାର । ଆଉ ତାକୁ କେମିତି କୋଉଠୁ ଆଣି ତିଆରି କରିଦେବ ସେକଥା ମନରେ ଧନ୍ଦି ହେଲାବେଳକୁ ହୋଟେଲ ମ୍ୟାନେଜର ଆସି କବାଟ ପାଖେ ଠିଆହେଲେ, ହବିବ୍ ସାହାବଙ୍କୁ ପଚାରିଲେ, "ଆଜ୍ଞା ଡାଇନିଂ ହଲରେ ଖାଇବେ ନା ରୁମ୍‌କୁ ନେଇ ଖାଇବା ପରଷା ଯିବ ?"

ଆଉ ତା'ପରେ ଆସ୍ତେକରି ଫାତିମା କାନରେ କହିଲେ, "ତମକୁ ଟିକେ ଶିଘ୍ର ଘରକୁ ଯିବାକୁ ହେବ ଝିଅ । ତମଘରୁ ଖବର ଆସିଚି, ବୋଧେ ତମ ଦାଦୀମା'ଙ୍କ ଦେହ ଟିକେ ଭଲ ନାହିଁ ।"

ଫାତିମା ଉଠିପଡ଼ିଲା, ସତେକି ନିଃଶ୍ୱାସ ମାରିବାକୁ ତାକୁ ତର ମିଳିଲା । କଥା ଦେଲା ଭଦ୍ରଲୋକଙ୍କୁ, ସନ୍ଧ୍ୟା ସୁଦ୍ଧା ମୋଟାମୋଟି ତାଲିକାଟାଏ ସେ ତିଆରି କରିଦେବ ।

ବାହାରି ଯାଉ ଯାଉ ହବିବ୍ କହୁଥିଲେ ହୋ ହୋ ହସ ମଝିରୁ, "ତାଲିକା ଖାଲି ନୁହେଁ, ଆମର କାମ ଆରମ୍ଭ ହେଇଯିବା ଦରକାର । ଆଜି ସଂଧ୍ୟାରୁ ନହେଲେ ଅନ୍ତତଃ କାଲି ସକାଳୁ ।"

ହୋଟେଲରୁ ବାହାରିଲା ବେଳକୁ ତା' ଲାଗି ଅଟୋଟିଏ ଡକାଇ କଡ଼ ହେଜ୍ ପାଖରେ ଛିଡ଼ା କରାଇଦେଇଥିଲେ ମ୍ୟାନେଜର । ନିକଟରେ ଘଟିଥିବା କଥାସବୁର ହାଉଯାଉ ଭିତରୁ ତା' ମୁଣ୍ଡ ବାହାରିପାରୁନଥାଏ । ତଥାପି ଫାତିମାର ମନେହେଲା, ଦାଦୀମା' ସତରେ ସିରିୟସ ହେଇପଡ଼ିଲା କି ଆଉ । ନା ଜରୀନା ଏକୁଟିଆ ଅଛି ବୋଲି ଛାନିଆଁ ହେଇପଡ଼ିଲା ? ତା'ର

ଆଜିକର କଲେଜ କ୍ଲାସ୍ ମିସ୍ ହେଇଯିବ ବୋଲି ଜିଦିରେ ଫତିମାକୁ ଡକାଇଲା ?

ହେଲେ ଅଟୋରେ ବସି ରାସ୍ତା ଧରୁଧରୁ ତା'ର ମନେହେଲା, ସତରେ କ'ଣ ଦାଦୀମା'ର କିଛି ହେଇଗଲା ନା କ'ଣ ? ସକାଳୁ ତା'ର ପୁରୁଣା ଖୋଇ ବାହାରିଥିଲା ସତ, କନ୍ଦା ବାହୁନା କରି ନଖାଇ ନପିଇ ମୁହଁ ଫୁଲେଇଥିଲା ଅକାରଣ । ହେଲେ ଏଡ଼େ ଟାଣୁଆ ମଣିଷଟିଏ, ଏତେ ଘାଟୀ ବିପଦ ପାରି ହେଇ ସାତ ସାନ ମାନଙ୍କୁ ହାତ ଧରି ପାରିକରାଉଚି । ତା'ର ଗୋଟେ ହେବ କ'ଣ ?

ପୁଣି ବଡ଼ ରାସ୍ତାରୁ ଗଳି ଆଡ଼କୁ ମୁହାଁଇଲା ବେଳକୁ ତା' ଛାତି କାଇଁକି ଅତଡ଼ା ଖସିଲା ଭଳି ଦବିଯାଉଥିଲା, ବାଟରେ ପାନ ଦୋକାନ ଛାଡ଼ି ଆସିଲା, ବନାରସୀ ମିଠା ପତ୍ତି ନେଇଯିବ ବୋଲି କହିଥିଲା ଦାଦୀମା' ଲାଗି ।

ଏଥର ଛାତିର ପ୍ରତି ଦୁକୁଦୁକୁ ଦାଉଁ ଦାଉଁ ଶୁଭୁଥିଲା ନିଜ କାନକୁ । ନିଜକୁ କହିଲା ସେ, ସତରେ ବୋଧେ ଦାଦୀମା' ଆଉ ନାହିଁ ।

ଘରେ ପହଞ୍ଚିଲା ବେଳକୁ ସାଇ ପଡ଼ିଶାର କିଛି ଲୋକେ ଆସି ଜମା ହେଇଯାଇଥିଲେ । ଦାଦୀମା' ଖଟରେ ଠିକ୍ ସେମିତି ଶୋଇଥିଲେ ଯେମିତି ଫାତିମା ତାଙ୍କୁ ଛାଡ଼ିଯାଇଥିଲା । କଡ଼ମାଡ଼ି ସାନପିଲାଟିଏ ଜାକିଜୁକି ହେଇ ଶୋଇଲାଭଳି, ତକିଆରେ ଅଧେ ମୁହଁ ଲୁଚେଇ । କାହାଉପରେ ରୁଷିଥିଲାଭଳି ।

# ପୁଣି ପାହେ ଅନ୍ଧାର ରାତିଟିଏ

ମୁଣ୍ଡ ଉପରୁ ସଦ୍ୟ ଉଠିଯାଇଥିବା ଆଶ୍ରୟର ଉଷ୍ମମ୍ ପାପୁଲିଟି କଥା ଫାତିମା ଏବେ ମନକୁ ଆଣୁନଥିଲା । ଘଟିଯାଇଛି ଯାହା, ମାନିନେବାକୁ ହେବ ପୁଣିଥରେ ଜୀବନ ଦେଇଥିବା ସେ ସ୍ରେଟକୁ । ନିଜ ଗୋଡ଼କୁ ଟଳମଳ ହେବାକୁ ଦେଲେ ସମ୍ଭାଳିବାକୁ ଏବେ କିଏ ଅଛି ? ସାଇପଡ଼ିଶାଙ୍କ ଯିବା ଆସିବା, ବନ୍ଧୁ ବାନ୍ଧବଙ୍କ ଶୋକ ସଂଖୁଳା, ପରିବାରରେ ମୃତ୍ୟୁର ବିଧିବିଧାନ ଚାଲିଥିବା ଭିତରେ ନିଜକୁ ବୋଧ ଦେଇ ନିବୁଜ କରି ରଖିଥିବାକୁ ହେବ । ଆଉରି ପରସ୍ତେ ଝାଞ୍ଜି ମାଡ଼ ପଡ଼ିଲାଣି ବୋଲି ପୁଣିଥରେ ଝାଉଁଳି ନଯାଉ ପତ୍ର କଅଁଳି ଆସୁଥିବା ଡାଳଟି ।

କଥା ଦେଇଥିବା ମୁତାବକ ଠିକ୍ ପରଦିନ ଦୁବାଇର ଗ୍ରାହକଙ୍କ କାମ ଅବଶ୍ୟ ଆରମ୍ଭ ହୋଇପାରିନଥିଲା । ତଥାପି ଫାତିମା ବେଶୀ ସମୟ ହାତରୁ ଚାଲିଯିବାକୁ ଦେଲାନାହିଁ, କାହିଁକିନା ସେ ଜାଣିଥିଲା, ଏଠି ନହେଇପାରିଲେ ଆଉ କୋଉଠୁ ବରାଦ ମୁତାବକ ଜିନିଷ ତିଆରି କରେଇନେବାକୁ ସେଭଳି ବ୍ୟବସାୟୀ ଲାଗି ଅସମ୍ଭବ ହେବନି । ଘର ବି ଖାଲିହେଇଥିବା ଜାଗାଟିକୁ ଦିନ କେଇଟା ଭିତରେ ଆରେଇଯିବାକୁ ଆରମ୍ଭ କରିଥିଲା । ସମୟ ଦେଖି ଫାତିମା ଘରୁ ବାହାରି ବଡ଼ ରାସ୍ତା ଉପରୁ ଅଟୋଟିଏ ଧରିଲା ଶାହନଶା ହୋଟେଲକୁ ।

ଯିବା ବାଟଯାକ ତା' ମୁଣ୍ଡକୁ ଖାଲି ଗୋଟିଏ ଚିନ୍ତା ଘାରିଥାଏ, ବ୍ୟବସାୟୀ ଯଦି ହୋଟେଲ ଛାଡ଼ିସାରିଥିବେ ? ପହଞ୍ଚିଲା ବେଳକୁ ଯଦି ମ୍ୟାନେଜରଙ୍କଠାରୁ ସେ ଶୁଣେ ଆଉ କେଉଁ ଦୋକାନୀ ପାଖରେ ସେ ତାଙ୍କର ଦରକାର ମୁତାବିକ ଜିନିଷ ଅର୍ଡ଼ର ଦେଇସାରିଲେଣି ବୋଲି ? ସେଦିନ ଘଣ୍ଟା କେଇଟା ଭିତରେ ସେ ଯେତେ ନକ୍ସା ତିଆରି କରିପକେଇଥିଲା, ଶାହନଶାର ଛୋଟିଆ ଶୋରୁମ୍‌ଟିକୁ ବଢ଼େଇବାର, କେତେପ୍ରକାର ହାତ କାରିଗରୀ ଜିନିଷ ତିଆରି କରି ଅଜଣା କେଉଁ ଦେଶର ଗ୍ରାହକଙ୍କୁ ଯୋଗାଇଦେବାର, ସେସବୁ କ'ଣ ଲିଭେଇଦେବାକୁ ହେବ ? ଏଥି ପୂର୍ବର ଅନେକ ମନଗଢ଼ା ଛବି ଭଳି ମୁହଁପୋଚି ଭୁଲିଯିବାକୁ ହେବ ?

ହୋଟେଲରେ ପହଞ୍ଚିଲାବେଳକୁ ରଘୁବୀର ବାବୁ ବୁଝା ନ ପଡ଼ିଲାପରି ଅନେଇଲେ

ତାକୁ, ଗଳା ନରମେଇ କହିଲେ, "ଘରେ ସବୁ ଭଲ ତ ଝିଅ ? ଏମିତି ଅବସ୍ଥାରେ ଘରଛାଡ଼ି ବାହାରିଆସିପାରିଲ ଯାହେଉ ।"

ଫାତିମା ଉତ୍ତରରେ ଓଲଟି ପଚାରିପକେଇଲା, "ମଉସା, କ'ଣ ଚାଲିଗଲେଣି ସେ ବ୍ୟବସାୟୀ ?"

ତା' ଅଧୈର୍ଯ୍ୟକୁ ଅଦେଖା କରିଦେଇ ମ୍ୟାନେଜର କହିଲେ, "କାମ କଥା ଏବେ ଛାଡ଼ ବେଟୀ । ତମ ଘର କଥା କହ । ମୁଁ ନିଜେ ଯାଇଥାନ୍ତି ଯେ..."

ଫାତିମାର ହାଲୁକ ଶୁଖିଯାଉଥିଲା । ପଚାରିଲା, "ଏଠୁ ଫେରିଗଲେଣି ତା'ହେଲେ ସେ ହବିବ ସାହେବ ?"

ପୂର୍ବଭଳି ସହଜ ଗଳାରେ ମ୍ୟାନେଜର ଉତ୍ତର ଦେଲେ, "ହବିବ ସାହେବ ତ ଚାଲିଗଲେଣି ଝିଅ । ହେଲେ ଚିନ୍ତା କରିବାର କିଛି ନାହିଁ । ଅର୍ଡ଼ର ଦେଇଯାଇଚନ୍ତି, ଆମେ ତାଙ୍କ କାମ ପୂରା କରିଦେବାନି ମାସକ ଭିତରେ ।"

ଲମ୍ବା ନିଃଶ୍ୱାସଟାଏ ମଝିରୁ ଫାତିମା କହିଲା, "କ'ଣ କହୁଚନ୍ତି ମଉସା ! ତା'ହେଲେ ଦୁବାଇ ଲାଗି ପୂରା ଅର୍ଡ଼ରଟା ମିଳିଯାଇଚି ସତରେ ?"

ଏଥର ଟିକେ ବୁଝିପାରୁଥିଲା ଭଳି ସେ କହିଲେ, "ତମେ ଏଠାକାର କାମକୁ ଏତେ କାହିଁକି ଦେହକୁ ନଉଚ ଝିଅ ? ସେସବୁ ହେଇଯିବନି । ବିଲକିସ୍ ତମ ଘରକୁ ଯାଇ ଦେଖେଇ ଆସିବ ସାମ୍ପଲ ସବୁ । ତମେ ଦେଖାଚାହାଁ କରିଦେବ ମଝିମଝିରେ ଆସି । ଯାଅ ତମେ ଘରକୁ ଯାଅ, ଏବେ ସାନ ଭାଇ ଭଉଣୀଙ୍କ ସାହା ହୁଅ ।"

ତେବେ ଘରକୁ ନୁହେଁ, ଏ ଭିତରେ ଆପଣାର ପାଲଟିଯାଇଥିବା ହୋଟେଲ ଶୋରୁମ୍‌କୁ ହିଁ ଯିବାକୁ ଫାତିମାର ତର ସହୁନଥିଲା । ମ୍ୟାନେଜରଙ୍କୁ ଅନେଇ କହିଲା, "ମୁଁ କିଛିବେଳ ଖାଲି ଟିକିଏ ତୁନି ହେଇ ବସିବି ମଉସା । ଘରେ ଜମା ମନ ଲାଗୁନି, ରହିବାକୁ ଇଚ୍ଛା ହେଉନି ।" କହୁକହୁ ଅଧାକଥାରେ ରୁନ୍ଧିଯାଇଥିଲା ସେ ।

ମ୍ୟାନେଜର ସାନ୍ତ୍ୱନାରେ କ'ଣ ଦି'ପଦ କହିଲେ । ବଡ଼ ପାଟିରେ ଡାକ ଦେଲେ ହୋଟେଲ ଟୋକାକୁ ଶୋରୁମ୍ ଖୋଲିବା ଲାଗି । ଫାତିମା ଚାଲିଯାଇ ସିଧା ନିଜ କଣ ଚଉକିଟିରେ ବସିଲା । ଟେବୁଲ୍ ଉପର କାଗଜ ଖୋଲାଇ ଗତଥର ବ୍ୟବସାୟୀଙ୍କ ସହ ଆଲୋଚନା ହେଲାବେଳେ ଟିପିଥିବା କଥାମାନ, ଗାରେଇଥିବା ଚିତ୍ରମାନ ଦେଖିବସିଲା । ଅର୍ଡ଼ର ଚିଠାରୁ ବୁଝିଦେଖୁଥିଲା କ'ଣ ସବୁ ତାକୁ କରିବାକୁ ଅଛି । ମନେ ମନେ ତିଆରି କରିନେଲା କାମର ତାଲିକା ।

ଆଉ ଏତିକି ବେଳକୁ ନାହିଁ ନଥିବା ବେଗରେ ଝଡ଼ଭଳି ଧସେଇପଶିଲା ମନଭିତର

ଦୁଆର ସେପାଖେ ରୋକି ରଖିଥିବା ଛବିଟି । ଦୁର୍ବଳ ପତଳା ହେଇ ବୁଢ଼ୀଟିଏର । ଜେଜେମା' ତାର । ପିଲାଟିଦିନୁ, ହେତୁ ପାଇବା କାଳୁ ଯିଏ ତା' ଜୀବନର ଅଂଶ ହେଇ ରହିଥିଲା । ଦାଦୀମା' ହିଁ ଥିଲା ଜଣେ ବୋଲି ମଣିଷ ଯାହା ଉପରେ ଭରା ଦେଇ ପାରୁଥିଲା ଫାତିମା ଅନାୟାସ, ବିନା ଭୟରେ, ବିନା ଦ୍ୱିଧାରେ । ନିଜ ଓଜନରୁ କିଛି ଲଦିଦେଇହେଉଥିଲା ତା' ଉପରେ, କେବେ ସେଥିକି ନାହିଁ କରୁନଥିଲା ସେଇ ପିଠି ନଇଁ ଯାଇଥିବା ବୁଢ଼ୀଟି ।

ସେଦିନ କ'ଣ ଭାବୁଥିଲା ଦାଦୀମା' ସଂସାରରୁ ଚାଲିଯିବା ବେଳେ ? ଏକୁଟିଆ ହେଇପଡ଼ିଥିଲା କି ସତରେ ? ଏକା ଏକା ବାହୁନା ସାରି ମୁହଁ ଢାଙ୍କି ଶୋଇଗଲା ବେଳେ ? ଜୀବନର ଶେଷ କ୍ଷଣମାନ କାଟିଲାବେଳେ ଦୋଷ ଦେଉଥିଲା କି ଫାତିମାକୁ ? ଘରର ଆସବାବ ଖଣ୍ଡେ ଭଳି ତାକୁ ବ୍ୟବହାର କରିଚାଲିଥିବା ନିର୍ଦ୍ଦୟ ନାତିନାତୁଣୀ ମାନଙ୍କୁ ଦାୟୀ କରୁଥିଲା ତା' ଦୁଃଖ ଲାଗି ? ତା'ର ଦୁଇ ପୀଢ଼ୀ ତଳର ପିଲାମାନେ, ଯିଏ ଭାବୁଥିଲେ ବିଧିର ନିଷ୍ଠୁରତା ଭୋଗିବାକୁ ହେଉଚି ବୋଲି ତାଙ୍କର ବି ଅଧିକାର ଅଛି ନିଷ୍ଠୁର ହେବାଲାଗି, କେବଳ ନିଜ କଥା ଭାବିବା ଲାଗି । ସେଦିନ ପାଖରେ ବସି ଦି'ପଦ ସୁଖଦୁଃଖ ହେବାକୁ ଲୋଡୁଥିଲା ଦାଦୀମା' । ଦାଦୀମା'ର କେବେହେଲେ ସମୟ ଅଭାବ ନଥାଏ ଫାତିମା ପାଇଁ । ଅମାପ ସମୟ ଥାଏ ତା' ପାଖେ ଦୁନିଆଁ ଆଖିରେ ହାରିଯାଇଥିବା ବିଚାରୀ ନାତୁଣୀଟି ଲାଗି ।

କେତେବେଳୁ ବିଲକିସ୍ ବେଗମ୍ ପାଖରେ ଆସି ଛିଡ଼ା ହେଇଥିଲେ । ଫାତିମାର ପିଠି ଆଉଁସି ଦେଇ ବୋଧ ଦେଲେ, "ହେଲା ବେଟୀ । କାନ୍ଦ ନାଇଁ । ତାଙ୍କର ତ ବୟସ ହେଇଯାଇଥିଲା, ଯାଇଥାନ୍ତେ, ଆଜି ନହେଲେ କାଲି । ତମକୁ ତ ଅଣ୍ଟାଭିଡ଼ି ଚାଲିବାକୁ ହେବ ନା ନାଇଁ ? ସେଥିରେ ତାଙ୍କ ଆତ୍ମା ବେଶୀ ସନ୍ତୋଷ ପାଇବ ନା ତମେ ହାରିଯାଇ ପଡ଼ିଥିଲେ ?"

କାମରେ ଲାଗିଯାଇଥିଲା ଫାତିମା । ସତକଥା । ଦାଦୀମା' ଜଣେ ମଣିଷ ଥିଲା ଯିଏ ଗର୍ବ କରିଥାନ୍ତା ତା' କାମରେ, ସଫଳତାର । ଘରକୁ ଫେରି କରିଥିବା କାମ କଥା ଖୁସିରେ କାହା ଆଗରେ କହିଲାଭଳି ସେଇ ତ ଜଣେ ଥିଲା ।

ବିଲିକିସ୍ ବୁଝାଇ କହୁଚନ୍ତି, "ଉଠ, ଲାଗିପଡ଼ ଝିଅ । ଆସିଥିବା ଏ ସୁଯୋଗ ଆଉ ହାତଛଡ଼ା କରିବାର ନୁହେଁ ।"

ଖରା ନଇଁବା ପୂର୍ବରୁ ଘରକୁ ଫେରିବାକୁ ହେବ । ଚାଲି ଚାଲି ଯାଇ ଘରେ ପହଞ୍ଚିଲା ବେଳକୁ ବାରଣ୍ଡା ଉପରେ ବାପାଙ୍କ ଚଉକିରେ ଜମେଇ ବସିଥାଆନ୍ତି ଶାରୁଖ୍ ମିଆଁ । ପାଖରେ ଗୋଟାଏ ଷ୍ଟୁଲ୍ ଉପରେ ବସି ରେହମାନ ଶୁଣାଉଥାଏ ତା'ର ଆଜିଦିନର କୀର୍ତ୍ତି, ଗ୍ୟାସ୍ ପୀଡ଼ିତଙ୍କ ଦାବୀ ବିଷୟ ନେଇ ତାତିଲା ସ୍ୱରରେ ଗାଳିଗୁଲଜ କରୁଥାଏ କୋଉ ସବୁ ଲୋକଙ୍କୁ । ଶାରୁଖ୍ ମୁଣ୍ଡ ଟୁଙ୍ଗାରି ପାନ ଚୋବାଉଥାନ୍ତି, ଆଗ ଅପେକ୍ଷା ବେଶୀ ଦମ୍ଭିଲା ସ୍ୱରରେ ଆଉରି

ଦି'ପଦ ଲେଖା ଗାଳି ଯୋଡୁଥାନ୍ତି ତା' କଥାରେ । ଫାତିମାକୁ ଦେଖୁ ଦେଖୁ ପଚାରିଲେ, "ଆରେ, ତମେ ଏତେ ବେଳକୁ ଫେରୁଚ କୁଆଡୁ ? ସେଇ ହୋଟେଲରୁ ?"

କଥାର ଜବାବ ନଦେଇ, କେବଳ ସାମାନ୍ୟ ଭାବେ ସଲାମର ଉତ୍ତର ଦେଇ ଫାତିମା ଭିତରକୁ ଗଲା । ଜରୀନା ରୋଷଘରେ । ଅମ୍ମି ତା'ର ତୁନିହେଇ ବସିଚି । ରେହମାନର ନେତାଗିରୀର ବାହସ୍ଫୋଟ, ସମାଜର ଗ୍ରେଟ ତସ୍କରମାନଙ୍କ ଉଦ୍ଦେଶ୍ୟରେ ଗାଳି ଗୁଲଜ ସବୁ ଦାଦୀମା' ଥିଲେ ଟିକିଏ ଭିନ୍ନ ଶୁଭିଥାନ୍ତା ଆଜି । କିଛିବେଳ ନଯାଉଣୁ ସେ ଦି'ପଦ କହିସାରିଥାନ୍ତେ, "ପରକୁ ଗାଳି ଦେଇ ଦେଇ ଖାଲି ହାଏ ହାଏ କହି କାହିଁକି ସମୟ ନଷ୍ଟ କରୁଚରେ ରେହମାନ ? ନିଜକୁ ଚାହାଁ ପହିଲେ ବାପ । ଆଜି କାଟିବାକୁ ଥିବା ଦିନକୁ ଚାହାଁ ।"

ରାତିବେଳେ ଭାରି ନିଛାଟିଆ ଲାଗେ ଘରଟା ଏଣିକି । ଜରୀନାର କଲେଜରେ ସାଙ୍ଗମେଳରେ ଦିନଟା କଟେ, ସଞ୍ଜବେଳେ ବହିପତ୍ର ନେଇ ବସେ କିଛିବେଳ । ରୋଷେଇ ଖିଆପିଆ ସାରିଦେଇ ତଳେ ବିଛଣା ପାରି ଶୋଇପଡ଼ନ୍ତି ଦି'ଭଉଣୀ । ଟିକିଏ ବେଳ ନ ଯାଉଣୁ ଜରୀନାର ଗହୀର ନିଃଶ୍ୱାସ ଶୁଭେ । ଫାତିମାର ଆଖିରେ ନିଦ ନଥାଏ । ପାଖରେ ଜେଜେମା'ର ଖଟରେ ଆଜିକାଲି ମା' ଶୁଏ, ରାତିସାରା ତା' ଆଖିକି ନିଦ ଏଇ ଆସେ ପୁଣି ଏଇ ଯାଏ । ନିଦ ଭାଙ୍ଗିଲାକ୍ଷଣି ତା' କଥା ଶୁଭେ, ଅତୀତରେ ଘଟିଯାଇଥିବା କେଉଁ ସବୁ ଘଟଣା ଭିତର ଦେଇ ଅମ୍ମି ତା' ମନଭିତରେ ଯାଉଥାଏ ବୋଧେ, ଯିଏ ତା' ସ୍ମୃତିରେ ଦେଖାଦେଲା ତାଆରି ସାଙ୍ଗେ କଥା କହୁଥାଏ ।

ସେଇ ଚମ ହାଡ଼ ଦି'ଖଣ୍ଡି ରହିଥିବା ନିରୀମାଖି ବୁଢ଼ୀଟିଏ ହିଁ ବାକି ରହିଥିଲା ତା' ଜୀବନରେ । ନିଛାଟିଆପଣ ବଳିପଡ଼ିଲା ବେଳେ ଯାହାଠୁ ବଳ କୁଳେଇ ହେଉଥିଲା । କାହାକୁ କହିହେଉନଥିବା କଥା ବି କହିହେଉଥିଲା । ଜେଜେମା' କୋଳକୁ ଲାଗିଯାଇ ଫାତିମା କହେ, "ମୋ' ସୋହରର ମୁଁ ପସନ୍ଦ ମାଫିକେ ହେଇପାରିଲିନି । ଅବ୍ବୁଙ୍କ ଭଳି ମୋତେ ବି ଶେର ଶାୟରୀ ଟିକେ ଶିଖେଇ ନଥାନ୍ତୁ ?" ଦାଦୀମା' କିନ୍ତୁ ଏସବୁରେ ନିହାତି ପୁରୁଣାକାଳିଆ । ଜିଭ କାମୁଡ଼ି କହେ, "ଛି ଛି, ସେସବୁ ପୁରୁଷ ଲୋକଙ୍କ ସଉକ । ମାନ ମହତ ଥିଲା ଝିଅ କିଏ ଶାୟରୀ କଲାଣି, ଗାନା ବାଜଣା କଲାଣି ? ସେଇ ଫେଚକାମୀ ତ ନେଇ ବୁଡେଇଦିଏ କେଡ଼େ କେଡ଼େ ପ୍ରତାପୀ ବଂଶଙ୍କୁ । ଭଲଘର ଝିଅ ସେଥିରେ ସବୁ ପଶିବେ ଯଦି ପୁରୁଷଙ୍କୁ ବାଟକୁ ଆଣିବ କିଏ ? ଭଲ କଲୁ ସେ ଶାୟର ଟୋକାକୁ ଛାଡ଼ିଲୁ । ସିନେମା ଫିନେମା ଗୋଟାଏ କ'ଣ ? ସେସବୁ ଧର୍ମଛଡ଼ା କାମ ।"

କେବେ ମନ ମାରି ବସିଥିବାର ଦେଖିଲେ ପିଠି ଆଉଁସିଦେଇ କହେ ଦାଦୀମା', "ଝିଅ ପିଲାର ଦେହ କେବେ ଅପବିତ୍ର ହୁଏନି ବେଟୀ । ଆଲ୍ଲାଙ୍କୁ ଡାକି ଯଦି ଦୁହେଁ ଦୁହିଁଙ୍କୁ କବୁଲ

କରିଚ ତେବେ ସିଏ ତୋ'ର ଥିଲା । ଯଦି ଛଡ଼ାଛଡ଼ି ହେଇଯାଇଚ ତେଣିକି ଯିଏ ଯା'ର ପୁଣି ଘର କରିବ । କିଏ କ'ଣ କହିଲା ସେସବୁ କାନରେ ଦେଏନା, ଗୁନାହ କଥା ଆଲ୍ଲା ବିଗ୍ଭର କରିବେ । ତୁ ଯେବେ କୋଉ ପୁରୁଷର ହୋଇ ନାହୁଁ, ଆଉ କାଇଁକି ଭାଳୁଚୁ ? ଯେବେ କିଏ ଜୁଟିବ, ହାତ ଧରିନେବୁ, ଘରଦ୍ୱାର କରିବୁ । ଛୁଆପିଲାର ମା' ହେବୁ । ଛାଡ଼ିଦେଲା ପୁରୁଷ ଲାଗି ଭାଳିହେଇ ଜୀବନ ବୃଥା କର ବୋଲି କୋଉଠି ଲେଖା ଅଛି ?"

ମୁଣ୍ଡରୁ ସବୁ ଅଡୁଆ ସୂତା କାଢ଼ିପକାଇ ଗ୍ଭଦର ଘୋଡ଼ି ହେଇ ଶୋଇଯାଏ ଫାତିମା । ଭାବେ, ବେଶ୍, ଆଜିକ ଜୀବନ କାଟିବାକୁ ହେବ, କାଲିକ ଲାଗି କେବଳ ଭାବିବାକୁ ହେବ, ଦାନା ଜୁଟାଇବାକୁ ହେବ ନିଜ ଲାଗି ।

କାମ କରୁକରୁ ଥକିପଡ଼ିଲେ, ବାହାରକୁ ଯାଇ ଲଢ଼ିବାକୁ ସାହସ ଉଣା ପଡ଼ିଗଲେ ବୁଝାଏ ଜେଜେମା', "ସ୍ତ୍ରୀ ଲୋକଙ୍କୁ ଆଗେଇବାକୁ କ'ଣ ସହଜରେ ଦିଅନ୍ତି ଲୋକ ? ନିଜେ ଛାତି ଟାଣ କରି, ବୁଦ୍ଧି କରି ପାଦେ ପାଦେ ଆଗେଇବାକୁ ହୁଏ ସିନା ।"

ଗପୁ ଗପୁ ଅନାୟାସ ଇତିହାସକୁ ଟାଣିଆଣେ ସେ – "ଭାବି ଦେଖିଲୁ, ଜନାନା ରାଜୁତି ବୋଲି ଏ ଦେଶରେ ରାଣୀ କମଳବତୀକୁ ସିନା ଠକେଇ ଉଣ୍ଡେଇ ନେଲେ, ତା' ନିଜ ଲୋକେ ବି ଶିରୀ ସହିପାରିଲେ ନାଇଁ । ହେଲେ ପୁଣି ଶହେ ବର୍ଷ ଗଲା ନାଇଁ ଲୋ ଝିଅ, ଜନାନା ରାଜୁତି ଫେରିଆସିଲା ଏ ମାଟିକୁ । ଗୋଟିକ ପରେ ଗୋଟିଏ ଗ୍ଭରିଗ୍ଭରି ଜଣ ବେଗମ୍ ରାଜଗାଦିରେ ବସିଲେ । ଲହୁଲୁହାଣ ମାଟିକୁ କୋଳର ପିଲାଭଳି ପାଳିଲେ ।"

ଏଠା ଦରବାରକୁ ଲାଗି ଅଧା ଜୀବନ ବିତେଇଥିବା, ସେ ଦିନମାନଙ୍କୁ ଅଙ୍ଗେ ନିଭେଇଥିବା ଦାଦୀମା'ଙ୍କ କଥା ବି କାଟନ୍ତି ବଡ଼ ପୁଅ ଫାରୁକ, ଫାତିମାର ମନ ଭିତରୁ ଉଇଁଆସେ ହଜିଲା କଥା ମାନ । ମାଆକୁ ଛିଗୁଲେଇଲା ପରି କହନ୍ତି ତା' ବାପା, "କାଇଁକି ଆଉ ସରକାର ଅମ୍ମାଙ୍କୁ ଏତେ ଟେକୁଚ ଅମ୍ମି ? ଇଂରେଜ ମାନେ ପିତୁଳା ପରି ବସେଇଥିଲେ ସେ ବେଗମ ସାହିବାମାନଙ୍କୁ । ଅସଲ ଶାସନ ଡୋରିର କେତେ ଭାଗ ଭଲା ଥିଲା ତାଙ୍କ ହାତରେ ?"

କେମିତି କେଜାଣି ଫାତିମାର ମନରେ ଅଙ୍କା ରହିଯାଇଚି ଜେଜେମା'ର କହିଲା କଥା, "ରାଜଗାଦିର ନିଶା ଅସଲରେ ପୁରୁଷ ଲୋକଙ୍କର ହିଁ ଥାଏରେ ବାପ । ସେକଥା ସତ । ସ୍ତ୍ରୀ ଲୋକେ ଗାଦିରେ ବସିଲେ ବି ହାଣ କାଟ କରି, ପର ଛୁଆଙ୍କୁ ଯୁଦ୍ଧକୁ ପଠେଇ ନିଜ ରାଜ୍ୟ ବଢ଼େଇବା କଥା ଶୁଣିଚି କିଏ ?"

ସରକାର ବେଗମ୍‌ଙ୍କ ପାଖେ ଅଳ୍ପ ବୟସଯାକ କାଟିଥିବା ଦାଦୀମା'ର ମୁହଁରୁ ଶୁଣିଚି ଫାତିମା, ଜନାନା ରାଜୁତିର ଶହେ ବର୍ଷ କାଳ ଏ ମାଟି ନିଶ୍ଚିନ୍ତରେ ନିଃଶ୍ୱାସ ମାରିଲା ।

କେବେ ସିନା ଏଠା ନଦୀର ପାଣି ରକ୍ତରେ ନାଲି ହେଇଯାଇଥିଲା, ତା'ପରେ ଆଉ ଟୋପାଏ ବୋଲି ରକ୍ତ ବହିନାହିଁ ଏ ମାଟିରେ।

ବୁଢ଼ୀଙ୍କୁ କୁଣ୍ଢେଇପକେଇ ତାଙ୍କ ଦେହରେ ମୁହଁ ଲୁଚେଇ ଫାତିମା କହେ, "ତୁ ଆଉଟିକେ ଜଓ୍ୱାନ ହେଇନଥାନ୍ତୁ ଦାଦୀମା'? ଆମେ ଦିହେଁ ଏକାଠି କାମ କରିଥାନ୍ତେ? ତୁ ଭୋପାଲ ବେଗମ ହେଇଯାଆନ୍ତୁ। ଏଇନା ଅସଲ କାମ ବେଳକୁ ବୁଢ଼ୀ କାହିଁକି ହେଲୁ କହିଲୁ?"

ଆଉ ଦିନ କେଇଟାରେ ହୁଏତ ଚାଲିଯିବ ଅମ୍ମି ବି। ସେତେବେଳେ ମନ ଉଦାସ ହେବ, କାହିଁକି ଦି'ପଦ ମା' ସାଙ୍ଗେ କଥା ହେଲିନାହିଁ ବୋଲି। ତଳେ ନିଜ ବିଛଣାରେ ଶୋଇ ଶୋଇ ମା' ସାଙ୍ଗରେ ଗପସପ ହେବାକୁ ଚେଷ୍ଟା କରେ, କିଛି ଲାଭ ହୁଏନି। ଦିଇଟା ଅଲଗା ରାସ୍ତାର ବାଟୋଇ ଭଳି ଚାଲିଥାଏ ତାଙ୍କ ମନ, କଥାବାର୍ତ୍ତା। ଫାତିମା ଆରମ୍ଭ କରେ କିଛି ପୁରୁଣା କଥା, "ଅମ୍ମି, ପିଲାଦିନେ ମୋ' ଲାଗି ଯୋଉ ଶାଗୁଆ ରଙ୍ଗର ଫ୍ରିଲ ଦିଆ ଫ୍ରକ୍ ସିଲେଇ କରିଥିଲ ତମେ, ମନେଅଛି ନା, ହାତ ତିଆରି ଲେସ୍ ଲଗାଥିଲା..."

ଜବାବ ମିଳେ, "ପିନ୍ଧୁଚୁ ସେଇଟା ନା ଚିରି ଦେଲୁଣି?"

ଅଚାନକ ଅମ୍ମିର ସ୍ମୃତି ଟିକିଏ ଉଜ୍ଜ୍ୱଳ ହୁଏ। କେତେକଥା କହିପକାଏ ସେ କୋଉ ଭୁଲିଲା ଦିନସବୁରୁ ଗୋଟେଇ ଆଣି। ସାତତାଳ ପଙ୍କ ଭିତରୁ ଛାଣିଆଣି ଖୋଲିପକାଏ ଫରୁଆର ଠିପି।

ହଉ, ଯେତିକି ମିଳୁଚି ମିଳୁ। ପଚାରେ ଫାତିମା ଏଥର, "ଅମ୍ମି, ଆଉ ଗୋଟେ କିଛି ତିଆରି କରିଦିଅନ୍ତୁନି ମୋ' ଲାଗି?"

"ତୁ ମୋତେ ସିଲେଇ କରିବାକୁ ଦେଉଚୁ କୋଉଠୁ? ଖାଲି ଖୁଣ ବାଛୁଚୁ।"

ଅମ୍ମି ହାତରେ ଆଉ ସିଲେଇ କାମ ହୁଏନାହିଁ ଆଜିକାଲି। ଆଗ ମେସିନରେ ଅନ୍ତତଃ ସିଧା ସହଜ ଜାଗା ସବୁ ସିଲେଇ କରିଦେଉଥିଲା, ଆଜିକାଲି ତା' କାମରେ କିଛି ବାଗବାଇସ ରହେନି। ମେସିନ୍ କଣକୁ ଗଲେ ତାକୁ ଦି'ଭଉଣୀ ସେଠୁ ନେଇଆସନ୍ତି, ତା' ହାତରୁ କନା କି ଛୁଞ୍ଚସୂତା ନେଇ ରଖିଦିଅନ୍ତି। ଟିକିଏ ରହି ଫାତିମା କହିଲା, "ହଉ, ସକାଳ ହେଉ ତୋତେ କନା ଦେବି, ମୋ' ଲାଗି କୁର୍ତ୍ତାଟିଏ ତିଆରି କରିଦେବୁ।"

"ଏଇନା ଦେଉନୁ, ମୁଁ କ'ଣ ମନାକରୁଚି?"

"କାଲି ସକାଳକୁ ନିଶ୍ଚେ ଦେବି। ତୋ'ଠୁ ଭଲ ଆଉ କାହାକୁ ସିଲେଇ ଆସେ? ଯେମିତି ତିଆରି କରିଦେବୁ ପିନ୍ଧିବି।"

# ହାତର ସମୟ ଖୋଜେ ନୂଆ ବାଟ

ଦୁବାଇ ଲାଗି ଜିନିଷ ସଜିଲ କରିବାରେ ଏଣିକି ସବୁ ସମୟ ଯାଉଥିଲା ଫାତିମାର । ମଝିରେ ବ୍ୟବସାୟୀ ହବିବ ଦି'ଥର ଆସିଥିଲେ । ପତ୍ନୀ ଓ ପରିବାରଙ୍କୁ ନେଇ ବି ଆସିବେ ଆରଥର ବୋଲି କହିଚନ୍ତି । ପ୍ରତିଥର ସେ କହିଥିବା ତାଲିକାରୁ ବି ଅଧିକା କିଛି, ନୂଆ ଜିନିଷ କିଛି ରଖିଦେଇଥାଏ ଫାତିମା, ତାଙ୍କ ବେଗମ୍‌ଙ୍କ ଲାଗି ଛୋଟ ବଡ଼ ଧଳା ମାଳି ଲଗା ମଖମଲ ବଟୁଆଟିଏ କିମ୍ବା ସକାଳୁଆ ଚାହାକୁ ଟି-ପଟ୍‌ରେ ଗରମ ରଖିବା ଲାଗି କମଳକନାରେ ତିଆରି ଟି-କୋଜିଟିଏ ଯହିଁରେ ମଖମଲ ଖୋଳ ଉପରେ ଗାଢ଼ ସବୁଜ ରେଶମୀ ସୂତା ଓ ମୋତିର ମୟୂର ଓ ଗଛ ଲତା ଏମ୍ବ୍ରୟଡ଼ାରୀ ହୋଇଥାଏ । ପରେପରେ ବରାଦ ଆସେ, ସେମିତି ବଟୁଆ ଓ ଟି-କୋଜି ବି ଦରକାର, ବଜାରକୁ ଛଡ଼ାଯିବ । ଫାତିମା ଭରସା ଦିଏ, ତା' ଉପର ରଙ୍ଗ ଆଉ ଅଙ୍କାଥିବା ଚିତ୍ରକୁ ନେଇ ଆପଣ ନିଶ୍ଚିନ୍ତ ରହନ୍ତୁ, ମୁଁ ନିଜେ ଗୋଟି ଗୋଟି ଠିକ୍ କରିବି ସବୁ ।

ହାତକୁ ନେଇଥିବା କାମରେ, ପୁଣି ଆହୁରି କାମର କଳ୍ପନା ଜଳ୍ପନାରେ ସମୟ ଗଡ଼ିଯାଏ । ଆଉ ବୋଝ ହୋଇ ମୁଣ୍ଡଉପରେ ସବାର ହୁଏନାହିଁ । ନିଜେ ବେପାର ବଣିଜ କଥାର ଜଟିଳ ଗଣିତ କିଛି ନ ଜାଣିଥିଲେ ବି ଆପେ ଟଙ୍କା ପଇସାର ହିସାବ କିତାବ ଆସିଯାଏ ସାମ୍ନାକୁ । ଆଖପାଖର ଲୋକେ ଦାୟିତ୍ୱ ଦେଲାବେଳେ ସମ୍ମାନ ବି ଦିଅନ୍ତି, ଓ ବେପାରରେ ହେଉଥିବା ଲାଭର ଟିକିଏ ଅଂଶ ବି ହାତକୁ ଆସି ଚମତ୍କୃତ କରିଦିଏ ତାକୁ ।

ଘରକୁ ଫେରିଲାବେଳେ ଫାତିମାର ମନେହୁଏ, ସତେକି ସେଠି ଅଚିହ୍ନା କେଇଜଣ ଏକାଠି ରହୁଚନ୍ତି । ରେହମାନ ପୂରାପୂରି ମୁରବୀ ପାଲଟିଯାଇଚି । ଶାରୁଖ୍ ମିଆଁ ଏଣିକି ଘରର ଅଧାଅଧି ମାଲିକ ଭଳି ବ୍ୟବହାର କରୁଚନ୍ତି । ରାସ୍ତାରେ ଧୀର ପାଦରେ ଚାଲିଚାଲି ବଡ଼ତାଲ୍‌ର ଗହୀର ପାଣି ଆଡ଼େ ଚାହିଁ ଚାହିଁ ସେ ଭାବୁଥିଲା, ମୁଁ ନିଜେ ଯୋଉ ଓହରି ଆସି ଘର କଣରେ ଥୁଆ ଜିନିଷଟିଏ ପରି ତୁନି ହେଇ ରହୁଚି, ତା' କ'ଣ ନିହାତି ଦରକାର ? ଏଇ କାଲି ରାତିରେ ଅମ୍ମି କହୁଥିଲା ବାହାଘର କେଇ ବର୍ଷ ପରେ ତକିଆ ଟାପୁର ମଜାରପୀରଙ୍କ କୃପାରୁ ଫାତିମାକୁ

ପାଇବାର କାହାଣୀ । ଫାତିମାକୁ ପଚାରୁଥିଲା, "ତୋର ମନେଅଛି ନା ଝିଅ, ସେଇ ଘର କଣ ବଖରାରେ ଜନ୍ମ ହେଇଥିଲୁ ତୁ ?" ଆଖି ପାଉନଥିବା ବଡ଼ତାଲ୍‌ର ଆରପାରିକି ଅନେଇ ଫାତିମା ଭାବୁଥିଲା, ଆଜିକାଲି ବାକ୍ସପତ୍ର ପୁରୁଣା ଆସବାବ ଭର୍ତ୍ତିହେଇ ରହୁଥିବା ସେଇ ଛୋଟିଆ କୋଠରୀ ଭିତରେ କେବେ ପ୍ରଥମ ଆଲୁଅ ପଡ଼ିଥିଲା ମୋ' ଦେହରେ ? ଧାଈ ମୋତେ ମା' ଦେହରୁ ନେଇ ଗାଧୋଇ ଦେଇଥିବ, ଆଗଣାର କୂଅା ପାଣି ଗରମ କରି ଦେଇଥିବେ ଜେଜେମା' କି ପିଇସୀ । ମୋରି ସ୍ୱରରେ ଦୁଲୁକି ଉଠିଥିବ ଏ ଘର ।

ଘରେ ପହଞ୍ଚିଲା ବେଳକୁ ମା' ଏବେବି ସକାଳୁ ଧରେଇଦେଇଥିବା କନାଟିକି ନେଇ କଣଗୋଟେ ସିଲେଇ କରୁଚି ମେସିନ୍ କଣରେ ବସି । ତାକୁ ପାଖରେ ବସି ଗେହ୍ଲାରେ କୁଣ୍ଢେଇ ଧରି ଫାତିମା କହିଲା, "ଦିନସାରା ବସି ଏତେ କାମ କରିବା କି ଦରକାର ଅମ୍ମି ?"

ଅମ୍ମି ପଚାରିଲା, "ଫୁଲପକା, କଢ଼ାଇ କାମ ଲାଗି ଏଠି ସୂତା କାହିଁ ?"

ଫାତିମା ଉଠୁ ଉଠୁ କହିଲା, "ତମ ଲାଗି ଜରିସୂତା ଆଣିଦେବି ଅମ୍ମି, ପୁଣି କରିବ ତମେ ଜରଦୋଜି । ତିଆରି କରିବା ଆମେ ଯାହା ତମେ କହିବ, ଯାହା ତମ ଇଛା ।"

ଅମ୍ମି କହିଲା, "ଆଗ ଓଢ଼ଣୀଟାଏ କରିବା ଝିଅ, ତୋ' ବାହାଘର ଲାଗି ।"

ଉଠିପଡ଼ିଲା ଫାତିମା, କହିଲ, "ହଉ, ଏଇନା ଏ କୁରୁତାଟା ସାରିବ ପରା ମୋ' ଲାଗି ?"

ରୋଷଘରକୁ ନ ପଶୁଣୁ ଅମ୍ମିର ବଡ଼ ପାଟି ଶୁଣିଲା ସେ, "ହେଇଟି ସେ ଶାରୁଖ୍ ମିଆଁ ଆସିଲାଣି ବେଟୀ, ତାଙ୍କୁ କହ ତୋ' ବାପା ଘରେ ନାହାନ୍ତି, ଆମଘରୁ ଯାଆନ୍ତୁ ଭାରି ।"

ଶାରୁଖ୍ ଆଉଜା କବାଟ ଆପେ ଖୋଲି ହସ ହସ ମୁହଁରେ ପଶିଆସୁଥିଲେ । ଫାତିମା ବାହାରିଆସି କହିଲା, "ରେହମାନ ଘରକୁ ଫେରିନି । କିଛି କଥା ଥିଲା ଯଦି କହିଦେବି ।"

ଚଉକି ଟାଣିନେଇ ବସିପଡ଼ିଲେ ସେ, କହିଲେ, "ହଉ, ବସିଯିବା କିଛି ବେଳ । ଆଉ ତମେ କ'ଣ ହୋଟେଲ ଆଡ଼େ ଯାଇନା ଆଜି ?"

କିଛି ଦୂରରେ ଛିଡ଼ା ହେଇ ଫାତିମା କହିଲା, "ଘରେ କେହି ପୁରୁଷ ଲୋକ ନାହାନ୍ତି, ଆପଣ ଆଜି ଯାଆନ୍ତୁ ।"

ଟିକିଏ ରହିଗଲେ ଶାରୁଖ୍, ତା'ପରେ କାନରେ ପଡ଼ିନଥିଲା ଭଳି କହିଲେ, "ତମେ ଝଡ଼ି କଳା ପଡ଼ିଗଲଣି । ଟିକିଏ ଚେଷ୍ଟା କରିଥିଲେ ଗ୍ୟାସ୍ ରାହତ କାର୍ଡ଼ଟାଏ ହେଇପାରିଥାନ୍ତା ତମ ଲାଗି, ମାସକୁ ମାସ ପଇସା ମିଳୁଥାନ୍ତା । ବୁଢ଼ୀଙ୍କୁ କେତେକେରି କହିଥିଲି, ରାଜିହେଲେନି । ତାଙ୍କ ନାଁଟା ଉଠିପାରିଥାଆନ୍ତା ତାଲିକାରେ, କେଡ଼େବଡ଼ ଫାଇଦାଟାଏ ହାତଛଡ଼ା ହେଇଗଲା କହିଲ ?"

ଫାତିମା ସେମିତି ଛିଡ଼ା ରହି କହିଲା, "ହଉ, ଆପଣ ଯାଆନ୍ତୁ ଆଜି ।"

ଶାରୁଖ୍ ଗମ୍ଭୀର ହେଲେ, ଦାନ୍ତ ଚିପି ଟିକିଏ ସ୍ୱର ଉଷ୍ଣେଇ କହିଲେ, "ରେହମାନ ମୋତେ କହିଥିଲା ଆସିବା ଲାଗି । ସେ ମୋର ଭାବୀ ଜ୍ୱାଇଁ ।"

ଅମ୍ମି ଉଠିଆସିଥିଲା ତା' ବସିବା ଜାଗାରୁ । ଜରୀନା କବାଟ ପାଖେ ଛିଡ଼ାହେଇଥିଲା । ଫାତିମା କହିଲା, "ଆଜ୍ଞା ରେହମାନ ମୋ' ସାନଭାଇ, ଏକୋଇଶ ପୂରିନି ତାକୁ । ମୁଁ ଏ ଘରେ ବଡ଼ । ଆପଣ ଯାହାକୁ ଜୋଇଁ କରିବା କଥା ତାକୁ ନିଜ ଘରକୁ ଡାକନ୍ତୁ ।"

ଭଦ୍ରଲୋକଙ୍କ ମୁହଁ ତମତମ ହେଲା ସିନା, ପାଖରେ ଛିଡ଼ା ତିନିଜଣଙ୍କୁ ଚାହିଁଲେ ଚୁପ୍ ହେଇ । ଉଠିପଡ଼ି ଫାତିମାକୁ ଗାରଡ଼େଇ ଚାହିଁ କହିଲେ, "ତମ ମୁଣ୍ଡକୁ କିଛି ପଶୁନି, ପଶିଲେ ବୁଝନ୍ତ । ଦଶଟା ପ୍ରସ୍ତାବ ଆସନ୍ତା ତମଲାଗି । ଏବେ ଏକୁଟିଆ କେମିତି କାଟିବ ଜୀବନ ? ଭାଇ ଘରେ କୁଣିଆ ହେଇ କେତେଦିନ ରହିବ ?"

ଫାତିମା ସ୍ୱରରେ ଟିକିଏ ଜୋର୍ ଦେଇ କହିଲା, "ଆମ ଘର କଥା ଆମେ ବୁଝିବୁ ।"

ଦୁଆର ଟପି ବାହାରି ଯାଉଯାଉ କବାଟ ବାଡ଼େଇଦେଇ ଗଲେ ଶାରୁଖ୍ । ପଛପାଖୁ ଜରୀନା ଆସି ଫାତିମାକୁ କୁଣ୍ଢେଇ ପକେଇଲା, ବହେ ହସିଲା । ନିଃଶ୍ୱାସ ମାରି କହିଲା, "ତୁ କ'ଣ ଝାନ୍‌ସୀର ରାଣୀ ହେଇଗଲୁଣି ଅପା ?"

ଅମ୍ମି ପାଖକୁ ଆସିଲା, ଫାତିମା ପିଠିରେ ହାତ ଦେଇ କହିଲା, "ଝାନ୍‌ସୀର ରାଣୀ ? ହଁ, ହଁ, ଗାଇଲୁ ତାଙ୍କ ଗୀତ ବେଟୀ, କେଡ଼େ ସୁନ୍ଦର ଗଳାରେ ଗାଉ ତୁ, ବୁନ୍ଦେଲୋ ହରବୋଲୋଁକୀ... ଖୁବ୍ ଲଢ଼ୀ ମର୍ଦ୍ଦାନୀ... ଗାଇଲୁ ଗାଇଲୁ ।"

# ଇତିହାସରୁ କେଇ ପୃଷ୍ଠା

ଫାତିମା ସାଙ୍ଗରେ ମୋର ପ୍ରତିଥର ଦେଖାହେଇଚି ଏମିତି ଅଚାନକ, ଆଉ ପ୍ରତିଥର ମୋତେ ମିଳିଚି ଏତେ ଅନୁଭବ ଯେ ମଝିରେ ବିତିଥିବା ଘଟଣାସବୁ ଯୋଖିହେଇଯାଇଚି ଆପେ ଆପେ । ତେବେ ଫାତିମାର କାହାଣୀ କହିଲାବେଳେ ମୋର ମନେହେଉଚି ତା' ଜୀବନରେ ଯେଉଁ ଅଳ୍ପ କେତେଜଣଙ୍କୁ ମୁଁ ଜାଣିବାର ଚିହ୍ନିବାର ସୁଯୋଗ ପାଇଚି, ସେଇ କେତେଟା ଭେଟ କଥା ବି ମୋତେ କହିବାକୁ ହେବ ।

ସେଦିନ ଆମ କଲେଜର ରାଜନୀତି ବିଜ୍ଞାନର ପ୍ରଫେସର ଆସିଲେ ଆମ ଡିପାର୍ଟମେଣ୍ଟକୁ । କହିଲେ, "ଆମେ ଏଥର ଗ୍ରୁପ ଟିକଟ ନେଇଚୁ ରଙ୍ଗ ମହୋତ୍ସବ ଲାଗି । ଚାଲନ୍ତୁ ଆପଣ ବି ।"

ଡ୍ରାମା ଥିଏଟରକୁ ନେଇ ଖୁବ୍ ଉତ୍ସାହ ଏ ସହରରେ । କଳାକାର ମାନଙ୍କର ଯେତିକି ଦେଖଣାହାରୀଙ୍କ ତହୁଁ ବେଶୀ । ଠିକ୍ ଶୀତ ସରିଆସିଲା ବେଳକୁ ଦୋଳ ପୂର୍ଣ୍ଣିମା ପାଖାପାଖି ମାସେ କାଳ ଏଠି ଚାଲେ ରଙ୍ଗ ମହୋତ୍ସବ । ପ୍ରତିଦିନ ନାଟକ ହୁଏ, ଭିନ୍ନ ଭିନ୍ନ ସହରରୁ ଆସିଥାନ୍ତି ନାଟକ ମଣ୍ଡଳୀ ସବୁ । ଥିଏଟର ଗ୍ରୁପ୍‌ମାନଙ୍କ ଭିତରେ ବି ବର୍ଷସାରା ପ୍ରସ୍ତୁତି ଚାଲିଥାଏ । ତେବେ ମୋ' ଭଳି ଚାକିରୀଆ କୁଟୁମ୍ବୀ ଲୋକଲାଗି ଘରଛାଡ଼ି ଲାଗ୍‌ଲାଗ୍ ସନ୍ଧ୍ୟା ବେଳଟା ନାଟ ତାମସା ଦେଖି କଟେଇବା ସହଜ ହୁଏନାହିଁ । ଏଥର ଅବଶ୍ୟ କଥା ଭିନ୍ନ ଥିଲା । ପରିବାର ଥିଲେ ଅନ୍ୟ ସହରରେ, ମୋର ବଦଳୀ ହୋଇପାରିନଥିଲା ଏଯାଏଁ ।

କଳା ଭବନର ପ୍ରଶସ୍ତ ଛାତରେ ଖୋଲା ରଙ୍ଗମଞ୍ଚରେ ନାଟକ ହୁଏ । ଖୋଲା ଆକାଶ ତଳେ ସାନ ଷ୍ଟାଡ଼ିୟମ୍ ଭଳିଁରେ ସାନ ଗଦିମାନ ପଡ଼ିଥାଏ ବସିବାଲାଗି । ପ୍ରତି ନାଟକ ମଣ୍ଡଳୀ ତାଙ୍କ ଷ୍ଟେଜ୍ ତିଆରି କରନ୍ତି ସେଟ୍ ଦେଇ, ଅଳ୍ପ ଅଳ୍ପ ସରଞ୍ଜାମରେ, ପ୍ରତୀକ ଭାବେ । ଆଉ ଷ୍ଟେଜ୍ ପଛପାଖକୁ ପୃଷ୍ଠଭୂମି ହେଲା ବିଶାଳ ହ୍ରଦ, ଆରପାରିରେ ଥିବା ସହର ଅଞ୍ଚଳ ମଣ୍ଡିହେଇଥାଏ ରାତି ଆଲୁଅରେ । ଦୂରରେ କୋଉଠି ଛାଇଛାଇକା ପାହାଡ଼ ବଣ, କୋଉଠି ଲମ୍ବିଥାଏ କେବଳ ଅନ୍ଧାର । ଜହ୍ନ ରାତି ଥିଲେ ସାରା ପାଣି ଝିଲିମିଲି ହେଉଥାଏ । ସଙ୍ଗପରେ ଖୋଲାଆକାଶ ତଳେ ପୂରା ବାତାବରଣଟା ଏକପ୍ରକାର ଅତିବାସ୍ତବୀୟ ଲାଗେ । ତେଣିକି ନାଟକ ଖରାପ ହେଲେ ବି ଟିକଟ ପଇସା କି ଆସିବାର ପରିଶ୍ରମ ଅକାରଣ ଯାଏନାହିଁ ।

ଶୋଭା ମାଡ଼ାମ୍‌ଙ୍କୁ କହିଲି, "ହଉ ତେବେ, କରନ୍ତୁ ଆୟୋଜନ । ଜମିବ ଏଥର ଦେଖାଯାଉଛି ଯାହା ।"

ନିର୍ଦ୍ଦେଶକ, ନାଟ୍ୟକାରଙ୍କ ନାଁ ଥିବା ନାଟକ ଲିଷ୍ଟ ଦେଖୁ ଦେଖୁ ମୋ' ଆଖି ଅଟକିଗଲା ଗୋଟିଏ ନାଁରେ । ମହମ୍ମଦ ମୁକ୍ତାର ଖାଁ । ପଚାରିଲି, "ଇଏ କିଏ ସେ କହିଲ ଦେଖି ? ସେଇ ଯୋଉ ବମ୍ବେରେ ରହେ, ଗୋଟେ ଅଧେ ଟିଭି ସିରିଆଲରେ ଆସେ ?"

ଜବାବ ମିଳିଲା, "ହଁ ହଁ, ସେଇ ପରା । ହିରୋ ହେବ ବୋଲି ଏଇଠୁ ଯାଇଥିଲା ବମ୍ବେ ଫିଲିମରେ ମିଶିବ ବୋଲି, ଚାନ୍ସ ପାଇଲା ନାହିଁ । ଏବେ ବେଳେ ବେଳେ ଆସି ପୁଣି ଡ୍ରାମା କରୁଚି ଏଠି ।"

ପଚାରିଲି – "ବମ୍ବେ ଛାଡ଼ି ଏଠି ରହୁଚି ଏବେ ?"

ଶୋଭା ମାଡ଼ାମ୍ କହିଲେ, "ଆରେ ନାହିଁ ମ । ଥରେ ଯାହାକୁ ହାଉଆ ଲାଗେ ଆଉ ସେ କୋଉଠି ଫେରିଲାଣି ? ହେଲେ ଡ୍ରାମା ଆଦି ବି ଛାଡ଼ିନାହିଁ । ଭଲ କରୁଥିଲା, ଦେଖିଥିବେ ତ କେବେ ?"

ଯାହେଉ ମୁକ୍ତାରର ଡ୍ରାମା ଦେଖିବାକୁ ଯାଇଥିଲି । ଖୋଲା ଆକାଶତଳେ ନଈକୂଳିଆ ପବନରେ ଏମିତି ଭୂଇଁଉପରେ ବସିବା କାହିଁ କେତେଦିନ ପରେ । ଐତିହାସିକ ନାଟକଟିଏ । ବଡ଼ ତାଲ୍‌ର ଆତ୍ମକଥା ହେଉଚି ପୃଷ୍ଠଭୂମି । ପରିବେଷିତ ହେଇଚି ଏଇ ଅଞ୍ଚଳର ଇତିହାସ ଓ ଲୋକକଥା । ପ୍ରେମ ଓ ପ୍ରତାରଣାର ଗୁନ୍ଥା ଗୁନ୍ଥି କାହାଣୀ କେତୋଟି । ଭିନ୍ନ ଭିନ୍ନ ଖଣ୍ଡରେ ସମୟାଂଶ ମାନ – ରାଜା ଭୋଜଙ୍କ ଅମଳରୁ ଦୋସ୍ତ ମହମ୍ମଦ ଯାଏଁ, ରାଣୀ କମଳବତୀଙ୍କଠାରୁ ବେଗମ୍ ନବାବମାନଙ୍କ ସଫଳତା ବିଫଳତା ଯାଏଁ, ସ୍ୱତନ୍ତ୍ର ରାଷ୍ଟ୍ର ହେବାର ଦୁଃସାହସିକ ସ୍ୱପ୍ନଠୁ ବିଦେଶୀ ବେପାରୀ ହାତରେ ଶିଳ୍ପୋଦ୍ୟୋଗ ନାଁରେ ହୋଇଥିବା ଜନସଂହାର ଯାଏଁ । ଷ୍ଟେଜ୍ ପଛପାଖ ଜଳଭଣ୍ଡାର ମୂର୍ତ୍ତିମନ୍ତ ହେଇଥିଲା ନାଟକରେ । ମଧୁର ବାଦ୍ୟ ଓ କୃତ୍ରିମ କୁହୁଡ଼ି ଭିତରେ ଥରକୁଥର ଜଳକନ୍ୟା ରୂପରେ ଉଭାହେଉଥିଲା ବଡ଼ତାଲ୍, କହୁଥିଲା ନିଜ ଆତ୍ମକାହାଣୀ । ତା'ପରେ ପଛପାଖ ଲାଇଟ୍ ଧୀମେଇଯାଇ ଆଲୋକିତ ହେଉଥିଲା ସାମ୍ନାପାଖ ମଞ୍ଚ, ଅଭିନୀତ ହେଉଥିଲା ନାଟକର ଅଙ୍କଟିଏ । ପ୍ରତି ଅଙ୍କରେ ଉପସ୍ଥାପିତ ଇତିହାସର ଫର୍ଦ୍ଦଟିଏ । ନାୟକ ଥିଲା ମୁକ୍ତାର ମହମ୍ମଦ । ବିଶେଷ ପୋଷାକ ପରିଚ୍ଛଦ ସତ୍ତ୍ୱେ ତାକୁ ଚିହ୍ନିବାରେ କିଛି ଅସୁବିଧା ହେଲାନାହିଁ ମୋର । ସେଇ ପୁରୁଣା ଚେହେରା ଥିଲା, ଗତ କେତେ ବର୍ଷରେ ମୁହଁଟା ଟିକିଏ ପାକଳ ହେଇଆସିଚି ଅବଶ୍ୟ । ନିହାଣରେ ଗଢ଼ିଦେଲା ଭଳି ନାକ, ଚିବୁକ । ଅନ୍ୟ କେଉଁ ଜଗତରେ ଥିଲା ଭଳି ଆଖି । ନିଜ ଉପରେ ବିଶ୍ୱାସ ଥିବାର ଠାଣି ଚାଲିରେ, ଗମ୍ଭୀର ସ୍ୱରରେ ।

ଡ୍ରାମା ଚାଲିଥିଲା ବେଳେ ପାଖ ସିଟ୍‌ରୁ ଶୋଭା ପଚାରିଲେ, "ଏଇ ଟୋକାଟା ସାଙ୍ଗରେ ପଳେଇଥିଲା ଆମେ କଲେଜର ସେଇ ଝିଅଟା, ହୁଲୁସ୍ଥୁଲୁ ହେଇଯାଇଥିଲା ଚାରିଆଡ଼ । ମନେ ଅଛିନା ଆପଣଙ୍କର ?"

ମୁଁ କଥାବାର୍ତ୍ତା ଏଡ଼ାଇବା ଲାଗି କେବଳ ମୁଣ୍ଡ ଟୁଙ୍ଗାରିଦେଇ ନାଟକରେ ମନ ଦେଲି । ଶୋଭା ମାଡ଼ାମ୍ କିନ୍ତୁ ଛାଡ଼ିବା ଲୋକ ନୁହନ୍ତି । କହିଲେ, "ରସିକ ଚେହେରାଟାଏ ରଖୁଚି କେମିତି ଦେଖୁନାହାନ୍ତି । ବମ୍ବେ ଯାଇ କାଳେ ଠକିଦେଲା ଝିଅଟାକୁ, ବରବାଦ୍ କରିଦେଲା ତା' ଜୀବନ ।"

ଧୀରେ କରି କହିଲି, "ନାଇଁ ମ, କେତେଲୋକଙ୍କର ତ ବାହାଘର ଭାଙ୍ଗେ ପୁଣି । ଝିଅଟାକୁ ମୁଁ ଜାଣେ, ହାତକାମ ଦୋକାନରେ ନାଁ କରିଚି ଆଜିକାଲି ।"

ସ୍ୱର ବଦଳାଇ ଶୋଭା କହିଲେ, "ସତରେ ? ଭଗବାନ କରନ୍ତୁ, ମିଳାମିଶା ହେଇଯାନ୍ତୁ ।"

ମନେ ମନେ ପସ୍ତେଇଲି କାଇଁକି ଏ ଗପୁଡ଼ି ସାଙ୍ଗରେ ବସିଲି ବୋଲି । କ'ଣ ଗୋଟାଏ ମଜା ଦୃଶ୍ୟଟାଏ ଚାଲିଗଲା ଯାଃ, ଦର୍ଶକମହଲରୁ ହସର ରୋଳ ଉଠୁଚି । ଅନ୍ଦାଜ କରିବାକୁ ଚେଷ୍ଟାକଲି । ଦି'ଜଣ ଭୋପାଲୀ ମଦ ପିଇ ଏକ ଆରେକକୁ ଗାଳି ଦେଉଚନ୍ତି, ଇଏ ତାକୁ କହୁଚି – ଚୁପ୍ କର ଶାଲେ ବର୍ଗୁ କାଟ୍ ଗୱାଁର୍ । ଆରେକ ତାକୁ କହୁଚି – ଧୋକେବାଜ୍ ଶାଲା ଜଙ୍ଗଲକାଟ୍ । ଜାଣିଚି, ଭୋପାଲୀ ବୋଲିର ଘଷରା ଜୋକ୍ ଏସବୁ ।

କେଇ ଶହ ବର୍ଷ ତଳେ ଭୋପାଲ ଥିଲା ଗୋଟିଏ ଛୋଟିଆ ଗାଁ, ଆଖପାଖରେ ଆହୁରି ଗୁଡ଼ିଏ ଗାଁ ଘେରିହେଇ । ଖୁବ୍ ସମୃଦ୍ଧ ହୁଏତ ନଥିଲା, ସମ୍ଭବତଃ ପାର୍ବତ୍ୟ ଅଞ୍ଚଳ ହୋଇଥିବା ଯୋଗୁଁ ଓ ପ୍ରଶସ୍ତ ନଦୀ ପାଖରେ ନଥିବାରୁ ଅନ୍ୟ ସମ୍ପନ୍ନ ନଗର ମାନଙ୍କରୁ ଯାତାୟାତ ପଥ ସୁଗମ ନଥିଲା । ଆହୁରି ପଛକୁ ଗଲେ, ପ୍ରାୟ ହଜାରେ ବର୍ଷ ତଳେ ଏଠାକାର ଦୃଶ୍ୟ ଭିନ୍ନ ନଥିଲା । ଏକାଦଶ ଶତାବ୍ଦୀର ସମୃଦ୍ଧିର ସ୍ମାରକ ହୋଇ ରହିଛି ବିଶାଳକାୟ ଭୋଜତାଲ୍ । ଅନେକ ଝରଣାର ପାଣି ମିଶୁଥିବା ଏ ହ୍ରଦଟି, ଆଜିବି ସହରବାସୀଙ୍କ ଦୈନନ୍ଦିନ ଜୀବନର ନିର୍ଭରଯୋଗ୍ୟ ଆଶ୍ରୟ ତାହାରି ପାଣି ।

ଅଗଣିତ ଯୁଦ୍ଧ ଓ ଧ୍ୱଂସର କାହାଣୀ ଅଭିନୀତ ହୋଇଛି ଏ ମାଟିରେ । ଚତୁର୍ଦ୍ଦଶ ଶତାବ୍ଦୀରେ ନିକଟବର୍ତ୍ତୀ ସାଗରତାଲ୍ ବନ୍ଧକୁ ଭଙ୍ଗାଗଲା ରାଜା ହୋଶଙ୍ଗଶାହଙ୍କ ଅଦୂରଦର୍ଶୀତାରେ, ଯାହା ଫଳରେ ତିରିଶ ବର୍ଷ ଧରି ସମଗ୍ର ଇଲାକା ବଢ଼ି ଓ ମରୁଡ଼ିରେ କାଙ୍ଗାଳ ପାଲଟିଗଲା । ହୋଶଙ୍ଗାବାଦ ରାଜ୍ୟ ସ୍ଥାପନ ହେଲାବେଳେ ଭୋଜପାଳ ରାଜ୍ୟ ପରିତ୍ୟକ୍ତ ହେଲା । ନିକଟ ଅତୀତର ଶସ୍ୟ ଶ୍ୟାମଳା ମାଟି ପୁଣିଥରେ ପାଲଟିଗଲା ଉଚ୍ଛନ୍ନ

ଜଳାଭାବଗ୍ରସ୍ତ ଅନୁର୍ବର ପାହାଡ଼ମାଳ । କେଇଟା ଲେଖାଁ ଗାଁର ଛୋଟ ଛୋଟ ଗଡ଼ ମାନଙ୍କରେ ବାଣ୍ଟିହେଇଗଲେ ସମଗ୍ର ପ୍ରଜା ।

ଆଜିର ଭୋପାଳ ଯେବେ ଏକ ନୂତନ ରାଜଧାନୀର ରୂପ ନେଉଥିଲା, ଆଖପାଖ ଅଞ୍ଚଳରେ ଆଉ ସମୃଦ୍ଧିର ଚିହ୍ନ ନଥିଲା । ଟାପୁ ଭଳି ଅଳ୍ପ ଉଚ ପାହାଡ଼ ସବୁରେ ଘଞ୍ଚ ବଣ ଅପେକ୍ଷା ପୂରିଥିଲା ବର୍ଗୁ କୁହାଯାଉଥିବା ବେତ ଜାତୀୟ ଘାସ । ତାକୁଇ କ୍ରମେ କଟାଯାଇ ଗୋଟିକ ପରେ ଗୋଟିଏ ମହଲ, ମସ୍‌ଜିଦ୍‌, ରାସ୍ତା ଘାଟ ସହର ତିଆରି ହେଲା । ବର୍ଗୁ ଘାସ କାଟି ଥଇଥାନ ହେଇଥିବା ଲୋକଙ୍କୁ ଏଠି କହନ୍ତି ବର୍ଗୁକାଟ୍‌ ଭୋପାଲୀ । ଏଠାକାର ମୂଳ ଅଧିବାସୀ । ପରେ ଆସି ଘରଦ୍ୱାର କଲେ ଯେଉଁମାନେ, ସେମାନେ ବୋଲାଇଲେ ଜଙ୍ଗଲକାଟ୍‌ ।

ଆଜିର ନାଟକର ପର୍ଦ୍ଦା ଉଠିଲାବେଳେ ନୀଳ ଜଳର ଝୀନ ପୋଷାକ ପିନ୍ଧି ଭୋଜତାଲ୍‌ ଆସିଛି ତରୁଣୀ ବେଶରେ, ତରୁଣ ପ୍ରେମିକ ଭୋଜପାଳଙ୍କ ଆହ୍ୱାନରେ ଆକାଶରୁ ବାଟ ଭୁଲି ଓହ୍ଲେଇଆସିଥିବା ପରୀଟିଏ । ଭୋଜଙ୍କ ଭୂମିକାରେ ଅବିନୟ କରୁଛି ମୁକ୍ତାର । ପାତ୍ରମାନଙ୍କ ମୁହଁରେ କାହାଣୀର ପ୍ରସ୍ତ ଖୋଲୁଛି । ଅନତିଦୂରରେ ବିଧ୍ୱସ୍ତ ବିଦିଶା ନଗରୀର ଧନଧାନ୍ୟ ପ୍ରତିପତ୍ତି ଏତେବେଳକୁ ଅସ୍ତମିତ । ଲୋକମୁଖରେ ହିଁ ରହିଯାଇଛି ସାଞ୍ଚି ସ୍ତୂପର ବୌଦ୍ଧ ମଠ, ତହିଁରେ ସହସ୍ରାଧିକ ଶ୍ରମଣଙ୍କ ବସବାସ, ସମ୍ରାଟ ଅଶୋକଙ୍କ କୀର୍ତ୍ତିସ୍ତମ୍ଭ । ଏଥର ବର୍ଣ୍ଣ ବିଭବ ନେଇ ନୂଆ ରାଜ୍ୟଟିଏ ଗଢ଼ିଉଠୁଛି ଅନାମଧେୟ ଥାଳ ନଦୀ କୂଳରେ । ବଣ ପର୍ବତ ଘେରା ଜଗଦୀଶପୁରରେ ଭୂସ୍ୱର୍ଗଟିଏ ତିଆରି କରନ୍ତି ରାଜା ଭୋଜ । ପାହାଡ଼ ଆରପାରି ଜଗତର କେହି ପଛେ ତାକୁ ନ ଦେଖୁ, ସାମ୍ରାଜ୍ୟ ବିସ୍ତାର ଲୋଭରେ ନ ରହୁଁ, ନହେଉ ତା'ର ନାମୋଲ୍ଲେଖ ଭାରତର ଇତିହାସରେ । ତଥାପି ମୁଖ୍ୟଧାରାର ଭାରତରୁ ଦୂରରେ ରହି ବି ନିଜକୁ ସୁରକ୍ଷିତ ରଖିପାରିନାହାନ୍ତି ଭୋଜରାଜା । ଜୀବନର ଶେଷାର୍ଦ୍ଧରେ ଦେଖିବାକୁ ହୁଏ ତାଙ୍କୁ ରାଜ୍ୟ ଲୋଭରେ ଅନ୍ତର୍ଯୁଦ୍ଧ, ବିଶ୍ୱାସଘାତକତା । ହତାଶ ହେଇ ଏକାକୀ ଭୀମବୈଠିକାର ପାହାଡ଼ ଗୁମ୍ଫାରେ ଶେଷ ନିଃଶ୍ୱାସ ତ୍ୟାଗ କରନ୍ତି ସେ ।

ଦ୍ୱିତୀୟ ଅଙ୍କ ଥିଲା ଦୋସ୍ତ ମହମ୍ମଦ ଓ ରାଣୀ କମଳବତୀଙ୍କର ଆସ୍ଥା ଓ ପ୍ରତାରଣାର ତିକ୍ତ ବିଷର୍ଣ୍ଣ ଲୋକକଥା । ଅପରୂପା କମଳବତୀଙ୍କ ଅସହାୟ ସ୍ୱାମୀର ଭୂମିକାରେ ଆସିଛି ମୁକ୍ତାର ଯିଏ ଶତ ଚେଷ୍ଟା ସତ୍ତ୍ୱେ ପଡ଼ିଛି ଶତ୍ରୁର କୂଟଚକ୍ରରେ । ସାତତାଲା ପ୍ରାସାଦର ତଳ ପ୍ରାଙ୍ଗଣରେ ଦେଖାଦିଅନ୍ତି ନିଃସ୍ୱ, ହତାଶ, ପ୍ରତାରିତା ରାଣୀ କମଳବତୀ । ତାଙ୍କରି ଆଦେଶରେ ହ୍ରଦର ପଥରବନ୍ଧ ତଳ ନାଳ ଖୋଲି ଦିଆଯାଏ । ପ୍ରବଳ ସ୍ରୋତରେ ପାଣି ଆସି ବୁଡ଼ାଇଦିଏ ପ୍ରାସାଦର ତଳ ଚାରିଟିମହଲା, ତାଆରି ସହିତ ନିଶ୍ଚିହ୍ନ ହେଇଯାଆନ୍ତି ରାଣୀଙ୍କ ସମେତ ଅବଶିଷ୍ଟ

ରାଜ ପରିବାର, ପ୍ରାସାଦର ସମସ୍ତ ବୈଭବ । ପୂର୍ଣ୍ଣିମା ରାତିରେ ରାଣୀଙ୍କୁ ଭେଟିବା ଲାଗି ଟାଲ୍ ଉପରକୁ ଓହ୍ଲେଇଆସେ ରାଜାଙ୍କ ଆତ୍ମା । ହାତ ଧରାଧରି ହୋଇ ଭାସିଚାଲନ୍ତି ଦିହେଁ ପଦ୍ମବନ ଉପରେ ।

ଶେଷ ଅଙ୍କରେ ଏଥର ମୁକ୍ତାର ବିଂଶ ଶତାବ୍ଦୀର ପ୍ରଥମ ଭାଗର ଅଭିଜାତ ଶାସକଙ୍କ ବେଶରେ । ଭାରତର ସାଧୀନତା ସଂଗ୍ରାମ । ଦ୍ୱନ୍ଦ୍ୱ ବିକ୍ଷୁବ୍ଧ ନାୟକ । ନିଜ ଦେଶରେ, ମାଟିରେ ରହିବାକୁ ଯାଇ ବରିନେଇଛି ଦାରିଦ୍ର୍ୟ, ଅନାମଧେୟତା । ତଥାପି ଭାଗ୍ୟର ଦାଉରୁ ବର୍ତ୍ତି ପାରିନାହିଁ । ବିଦେଶୀ ବେପାରୀ ଆସି ଲୋଭ ଦେଖାଇ ତାଆରି ଜମିରେ ବସାଇଛି କାରଖାନା । ତାଆରି ପ୍ରାସାଦରେ କରିଛି ନିଜର ବିଳାସ ମହଲ । ଶେଷରେ ତାକୁ ସବଂଶେ ନିର୍ମୂଳ କରିଦେଇଛି ବିଷାକ୍ତ ରାସାୟନ ।

ଶେଷ ଦୃଶ୍ୟରେ ଛିନ୍ନ ଜର୍ଜର ପୋଷାକରେ, ପିଠି ନଇଁଯାଇଥିବା ବୃଦ୍ଧା ବେଶରେ ଆସିଛି ଆଜିର ସଂକୁଚିତ ଟାଲ୍, ଶୁଣାଉଛି ତା'ର ସାୟାହ୍ନର କଥା । ଦିନେ ହଲାଲୀ ନଦୀର ପାଣି ରକ୍ତରେ ନାଲି ହୋଇଯାଇଥିଲା । ହେଲେ ଗୋଟିଏ ବର୍ଷା ଋତୁପରେ ପୁଣି ସେଇ ଘାଟମାନଙ୍କରୁ ପାଣି ପିଇଲେ କୂଳ ଗାଆଁର ଲୋକେ । ଏଥର ଯେବେ ବିଶ୍ୱାସରେ ବିଷ ମିଶିଲା, ବଡ଼ ଟାଲ୍‌ର ପାଣି ରକ୍ତରେ ନାଲି ହେଲାନାହିଁ । ଅଦୃଶ୍ୟ ହଳାହଳ ଏଥର ନିରସ୍ତ୍ର ଲୋକଙ୍କ ଧମନୀକୁ ଯାଇ ରକ୍ତକୁ ନିଶବ୍ଦରେ ପାଣି ଫଟେଇଦେଲା । ଶେଷରେ ଜହର ନଦୀ ଝରଣା ହ୍ରଦ ପାଣିରେ ଗୋଳିହୋଇ ମାଟିକୁ ଚାଲିଗଲା ଆଗତ ପିଢ଼ୀଙ୍କ ରକ୍ତରେ ମିଶିବାଲାଗି । ବିଷ ଜର୍ଜରିତ ତା'ର ଦେହ, ପିଇବାର ଯୋଗ୍ୟ ନୁହେଁ ତା'ର ପାଣି । ସେ କେବଳ ଏକ ପଣ୍ୟଦ୍ରବ୍ୟ । ଟୁରିଷ୍ଟ ମାନଙ୍କ ଲାଗି ଉପଭୋଗ୍ୟ ବଜାରର ଅଂଶଟିଏ ।

ଶେଷ ଦୃଶ୍ୟରେ ମୁକ୍ତାର ଆସିଲା ଦର୍ଶକଙ୍କୁ ମଞ୍ଚ ଉପରୁ ଅଭିବାଦନ କରିବା ଲାଗି । ତାଳି ବର୍ଷା ଭିତରେ ସ୍ମିତ ହସି ହାତ ଯୋଡୁଛି, ମୁଣ୍ଡ ନୋଇଁ ଥରକୁଥର କୁର୍ଣ୍ଣିସ୍‌ରେ ଆଙ୍ଗୁଳି କପାଳରେ ଛୁଉଁଛି । ବ୍ୟକ୍ତିତ୍ୱରେ ସେଇ ଆଗଭଳି ଆକର୍ଷଣ ତା'ର । କେତେ ହେବ ବୟସ । ଏଇ ତିରିଶ ଟପିଥିବ । ଆହୁରି ଅନେକ କିଛି ପାଇବା ଲାଗି ସମୟ ଅଛି ତ ତା' ହାତରେ, ବହୁତ କିଛି କରିପାରିବା ଭଳି ପ୍ରତିଭା ଅଛି । କିଏ କହିବ କାହିଁକି କିପରି ଆସିଲା ଏତେ ହତାଶା, ବିଫଳତା ଏ ଦମ୍ଭିଲା ଚେହେରାର ପଛପାଖେ ?

ନାଟକ ଦେଖି ସେଦିନ ଫେରିବା ବେଳେ ଭାବୁଥିଲି, ଫାତିମାକୁ ଟିକେ ଦେଖା କରିବାକୁ ହେବ । ଜାଣିବାକୁ ହେବ, ଖୋଜିବାକୁ ହେବ ଯଦି କିଛି ଥାଏ ମୋର କରିବା ଜାଣିବା ଭଳି । କାଳେ କିଛି ବାଟ ଥିବ ସେ ଜୀବନ ଦିଇଟିର ଦୁଃଖ ଊଣା କରିଦେବା ଲାଗି । ଉପାୟ ଥିବ ଏତେ ପ୍ରତିଭା ଅଯଥା ନଷ୍ଟ ହେବାରୁ ବଞ୍ଚାଇବା ଲାଗି ।

ଆଉ ମୁକ୍ତାରକୁ ଯଦି ବୁଝାଇହେବ, ବମ୍ବେର ରୂପେଲୀ ଦୁନିଆଁ ଛାଡ଼ି ଫେରିଆସିବା ଲାଗି ତା' ପିଲାଦିନର ସହରକୁ । ଏଇ ସହର ତ ତାକୁ ଚିହ୍ନେ, ସ୍ନେହ ଦିଏ, କାନି ଆଢୁଆଳ କରି ନିରାପଦ ରଖିବାର ଆଶ୍ୱାସନା ଦିଏ ଆଜି ବି ।

ପାଖେ ପାଖେ ଚାଲୁଚାଲୁ ଶୋଭା ଏକତରଫା କହିଚାଲିଥିଲେ, "ଏ ସିନେମା ନିଶାରେ ମାତିଥିବା ଟୋକାଏ, ଟିକେ ତାଳି ପାଇଲେ କି ନାଇଁ କହିବେ ଆମେ ଫିଲିମ୍ ହିରୋ ହେବୁ । କିରେ ନିଜ ଆଖେପାଖେ ସ୍ନେହ ପାଇବା, ବାହାବା ପାଇବା କିଛି କମ୍ କଥା ତ ନୁହେଁ । ସମସ୍ତଙ୍କ ହାତରେ କ'ଣ ସିନେମା ହବ ବୋଲି କଥା ଅଛି ?"

ଆଉ ଦି'ଜଣ ବି କଥାରେ ଯୋଗ ଦେଲେ । କଥା ପଡ଼ିଲା ଅମୁକ ସାହିର ତମୁକ ଦଳର ପିଲା ଶୁଣି ଯାଇଚି ବମ୍ବେକୁ, କାହାକୁ ଘରେ ନକହି ଲୁଚି ପଳେଇଚି । ଆଉ ଚାରିବର୍ଷ ତଳେ ଯାଇଥିଲା ଯେଉଁ କଓ୍ୱାଲୀ ଗାଉଥିବା ପିଲାଟି, ପ୍ଲେ ବ୍ୟାକ୍ ଗାୟକ ହେବ ବୋଲି, ସିଏ ନିଶା ଡ୍ରଗ ଖାଇ ଗଲାଣି ତିନି ପାଞ୍ଚିରୁ, ଜାଣିଛ ନା ନାଇଁ ? ଏ ସହରରେ ଇଏ ତ ନିତିଦିନିଆ କଥା ।

ଏସବୁ ଭିତରେ ମୋର ଆଖି ଆଗପଛରେ ଯାଉଥିବା ଲୋକଙ୍କ ଭିତରେ ଚିହ୍ନା ମୁହଁଟିଏ ଖୋଜୁଥିଲା । ଦେଖୁଥିଲି କାଳେ ଦର୍ଶକଙ୍କ ଭିତରେ ଫାତିମା ଥିବ । ହେଲେ ସେ ଆସିଥିଲେ ଆପେ ମୋତେ ଖୋଜିନେଇଥାନ୍ତା, ପାଖକୁ ଆସି କଥାକହିଥାନ୍ତା କେତେ ଆତ୍ମୀୟ ଲୋକଜଣେ ମିଳିଯାଇଥିବା ପରି । ଆସିନି ନିଶ୍ଚେ ।

ସେଦିନ ରାତିରେ ମୋ' ମନକୁ କେତେକଥା ଆସୁଥିଲା । ଏଭଳି ନାଟକଟିଏର ଲେଖକ, ଅଭିନେତା ହୁଏତ ବ୍ୟବସାୟୀ ସିନେମା ଜଗତ ଲାଗି ଉପଯୁକ୍ତ ହେଇନଥିବ । କିଏ ଜାଣେ କାହିଁକି ବମ୍ବେର ସେଭଳି ଦୁନିଆଁରେ କିଏ ସଫଳ କି ବିଫଳ ହୁଏ । ଆଉ ଗୋଟେ କଥା ବି ମୁଁ ଭାବୁଥିଲି । ନାଟକଟି ପ୍ରେମ କାହାଣୀ ନଥିଲା ଜମାରୁ । ସେଥିରେ ପ୍ରେମିକ ପ୍ରେମିକା ଥିଲେ ସତ, ହେଲେ କାହାଣୀ ଥିଲା ଏକ ପ୍ରଶସ୍ତ ସାମାଜିକ ଜଗତର । କେବଳ ମଧୁର ବ୍ୟକ୍ତିକୈନ୍ଦ୍ରିକ ପ୍ରେମ-ସର୍ବସ୍ୱ କାହାଣୀ ଏ ନ ଥିଲା । ନାୟିକା ସର୍ବସ୍ୱ ନଥିଲା ସେ ନାଟକ । ବୋଧହୁଏ ତା'ର ଲେଖକର ଜୀବନ ବି ନଥିଲା ପ୍ରେମ କାହାଣୀ ସର୍ବସ୍ୱ । ତା' ଛାତିରେ ଥିଲା ସମ୍ଭବତଃ ଆହୁରି ଅନେକ ଧରଣର ସ୍ୱପ୍ନ, ଉଚ୍ଚାକାଂକ୍ଷା, ଯାହାର ମହତ୍ତ୍ୱ ତା' ଲାଗି ଜୀବନରେ ସର୍ବାପେକ୍ଷା ବେଶୀ ।

# ମାନଚିତ୍ର ତିଆରି ନିଶା

ହୁସ୍ନା ବେଗମ୍ ଶୋରୁମ୍ ଭିତରକୁ ପଶି ଆସୁଆସୁ ଫାତିମାର ସାମ୍ନା ଚଉକିରେ ଥୋଇଦେଲେ ସାଙ୍ଗରେ ଆଣିଥିବା ଏଆର ବ୍ୟାଗକୁ, ଆଉ ତାକୁ ଖୋଲିବସି କହିଲେ, "ଦେଖ ଝିଅ କେତେ ଜିନିଷ ଖୋଜି ଲୋଡ଼ି ଆଣିଚି ତମଲାଗି ।"

ଫାତିମା ଉଠିପଡ଼ିଲା ଉଚ୍ଛ୍ୱାସରେ । ତାଙ୍କୁ ପାଛୋଟି ନେଇ କହିଲା, "ଆପଣଙ୍କ ବାଟ ଚାହିଁ ବସିଥିଲି ଦିଦି । ଆଗ ବସନ୍ତୁ ନା ଆପଣ, ନିଃଶ୍ୱାସ ମାରନ୍ତୁ ପହିଲେ ।"

ହୁସ୍ନା ସଟକୁସଟ ବସିପଡ଼ି ନିଃଶ୍ୱାସ ମାରିଲେ କିଛି ବେଳ, ତା'ପରେ ଉଠିପଡ଼ି ବ୍ଲାଉଜଟା ଖୋଲି ଚଉଡ଼ି ଦେଉ ଦେଉ କହିଲେ, "କେଇଦିନ ହେଲା ଆସିବି ଆସିବି ହେଉଚି । ନୂଆ କାରିଗର ମାନଙ୍କୁ ବରାଦ ଦେଇଥିଲେ ଆମେ ଯେଉଁ କାମ, ସେଥିରୁ କିଛି ମିଳିଯାଇଚି, ଆଣିଚି ଆଜି ।"

ଏଆର ବ୍ୟାଗ୍‌ରୁ କୋଲି ସେ ଜିନିଷ କେତୋଟି ଦେଖୁ ଦେଖୁ ଫାତିମାର ବିଶ୍ୱାସ ହେଉଥିଲା, ଏ କାମ ଏଣିକି ବଢ଼ିବ । ସିଲେଇ କଢ଼ାଇ କାମ ଜାଣିଥିବା ସ୍ତ୍ରୀ ଲୋକଙ୍କର ଅଭାବ ନାହିଁ ଏ ସହରରେ । ଅଧିକାଂଶ ଅଭାବୀ ଲୋକ । ସ୍କୁଲ କଲେଜ ଗୋଡ଼ ମାଡ଼ିନଥିବା, ହାତରେ ପଇସା ନଥାଇ ପରଆଶ୍ରାରେ ପର୍ଦ୍ଦାତଳେ ଜୀବନ କାଟିଦେଉଥିବା, ଘରର ପୁରୁଷଙ୍କ ଅଦଉତି ସହୁଥିବା ନିରିମାଖୀ ମାଇପିମାନେ । ଏଣିକି ଆଉ ଗୋଟିଏ କଥା ବି ବୁଝାପଡୁଥିଲା ଫାତିମାକୁ, ଯେ ଏ ହାତ କାମ ଲାଗି ପୁରୁଣା କାରିଗରଙ୍କ ଉପରେ ଭରସା କରିବା ଦରକାର ନାହିଁ । ପୁରୁଷ କାରିଗର ସହଜରେ ନାରୀ ମୁରବୀଠୁ ଆଦେଶ ନେବା ଜାଣନ୍ତି ନାହିଁ, ତହିଁରେ ପୁଣି ହାତକୁ ଦି'ପଇସା ଆସିଲାମାତ୍ରେ ତାଙ୍କୁ ଆଉରି କେତେକଥା ଓଟାରିବ । ପୁରୁଣା ଦେହଘଷା ଅଭ୍ୟାସରୁ କାହାକୁ ମୁକୁଳାଇବା ତ ସହଜ ନୁହଁ । ସେମାନଙ୍କଲାଗି ପଇସା ଅର୍ଜିବାର ନିଶାଠୁ ବଳି ହେଲା ମଦ, ଜୁଆ, ଫୁଲାଫାଙ୍କି କରିବାର ନିଶା । ତାଙ୍କ ମଝିକୁ ଯାଇ ନିୟମିତ କାମ ଆଦାୟ କରିପାରିବା ଭଳି ଆତ୍ମବିଶ୍ୱାସ ବି ଏଯାଏଁ ଆସିନି ଫାତିମାର ।

ଚା' ପିଉ ପିଉ ହୁସ୍ନା ବେଗମ୍ କହୁଥିଲେ, "ତମେ ଆଜି ମୋ' ସାଙ୍ଗେ ଚାଲ, ନେଇଯିବି ମୁଁ ତମକୁ ସେଇ ଜାଗା ମାନଙ୍କୁ ଯେଉଁଠି ସ୍ତ୍ରୀ ଲୋକେ କାମ ଭୁଲିଗଲେଣି, ହାତରେ କିଛି

କରିବାକୁ ନାହିଁ ବୋଲି । ଆଜିକାଲି କେହି ତାଙ୍କ କାମକୁ ପଚାରୁନାହାନ୍ତି ବୋଲି । ତମେ ଟିକେ ଭେଟି କଥାବାର୍ତ୍ତା କରିବ ଯଦି ତାଙ୍କୁ ବଳ ମିଳିବ । ଆମ କାମ ଆଗକୁ ବଢ଼ିବ ।"

ପୁରୁଣା ଜରିର ଜାତି ଜାତିକା ଛୁଞ୍ଚି କାମ, ରଂଗୀନ ସୂତାର ହାତତିଆରି ଲେସ୍ କାମ ସବୁ ହାତକୁ ନେଇ ପରଖି ପରଖି ଫାତିମା କହିଲା, "ଚାଲୁନା ଏଇନା ଯିବା । ହାତରେ କିଛି ସିଲେଇ ସରଞ୍ଜାମ ନେଇ ଯିବା ଯେ ଏକାଥରକେ କାମ ବରାଦ କରି ଆସିବା । କି ପ୍ରକାର କାମ କୋଉ ଜାଗାରେ ଦିଆଯିବ ଆଗ ଠିକ୍ କରିନେବା ।"

ନିଜ ବ୍ୟାଗ୍ ଭିତରୁ ବଡ଼ ରକମର ସାଟିନ ବଟୁଆଟାଏ କାଢ଼ି ହୁସ୍ନା କହିଲେ, "ଏମିତି ବଟୁଆଟିଏ ଲେଖାଁ ରଖୁଥିଲୁ ଆମେ, ସିଲେଇରୁ ବଳିଲା କପଡ଼ାରେ ତିଆରି ହେଉଥିଲା । ତା' ଭିତରେ ଛୋଟିଆ ଥଳି ମାନଙ୍କରେ ବୋତାମ, ମାଳି ଆଦି ରଖୁଥିଲୁ ।"

ଫାତିମାର ବି ମନେଅଛି ଏମିତି ବଟୁଆ । କହିଲା, "ଭଲ କଥାଟିଏ କହିଲ । ଆମ କାରିଗରମାନେ ବି ଏମିତି ରେଶମୀ ସୁତୁଲି ଭିଡ଼ା ବ୍ୟାଗ୍ ମାନ ତିଆରି କରିବେ, ତା' ଭିତରେ ଆମେ ଦେଲା ସରଞ୍ଜାମ ସବୁ ରଖିବେ ।"

ହୁସ୍ନା ମୁଣ୍ଡ ହଲେଇ ହଁ ଭରି କହିଲେ, "ବ୍ୟାଗ୍ ଉପରେ ଛୁଞ୍ଚିକାମରେ ନିଜ ନାଁ ବି ଲେଖିଦେବେ ସେମାନେ । ଘରୁ ବାହାରିବାକୁ ଅନୁମତି ନଥିଲେ ତାଙ୍କୁ ଯୋଗାଇଦିଆଯିବ ସବୁକଥା, ବରାଦ କାମ ସରିଲେ ତାଙ୍କର ଘରୁ ସବୁ ନେଇଆସିବାର ବନ୍ଦୋବସ୍ତ କରାଯିବ । କ'ଣ କହୁଛ ?"

ଫାତିମା ତାଙ୍କ ପାପୁଲିକୁ ଦୁଇ ହାତରେ ମୁଠାଇ ଧରି କହିଲା, "କେତେ କଥା ତମ ମୁଣ୍ଡକୁ ଜୁଟୁଛି ହୁସ୍ନା ଦିଦି । ତମେ ସାଙ୍ଗରେ ଥିଲେ ଆମେ କେତେ କାମ କରିଯିବା ଦେଖିବ ।"

ହୁସ୍ନା ଉତ୍ତର ଦେଲେ, "କାହିଁକି ନ ରହିବି ସାଙ୍ଗରେ ? ତମଭଳି ଆଉ କିଏ ଏମିତି ଡାକିଥିଲା ମୋତେ ଘରକଣରୁ ବାହାରିଆସିବାକୁ ?"

ଉଠିପଡ଼ି ତଳ ଥାକରୁ ସରଞ୍ଜାମ କିଛି ଏକାଠି କରୁକରୁ ଫାତିମା ପଚାରିଲା, "କୋଉଠିକି ଆଗ ଯିବା କହିଲ ଦେଖି ।"

"ଚାଲୁନ ଯିବା ନବାବ ମଞ୍ଜିଲ । ତମ ଘର ପାଖ ତ । ସେଇ ଗୋଟାକ ହଭେଲୀରେ ଆମକୁ ଦଶ ପନ୍ଦର ଜଣ ମିଳିଯାଇପାରନ୍ତି । ମୋ' ମାଉସୀ ଝିଅ ଭଉଣୀଟିଏ ରହେ ସେଠି । ବଡ଼ ଖରାପ ଅବସ୍ଥା ତାଙ୍କର । ଲୋକଙ୍କ ପାଖେ ପୁରୁଣା ଜିନିଷ ବି ଥିବ, କୋଉକାଳୁ ରହୁଛନ୍ତି କିନା ।"

ହାତ ରହିଯାଇଥିଲା ଫାତିମାର । ହୁସ୍ନା ତାଙ୍କର କହିଚାଲିଥିଲେ । ଉତ୍ତର ଦେବାକୁ ଫାତିମା ଗଳାରେ ସର ନଥିଲା । କୁଆଡ଼ିକି ବାଟ କଢ଼େଇନେବେ ବୋଲି କହୁଚନ୍ତି ଏବେ

ହୁସ୍ନା ବେଗମ୍ ? ଏତେ ଦିନୁ ଆଖିଆଗରେ ଥାଇ ବି ଯେଉଁ ଘରଠି ତା' ଲାଗି ଦ୍ୱାରଟିଏ ଖୋଲିନି, ଯାହାର ଖାଲି ନିବୁଜ ପାଚେରୀଟିଏ ଦେଖୁଚି ସେ ସାମ୍ନାରେ ? କିଏ ଜଣେ ସେଠୁ ଡାକିବ ବୋଲି ବାଟ ଚାହିଁ ଚାହିଁ ଆଖିର ପାଣି ମରିଯାଇଚି । ଚାଲିଯାଏ ଆଜି ଯଦି ସେଠିକି, କ'ଣ ବା ହେବ ? ହୁଏତ କେହି ତାକୁ ଚିହ୍ନିବେ ବି ନାଇଁ ସେଠି । ଯେଉଁ ଘରେ ବସା ପାତିବ ବୋଲି, କେଉଁମତେ ନିଜ ହାତରେ ସଜାଇବ ବୋଲି ବର୍ଷ ବର୍ଷ ଧରି ମନରେ ଚିତ୍ର ଆଙ୍କିଚି ଫାତିମା, ପୁରୁଣା ମାନଚିତ୍ର ହଳଦିଆ ପଡ଼ି ହାତରୁ ଗୁଣ୍ଡହେଇ ଖସିପଡ଼ିଚି ଶେଷରେ । ତେବେ ଆଉ କ'ଣ ବା ଅଛି ସେଠି ତା' ଲାଗି ? ଆଉ ପାଞ୍ଚଟା ଜାଗା ଭଳି ତ ସିଏ ବି ।

ହୁସ୍ନା ସହଜ ଗଳାରେ କହିଚାଲିଥିଲେ – "ତମ ଗଳି ପାଖକୁ ତ ଲାଗିଚି ନବାବ ମଞ୍ଜିଲ, କେବେ ଯାଇନା କି ସିଆଡ଼େ ? ଗୋଟିଏ ବଡ଼ ହୱେଲୀ ଥିଲା ଆମ ପିଲାଦିନେ । ବାହାରେ ଭିତରେ କେଡ଼େ ସୁନ୍ଦର ବଗିଚା ଥିଲା । ପର୍ବ ମଉଛବରେ ଯାଇଚି ମୁଁ । ଯାହାର ସେ ଘରଥିଲା ଏବେ କୁଆଡ଼େ ଛିନ୍‌ଛତ୍ର ହେଇ ରହିଲେଣି, ଏବେ ସେଠି କିଏ ଭଡ଼ାରେ ଅଛି ତ କିଏ ଜବର ଦଖଲରେ । ପୂରା ଗୋଟେ ମୋହଲ୍ଲା ପାଲଟି ଯାଇଚି ଜାଣ । କେଜାଣି କୋଡ଼ିଏ କି ତିରିଶ ପରିବାର ରହୁଥିବେ । ସେଇଠି କାରିଗର ପାଇବା ଆମେ, ଖାଲି ରାଜି କରେଇ ପାରିଲେ ହେଲା ।"

ଶାହନଶା ହୋଟେଲରୁ ବାହାରିଲା ବେଳକୁ ଉପରଓଳିର ଖରା ଢଳିଆସୁଥାଏ । ନବାବ ମଞ୍ଜିଲ ସାମ୍ନା ଫାଟକ ପାଖେ ଅଟୋରୁ ଓହ୍ଲେଇଲେ ଦିହେଁ । କାହିଁ କେତେ ଯୁଗ ପରେ ଦେଖୁଚି ସେ । ସେମିତି ଦିଶୁଚି ପ୍ରାୟ ଦିଶୁଥିଲା ଯେମିତି ସେ ପ୍ରଥମ ଥର ଆସିଥିଲା ବେଳେ । ମିଠି ଇଦ୍‌ର ଥାଳି ସଜେଇ ଆସିଥିଲା ଯେବେ ରେହମାନ ସାଙ୍ଗେ । କେତେ ବୟସ ବା ହେଇଥିଲା ଫାତିମାକୁ ? ପିଲାଦିନର ଚୌକାଠ ପାରିହେଇନଥିଲା । କିଛି ନଜାଣି ନବୁଝି ବାଜି ପକେଇଦେଇଥିଲା ନିଜକୁ ଯେଉଁ ଝିଅଟି, ଏତେ ବର୍ଷ ପରେ ବି କ'ଣ ପୂରାପୂରି ମୁକୁଳେଇ ନେଇ ପାରିଚି ବନ୍ଧକ ପଡ଼ିଥିବା ଆପଣାକୁ ?

ବଡ଼ ଫାଟକ ଦେହରେ ଥିବା ଛୋଟା କବାଟ ଦେଇ ଦିହେଁ ଭିତରକୁ ଆସିବା ପରେ ହୁସ୍ନା ରହିଗଲେ, ଏଣେ ତେଣେ ଅନେଇ କହିଲେ, "ରହ, ପଚାରିବା କାହାକୁ ଦେଖି ।"

ଅନାୟାସ ଫାତିମା ଡାକିଲା ତାକୁ, "ଆସ ଦିଦି ମୋ' ସାଙ୍ଗେ । ମୋତେ ଜଣା ଅଛି କୁଆଡ଼କୁ ଯିବାକୁ ହେବ ।"

କେବଳ ଓସାରିଆ ବାହାର ବାରଣ୍ଡାକୁ କାନ୍ଥଦେଇ ବୁଜାଯାଇଥିଲା ଧାଡ଼ି ଧାଡ଼ି ଝରକାଦିଆ ଯେଉଁ ପାଚିରୀ, ତାଆରି ମଝାମଝି ବଡ଼ କବାଟଟି ସେମିତି ଅଛି ଅବିକଳ । ଖାଲି ଆଖପାଖରେ ଥିବା ଫୁଲଗଛ କେଇଟି ନାହିଁ । ହତା ଭିତର ବଡ଼ ଗଛମାନ ବୋଧେ

ଅଧିକାଂଶ ସେମିତି ରହିଛି, ଠିକ୍ ମନେପଡୁନି ଆଉ । ହେଲେ ଆଉରି ଶୃଙ୍ଖଳା ଧୂଳିଆ ଦିଶୁଚି ସାରା ହତା ଭିତରଟା । ଦରଆଉଜା କବାଟ ଠେଲି ଭିତରେ ପାଦ ଦେଲାବେଳେ ଫାତିମା ଅନେଇଲା ମୁଣ୍ଡ ଉପର କାନ୍ଥ ଛାତକୁ । ନା, ଗେମେଲୀ ଫୁଲର ଯେଉଁ ବୁଦାଟି ଝଙ୍କାଳିଆ ହେଇ ମାଡ଼ିଥିଲା କବାଟ ଉପରସାରା, ଜମାରୁ ନାହିଁ ଆଉ । ଭିତର ବଡ଼ ଅଗଣାଟା ଟିକିଏ ବଦଳିଛି ନିଶ୍ଚେ, ଏଠି ସେଠି କାହା କାହା ଘରେ ଅଧିକା ବାରଣ୍ଡା ଟିକିଏ କି କୋଠରୀଟିଏ ଯୋଡ଼ା ଗଲା ପରି ଦେଖାଯାଉଛି । କେଉଁଟି ବା ଝରକାଟିଏ ବନ୍ଦ କରାଯାଇଥିବାର ନୂଆ ପରସ୍ତରା ଦିଶୁଛି । ଉପର ମହଲାରେ କେଉଁଠି କୋଠରୀ ଗୋଟେ ଅଧେ ବି ତିଆରି ହେଲାଭଳି ମନେହେଉଛି ।

ଖଣ୍ଡେ ଦୂରରୁ ଜଣେ କିଏ ଡାକିଲା, "ଆରେ ହୁସ୍ନା ଦିଦି, ତମେ ଏଠି ? କୁଆଡ଼େ ଆସିଥିଲ କି ?"

ହୁସ୍ନା ହସିପକେଇଲେ ତାଙ୍କ ମନଜିଣା ଖିଲିଖିଲି ହସ – "ତମରି ଘରକୁ, ଆଉ କୁଆଡ଼େ ?"

ତିନି ଚାରି ଘରକୁ ଯାଇ କଥାବାର୍ତ୍ତା ହେଇସାରିଲା ବେଳକୁ ଖରା ନଇଁବାକୁ ହେଲାଣି । ଫାତିମା ଅବାକ୍ ହେଉଥିଲା । ଜଣାନଥିବା ଘରଟିଏକୁ ଯାଇ ଚିହ୍ନା ପରିଚୟ ହେବା, ଅମୁକ ସମୁକ ନାଁ ଦେଇ ଆଳିଆ ଲେଖା ବାଳିଆ ବନ୍ଧୁର ସଂପର୍କ ପାତିବାରେ ହୁସ୍ନା ବେଗମ୍‌ଙ୍କ ପାରଙ୍ଗମ ପଣିଆ ଦେଖିବା କଥା । ନୂଆ ପ୍ରକାର ଦିନର ବିଶ୍ୱାସ ଦେଇ, ଆଉଦିନେ ଆସିବାକୁ ନିଶ୍ଚୟ କରି ବାହାରି ଆସିଲା ବେଳକୁ ଫାତିମା ମଝି ଅଗଣାରେ ରହିଯାଇ କହିଲା, "ସେପାଖ କଡ଼ରେ ଗୋଟିଏ ପରିବାର ସହିତ ମୋର ପରିଚୟ ଅଛି ଦିଦି । ଏ ହଭେଲୀର ମାଲିକ ସେଇମାନେ ଥିଲେ, ଖାଲି ବୁଢ଼ୀ ଜଣେ ଅଛନ୍ତି ଏବେ । ଯିବା କି ଟିକିଏ ?"

ହୁସ୍ନା ମନେପକେଇଲା ପରି ପଚାରିଲେ, "ମୁଁ ଜାଣିଥିବି ବୋଧେ ତାଙ୍କୁ । କିଏ କହିଲ ?"

ବାଁ ପାଖ ଶେଷ କୋଣର ସେଇ ଘରଟି । କବାଟରେ ହାତ ମାରି ଫାତିମା ଡାକିଲା, "ଖାଲା ଅଛନ୍ତି କି ?"

କେତେବେଳକେ କବାଟ ଖୋଲିଲା । ମୁକ୍ତାରର ମା' ଖୁବ୍ ବେଶୀ ବଦଳି ନାହାନ୍ତି । ସେମିତି ଦୁର୍ବଳ, ଉଦାସ ଚେହେରା । ପିଠି ନଇଁଯାଇଛି ଟିକିଏ ।

ଫାତିମା ଚିହ୍ନା ଦେଲାନାଇଁ । ହୁସ୍ନା ଆଗପଡ଼ି କହିଲା, "ଦିଦି, ଚିହ୍ନନ୍ତୁ ଦେଖି କିଏ ଆସିଚି ବୁଲିବାକୁ ? ଆପଣ ତ ପର କରିଦେଲେ, ମୁଁ କିନ୍ତୁ ଖବର ନେଇ ଆସିଚି, ଦେଖନ୍ତୁ ?"

ଭିତରୁ ପୁରୁଷ କଣ୍ଠଟିଏ ଶୁଭିଲା, "କିଏ ଆସିଚି ଅମ୍ମି ?"

ପିଠି ମଝିଦେଇ କାଲୁଆ ସୁଅଟାଏ ବହିଗଲା ଫାତିମାର । ଗୋଡ଼ ପୋତିହୋଇଗଲା ସେଇଠି । ଭିତର ଘର କବାଟପାଖେ ଠିଆହୋଇଥିଲା ମୁକ୍ତାର, କିଛି ଗୋଟେ କହିବାକୁ ଯାଇ ତା' ତଣ୍ଟିରେ କଥା ରହିଯାଇଥିଲା । ହୁସ୍ନା କିନ୍ତୁ ଦିହିଙ୍କର ପରିଚୟ ଦେଉଥିଲେ, ଆଗପାଖରୁ ବି ଅପେକ୍ଷିତ ସ୍ୱାଗତ ହେଉଥିଲା ଏତେବେଳକୁ । ଫାତିମା କାହା ମୁହଁକୁ ନ ଚାହିଁ ଏଣେ ତେଣେ ଦୃଷ୍ଟି ଘୂରାଉଥିଲା । ଦୋଦୋପାଞ୍ଚର ମୁହୂର୍ତ୍ତ କଟିଗଲା ପରେ ମୁକ୍ତାର ଡାକିଲା ସେମାନଙ୍କୁ, "ଆସନ୍ତୁ ଭିତରକୁ । ବସନ୍ତୁ ନା, ଠିଆହୋଇ ରହିଲେ !"

ମୁକ୍ତାରର ମା' ଆଗଭଳି, ଆଉ କେଉଁଠି ମନ ଥିଲାଭଳି, ଅନ୍ୟମନସ୍କ । ଲକ୍ଷ୍ୟ କରୁଛି ଫାତିମା, ତାଙ୍କ ମୁଣ୍ଡବାଳ ପାଚି ଧଳା ହୋଇଗଲାଣି, ମୁହଁସାରା ରେଖାର ଜାଲ । କହୁଚନ୍ତି, "ବସ, ବସ । ଯାହେଉ ଆସିଲ ଏତେଦିନେକ ଭଉଣୀ, ମରିଲି କି ହଜିଲି ଜାଣିବା ଲାଗି ।"

ଫାତମାକୁ ଦେଖି ପଚାରୁଛନ୍ତି, "ତମକୁ ତ ଦେଖିଲା ପରି ଲାଗୁଚି ବେଟା । କାହା ଝିଅ କହିଲ ?"

ମୁକ୍ତାର ହଠାତ୍ ଫେରିପଡ଼ି ଭିତର ଘରକୁ ଚାଲିଯାଉଛି । ଫାତିମା କିଛି ଉତ୍ତର ଦେବା ପୂର୍ବରୁ ହୁସ୍ନା ଚଟ୍‌ପଟ୍ ଫାତିମାର ପରିଚୟ ଦେଇ କହୁଛନ୍ତି, "ଆପଣ ତାକୁ ଚିହ୍ନିନଥିବେ ନା କ'ଣ ? ଫାରୁକ୍ ମିଆଁଙ୍କ ଝିଅ ପରା ସେ, ଗ୍ୟାସ୍ କାଣ୍ଡରେ ଚାଲିଗଲେ ଫାରୁକ୍ ମିଆଁ ଜାଣିନା ? ଏଇ ସେପାଖ ଗଳିରେ ତା' ଘର ପରା ?"

ମୁକ୍ତାରର ମା' କ'ଣ ମନେ ପକାଇବାକୁ ଚେଷ୍ଟା କଲାଭଳି ଚାହିଁଛନ୍ତି ଫାତିମାର ମୁହଁକୁ । ହୁସ୍ନା ବିନା ଉପକ୍ରମଣିକାରେ କାମ କଥା ଆରମ୍ଭ କରୁଛନ୍ତି, ନିଜ ବ୍ୟାଗ ଭିତରୁ ସିଲେଇ ଜିନିଷ କାଢ଼ି ଦେଖାଉଛନ୍ତି ତାଙ୍କୁ ।

କଥାବାର୍ତ୍ତା ସହଜ ଗୁଳାରେ ପଡ଼ିଲାଣି । ଏତେବେଳକୁ ମୁକ୍ତାର ପୁଣି ଆସୁଛି ଦାଣ୍ଡ ଘରକୁ । କହୁଛି, "ଅମ୍ମି, ତମେ ବସ, ମୁଁ ଚା' ତିଆରି କରିଆଣେ ।"

ମୁକ୍ତାରର ମା' ଭିତରକୁ ଯାଉଛନ୍ତି ବାକ୍ସଖୋଲି ପୁରୁଣା ଲୁଗାଜାମାରୁ କ'ଣ ସିଲେଇକାମ ଦେଖେଇବେ ବୋଲି । ଦାଣ୍ଡଘରେ ହୁସ୍ନା ଆଉ ଫାତିମା ବସିଛନ୍ତି ଚୁପ୍‌ଚାପ୍ । ମୁକ୍ତାର ଦି'କପ ଚା' ନେଇ ଆସୁଛି । ଟେବୁଲ୍‌ରେ କପ୍ ରଖିଦେଇ ଆଖି ଉଠାଉଛି ଫାତିମାର ମୁହଁକୁ । ପ୍ରଥମକରି । ଫାତିମା ନିଜ ଆଖି ନୋଉଁନାଇଁ । ଦୃଷ୍ଟିର ଡୋରଟିଏ ପୁଣି । କେତେବର୍ଷ ପରେ ?

ଗତ କେଇ ବର୍ଷ ଭିତରେ ଦେଖିଛନ୍ତି ଉଭୟେ ପରସ୍ପରକୁ । କେଇଥର । ଦୂରରୁ । ହେଲେ ଆଖିକୁ ଆଖି ଛୁଇଁନି ଥରେହେଲେ । ଛୁଇଁବା ପୂର୍ବରୁ ଫେରେଇନିଆଯାଇଛି ଦୃଷ୍ଟି । କଥାବାର୍ତ୍ତାର ପ୍ରଶ୍ନ ନାହିଁ । ପାଖାପାଖି ହେବାଲାଗି ଚେଷ୍ଟା କରାଯାଇନି କାହାରି ତରଫରୁ ।

କାହିଁକି, ସେ ପ୍ରଶ୍ନ ଉଭୟଙ୍କ ଛାତି ଭିତରେ ପୋତା ହୋଇ ରହିଛି ।

ହୁସ୍ନା ଏଥର ପଚାରୁଛନ୍ତି ମୁକ୍ତାରକୁ, "ତମେ ପରା ପୁଅ ବମ୍ବେର ଥାଅ ?"

ମୁକ୍ତାର କହୁଛି, "ହଁ । ଆସେ ବେଳେ ବେଳେ ଘରକୁ ।"

ହୁସ୍ନା ଚା' ସୁଡୁକେଇ କହୁଛନ୍ତି, "ତମର କେତେ ନାଁ ଡ଼ାକ । କିଏ ନ ଜାଣିଛି ତମ କଥା ?"

ଫାତିମା ଭାବୁଛି, ହୁସ୍ନା କିଛି ଶୁଣିନାହାନ୍ତି ଦିହିଙ୍କ ବିଷୟରେ ? ନା ଲୋକେ କିଛିଦିନ ପରେ ଭୁଲିଯାଆନ୍ତି ସତରେ ?

ଭିତରୁ ପାଟିକରି ଡାକୁଛନ୍ତି ତା' ମା' – "ମୁକ୍ତାର ବେଟା ଆସିବୁ ତ ଟିକେ, ଏ ବାକ୍ସଟା..."

ମୁକ୍ତାର ଉଠି ଭିତରକୁ ଯାଉଛି । ହୁସ୍ନା ପଚାରୁଛନ୍ତି, "କେତେ ବାଜିଲା ଝିଅ ? ଏ ମା', ସଞ୍ଜ ଅନ୍ଧାର ହେଲାଣି, ଏଯାଏଁ ମୁଁ ବସିଚି କାଇଁକି ?"

ଦିହେଁ ଉଠିଲାବେଳେ ଭିତରୁ ହାତରେ ଲୁଗା ମେଞ୍ଚାଏ ନେଇ ଆସୁଛନ୍ତି ମୁକ୍ତାରର ମା', କହୁଛନ୍ତି, "ହେଇଟି ଦେଖ, ମୋ' ହାତ ତିଆରି ଫୁଲକରା ଚାଦର । କୋଉକାଳର, ଆମ ଘରେ ମିଶି ତିଆରିଥିଲୁ ।"

ହୁସ୍ନା ହାତକୁ ନେଉ ନେଉ କହୁଛନ୍ତି, "ହଁ ପରା । ସେବେଳେ ସେମିତି ହେଉନଥିଲା କି ? ଗପ କରି ଗୀତ ବୋଲି ଏକାଠି ମିଶି ଚାଦରରେ ଓଢ଼ଣୀରେ ଫୁଲ ପକାହେଉଥିଲା । ଆଉ ତମ ବାହାଘର ବେଳ ଓଢ଼ଣୀ ଆଉ ଲେହେଙ୍ଗା ରଖିନା ଭାଭୀ ?"

ମୁଣ୍ଡ କୁଣ୍ଡେଇ ବିଚାରୀ କହିଲେ, "କେଜାଣି କୋଉଠି ଥିବ, ପାଉନି । ଆଉ ଦିନେ ଆସିବ, କାଢ଼ି ରଖିଥିବି ।"

ହୁସ୍ନା ଉଠି କହୁଛନ୍ତି, "ଫାତିମା ଦେଖନ୍ତୁ ତମ କାମ, ମୁଁ ଯାଏଁ ଫାତିମା । ତମର ତ ଘର ଏଇ ପାଖ । ମୋର ଦୂର ବାଟ ।"

ହୁସ୍ନା କବାଟ ଦେଇ ବାହାରିଯାଉଛନ୍ତି । ମୁକ୍ତାରର ମା' ତାଙ୍କୁ ବାଟେଇ ଦେବାକୁ ଯାଉଛନ୍ତି । ଦିହେଁ ଗପ କରିକରି ଗଲେଣି ବାହାର ପାଖ ଅଗଣା ସେପାରି କବାଟ ଆଡ଼େ, ସ୍ୱର ଧୀମା ଶୁଭିଶୁଭି ଆସୁଛି । ଫାତିମା ଚୁପ୍ ହୋଇ ବସିଛି, ଟେବୁଲ୍ ଉପରେ ଖୋଲା ଥିବା ଚାଦର ଉପରେ ଆଖି ରଖି । ସାମ୍ନା ଚଉକିରେ ମୁକ୍ତାର ।

ଚାଦର ଉପରୁ ଆଖି ଟେକୁଛି ଫାତିମା । ମୁକ୍ତାରର ଆଖି ତା' ଉପରେ । ହାଲ୍କା ଅନ୍ଧାର ଓହ୍ଲେଇଆସୁଛି କୋଠରୀରେ । କଛି କହିବାକୁ କଥା ନାହିଁ ଦୁହିଁଙ୍କର । କେତେବେଳକେ ମୁକ୍ତାର କହୁଛି, "ଚା' ପିଅ । ଥଣ୍ଡା ହେଇଗଲା ।"

# ଗତକାଲିରୁ ପୁଣି ମୁଠାଏ

ମୁକ୍ତାରର ମା' ଯେତେବେଳେ ହୁସ୍ନାଙ୍କୁ ବାଟେଇଦେଇ ଫେରିଲେ, ଆଉ ତାଙ୍କର ଅଚିହ୍ନା ଭାବ ନଥିଲା ଫାତିମା ଲାଗି । ଅଳ୍ପ ହସି ସିଧା ଭିତରଘରକୁ ଚାଲି ଯାଉ ଯାଉ କହିଲେ, "ତମେ ଦିହେଁ କଥାବାର୍ତ୍ତା ହୁଅ ବେଟୀ । ଏତେଦିନ ପରେ ଆସିଲୁ ଯା ହେଉ, ଆଲ୍ଲାଙ୍କ ଇଚ୍ଛା ।"

ଫାତିମାର ଟିକିଏ ଆଶ୍ଚର୍ଯ୍ୟ, ପଚାରିଲା ମୁହଁକୁ ଚାହିଁ ମୁକ୍ତାର ଉତ୍ତର ଦେଲା, "ଅମ୍ମିକୁ ସବୁ ଜଣାଅଛି ଆମ କଥା । ତା' ମନରେ କ'ଣ ମୋ' ଲାଗି ଦୁଃଖ ଦୁଶ୍ଚିନ୍ତା ନାହିଁ ? ମୋ' ମା' ପରା ସିଏ ।"

ଏଇ ଦଶମିନିଟ୍‌ରେ ଏଣୁତେଣୁ କଥା ଭିତରେ ଦିହେଁ ଏକପ୍ରକାର ସହଜ ସ୍ୱରରେ କଥାବାର୍ତ୍ତାକୁ ଆସିଯାଇଥିଲେ । ସତେକି ଅଭିଯୋଗ ଆକ୍ଷେପ କରିବାର ବେଳ ଗଡ଼ିଗଲାଣି । ଯାହା ଅଛି କେବଳ କିଛି ଏକାଠି ସ୍ମୃତି । ତାକୁ ବି ଏକାବେଳକେ ଖୋଲାଖୋଲି କରିବାଲାଗି ସାହସ କୁଳାଉନାହିଁ । କେବଳ କୁଶଳ ସମାଚାର ହିଁ ନିଆଚାଲିଚି, ବର୍ତ୍ତମାନର, ଗଲାକାଲିର ।

ମୁକ୍ତାର କହୁଚି, "ତମେ ଚାକିରୀ କରୁଚ ବୋଲି ମୁଁ ଶୁଣିଚି । ଭଲ ଚାଲିଚି ତମ ଦୋକାନ କାଳେ ।"

ଫାତିମା ଜବାବ ଦେଲା, "ଘରର ଅବସ୍ଥା ଭଲନାହିଁ । ରୋଜଗାର ଲାଗି କିଛି କରିବାକୁ ତ ହେବ ।"

ୟା'ଠୁ ଅଧିକ ନିଜ କଥା କହିବାକୁ ଇଚ୍ଛା ହେଉନି, କହିଲେ ବି ମୁକ୍ତାର କେତେ ବା ବୁଝିବ । କେତେବେଳକେ ଫାତିମା ପଚାରୁଚି ମୁକ୍ତାରକୁ ତା' କାମ ବିଷୟରେ । ମୁକ୍ତାର କହୁଚି ତା' କାମ କଥା, ସ୍କ୍ରିପ୍ଟ ଲେଖା କଥା, ଅମୁକ ସିନେମାରେ ନିର୍ଦ୍ଦେଶକ କଥା ଦେଇ ତାକୁ କାମ ନ ଦେବା କଥା, ବା ସମୁକ ପ୍ରଡ୍ୟୁସରଙ୍କ ଫିଲ୍ମ ଶେଷକୁ ଆଦୌ ତିଆରି ନ ହେଇପାରିବାର କଥା । ମୋଟ ଉପରେ ଷ୍ଟ୍ରଗଲ ଚାଲିଚି ତା'ର । ଛୋଟକାଟିଆ କାମ ମିଳୁଚି ଏଠି ସେଠି, ଟିଭି ସିରିଆଲରେ, ଡକ୍ୟୁମେଣ୍ଟାରୀ ଗୋଟିଏ ଅଧେ । ତଥାପି ଆଶା ଅଛି, କିଛି ମିଳିଯାଇପାରେ ନିକଟରେ ।

ତା' ମୁହଁକୁ ଚାହିଁରହୁଚି ଫାତିମା କିଛି ସମୟଧରି । ଚେହେରା ବଦଳିଯାଇଚି ଟିକିଏ । ଅଳ୍ପ ଟିକିଏ ଦେହ ଲାଗିଚି । ଆଗ ଅପେକ୍ଷା ଗମ୍ଭୀର, ପ୍ରାୟ ଆଉରି ଆକର୍ଷଣୀୟ ଦିଶୁଚି ମୁକ୍ତାରର ବ୍ୟକ୍ତିତ୍ୱ । ବୋଧହୁଏ ରୁପେଲୀ ପରଦାର ଆଖାପଖ ସେ ଆବହାଓ୍ୱାରେ ରହିଲେ ହିଁ ବଦଳିଯାଏ ମଣିଷର ହାବଭାବ, ଆଦବକାଇଦା । ତେବେ କଥା କହିଲେ ଲାଗୁଚି କିଛି ହେଲେ ବଦଳିନି ମଣିଷଟି ।

ଫାତିମା ପଚାରୁଚି, "ଆଉ ଏଇଠି ଯେଉଁ ରଙ୍ଗ ମହୋତ୍ସବକୁ ଆସିଥିଲ ? ଆଜିକାଲି ପୁଣି ବେଶୀ ଡ୍ରାମା କରୁଚ ବୋଧେ ?"

ଉଦାସ ଦିଶୁଚି ମୁକ୍ତାର । କହୁଚି – "ଏମିତି ମଝି ମଝିରେ ନାଟକ କରେ । ହେଲେ ଆଜିକାଲି ସେଥିରେ ଭବିଷ୍ୟତ କ'ଣ ଅଛି ? ଅଳ୍ପ କିଛି ସୌଖୀନ ଦର୍ଶକଙ୍କ ଲାଗି କ'ଣ ନିଜ ଜୀବନଟାକୁ, ସବୁ ପରିଶ୍ରମକୁ ଦେଇଦେଇ ହବ ?"

ଫାତିମା କହୁଚି, "ମୋର କାଇଁକି ମନେହେଲା ବୋଧେ ରଙ୍ଗମଞ୍ଚକୁ ଫେରିଆସିବ ବୋଲି ଚିନ୍ତା କରୁଚ । ସମସ୍ତେ ତମର ଏଥରର ନାଟକ ବିଷୟରେ କଥାବାର୍ତ୍ତା କରୁଚନ୍ତି । କେତେ ଚର୍ଚ୍ଚା ଖବରକାଗଜରେ । ବାହାରିଥିଲା ଏଠି ତମର ନିଜ ନାଟକ ମଣ୍ଡଳୀ ତିଆରି କରୁଚ ବୋଲି । ଭଲ ହୁଅନ୍ତା, ଏତେଦିନ ତ ବମ୍ବେରେ ରହିଲ ।"

ମୁକ୍ତାର ଦାନ୍ତ ଚିପି ଗମ୍ଭୀର ହେଲା । କହିଲା, "ଏଠି ରହିବାର ଥିଲେ ଯାଇଥାନ୍ତି କାଇଁକି ? ତା'ଛଡ଼ା ବମ୍ବେରେ ତ ଷ୍ଟ୍ରଗଲ୍ କରି ଲୋକ ଜୀବନ ବିତାଇଦିଅନ୍ତି । ଅନେକଙ୍କୁ ଡେରିରେ ଚାନ୍ସ ମିଳେ । ଆଉରି କେତେକଙ୍କୁ ଆରମ୍ଭରେ ଗୋଟାଏ ଦିଇଟା ସଫଳତା ମିଳେ । ତା'ପରେ ମିଳେଇଯାଆନ୍ତି, ତାଙ୍କ ପତ୍ତା ରହେନି । ସେଇ ଇଣ୍ଡଷ୍ଟ୍ରିଟା ସେମିତି ।"

କଥା ବଦଳାଇଲା ଫାତିମା । – "ସେଇଠି ରହୁଚ ନା ଅନ୍ୟ କେଉଁଠିକି ଗଲଣି ?"

ପଦଟିଏ ଜବାବ – "ସେଇଠି ।"

ଫାତିମା ସହଜ କଥାବାର୍ତ୍ତା ବଢ଼ାଇବାକୁ ଚେଷ୍ଟାକରୁଚି । ମୁକ୍ତାରକୁ ଭଲ ନ ଲାଗିଲାଭଳି କଥା କହିବାକୁ ତା'ର ଇଚ୍ଛାନାହିଁ ।

ମୁକ୍ତାରର ମା' ଆସି ଲାଇଟ୍ ଜଳାଇଦେଉଚନ୍ତି । ପଚାରୁଚନ୍ତି, "କ'ଣ ଟିକେ ଆଣିବି ବେଟୀ, ଖାଇବ କିଛି ?"

ଫାତିମା ମୁଣ୍ଡ ହଲେଇ ମନା କରୁଚି, କହୁଚି, "ନାଇଁ ମାଉସୀ, ମୁଁ ଯିବି ଏଥର । ଡେରି ହେଲାଣି ।"

କହୁଚି କିନ୍ତୁ ବସିରହୁଚି । ମାଉସୀ କହୁଚନ୍ତି, "ଯାଏଁ ଆଣେ କ'ଣ ଟିକିଏ । ଏତେ ଦିନପରେ ଆସିଚ, କ'ଣ ଟିକିଏ ନଖାଇ କେମିତି ଯିବ ଝିଅ ।" ଉଠିଯାଉଚନ୍ତି ପୁଣି ରୋଷଘର

ଆଡ଼କୁ ।

ମୁକ୍ତାର ମୁହଁକୁ ଟିକିଏ ହସ ଆଣୁଚି, ଥଟ୍ଟା କଲାପରି କହୁଚି, "ବସ ଟିକିଏ । ସେ ଘରେ ଆଉ ତମକୁ ଆକଟ କରିବାକୁ କିଏ ଅଛି ଏବେ ? ବାହାରେ ଚାକିରୀ କରୁଚ, ଡେରିରେ ଘରକୁ ଫେରିବାକୁ ଡରୁଚ ?"

ଫାତିମା ବୁଝୁଚି, ଉତର ଦେଲେ କଥା ବଢ଼ିବ, ଉଭୟଙ୍କୁ ଭଲ ନଲାଗିଲା ପରି କଥା । ମୁହଁ ପୋତି ଚୁପ୍ ରହୁଚି ।

ପୁଣି କହୁଚି ମୁକ୍ତାର, "ତମ ଚେହେରା ବଦଳିଯାଇଚି ଫାତିମା । ଆଗଠୁ ଆଉରି ସୁନ୍ଦର ଦିଶୁଚ ତମେ । କଥା କ'ଣ ?"

ମୁକ୍ତାରର ମୁହଁକୁ ଚାହୁଁଚି ଫାତିମା । ତା' ଗଳା ରୁନ୍ଧିଦେଉଚି, କଥା ଜୁଟୁନି ମୁହଁକୁ । ମୁଣ୍ଡକୁ । ଲମ୍ବା ନିଃଶ୍ୱାସ ଟାଣୁଟାଣୁ ଫାତିମାର ଦୁଇଆଖିରୁ ଅନାୟାସ ବହିଯାଉଚି ଲୁହଧାର ।

ରୋଷେଇଘରୁ କ'ଣ ଖୁଡ଼୍‌ଖାଡ଼୍ ଶୁଭୁଚି । ମୁକ୍ତାର ଉଠିଆସି ପାଖ ଚଉକିରେ ବସୁଚି । ଫାତିମା ଆଡ଼କୁ ଅଳ୍ପ ଝୁଙ୍କିପଡ଼ି କହୁଚି, "କାଇଁକି ଫାତିମା ? ମୋତେ ବୁଝାଇଦିଅ କାଇଁକି ।"

ଫାତିମା ଲୁହ ପୋଛିଲା । ମୁହଁ ଟେକି ପଚାରିଲା, "କ'ଣ କାଇଁକି ?"

"କ'ଣ ଭୁଲ୍ ହେଲା ମୋର ? କାଇଁକି ଏମିତି କଲ ମୋ' ସାଙ୍ଗେ ?"

ସେଇ ପୋଛିଥିବା ଲୁହ ପୁଣି ଉଚ୍ଛୁଳିଗଲା ଫାତିମା ଆଖିରୁ ।

ମୁକ୍ତାର କହିଲା, "ବୁଝୁଚି, ସେତେବେଳେ ଗ୍ୟାସ୍ ଦୁର୍ଘଟଣା କଥାରୁ ତମ ମନ ବ୍ୟସ୍ତ ହେଲା । ତା'ବୋଲି ସେ କାଗଜରେ ତମ ହାତଲେଖା ଚିଠି ?"

ଏଥର ମୁକ୍ତାରର ଗଳା ରୁନ୍ଧି ହେବାର ପାଳି । ତିକ୍ତ ବିବ୍ରତ ଦିଶୁଚି ତା' ମୁହଁ । କୋହ ସମ୍ଭାଳି ଭଙ୍ଗା ଭଙ୍ଗା ଗଳାରେ କହୁଚି ସେ, "ଫାତିମା, ଏତେ ନିଷ୍ଠୁର ମଣିଷ ହେଇପାରେ ?"

ନିଜକୁ ଆୟତ୍ତ କଲା ଫାତିମା । ପର୍ସରୁ ରୁମାଲ କାଢ଼ି ମୁହଁ ପୋଛିଲା । ଖାଲା ଥାଳିଆରେ କ'ଣ ଜଳଖିଆ ଆଣୁଥିଲେ । ଉଠିପଡ଼ି ତାଙ୍କ ହାତରୁ ନେଇ ଟେବୁଲ୍‌ରେ ରଖିଲା ଫାତିମା, କହିଲା, "ମିଛରେ ଆପଣ ଏତେ କଷ୍ଟକଲେ ଖାଲା ।"

ମାଉସୀଙ୍କ ମୁହଁ କାନ୍ଦ କାନ୍ଦ ହେଲା । କହିଲେ, "ତୁ ପରା ଏ ଘରର ବୋହୂ । ଏ ଟୋକାଟା ବୋକାଟାଏ ବୋଲି ତତେ ଘରକୁ ନ ଆଣି ବାହାରେ ରଖିଥିଲା । ତୁ ଚାଲିଆ ଏ ଘରକୁ ବେଟୀ, ମୋରି ପାଖେ ରହିବୁ ।"

ଫାତିମା ଛାତିଭିତରେ ପୁଣି ଥରେ ଭାଙ୍ଗିଯାଉଛି ବନ୍ଧ ବାଡ଼ । ହାତପାପୁଲିରେ ମୁହଁ ମାଡ଼ି ଏଥର କାନ୍ଦୁଚି ସେ ଖୋଲାଖୋଲି । ପାଖକୁ ଉଠିଆସୁଚନ୍ତି ମୁକ୍ତାରର ମା' । ତା' ପିଠି ଆଉଁସି ବୋଧ ଦେଉଚନ୍ତି । କହୁଚନ୍ତି, "ହଉ, ଯାଉ ଯାହା ଗଲା । ପୋଛିଦିଅ ଦିହେଁ ମନରୁ ।

ପିଲା ବୟସରେ ଏମିତି କେତେ ଭୁଲ୍ ହୁଏ । ଆଲ୍ଲା ଚାହିଁଲେ ସବୁ ଠିକ୍ ହେଇଯିବ ।"

ପୁଣି କହୁଚନ୍ତି, "କେତେ କରି କହୁଚି ପୁଅକୁ, ଏଥର ବୟସ ହେଲା, ଝିଅଟିଏକୁ ନିକାହ କରିଆଣ । ଜିଦି ଧରିଚି, ନା । କଣ ନା ଯେଯାଏଁ ବମ୍ବେରେ ଭଲକରି ତିଷ୍ଠି ନ ପାରିଚି ଆଉ ଜଣକୁ ଆଣି ହଇରାଣ କରିବିନି । ମୁଁ କହୁଚି, କିରେ, ଯେମିତି ଆମେ ଚଳୁଚୁ, ସେମିତି ଚଳିଯିବ ଆଉ ଜଣେ । ତା'ର ଏକା ଜିଦି, ନା । ତୁ ତ ଦେଖୁଚୁ ବେଟୀ ମୋ' ଅବସ୍ଥା । ବୟସ ହେଲା, ଦେହ ଭଲ ରହୁନି । କେତେଦିନ ଚଳିବି ଏମିତି ଏକୁଟିଆ ?"

ପୁଣି ଲୁହ ପୋଛି ସାଷ୍ଟମ ହେଇ ଏ ମୁହଁରୁ ସେ ମୁହଁକୁ ଚାହୁଁଚି ଫାତିମା । କ'ଣ ବୁଝିବ କିଛି ଠିକ୍ କରିପାରୁନି । ମୁକ୍ତାର କହୁଚି, "ଥାଉ ମା', ତାକୁ କିଛି କହନି । ସେ ଜାଣିଚି ମୋର ସମ୍ବଳ ନାହିଁ । ଘର ଅବସ୍ଥା ତ ଦିନକୁ ଦିନ ଅସମ୍ଭାଳ ହେଉଚି । ଗାଁ ଜମିରୁ ବି ଏଣିକି ଆଉ କିଛି ମିଳୁନି । କିଏ କାହିଁକି ଭଲା ମୋ' ପାଖକୁ ଆସିବ ?"

ତା' ଅମ୍ମି କେବଳ ଦୀର୍ଘଶ୍ୱାସ ଛାଡୁଚନ୍ତି । ଆଖି ପୋଛି କହୁଚନ୍ତି, "ଯାହା ଆଲ୍ଲାର ମର୍ଜି ।"

ପୁଣି ନିଜ ହାତରେ ଜଳଖିଆ ଥାଳିଆ ନେଇ ଫାତିମା ହାତରେ ଦେଉଚନ୍ତି, କର୍ଅଁଳ କରି କହୁଚନ୍ତି, "ଖାଇଦେ ବେଟୀ । ମୋ' ସୁନାଟି, ଏ ଘରୁ ଅଖିଆ ଯାଆ ନାଇଁ ।"

ଫାତିମା ମୁହଁକୁ ନେଉଚି ଲୁଣି ଗଜାଟିଏ, ଢୋକିବାବେଳକୁ ତଣ୍ଟି ତଳକୁ ଯିବାକୁ ନାହିଁ କରୁଚି ସେ । ଖାଲା ଏଥର କ'ଣ ସ୍ଥିର କଲାଭଳି ଉଠିଯାଉଚନ୍ତି, କହୁଚନ୍ତି, "ତମେ ଦିହେଁ କଥାବାର୍ତ୍ତା ହୁଅ । ମୁଁ ଯାଉଚି ନୁରି ଘରୁ ଆମ କୋରଣାଟା ନେଇଆସେ, ଗଲା ରବିବାର ନେଇଥିଲା ଫେରେଇନି ।"

ଘରେ ପୁଣି କେବଳ ମୁକ୍ତାର ଓ ଫାତିମା । କବାଟ ଆଉଜିବା କ୍ଷଣି ଦିହିଙ୍କ ଆଖି ମିଶୁଚି ଅନାୟାସ । ଦିହିଙ୍କ ମୁହଁରେ ଏକ ଆରେକର ଉଦାସ ମୁହଁର ପ୍ରତିଛବି । କେତେବେଳକେ ମୁକ୍ତାର କହୁଚି, "ଫାତିମା, ଆମେ ଏକାଠି ହେଇପାରିବା ନାଇଁ ପୁଣିଥରେ ? ଫେରିଆସିପାରିବନି ତମେ ?"

ଫାତିମା ତା' ମୁହଁକୁ ଚାହୁଁଚି କେବଳ । ଛାତି ଧଡ଼ପଡ଼କୁ ଚାପି ରହି ରହି ପଚାରୁଚି, "ତମ ଜୀବନକୁ ଆଉ କେହି ଆସିନାହାନ୍ତି ଏ ଭିତରେ ?"

ମୁକ୍ତାର ଓଠ ଚାପି ଟିକେନାକୁ ହସୁଚି ଦୁଷ୍ଟାମୀରେ । କହୁଚି, "କିଏ ଥରେ ଅଧେ ଟିକିଏ ବେଳ ଲାଗି ଆସିଥିବେ ଯାଇଥିବେ ବା । ହେଲେ ବେଶୀବେଳ ମୋ' ପାଖରେ କେହି ରହିନାହାନ୍ତି । ଫାତିମାର ଜାଗା କେହି ନେଇପାରିବେନି ମୋ' ଜୀବନରେ । ହେଲା ତ ?"

ଫାତିମାର ମନରେ ଦିଶୁଥିଲା ସେଇ ଘରର ଛବି, ସେଇ ରୋଷେଇର,

ଘରକରଣାର । ବିତୁନଥିବା ସମୟର । ମନରେ ପ୍ରଶ୍ନ ଉଠୁଥିଲା, ଆଉ କେହି ବେଶୀବେଳ ରହିବା ସମ୍ଭବ କି ସେଠି ?

କିଛି କଥା ପଇଟୁନି ଫାତିମାର ଓଠରେ । ମୁକ୍ତାର ଅଚାନକ ଉଠିଆସୁଚି ଫାତିମା ବସିଥିବା ସୋଫାକୁ । ଫାତିମାର ହାତ ଉପରେ ତା' ହାତ । ଫାତିମା କିଛି କହିବା ପୂର୍ବରୁ ତାକୁ ଦୁଇ ବାହୁରେ ନେଉଚି ମୁକ୍ତାର, କହୁଚି, "ଫାତିମା, ତୋ' ଛଡ଼ା ଆଉ କେହି ନାଇଁ ମୋ' ଜୀବନରେ । ମୋତେ ବିଶ୍ୱାସ କର ।"

ଉଠି ଛିଡ଼ାହେଇପଡୁଚି ଫାତିମା । ନିଜକୁ ମୁକୁଳାଇ କହୁଚି, "ନାଇଁ ମୁକ୍ତାର । କ'ଣ ମିଳିବ ଏସବୁରୁ । ଛାଡ଼ । ଦୁଃଖ ପାଇବା ସାର ହେବ ।"

ମୁକ୍ତାର ଭୁରୁ କୁଞ୍ଚାଉଚି, ତାତିଆସୁଥିବା ସ୍ୱରରେ ପଚାରୁଚି – "କାଇଁକି ଆସିଥିଲୁ ତେବେ ? କେବଳ ଦୋକାନ କାମରେ ?"

ଫାତିମା ଅବାରିତ ଲୁହ ବହିଯିବାକୁ ଦେଇ କହୁଚି, "ଜାଣିନି । କ'ଣ ଗୋଟାଏ ଆଶା ଥିଲା ।"

ମୁକ୍ତାର ପଚାରୁଚି, "ମୁଁ ପଚାରୁଚି ତେବେ । ସୁଖରେ ଅଛୁ ତୁ ? ତୋ' ଜୀବନରେ ଆଉ କିଏ ଆସିଚି ଏ ଭିତରେ ? ସତ କହ ।"

ଫାତିମା ମୁଣ୍ଡ ହଲାଇ ନାହିଁ କରୁଚି କେବଳ ।

ମୁକ୍ତାର ତା' ହାତ ଧରି ବସାଉଚି । କହୁଚି, "ତେବେ ଆସିଚୁ ଯଦି, ପୁଣି ଚାଲିଯିବାଲାଗି ଏତେ ତରତର କାଇଁକି ? ସବୁ ଛାଡ଼ିଛୁଡ଼ି ଚାଲିଆସିଥିଲୁ ପରା ଦିନେ, ମୋ' ପାଖକୁ । ମୁଁ ବି ତ ସବୁକୁ ପଛକୁ ପକେଇଦେଇଥିଲି । ଏକାଠି ହେବା ବୋଲି । କ'ଣ ଏମିତି ହେଲା ଯେ ପୋଛିଦେଲୁ ମନରୁ ସବୁ ?"

ଫାତିମା ପଚାରୁଚି – "ତମେ ତ କାଇଁ ଥରେ ମୋତେ ଡାକିବାକୁ ଆସିନା ?"

ଏଥର ଚାଲିଲା ବାଦବିବାଦ, କିଏ ଡାକିପାରିଥାନ୍ତା । କାଇଁକି ଡାକିଲାନି । ଦିହିଙ୍କ ସ୍ୱର ତାତିଲା । ଟିକେ ଚଢ଼ା ବି ।

ପଚାରୁଚି ମୁକ୍ତାର, "ମୁଁ ସବୁଦିନେ ଅନେଇ ବସିଚି ତୋତେ । ଫେରିଆସିବୁ ବୋଲି ।"

ଫାତିମା ପଚାରୁଚି, "ଯଦି ମୁଁ ରାଜିହୁଏ, ତମେ ନିକାହ କରିବ ମୋ' ସାଙ୍ଗେ ? ଖାଲି ଏକାଠି ରହିବା ନୁହଁ । ବିବାହିତ ସ୍ୱାମୀ ସ୍ତ୍ରୀ ହେଇ ଏଇ ସାମ୍ନା ରାସ୍ତାରେ ଚାଲିପାରିବା ଦିହେଁ ?"

ମୁକ୍ତାରର ମୁହଁରେ ଟିକିଏ ହସ ଫୁଟିଲା । କହିଲା, "ଶୁଣିଲୁନି ମୋ' ଅମ୍ମି କ'ଣ କହିଲା ? ସେ ତ ମୋ'ଠୁ ବଳି ରାଜି ତତେ ବୋହୂ କରିବାଲାଗି ।"

ଟିକିଏ ଭାବି ଫାତିମା ପଚାରିଲା, "ତା'ହେଲେ ମୁଁ ଏଠି ରହିବି ତମ ଅମ୍ମିଙ୍କ ପାଖେ ?

ବମ୍ବେରେ ତମେ ସଫଳ ହେବା ଯାଏଁ ମୁଁ ସେଠି ରହିଲେ ତ ତମର ଅସୁବିଧା ବେଶୀ ।"

ମୁକ୍ତାର ଗମ୍ଭୀର ହେଲା । ଫାତିମାର ମୁହଁକୁ ପଢ଼ିବାକୁ ଚେଷ୍ଟା କଲାଭଳି ପଚାରିଲା – "ତୋ'ର କ'ଣ ଇଛା ? ମୋ' ପାଖକୁ ଆସିବାକୁ ନା ବିବାହିତା ବୋଲାଇ ଏଇଠି ରହି ଦୋକାନ ଚାକିରୀ କରିବାକୁ ?"

ସ୍ୱର ଶାନ୍ତ ରଖି ଫାତିମା ପଚାରିଲା, "ମୁଁ ଯାହା ପଚାରୁଚି ଜବାବ ଦେଉନା ତମେ । ଯଦି ବାହାହେବା, ତା'ପରେ ମୁଁ ରହିବି କୋଉଠି ?"

"ମୋ' ପାଖରେ । ବମ୍ବେରେ । ନହେଲେ ବାହା ହେବା କାଇଁକି ଯେ ଆମେ ? ବାହା କାଇଁକି ହୁଅନ୍ତି ଲୋକେ ?"

ଫାତିମା ରହି ରହି ପଚାରିଲା, "କହିଲ ଯେ ଏବେବି ତମ ଅବସ୍ଥା ସଚ୍ଛଳ ନୁହେଁ ବୋଲି ? ମୁଁ କରିବି କ'ଣ ସେଠି ?"

ମୁକ୍ତାର ତା' ମୁହଁକୁ ଚାହିଁଲା କଟମଟ । କହିଲା, "ସ୍ତ୍ରୀ ମାନେ କ'ଣ କରନ୍ତି ବାହାଘର ପରେ ? ଘରକରଣା କରନ୍ତିନି ? ସବୁ ସ୍ତ୍ରୀ କ'ଣ ଦୋକାନ ଦେଇ ବେପାର କରନ୍ତି ଟଙ୍କା ରୋଜଗାର କରିବେ ବୋଲି ?"

କେତେବେଳେ କଡ଼ ଚଉକିରେ ପୁଣି ବସିପଡ଼ିଥିଲା ଫାତିମା ତା'ର ଖିଆଲ ନଥିଲା । ଦୁଇହାତରେ ନିଜ କପାଳକୁ ଚାପି ଧରି ବସିରହିଲା ସେ କେତେବେଳ । କ'ଣ ସବୁ କହୁଥିଲା ମୁକ୍ତାର ତା'ପରେ, ତାକୁ କିଛି ବୁଝାପଡୁନଥିଲା । ମନେହେଉଥିଲା ଦୂରରୁ ଆସୁଚି କ'ଣ ଗୁଡ଼େ ଗଣ୍ଡଗୋଳ, ଘୋ ଘୋ । କିଛି ବୁଝାଯାଉନାହିଁ ।

କେତେବେଳକେ ଚଉକିରୁ ଉଠିଲା ସେ । ମୁହଁକୁ ଶୁଖିଲା ଓଢ଼ଣୀରେ ଭଲକରି ପୋଛି ପିଠି ସଳଖି ଛିଡ଼ା ହେଇ କହିଲା, "ମୁକ୍ତାର, ମୋତେ ଯିବାକୁ ହେବ ।"

ବୁଝିପାରିନଥିବା ଭଳି ମୁକ୍ତାର କହିଲା, "ତୋ ବିଷୟରେ ସବୁ ଖବର ରଖୁଚି ମୁଁ ଫାତିମା । ଏ ଯେଉଁ ଜୀବନ କାଟୁଚୁ ତୁ, ବାପଘରେ ଅଲୋଡ଼ା ଅଖୋଜା ହେଇ, କି ସୁଖ ସମ୍ମାନ ମିଳୁଚି ଭଲା ତତେ ? ହଉ ହେଲା, ନିକାହ ନକରି ତୋତେ ପାଖରେ ଆଣି ରଖିବା ମୋର ଭୁଲ୍ ହେଇଚି । ହେଲେ ସେତେବେଳେ ମୋର ଚାରା ନଥିଲା, ତୁ ଜାଣୁ ସେକଥା ।"

ଫାତିମା ମୁଣ୍ଡକୁ ଅଧା ପଶି ଅଧା ପଶୁନଥିଲା କାନରେ ବାଜୁଥିବା କଥାସବୁ ।

ମୁକ୍ତାର ଉଠି ବାଟେଇଦେବାକୁ ଯାଇ ପୁଣି କହିଲା, "ଆଜି ନହେଉ, ପରେ ଭାବି କହିବୁ । ମୁଁ କାଲି ଯିବିନି ବମ୍ବେ, ତୋ' ଜବାବ ଲାଗି ଅପେକ୍ଷା କରିବି । ଯେତେଦିନ କହିବୁ ଅପେକ୍ଷା କରିବି ।"

କବାଟ ପାଖେ ପହଞ୍ଚ ତା' ସାଙ୍ଗେ ବାହାରକୁ ଆସିବାକୁ ମୁକ୍ତାରକୁ ମନାକଲା

ଫାତିମା । ତା' ଓଠପାଖକୁ ଆସୁଥିଲା ପଗ୍ଭରନ୍ତା, କଅଣ ତମ ଅପେକ୍ଷା କରିବାର ଅର୍ଥ ? ଯେ ଠିକ୍ ତମ ସର୍ତ୍ତରେ ବାହା ହେବାକୁ ମୁଁ ରାଜି ଅଛି କି ନାଇଁ ? ସେ ଯିବାବେଳେ ତା' ନକହିଲା କଥାକୁ ଅଧା ଶୁଣିପାରିଥିବା ଭଳି ମୁକ୍ତାର କହୁଥିଲା, "ମୋ' ମନକଥା ତୁ ନିଶ୍ଚେ ବୁଝିବୁ ଫାତିମା । ମୁଁ ଅପେକ୍ଷା କରିବି ତୋ' ଉତ୍ତର ଲାଗି ।"

ଫାତିମା ବାହାରି ନିଜ ପଛପାଖେ କବାଟ ଆଉଜାଇ ଦେଲା । ବାହାରେ ଲାଇଟ୍ ଜଳିଲାଣି । ହେଲେ ସତକଥା ତ, ଘରେ ଆଉ ଭୟ କରିବାଭଳି ଏଣିକି କିଛି ନାହିଁ । ଧୀର ପାହୁଣ୍ଡରେ ଅଗଣା ପାରିହେଇ ବାହାର ରାସ୍ତାଯାଏଁ ପହଞ୍ଚିଲା ଫାତିମା ।

ଛାତି ଭିତର ଫାଙ୍କା ଲାଗୁଥିଲା, ଓଜନିଆ ପଥରଟାଏ ଯୋଉଠି ଥିଲା କୋଉଦିନୁ, ଘୁଞ୍ଚିଗଲା ଅବା । ଅଜବ ନୂଆ କଥାଟାଏ ମନକୁ ଆସୁଥିଲା ।

ଏତେ ପାଖ ତା' ନିଜ ଘର ଏଠୁ । ପିଲାଦିନ ତ ନାହିଁ ଆଉ । ବୁଲି ବୁଲି ଏ ଭିତରେ ସହରର ବାଟଘାଟ ଗଳି ମୋହଲ୍ଲା ସବୁ କେତେ ଚିହ୍ନା ହେଇଗଲାଣି । ଏତେ ବେଶୀ ଭୟ ସେ କାଇଁକି କରିଆସିଚି ଏତିକି ବୋଲି ବାଟକୁ ? ସବୁ ବାଟକୁ ? ସତେକି ଦୁନିଆଁ ଯାକର ଆଖି ତାଆରି ଆଡ଼କୁ ଅନେଇରହିଚନ୍ତି ।

# ଆପଣା ଘରର କିମିଆଁ

ଗଳି ରାସ୍ତାର ଧୀମା ଆଲୁଅରେ ପାଖ ଦେଇ ଯାଉଥିଲେ ଦି'ଜଣ ପଡ଼ୋଶିନୀ. ଜଣେ ପଚାରିଲା, "କିଏ ଫାତିମା, ଘରକୁ ଫେରୁଚୁ କି ?"

କିଛି ନ ଭାବି ଫାତିମା କହିଲା, "ହଁ। ଆଉ ତମେ ? କୁଆଡ଼େ ଯାଉଚ କି ଏତେବେଳେ ?"

ହତାଶିଆ ସ୍ୱରରେ ଉତ୍ତର ଦେଲେ ବୟସ୍କା, "ଗ୍ୟାସ୍ ରାହତ ହସ୍‌ପିଟଲକୁ, ଆଉ କୁଆଡ଼େ ? ମୁନ୍ନାର ବାପା ସେଦିନୁ ପଡ଼ିଚନ୍ତି ପରା।"

ଫାତିମାକୁ ତାଙ୍କ ଘର ଅବସ୍ଥା ଜଣା। ତଥାପି ପଚରା ଉଚରା ପରସ୍ପରକୁ। ସେ ପ୍ରଶ୍ନର ଅର୍ଥ ନାହିଁ, ଉତ୍ତରର ବି ନୁହେଁ। କେବଳ ସମ୍ଭାଷଣ। ପରିଚିତ ହେବାର ଆଶ୍ୱାସନା।

ଏଇଠି ତା' ଦୋକାନ କାମ କଥା ସମସ୍ତେ ଜାଣନ୍ତି। ନିଜ ସାହି। ସେଇ ପୁରୁଣା ଚିହ୍ନା ଗଳି। ନା ଘର ନା ବାହାର ତା' ଲାଗି। ପଛରେ ଛାଡ଼ିଆସିଲା ଯେଉଁ ଘରଟିକୁ, କିଛି ନୁହେଁ ସେ ଫାତିମାର। ସେଠିକାର ଦି'ବଖୁରି ଘରେ ରହୁଥିବା ମା' ପୁଅ ଦିହେଁ, କେହି ନୁହନ୍ତି ତା'ର। ତଥାପି ସେଇ ଘର ସେଇ ଲୋକଙ୍କୁ ଆପଣାର ବୋଲି ମଣିବାକୁ, ଆପଣେଇ ନେବାର ଚିନ୍ତାରେ ଚେଷ୍ଟାରେ ବିତିଚି କେତେ କେତେ ଦିନ ରାତି। ସବୁଠୁ ସରସ ସୁନ୍ଦର ବୟସ ଉଜେଇଁ ଦିଆଯାଇଚି ସେଥିରେ। କେତେ ଉଲ୍ଲାସ ବି ମିଳିଚି ତହିଁରୁ, କେତେ ଦୀର୍ଘଶ୍ୱାସ। ଏଇ କେଇ ପାହୁଣ୍ଡ ଆଗକୁ ଆଜି ଆଶ୍ରା ଦେବାଲାଗି ଅଛି ଯେଉଁ ଘର, ନିଜକୁ ଯେତେ ଦମ୍ଭ ଦେଲେ ବି ସେଇ ପୁରୁଣା କଷରା ଛାତ ତଳର ଉଷୁମ୍ ଜାଗା ଖଣ୍ଡିକ ତା'ର ଆପଣାର ବୋଲି ବିଶ୍ୱାସ ଦିଅନ୍ତି ନାହିଁ କେହି ହେଲେ ଜଣେ, ଯାହାଙ୍କୁ ନେଇ ତାକୁ ବଞ୍ଚିବାକୁ ହୁଏ।

ଆଉ ଗୋଟିଏ ରାସ୍ତା ଏଇ ଗଳିର ତିନିଛକିରୁ ଯାଇଚି, ଆଉ ଟିକାକରେ ମିଶିଚି ପକ୍‌କା ଓସାରିଆ ସଡ଼କରେ, ଚାଲିଯାଇଚି ଆଗକୁ ବଡ଼ ତାଲ୍ କଡ଼ ଦେଇ। ସେଇ ବାଟରେ

ଗଲେ ପଡ଼େ ଶାହନଶା ହୋଟେଲ, ସହର ବଜାର, ସାରା ଦୁନିଆଁ । ଏବେ ସେ ବାଟ ବି ଆଉ ଅଚିହ୍ନା ନୁହେଁ, ପର ନୁହେଁ ତା' ଲାଗି । ବରଂ ସେଠି ପାଦ ପକେଇଲେ ହିଁ ପଛର ଦୁଇ ପାଖାପାଖି ଗଳିର ଅଣନିଃଶ୍ୱାସିଆ ପବନକୁ ଭୁଲିଯାଇହୁଏ ।

ଆଉଜା କବାଟ ଠେଲି ପଶି ଯାଉ ଯାଉ ଘରୁ ବାହାରିଆସୁଥିଲା ରେହମାନ୍ । ଗୁଣୁଗୁଣାଉ ଥିବା ସ୍ୱର ରୋକିଦେଇ ଗମ୍ଭୀର ମୁହଁ କଲା, ଫାତିମା ଆଡ଼େ ନ ଅନେଇ ସିଧା ଦୃଷ୍ଟି ରଖି ବାହାରିଗଲା । ମୁହଁରୁ ସିଗ୍ରେଟ୍ ଗନ୍ଧ ଆସୁଚି । ଆଜିକାଲି ଫାତିମା ସାଙ୍ଗରେ ତା'ର କମ୍ କଥାବାର୍ତ୍ତା ହୁଏ । ଏଇ ଅଳ୍ପଦିନରେ ତା'ର ବାହାଘର ହେବାର ଠିକଣା ହେଉଚି, ସେଇ ତା' ଶଶୁର ଘରକୁ ଯାଉଥିବ, ରାତି ଖାଇବା ସାରି ଆସିବ । ଶାରୁଖ୍ ତାକୁ ନିଜ ବ୍ୟବସାୟରେ ମିଶେଇଚି ସିନା, ପରିଷ୍କାର ଜଣେଇଦେଇଚି ଯେ ଦିଇ ଦିଇଟା ଅବିବାହିତା ବଡ଼ ଭଉଣୀ ଘରେ ଥିବାଯାଏଁ ସେଠି ତା' ଝିଅ ସୁଖର ଘର ସଂସାର ପାତିବ କେମିତି ?

କରୀନା ରୋଷେଇଘରେ । ମା' ତା'ର ସିଲେଇ ସରଞ୍ଜାମ ଧରି ବସିଚି ପୁରୁଣା ପଲଙ୍କଉପରେ । ଆଜିକାଲି ସେଇଠି ତା'ର ବେଶୀ ସମୟ ବିତେ । ଛାତିର ଧଇଁ ଦିନକୁ ଦିନ ବଢୁଚି, ଚଲବୁଲ କରିବାକୁ ବେଶୀ ବଳ ପାଏନାହିଁ । ଚରିପାଖର ସଂସାର ସାଙ୍ଗେ ଯୋଗାଯୋଗ ରଖିବାକୁ ବି ତା' ମୁଣ୍ଡ ଆଉ ତିଆର ନୁହଁ ଜମା । ଲୁଗା ବଦଳୁ ବଦଳୁ ଫାତିମା ପଚରିଲା, "ଆଜି କ'ଣ ଖାଇଲ ଅମ୍ମି ? ସଞ୍ଜବେଳେ ଚା' ପିଇଲ ନା ନାଇଁ ?"

ସଞ୍ଜବେଳେ ଥରକରୁ ବେଶୀ ଚା' ଦିଏନି ବୋଲି ଜରୀନା ନାଁରେ ସବୁଦିନ ଫାତିମାକୁ ନାଲିଶ କରନ୍ତି ସେ । ହେଲେ ଆଜି ସେକଥାକୁ କାନ ନଦେଇ ନିଜ ହାତର ସିଲେଇ କାମକୁ ବଢ଼େଇଦେଲେ କେବଳ, ସାନ ପିଲାଟିଏ ପ୍ରଶଂସା ଆଶାରେ ଚହିଁଥିବା ଭଳି ସେ ମୁହଁଟି । ଲୁଗା ଖଣ୍ଡକ ଚଉତି ରଖୁରଖୁ ଫାତିମା କହିଲା, "ଆଜି ଦିନଯାକ ଏଇ ଲୁଗାରେ କଢ଼ାଇ କରିଚ ତା'ହେଲେ, ନାଇଁ ଅମ୍ମି ? ଦିପହରେ ଶୋଇନା ଜମା ?"

ଏଥରକ ଉତ୍ତରରେ ଆଉରି ଉଜଳିଲା ହସଟିଏ ନେଇ ତା' ଆଡ଼କୁ ପୁଣି ସେ ବଢ଼େଇଦେଲେ ହାତର ଛୁଞ୍ଚ ସୂତା ମିଶା ସିଲେଇ କାମ ମେଞ୍ଚାକ । ଧୈର୍ଯ୍ୟ ନଥିଲେ ବି ସେ ମୁହଁର ହସକୁ ମଉଳିଯିବାକୁ ନଦେବ ବୋଲି ତାକୁ ହାତକୁ ନେଇ ଫାତିମା କହିଲା, "ହଉ, ଆମେ ପରେ ଏ କାମ କରିବା ଅମ୍ମି । ମୁଁ ଯାଏ ଦେଖେ ଜରୀନା କ'ଣ ରୋଷେଇ କରୁଚି ।"

ଏଥର ସରୁ ସ୍ୱରଟିଏ ଶୁଭିଲା ସେ ଲହକା ଦୁର୍ବଳ ଦେହଭିତରୁ ଭାସିଆସିଲା ଭଳି – "ଜାଲିକାମ କରିବୁ କହୁଥିଲୁ ପରା, ତୋ' ବାହାଘର ଓଢ଼ଣୀ ଲାଗି ?"

କାନ୍ଥ ଥାକରେ ରଖିଦେବାକୁ ଯାଉଯାଉ ନିଜ ହାତରେ ଥିବା ଜରି ସୂତା ମିଶା କନା ପୁଳାକ ଆଡ଼େ ଦୃଷ୍ଟି ଚାଲିଗଲା ଫାତିମାର, ଆଉ ଯାହା ତା' ଆଖି ଦେଖିଲା ମନେହେଲା ସେ

ସପ୍ନ ଦେଖୁଚି । ତା' ପାପୁଲିରେ ଆଲ୍ଲାଦୀନ୍‌ର ଦୀପଟିଏ ଅନ୍ନି ଥୋଇଦେଇଥିଲେ ବି ଏମିତି ହତଭମ୍ବ ହେଇନଥାନ୍ତା ସେ ।

ଏଇତ ସେ ସୁନାଜାଲି କାମ, ଯାହାକୁ ସେ ଖୋଜିଲାଗିଥିଲା ଏତେଦିନଧରି, ଯାହାର ଟୁକୁରା ଖଣ୍ଡେ ହୁସ୍ନା ବେଗମଙ୍କଠୁ ପାଇ ଆଖ ପାଖ ଗଳି କନ୍ଦି ଘରୁ ଘରକୁ ଯାଇ ନେହୁରା ହେଉଥିଲା ସିଏ, କିଏ ଜାଣିଚ କି ଟିକିଏ କହିଦିଅ କେମିତି ଇଏ ତିଆରି ହୁଏ ବୋଲି । କେତେ ମତେ ଚେଷ୍ଟା କରିଥିଲେ ତା' ଚିହ୍ନା ଜଣା କେତେ କାରିଗର, କାହାରି ହାତକୁ ପଇଟି ନଥିଲା ସେ ବାଗ । ତହିଁରେ ପୁଣି ହୁସ୍ନାଙ୍କ ତାଗିଦ୍, ଯାହାକୁ ତାହାକୁ ଦେଇଦେଲେ ହାତରୁ ଗ୍‌ଲିଯିବ ଜିନିଷଟା ଯେ । ସାମ୍ପଲ ଖଣ୍ଡକ ଜାଗତିଆରରେ ରଖିବାକୁ ହେବ, ହୁସିଆରରେ ବୁଝି ବିଚାରି ଲୋକ ଦେଖି କାମ କଥା କହିବାକୁ ହେବ ।

କେହି ତିଆରି କରିବା ଦୂରେ ଥାଉ, ଓଲଟି କଳା ପଡ଼ିଯାଇଥିବା ସେଇ ଜରିଜାଲି ଖଣ୍ଡକୁ ଦେଖି ଜଣେ କିଏ ବୁଢ଼ୀ ଲୋକ ଥଟ୍ଟା କରିଥିଲେ, "ଇଏ ନୁହେଁ ମ ସେ । ଏଇଟା ତ ପିତଳ ମିଶା ନକଲି ଜରି, ଯା'କୁ କ'ଣ ପିନ୍ଧୁଥିଲେ ଆମ ବେଗମ୍ ନବାବ ? ସିଏ ଆହୁରି ପତଳା ତାରକସୀରେ ତିଆରି ହେଉଥିଲା, ସୁନା ଜକଜକ ଦିଶୁଥିଲା, ମହୀନ୍ ଜାଲି ଉପରେ ଟିକି ଟିକି ଥାଏ ଗୋଲାପ କଢ଼ । ଆମର ନଥିଲା ବୋଲି କ'ଣ ଆମେ ଦେଖିନୁ ? ତାକୁ ତିଆରି କରିବା ଲୋକ ଆଉ ନାହାନ୍ତି ଲୋ ଝିଅ, ମିଛରେ ଧନ୍ଦି ହେଉଚୁ ଯାହା ।"

ଆଜି ଫାତିମା ହାତରେ ଇଏ କ'ଣ ? ସେଇ ସାମ୍ପଲଠୁ କେଇଗୁଣ ବଳି ସୂକ୍ଷ୍ମ ଜାଲିଉପରେ ଅନିନ୍ଦ୍ୟ ଗୋଲାପ କଢ଼ । ସୁନା ଜାଲି ନୁହଁ, ଆଜିକାଲି ବଜାରରେ ମିଳୁଥିବା ପାଖାପାଖି ଜରିସୂତା କିଣି ଅନ୍ନିକୁ ଦେଇଥିଲା ସେ । କହିଥିଲା, "କଣସବୁ ପିଲାଦିନେ ଶିଖିଚ ବୋଲି ସବୁଦିନ କହ ତମେ ଅନ୍ନି, ହେଲେ ସବୁ ଛୁଞ୍ଚିକାମ ଆମକୁ ଶିଖେଇଲ କୋଉଠୁ ? ତିଆରି କଲ ଦେଖି, କ'ଣ ସବୁ ତମର ମନେଅଛି ।"

ହେଲେ ଏ ଭିତରେ ଅନ୍ନିକୁ ସେ କେବେ ଦେଖେଇଥିଲା କି ସେଇ ଜାଦୁକରୀ କୋଟୀକମ ଟୁକୁଟା ଖଣ୍ଡକ ? କାଇଁ ମନେପଡୁନି ତ ।

ରୋଷେଇ କଥା ପାସୋର ଯାଇ ଅନ୍ନି ପାଖରେ ଖଟ ଉପରେ ବସିପଡ଼ିଲା ଫାତିମା, କହିଲା, "ଯା'କୁ ତମେ ନିଜେ ତିଆରି କରିଚ ଅନ୍ନି ? କେମିତି କଲ ? କାଇଁ ଆଉଥରେ ତିଆରି କରି ମୋତେ ଦେଖେଇଲ, ମୁଁ ଟିକେ ଶିଖିବି ?"

ଥରେ ନୁହଁ, ଥରକୁ ଥର ବିଶିଆଙ୍ଗୁଠି ମଝିଆଙ୍ଗୁଠି ବୁଢ଼ା ଆଙ୍ଗୁଠି ମିଶେଇ ଫାଶ ପକେଇ ତା' ଭିତରୁ ଛୁଞ୍ଚିକୁ ଗଳେଇ ଜାଲି ତିଆରିକରି ଦେଖାଇଦେଲେ ଅନ୍ନି । କହିଲେ, "ଆଣ୍, ଦେ ତୋ' ହାତ, ଶିଖେଇଦେବି, ଏଇ ଦେଖ୍, ଏମିତି, ସୂତାକୁ ଏଇ ବାଗରେ ଧର୍

ଆଗ..."

ନିଜ ହାତକୁ ନେଇ କେବଳ ପରଖି ଗଲା ତାକୁ ଫାତିମା, ଆଙ୍ଗୁଠିରେ ଛୁଇଁ, ଏପାଖ ସେପାଖ ଲେଉଟାଇ । ତା' ପିଠି ଆଉଁସି ଦେଇ ଅମ୍ମି କହିଲେ, "ଆଉରି ଜରି ଦରକାର, ବୁଧବାରା ବଜାରର ବଣିଆକୁ କହିଲେ ସୁନାଜରି ତିଆରି କରିଦେବ, ତୋ' ବାହାଘର ଲାଗି ଓଢ଼ଣୀ ହେବ, ଆଉ କାହାରି ପାଖରେ ନଥିବ ଆମ ଫାତିମା ବେଟୀ ଭଳି ଓଢ଼ଣୀ ।"

ଅମ୍ମିର ପତଳା ଦେହଟିକୁ ଦୁଇବାହୁରେ ଗୋଟିପଣେ କୁଣ୍ଢେଇପକେଇ ଫାତିମା କଷ୍ଟରେ ସ୍ୱର ଫୁଟେଇ କହିଲା, "ଅମ୍ମି ଅମ୍ମି ମୋ' ସୁନା ଅମ୍ମି, ଆମେ ସିନା ବେଗମ୍ ସାହିବାଙ୍କ ଲାଗି ଆଗ ତିଆରି କରିବା ଓଢ଼ଣୀ । ପରେ ମୋ' ଲାଗି ତିଆରି ହେବ, ଆଉରି ବଢ଼ିଆ କରି ତିଆରି କରିବା ତମେ ମୁଁ ଦିହେଁ ମିଶି ।"

ଝିଅ ମୁଣ୍ଡକୁ ପିଠିକୁ ଆଉଁସି ପକେଇ ସେ ତା' କାନରେ ଫୁସ୍‌ଫୁସ୍ କରି କହିଲେ, "ଥାଉ । ତୋ' ଲାଗି ଏବେ ନୁହଁ । ତୋ'ର ଡାକ୍ତରାଣୀ ପାଠ ପଢ଼ି ସାରିଲେ ଯାଇ ତୁ ବାହାହବୁ, ନୁହଁ ବେଟୀ ?"

ଆଜି ଆଉ ତା' କଥାରେ ଆଖିକୁ ଲୁହ ଆସିଲାନି ଫାତିମାର । ଆଉରି ହସ ଆସିଲା । ଦୁଇହାତରେ ଆଉରି ପରସ୍ତେ ଅମ୍ମିର ପତଳା ଦେହକୁ ଦୋହଲାଇ ପକେଇ ସେ କହିଲା, "ରହ, ତୋ' ଲାଗି ବଢ଼ିଆ ମଲାଇ ଦିଆ ଚହା କରି ଆଣୁଚି, ସାଙ୍ଗରେ ଲୁଣି ମିକ୍ସଚର ଖାଇବୁ ନା ଚ'ରେ ବୁଡ଼େଇ ମିଠା ବିସ୍କୁଟ୍ ?"

# ଛାଇଛାଇ ମେଘ ଖରା

ଏଣିକି ଦିନକୁ ଦିନ ଆଉ କାମର ଅଭାବ ନାହିଁ ଫାତିମା ହାତରେ । ହୁସ୍ନା ବୀଙ୍କ ମୁଣ୍ଡକୁ ନାହିଁ ନଥିବା କଥା ସବୁ ଜୁଟେ, ଫାତିମା ତାଙ୍କୁ କହେ, "କିଏ ବିଶ୍ୱାସ କରିବ ତମେ କେବେ ଜୀବନରେ କିଛି ବେପାର ବେଉସାର ନାଁ ଧରିନଥିଲ ବୋଲି ଦିଦି ?"

ସେଇ କହିଥିଲେ ତାକୁ, "ଆମେ ଏ କାମଟି କରିପାରୁଚୁ ବୋଲି ଆଗତୁରା କାହାକୁ କହନା ଏବେ । ଚାଲ କେଇଟା ଜିନିଷ ଆଗ ତିଆରି କରିପକେଇବା । ପୁରୁଣା କାଳିଆ ଜାମା ଓଢ଼ଣୀରେ ନୁହଁ, ଆଜିକାଲିକା ସିନେମା ଫେଶନ୍‌କୁ ପାଇଲା ଭଳି । ତା'ପରେ ଦେଖେଇବା ଯାଇ ସେଇ ଦୁବାଇ ବଣୀକ ହବିବ ମିଆଁକୁ, ଦେଖିବା ସେ କ'ଣ କହୁଚନ୍ତି ।"

ଫାତିମା କହିଲା, "ଆମଠୁ ନେଇ ଆଉ କାହାକୁ ବରାଦ ଦେଇଦେବେ ଯଦି ? ଥରେ ଯେମିତି କଥା ଯାଇଥିଲା, ମନେଅଛି ତ ?"

ହୁସ୍ନା ବୀ କଥାଟାକୁ ହସରେ ଉଡ଼େଇଦେଇ କହିଲେ, "ଆମ ଛଡ଼ା ଆଉ କାହାକୁ ଜଣା ଅଛି ଯା'ର ବାଗ ? ଆଉ ଯଦି ବା କିଏ ଦେଖି ଦେଖି ଉଠେଇଦେଇ ପାରିଲା ଏ ଜରି ଗୁନ୍ଥିବାର କୌଶଳ, ତୁ ଆଉ ମୁଁ ମିଶି ଯେଉଁ ଦାମ୍‌ରେ ଦେବା, ଯେତିକି ପ୍ରକାର ଜାମା ପୋଷାକରେ ଦେବା, ଆଉ କାହା ମୁଣ୍ଡକୁ ଜୁଟିବ ଏ ସହରରେ ବୋଲି ଭାବିଚୁ ?"

ଯେତିକି ଦୁହେଁ ଆଶା କରିଥିଲେ, ତା'ର କେଇଗୁଣ ଅଧିକ ଥିଲା ବେପାରୀ ହବିବ୍ ମିଆଁଙ୍କ ଉଚ୍ଛାଟ । ଗଲା ଦି'ବର୍ଷ ଭିତରେ ସେ ଏଇ ଅଞ୍ଚଳରେ ତିଆରି ଅନେକ ପ୍ରକାରର ହାତ କାମକୁ ଏକଚାଟିଆ ହାତକୁ ନେଇ ତାଙ୍କ ରହିଲା ଦେଶର ବଜାରକୁ ଛାଡ଼ିଥିଲେ । ମାନ୍ଦା ପଡ଼ିଆସୁଥିବା ତାଙ୍କ ବ୍ୟବସାୟ ବେଶ୍ ବଜାର ମଝିସୁଅକୁ ଆସିଯାଇଥିଲା । ଏଥର ପ୍ରକୃତରେ ସତେକି ହାତକୁ ଆସିଯାଇଥିଲା ପରଶ ମଣିଟିଏ, ଯେଉଁ ପୋଷାକରେ ଲଗେଇଦେବ ତା'ର ଚେହେରା ବଦଳିଯିବ, ଦାମ୍ ବଢ଼ିଯିବ କେଇଗୁଣା । ଦୁଇହାତରେ

ଜରିକାମ ଖଣ୍ଡିକ ଧରି ଏପାଖ ସେପାଖ ଓଲଟାଇ ପକାଉ ପକାଉ ସେ ଫାତିମା ଆଉ ହୁସ୍ନାଙ୍କୁ କହିଲେ, "ବେଶ୍ । ଏଇକାମ ହେବ ଅସଲି ଜରିରେ । ମୁଁ ତମକୁ ଦେଇ ଯୋଗେଇଦେବି, ସେ କାମ ମୋ' ଉପରେ ଛାଡ଼ିଦିଅ । ହେଲେ ସାମ୍ପଲ୍ କିମ୍ବା ତିଆରି ଲୁଗା ଆଉ କାହା ହାତକୁ ଯେମିତି ନଯାଏ, କାରିଗରଙ୍କ ଉପରେ ଦୃଷ୍ଟି ରଖିଥିବ ।"

ଫାତିମା ହସି ଜବାବ ଦେଇଥିଲା, "ଆଉ କେହି କାରିଗରଙ୍କୁ ଶିଖାଯିବ କାଇଁକି ଯେ । ପ୍ରଥମେ ଖଣ୍ଡେ ଅଧେ ଆଗ ଭଲ ପୋଷାକ ତିଆରି ହେଉ, ପସନ୍ଦ ଆସୁ ଆପଣଙ୍କୁ, ଆପଣଙ୍କ ବେଗମ୍‌ଙ୍କୁ । ତା'ପରେ ବଡ଼ ବରାଦ ମିଳିଲା ପରେ ଯାଇ ଆଉ କାରିଗର ଶିଖିବା ଲୋଡ଼ାପଡ଼ିବ ।"

ନିଜ ପୁରୁଣା ଘରର ଆବହଓ୍ୱା ବଦଳି ଯାଇଥିଲା ଏଣିକି ଫାତିମା ଲାଗି । ହାତରେ ଥିବା କାମ ଛଡ଼ା ଆଖିଆଗକୁ, ମନ ଭିତରକୁ ଆଉ କିଛିହେଲେ ଆସିବାକୁ ଦେବନାଇଁ ବୋଲି ସେ ମନସ୍ଥ କରିସାରିଥିଲା ।

ମନ ବୋଲ ମାନେନାଇଁ ଯଦିଓ । ପଘା ଛିଡ଼େଇ ଚାଲିଯାଏ ଦିନ କେତେଟା ତଳେ ଘଟିଥିବା ଦୃଶ୍ୟକୁ । ମୁକ୍ତାରକୁ ଭେଟି ଫେରିବା ପରେ ଫାତିମା ଅନ୍ଧାରିଆ ଗଳିରେ ବାଟ ଚାଲୁଚାଲୁ ଭାବିପାରିନଥିଲା କେମିତି ମୁକାବିଲା କରିବ ଆସନ୍ତାକାଲିର ଅନ୍ଧାରୁଆ ଆକାଶକୁ । କ'ଣ ବୋଲି ନିଜକୁ ବୋଧ ଦେଇ ବାଟ ଚାଲିବ ଏଣିକି । ମୁକ୍ତାର କହିଥିଲା ହଁ, ସେ ଏବେବି ଫାତିମାର ଫେରିବା ବାଟକୁ ଚାହିଁରହିଚି ବୋଲି । କୋହ ଯାକ ପିଇଯାଇ ନିଜକୁ ଟାଣ କରି ଆକଟ କଲା ଫାତିମା । ସେମିତି କଥା ପଦକୁ କ'ଣ ବାଟଚାହିଁବା ବୋଲି କହିହୁଏ ? ବାଟଚାହିଁବ ଏଇଥିଲାଗି ଯେ ତମ ପ୍ରିୟଜନଟି ଆସିଲାମାତ୍ରେ ତାକୁ ବାନ୍ଧିବୁନ୍ଧି ପକେଇଦେବ, ଡେଣା କାଟି ଅଧା ଭୋକଉପାସରେ ବଣଚଢ଼େଇଟିକୁ ପଞ୍ଜୁରୀରେ ପକେଇଲା ଭଳି ? ଆଶା କରିବ ଯେ ତମ ପ୍ରିୟତମ ଆପଣା ଛାଏଁ ଫେରିଆସିବ ତମ ପଞ୍ଜୁରୀକୁ, କାଇଁକିନା ତମ ବିଚାରରେ ସେଇଆ ହିଁ ତା' ଜୀବନର ଚରମ ସୁଖ ହେବା କଥା ?

ତଥାପି, ନିଜକୁ ହଜାରେ ଥର କହିଲାପରେ ଯେ ସେ ବାଟକୁ ଏଣିକି ପଛ କରିଦେବାକୁ ହେବ, ମନ ଆଶା ଛାଡ଼େନାଇଁ, ନିଲଠା ପରି ଫେରି ଚାହୁଁଥାଏ । ରାତିରେ ବିଛଣାରେ ପଡ଼ିଲା ମାତ୍ରେ ପୁଣି ସେଇ ମୁହଁ, ସେଇ ଛାଡ଼ିଆସିଲା ଛବି ମନ ନିଜ ଆଗରେ ବାଟ ଓଗାଳି ଛିଡ଼ା ହୁଅନ୍ତି ।

ଶୁଆ ପାଠ ପଢ଼େଇଲା ଭଳି ଫାତିମା କିନ୍ତୁ ନିଜ ମନକୁ ଏଥର ଉପାୟଟିଏ ଶିଖାଇ ମଣାଇ ଚାଲିଥିଲା । ହାତକୁ ଆସିଥିବା କାମ । ତହିଁରେ ନୂଆ ନୂଆ ବାଟ, ନୂଆ ନୂଆ ବାଗ ଆହୁରି ପାଦେ ପାଦେ ଆଗକୁ ଯିବାର । ବାଟରେ ଚମକେଇ ଟରେଇଦେଲା ଭଳି ଖାଲ ଢିପ

ଆସିଲେ ବି ସାହସ ବାନ୍ଧି ସବୁ ଲଙ୍ଘିବାର । ଛୋଟ ଛୋଟ ରଣନୀତି ମାନ ଭାବି ଚିନ୍ତା କରି ଗୋଟି ଗୋଟି କରି ବଜାରର ଖେଳ, ବେପାରର କୌଶଳକୁ ଜିତିବାର । ତହିଁରେ ଖାଲି ପଇସାର ଲାଭ ନୁହେଁ, ତାକୁ ଅନେଇଥିବା ଲୋକଙ୍କ ଆଖିରେ ବଢ଼ିଯାଉଥିବା ଆଶ୍ଚର୍ଯ୍ୟ ଆଉ ସମ୍ମାନ ହିଁ ତାକୁ ଭୁଲେଇଦିଏ ଗଲାକାଲିର ସପ୍ନମାନ, ହାତରୁ ଖସିଯାଇଥିବା ସଂସାରର ଛବିସବୁ । ହାତର କାମ ଖଣ୍ଡିକୁ ନେଇ ସେ ଝାଡ଼ିପକାଏ ମନଭିତର ନିରାଶାର ଅଳନ୍ଧୁ ସବୁ, ପଙ୍ଖା ଭଳି ଉଡ଼େଇଦିଏ କଅଁଳ ଖରାକୁ ଛାଇକରିଦେଉଥିବା ସେ ଅନ୍ଧାରୁଆ ମେଘକୁ । ବାରଂବାର ମନେପକାଏ ନିଜକୁ ଟାଣୁଆ କରିବାର ଅବ୍ୟର୍ଥ ଔଷଧ, ଯାହା ଦାଦୀମା ପିଲାଦିନୁ କାନେ କାନେ କହେ । ସର୍ବନିୟନ୍ତା ମାଲିକଙ୍କୁ ଡାକ୍ ଝିଅ, ଶକ୍ତି ଦିଏ ସେଇ କେବଳ, ମନରୁ ଅନ୍ୟ ଚିନ୍ତା ଘଉଡ଼ିବାକୁ ହେଲେ ଆଖିବୁଜି ଖାଲି ଡାକ୍ ତାଙ୍କୁ । ଆଖାପାଖର ଲୋକ ଧୋକା ଦେବେ, ସେଇ ଆଲ୍ଲାତାଲା କେବଳ ତୋ' ଡାକ ଶୁଣିବ ।

ହେଲେ, ଅମ୍ମିର ଯେଉଁ ଅବସ୍ଥା ହେଲା ଠିକ୍ ଏତିକି ବେଳକୁ, ସର୍ବନିୟନ୍ତା ତା' ଡାକ ଶୁଣିଲେ ବୋଲି ନା କାନ ଦେଲେନାଇଁ ବୋଲି ? ଯେତିକି ବେଳେ ନୂଆ କାରିଗରୀ ଓ ବେଉସାର ନିଶାକୁ ଢାଲ କରି ସେ ଲଢ଼ିଚାଲିଥିଲା ନିଜଭିତରେ ଶତ୍ରୁକୁ, ଠିକ୍ ସେତିକିବେଳେ ଅମ୍ମିର ଦେହ ଲଢ଼ିବାକୁ ନାହିଁ କରିଦେଲା ଛାତିଭିତରେ ବିଷ ଗ୍ୟାସ୍ ଛାଡ଼ିଯାଇଥିବା ଘାଆ ସାଙ୍ଗେ । ସହରର ଆହୁରି ହଜାର ହଜାର ପୁରୁଣା ରୋଗୀଙ୍କ ଭଳି ଘର ଛାଡ଼ି ଅମ୍ମି ବି ବୁହାହେଇଗଲା ଗ୍ୟାସ୍ ରାହତ ଡାକ୍ତରଖାନାର ବିଛଣାରେ ଜୀବନର ଶେଷ କେଇଟି ଦିନ କାଟିବାଲାଗି ।

ସହର ଉପାନ୍ତରେ ନୂଆ ତିଆରି ହେଇଥାଏ ସେଇ ଡାକ୍ତରଖାନାଟି, କୋର୍ଟ ଆଦେଶରେ ବିଦେଶୀ କାରଖାନା ମାଲିକର ଦିଆ ଟଙ୍କାରେ । ଜହର ଗ୍ୟାସ୍ ପିଇଥିବା ରୋଗୀଙ୍କ ସଂଖ୍ୟା ସେଠି ଦିନକୁ ଦିନ ବଢୁଥାଏ, ନୂଆ ବିରାଟ ୱାର୍ଡ ସବୁ ସାନ ପଡ଼ିଯାଉଥାଏ ଆହୁରି ଆହୁରି ପଙ୍ଗୁ ହେଇ ବିଛଣା ଧରୁଥିବା ଗ୍ୟାସ୍-ଶିକାର ଲୋକଙ୍କ ଲାଗି । କାହିଁକି ନା ଯା'କୁ ଭୋଗୁଥିବା ଲୋକେ ତ ସାଧାରଣ ରୋଗୀ ନଥିଲେ ଯେ ଦିନ ଯାଉଁ ଯାଉଁ ଦେହ ଆପେ ଭଲ ହେଇଯାନ୍ତା । କୀଟନାଶକ ସେ ବିଷ ତ ତିଆରି ହେଇଥିଲା ଅମୋଘ ହେଇ । ସେଥିରୁ ମିଳୁଥିବା ରୋଗର ନିଦାନ କଥା ତ ମୁଣ୍ଡକୁ ଆଣିନଥିଲା ତାକୁ ତିଆରି କରିଥିବା ବିଜ୍ଞାନୀ । ତେଣୁ ସବୁ ଘାଉଲା ଲୋକେ କ୍ରମେ ଶଯ୍ୟାଶାୟୀ ହେଇ ପହଞ୍ଚିଯିବେ ବୋଲି ସଚେବା ସଜା ଯାଇଥିଲା ସେ ଅପୂର୍ବ ଡାକ୍ତରଖାନାର ନାନା ଯନ୍ତ୍ରପାତି ଖଞ୍ଜା ଶହ ଶହ ଚକଚକିଆ ବିଛଣା ।

ଅମ୍ମି ବି ପହଞ୍ଚିଯାଇଥିଲା ସେଇଠି । ଗ୍ୟାସ୍ ରୋଗୀର ଘରଲୋକଙ୍କ ଲାଗି ବାଘ

ଖୁଆଠୁ ଘୋଷରା ବଳିଯାଏ । ଘରର ବାର କାମ ଧନ୍ଦା ଛାଡ଼ି ଧାଇଁବାକୁ ହୁଏ ଛଟପଟ ହେଉଥିବା ନିଜ ଲୋକଟି ପାଖକୁ । କେଉଁ ପରିବାର ବା ଆଉ ଯାଇପାରନ୍ତି ନାହିଁ, କିଏ କେଇ ସପ୍ତାହ ମାସରେ ଥରେ ଯାଆନ୍ତି ତ କାହା ଘରେ ବଞ୍ଚିଥିବା ଜଣେ ଅଧେ ନିଜ ପେଟପାଟଣାରେ ଲାଗି ଆଉ ଖୋଜଖବର ବି ନିଅନ୍ତି ନାହିଁ । ବିଛଣାରେ ପଡ଼ିଥିବା ରୋଗୀଟିକୁ ନାକ ନଳୀରେ କି ଛୁଞ୍ଚିବାଟେ ଦେହ ଶିରାରେ ଯେମିତି ହେଉ ଖାଇବାପିଇବାକୁ ତ ଦିଆଯିବ, ଭୋକ ଉପାସରେ ମରିବାକୁ ଦିଆଯିବ ନାଇଁ । କର୍ମ ଆଦରି ଦୁଃଖେ କଷ୍ଟେ ଚଳୁଥିବା ଘରଲୋକେ ତା' ପାଖକୁ ଧାଇଁଲେ ବା ତା'ର କି ଉପକାର କରିପକେଇବେ ? ଡାକ୍ତର ବି ଘରଲୋକଙ୍କୁ ଉଣା ଅଧିକେ ଏଇ ଉପଦେଶ ଦିଅନ୍ତି, ଯେ ଯାହା କରିବା କଥା ଆମେ କରୁଚୁ । ତମେ ଆଉ ଏଠି ହାଉଯାଉ ହୁଅନାହିଁ । ଯାଅ କ୍ଷତି ପୂରଣ ଆନ୍ଦୋଳନରେ ଯୋଗ ଦିଅ, ରାହତରୁ ଯେତିକି ମିଳୁଚି ଘରକୁ ଆଣ ବରଂ ।

ବଞ୍ଚିଥିଲା ଲୋକଙ୍କ ଲାଗି ତ ଆଉ ଗତକାଲିକୁ ଗଣ୍ଠି ବାନ୍ଧି ରଖିବାରେ କିଛି ଲାଭ ନଥାଏ । ଆଜିକ ବି ବଞ୍ଚିବାକୁ ହେବ, ଆସନ୍ତା କାଲି ଲାଗି ବି ଭାବିବାକୁ ହେବ । ଏଣିକି କେମିତି କିଛି ନୂଆ କଥା ଘଟୁ । ଲୋକେ ଏକୁ ଆରେକକୁ କହୁଚନ୍ତି, ଯାହା ଗଲା ଯାଉ, ଏଣିକି ବିଦେଶ ଭୂଇଁରୁ ଫୋପାଡ଼ା ହେଉଥିବା ଟଙ୍କା ଯେତିକି ମିଳୁଚି ଗୋଟାଇନିଅ ।

ସେଦିନ ଫାତିମା ହାତକୁ ଆସିଥିଲା ଅସଲି ଜରିର ଜାଲି କାମ ଜାମା ଆଉ ଓଢ଼ଣୀ, ଯାହା ପଛରେ କେଇ ଦିନର ଡିଜାଇନ ପ୍ରସ୍ତୁତି ଆଉ ପରିଶ୍ରମ ଲାଗିଯାଇଥିଲା । ବଡ଼ ସନ୍ତର୍ପଣରେ ନିଜେ ଫାତିମା ଆଉ ହୁସ୍ନା ବେଗମ୍ ମିଶି ତିଆରି କରିଥିଲେ ତାକୁ । ତିଆରି ସରିଲାପରେ ଆଉ କିଛି ନ ଭାବି ତାକୁ କାଗଜ ଗୁଡ଼େଇ କନା ବ୍ୟାଗ୍ ଖଣ୍ଡକରେ ପୂରେଇ ଫାତିମା ନେଇଯାଇଥିଲା ଅମ୍ମି ପାଖକୁ, ହସ୍‌ପିଟାଲକୁ । ନିଶ୍ଚୁପ୍ ହେଇ ପଡ଼ିଥିବା ଅମ୍ମିର ବିଛଣା ପାଖେ ନଇଁପଡ଼ି ତା'ର ବନ୍ଦ ଆଖିପତା ଆଗରେ ଧିରେ କରି ଜରିକାମ ଲୁଗାପାଖକୁ ଖୋଲି ଟେକିଧରିଲା, କାନ ପାଖେ ତୁନିତୁନି ମିନତି କଲା, "ଟିକିଏ ଚାହାଁ ଅମ୍ମି, ଦେଖିଲୁ ଟିକିଏ । ସରକାର ବେଗମ୍ ସାହିବା ବି କାବା ହେଇଯାନ୍ତେ ୟା'କୁ ଦେଖିଲେ, ଲୋଭ କରିପକାନ୍ତେ ବୁଝିଲୁ ।"

ଫାତିମାର ଅମ୍ମିକୁ ହସ୍ପିଟାଲ୍‌ରେ ଦେଖିବାଲାଗି କାରିଗର ସ୍ତ୍ରୀଲୋକେ ବି ଦଳ ହେଇ ଆସନ୍ତି, କେବେବା ଆସନ୍ତି ଶାହନଶା ହୋଟେଲର କର୍ମଚାରୀ ଜଣେ ଅଧେ, ପୁଣି ଦିନେ ଆସିଥିଲେ ମ୍ୟାନେଜର ବାବୁ ନିଜେ । ସେଦିନ କେମିତି ଅଚାନକ ବେପାରୀ ହବିବ୍ ମହମ୍ମଦ ବଡ଼ ଫୁଲର ତୋଡ଼ାଟିଏ ନେଇ ଡାକ୍ତରଖାନାରେ ପହଞ୍ଚିଥିଲେ । ରେହମାନ ଆଉ ତା' ଭାବୀ ଶଶୁର ବି ପହଞ୍ଚିଥାଆନ୍ତି ଟିକକ ଆଗରୁ । ଏମିତି ବେଶ ପୋଷାକର ସାହେବ ଭଳି ଲୋକ

ସେ ୱାର୍ଡ୍‌କୁ ଆସିବା କେହି ନିଶ୍ଚେ ଦେଖୁନଥିଲେ, ପାଖ ବେଡ୍‌ର ରୋଗୀଙ୍କ ବନ୍ଧୁ ବାନ୍ଧବଙ୍କଠୁ ଆରମ୍ଭ କରି ହସ୍‌ପିଟାଲ କର୍ମଚାରୀ ଯାଏଁ ସମସ୍ତେ ଅନେଇଥିଲେ ଆଶ୍ଚର୍ଯ୍ୟରେ, ସମ୍ଭ୍ରମରେ । ଯାହାକୁ ଦେଖିବାକୁ ଆସିଥିଲେ, ଫାତିମାର ଅମ୍ମି ବିଚାରୀ ମୁହଁରେ ହାତରେ ନାନା ନଳୀରେ ବାନ୍ଧିବୁନ୍ଧି ହେଇ ଆଖିବୁଜି ଶୋଇଥିଲା ।

ଫାତିମାର ଘରକଥା ବିଷୟରେ ବିଶେଷ କିଛି ହବିବ ସାହାବ ଜାଣିନାହାନ୍ତି, ସେ କଥା କେବେ ପଡ଼େନାହିଁ ଦୋକାନ ବେପାର କଥାବାର୍ତ୍ତା ଭିତରେ । କିଏ ତାଙ୍କୁ ତା' ମା'ର ଅବସ୍ଥା କଥା, ପରିବାରର ଅବସ୍ଥା କଥା କହିଲା କେଜାଣି । ଫାତିମାକୁ କଥାଟା ଖୁବ୍ ଭଲ ଲାଗୁନଥିଲା । ଡାକ୍ତର ନର୍ସଙ୍କ ସାଙ୍ଗେ ରୋଗୀର ଦେହ ପା ବିଷୟରେ କଥାବାର୍ତ୍ତା ହେଲେ ସେ ବିଶିଷ୍ଟ ଆଗନ୍ତୁକ । କଥା ଦେଲେ, ଯଦି ରୋଗୀର ସାସ୍ଥ୍ୟ ଲାଗି ଅଧିକ କିଛି ଦରକାର, ସେ ଯୋଗାଇଦେବେ, କିଛି କଥାନାହିଁ ।

ବାଟେଇ ଦେବାକୁ ବାହାରକୁ ଆସିବାବେଳେ ହବିବ୍ ସାହାବଙ୍କୁ ଶାରୁଖ୍ ମୁଣ୍ଡ ନଇଁ ସଲାମ୍ ବଜେଇଲେ, ଗଦ୍‌ଗଦ ହେଇ କହିଲେ, "ଯାହେଉ ଆଜ୍ଞା, ଆପଣଙ୍କ ଭଳି ବଦାନ୍ୟ ଲୋକଙ୍କ ଦୃଷ୍ଟି ରହିଥାଉ ଆମ ପରିବାର ଉପରେ । ଆମ ଝିଅ ଫାତିମାର କାମ ଆପଣଙ୍କୁ, ଆପଣଙ୍କ ବେଗମ୍‌ଙ୍କୁ ପସନ୍ଦ ଆସିଚି ବୋଲି ଆମେ ଶୁଣିଲୁ ।"

ସେଇଠୁ ଫାତିମା ପାଖକୁ ଯାଇ ଆବଦାରରେ କହିଲେ, "ଦେଖେଇଲୁ ଝିଅ ଜନାବଙ୍କୁ, ହାତ ବ୍ୟାଗ୍‌ରେ ଯୋଉଟା ଧରିଚୁ ।"

ଶାରୁଖ୍ ଚାଚାଙ୍କ ମୁହଁକୁ ଅନେଇ ପୁଣି ହବିବ୍ ମିଆଁଙ୍କୁ ଚାହିଁଲା ଫାତିମା, ଦୋଦୋପାଞ୍ଚ ହାତରେ ବ୍ୟାଗ୍‌ରୁ କାଢ଼ି ଲୁଗା ମେଞ୍ଚାକ ବଢ଼େଇ ଦେଇ ଗଳାଢ଼ୋକି କହିଲା, "ହଁ, ଏଇଟା, ଡିଜାଇନ୍ ଦେଖେଇଥିଲି, ଆପଣଙ୍କ ଘରଲାଗି ସ୍ପେଶାଲ ତିଆରିବାକୁ ଯୋଉଟା କହିଥିଲେ ।"

ହବିବ୍ ନୂଆ ତିଆରି ଜରିକାମ ଲୁଗା ନିଜ ହାତକୁ ନେଲେ, ତାଙ୍କ ମୁହଁର ଆଶ୍ଚର୍ଯ୍ୟ ଲୁଚୁନଥିଲା । ଟିକିଏ ରହିରହି ଫାତିମା ପୁଣି କହିଲା, "ମୋ' ଅମ୍ମିକୁ ଦେଖେଇବି ବୋଲି ନେଇଆସିଥିଲି ।"

ବ୍ୟବସାୟୀ ହବିବ୍ ମହମ୍ମଦ, ଏ ଭିତରେ ପୂରା ପରିମାଣର ଅର୍ଡ଼ର କେବଳ ନୁହେଁ, ଆବଶ୍ୟକୀୟ ସରଞ୍ଜାମ ଲାଗି ଅଗ୍ରୀମ ଟଙ୍କା ବି ଦେଇଯାଇଥିଲେ । କେଇଥର ସେଇଥି ଲାଗି ଫୋନ୍ ଆସିଥିଲା ଦୁବାଇରୁ, ହୋଟେଲ ଫୋନ୍‌ରେ । ଡିଜାଇନ୍‌ରେ ଅଙ୍କା କାରୁକାର୍ଯ୍ୟମୟ ପ୍ରଥମ ପୋଷାକଟି ତିଆରି ହେଲା କି ନାହିଁ ଜାଣିବାକୁ, ଦେଖିବାକୁ ତାଙ୍କ ଟର ସହୁନଥିଲା । ଗତ ଦି'ଦିନ ହେଲା ଆସି ହୋଟେଲରେ ରହିଲେଣି ସେ, ହେଲେ ତାଙ୍କୁ ଏଯାଏଁ ଦେଖାଇନଥିଲା କେହି ।

କିଛି ନକହି ହାତର ଲୁଗାକୁ ଦେଖୁଥିଲେ ସେ । କଥାଟା ତାଙ୍କୁ କେମିତି ବୁଝେଇବ ବୋଲି ଢୋକ ଗିଳିଲା ଫାତିମା, ଯା' ତା' ମୁହଁକୁ ଅନେଇଲା କେବଳ । ରେହମାନ ଭ୍ରୂ କୁଞ୍ଚେଇ କିଛି ବୁଝିନପାରି ରହିଁଚି, ଅପାର କାରବାର ତ ସବୁଦିନ ତା' ଲାଗି ଦୁର୍ବୋଧ୍ୟ । ଶାରୁଖ୍ ରଫ୍ କାଇଁକି କେଜାଣି ମୁରୁକେଇ ହସୁଚନ୍ତି । ଫାତିମା ଏଥର ବୁଝେଇବାକୁ ଚେଷ୍ଟା କଲା, "ମୋ' ଅମ୍ମି ଶିଖେଇଚନ୍ତି ତ । ମାନେ ଏ ଜରିକଢ଼ାଇ ତିଆରି । କେହି ଆଉ ଏଠି ମନେରଖିନଥିଲେ । ମୋ' ଅମ୍ମିଠୁ ଆମେ ଶିଖିଲୁ । ସେଥିଲାଗି ପ୍ରଥମ କାମଟା ତାଙ୍କୁ ଦେଖେଇବି ବୋଲି – ।"

ଶାରୁଖ୍ ରଫ୍ ମୁହଁ ହଲେଇଲେ ଆଚମ୍ବିତ ହେଲାଭଳି, କହିଲେ – "ତମ ଅମ୍ମି ଶିଖେଇଲେ ? ଆଚ୍ଛା ? କୋଉ କାଳେ ନିଶ୍ଚେ କାମ ଜାଣିଥିବେ, ଶିଖେଇଥିବେ, ନୁହଁ ଝିଅ ? ଏବେ ଗ୍ୟାସ୍ କାଣ୍ଡ ଦିନୁଁ ତ ଉଣା ଅଧିକେ ଏମିତି ଅଧା ଚେତାରେ ରହିଚନ୍ତି ।"

ସେମାନଙ୍କ ପିଠି ପାଖରୁ ଚମକାଇ ଦେଇ ଜରୀନା ହଠାତ୍ କହିଲା ସରୁ କାନ୍ଦୁରା ସ୍ୱରରେ, "ଅପା ଠିକ୍ କହୁଚି । ଆମ ଅମ୍ମି ଶିଖେଇଚନ୍ତି ଏ ସୁନାଜାଲି କାମ । ଚେତା ଥିବା ଯାଏଁ ଅମ୍ମି ପଚାରୁଥିଲେ, ମୋ' ଫାତିମା ବେଟୀର ବାହାଘର ଓଢ଼ଣୀ ତିଆରି ହେଲା ନା ନାଇଁ ବୋଲି ।"

ଜରୀନାର ଗଳା ରୁନ୍ଧିଗଲା । ଶାରୁଖ୍ ଏଥର ହସ ସମ୍ଭାଳି ନପାରି ମୁହଁ ବୁଲେଇନେଲେ । ହବିବ୍ କିଛି କହିଲେନି ତଥାପି । ହାତର ଚଉତା ଓଢ଼ଣୀଟିକୁ ଧୀରେ କରି ଖୋଲିଲେ, ଜରିକାମକୁ ଆଙ୍ଗୁଠିରେ ଛୁଇଁ ଛୁଇଁ ପରଖିଲେ ।

# ଅନ୍ଧାର ଆଲୁଅର ରାତିଟିଏ

ଉଣେଇଶ ବୟାନବେ । ଏ ସହରର ଇତିହାସରେ ଏଭଳି କଳାଦିନଟିଏ ଆସିନଥିଲା । କେତେ କଳଙ୍କ ତ ଲାଗିଚି ୟା' ଦେହରେ, ଦେଶରେ ଥାଇ ବି ବିଦେଶୀ ଶାସକ ସାଙ୍ଗେ ହାତ ମିଳେଇବାର, ନିଜ ମାଟି ଅରାକ କାଟିଦେଇ ପର ହେଇଯିବାର ମସୁଧା କରିବାର । ପୃଥିବୀର ସବୁଠୁ ବଡ଼ ରାସାୟନିକ ଦୁର୍ଘଟଣାର ଶିକାର ହେବାର । ତଥାପି ରକ୍ତାକ୍ତ ସାମ୍ପ୍ରଦାୟିକ ଦଙ୍ଗାର, ଆପଣା ସାଇପଡ଼ିଶା ଭିତରେ ହାଣକାଟ ହେବାର କଳଙ୍କ ନଥିଲା ଆଜିଯାକେ ।

ସେଦିନ ଫାତିମା ଘରୁ ବାହାରି ହୋଟେଲକୁ ଚାଲିଯାଇଥିଲା ସିନା, ଫେରିବା ଆଉ ସମ୍ଭବ ନଥିଲା । ବାହାରିଲାବେଳେ ଚାରିପାଖେ କେମିତି ଶୂନଶାନ ଥିଲା । ତିନି ଭାଇଭଉଣୀ ଗୋଟିଏ ଛାତ ତଳେ ଯେ ଯାହାର ଜୀବନ କାଟୁଚନ୍ତି ଅବା । ଯେ ଯାଏଁ ଅମ୍ମି ବଞ୍ଚିଥିଲା, ଥାଇ ନଥିଲା ପରି ରହିଥିଲା ସିନା, ଏକରକମ ବାନ୍ଧିରଖିଥିଲା ପରିବାରକୁ । ତା'ର ଯିବା ଶୋକ ବି ଜୀଅନ୍ତା ଲୋକ ଚାଲିଯିବାର ଶୋକ ନଥିଲା । ବହଳ କୁହୁଡ଼ି ଘୋଡ଼େଇଲା ଭଳି ଉଦାସ ରଖିଥିଲା ଘରଟିକୁ ଅନେକଦିନ ଧରି । ଘରଭିତରକୁ ସଫା ଆଲୁଅ କି ନିରୁତା ପବନ ଆସିବାରୁ ରୋକିଦେଉଥିଲା ଅବା ।

ରେହମାନ ଥାଏ ତା' ବାଟରେ । ଜରୀନାର ବେଳ କଟେ ତା'ର କଲେଜପାଠ ଆଉ ସାହିର ସାଙ୍ଗ ଝିଅ ଦି'ଜଣଙ୍କ ସାଙ୍ଗେ । ଅପା କରୁଥିବା ସିଲେଇ କଢ଼ାଇ କାମରେ ଆଜିକାଲି ସେ ହାତ ଦିଏନାହିଁ । ପିଲାଦିନୁ ଅମ୍ମି କହିଆସିଚି ତା'ର ହାତକାମ ଫାତିମା ଭଳି ପରିଷ୍କାର ନୁହେଁ, ତା'ର ସୁନ୍ଦରପଣ ଲାଗି ଦୃଷ୍ଟି ନାହିଁ । ତେବେ ସେ ଯେଉଁ କାରଣରୁ ହେଉ ତା' ମୁଣ୍ଡରେ ପଶିଯାଇଚି ଯେ ସିଲେଇ ଫିଲେଇ କି ବେଉସା କାମ ତା' ଦେଇ ହେବନି । ଅପା ସାଙ୍ଗେ ସେ ଦୁଃଖସୁଖ ହୁଏ, ଦିହେଁ ମିଶି ଘରକାମ କରନ୍ତି । ତେବେ ଜରୀନା ଜାଣେ ଯେ ରେହମାନ ଆଉ ତା'ର ଭାବୀ ଶ୍ୱଶୁର ଘରର ଫାତିମା ସାଙ୍ଗେ ପଡ଼େନାହିଁ । ସେମାନଙ୍କୁ

ଛାଡ଼ି ବା ସେ ନିଜେ କୋଉ ଦମ୍ଭରେ ରହିବ ? ଅପା ଯେଡ଼େ ବେଖାତିରିପଣ ଦେଖାଉଥାଉ, ସିଏ ତ ଯାଚିହେଇ ରହିଲା କୁଣିଆଟିଏ ଭଳି ଅଛି ଏ ଘରେ ।

ସକାଳୁ ଜରୀନା ସାଙ୍ଗେ ମିଶି ଘରକାମ ଦିଇଟା ସାରିଦେଇ ଫାତିମା ବାହାରିଯାଏ ଶାହନଶା ହୋଟେଲକୁ, ନହେଲେ ପର୍ଦ୍ଦା ଆଡୁଆଳରେ ରହି ତା' ସିଲେଇ କାମକରୁଥିବା ନିରୀମାଖୀ କାରିଗରମାନଙ୍କ ପାଖକୁ । ସେଦିନ ସକାଳୁ ଘରୁ ଯାଉଯାଉ ରେହମାନ ଶୂନ୍ୟକୁ କହିଲା ଭଳି ଜାଗଟିଆର କରିଦେଇଥିଲା, "ଆଜି ସହରରେ ଦଙ୍ଗା ହେବାର ଅଛି । କୋଉକାଳର ବାବରୀ ମସ୍‌ଜିଦକୁ ମାଟିରେ ମିଶେଇଦିଆଗଲା ପରା, ଋରିଆଡ଼େ ନିଆଁ ଜଳିବ ଏଥରକ । ଘରୁ ବାହାରିବନି କେହି, ଜରୀନା, ମନେରଖିଥା ।"

ବାଧ୍ୟ ପିଲାଟି ପରି ଜରୀନା ଅବଶ୍ୟ ଆଉ କଲେଜ ବାହାରିଲାନି, କିନ୍ତୁ ଫାତିମା ସବୁଦିନ ଭଳି ହାତରେ ଭାରୀ ବ୍ୟାଗ୍‌ଟି ସଜିଲ କରି ଦାଣ୍ଡ କବାଟ ଆଉଜେଇଦେଇ ରାସ୍ତାକୁ ଗୋଡ଼କାଢ଼ିଲା । ରେହମାନ କଥାରେ କି ବିଶ୍ୱାସ, ତାଙ୍କୁ ତ ସବୁଆଡୁ ଖାଲି ଗଣ୍ଡଗୋଳର ବାସ୍ନା ଆସୁଥାଏ । ଅଟୋଟାଏ ବି ମିଳିଲାନି, ଋଲିଋଲି ହୋଟେଲ ଯାଏଁ ଗଲା ସେ । ରାସ୍ତାରେ ଗାଡ଼ି ମଟର କମ୍ ଦିଶୁଚି । ହୋଟେଲରେ ପହଞ୍ଚିଲା ବେଳକୁ ଖାଲି ଖାଲି ଦିଶୁଚି । ଦିପହର ବେଳକୁ ସହରରେ ଭୀଷଣ ଗଣ୍ଡଗୋଳ, ଲୁଟପାଟ ଦଙ୍ଗା ଋଲିଥିବାର ଖବର ସମସ୍ତେ ଜାଣିଯାଇଥିଲେ । ଏମିତି କି ନୂଆ ସହର ଆଉ ପୁରୁଣା ସହର ଦି'ଭାଗ ହେଇ ବାଣ୍ଟିହେଇଯାଇଥିଲା କାଳେ । ଏପାଖ ଲୋକ ସେପାଖକୁ ଯିବାକୁ ଡରୁଚନ୍ତି । ସରକାରୀ ଦପ୍ତର କୋଠା ବାଡ଼ି ସବୁ ନୂଆ ସହର ଅଞ୍ଚଳରେ । ପୁରୁଣାରେ ଯେତେକ ଟୁରିଷ୍ଟ ଜାଗା, ହୋଟେଲ ଲଜ୍, ମହଲ ମସ୍‌ଜିଦ, ପୁରୁଣା ବଜାର ।

ସହର ବାହାରୁ ଆସିଥିବା ଲୋକେ ହୋଟେଲରେ ନିଜ ନିଜ କୋଠରୀରେ ରହିଥିଲେ । ଡାଇନିଂ ହଲ୍‌ରେ, ବାହାର ଭିତର ବଗିଋରେ କିଛି ଗହଳ ଚହଳ ନଥିଲା । ବିଲକିସ୍ ବେଗମ୍ ଦିପହର ପୂର୍ବରୁ ଘରକୁ ଫେରିବାକୁ ବାହାରିଲେ, ଫାତିମାକୁ କହିଲେ, "ବେଟୀ, ତମେ ଆଜି ନ ଆସିଥିଲେ ଭଲ ହେଇଥାନ୍ତା । ଏବେ ଘରକୁ ଫେରିବ କେମିତି ?"

ଗେଟ୍ ପାଖ ଦେଇ ପୋଲିସ୍ ଗାଡ଼ି ଦିଇଟା ସାଇରନ୍ ବଜେଇ ଋଲିଗଲେ । ଫାତିମାର ଛାତିକୁ ଟିକେ ଏଥର ଛନକା ପଶିଲା । ସତକଥା ତ । କହିଲା," ସଂଜ ହେବା ଆଗରୁ ଘରକୁ ଚାଲିଯାଏଁ ତେବେ, କ'ଣ କହୁଛନ୍ତି ?"

ବିଲକିସ୍ ଏଣେ ତେଣେ ଅନେଇ କହିଲେ, " ଆମ ଘରଟା ଏଇ ପାଖ ବୋଲି ଯାଉଚି । ତମ ଘର ତ ବେଶ୍ ଦୂର ଏଠୁ ।" କିଚେନ୍‌ର ମ୍ୟାନେଜର୍ ଶକିଲ୍ ପାଖକୁ ଆସିଲେ, କହିଲେ", ଆଜି ଆଉ ଏକୁଟିଆ ବାହାରକୁ ଗୋଡ଼ କାଢ଼ିବା କଥା ନୁହଁ ଝିଅ । ୟା' ଆଲ୍ଲା,

ଯୁଗ କ'ଣ ହେଲା । ନିଜ ବାପା ଅଜାଙ୍କ ଏଇ ସହରରେ ଆମକୁ ପୁଣି ଡ଼ରିମରି ରହିବାକୁ ହେବ, କାହାକୁ ଜଣା ଥିଲା ?"

ତେଣୁ ଆଉ ଜଣେ ଆସି କହି ବସିଲା,"ମୁଁ ସକାଳୁ ନିଉ ମାର୍କେଟ୍ ବାଟ ଦେଇ ଆସିଲାବେଳେ ପରା ଦେଖିଲି...." ଆଜି ହୋଟେଲ୍ କର୍ମଚାରୀଙ୍କର ବି କାମ ନାହିଁ ହାତରେ । ସେଠି ଆଉ ଜଣ କେତେ ବି ପହଞ୍ଚି ଜୁଟିଗଲେ ଦଙ୍ଗା ବିଷୟ ଚର୍ଚ୍ଚାରେ । କ'ଣ ପ୍ରକୃତରେ ଘଟୁଛି କାହାରିକି ଠିକ୍ କରି ଜଣାନାହିଁ । ଦୂର ରାସ୍ତାରୁ ରହିରହି ଗୋଳଟାଏ ଉଠୁଚି, ପୁଣି ପୋଲିସ୍ ଗାଡ଼ିରୁ ମାଇକ୍ ଡ଼ାକ ଶୁଭୁଚି, କ'ଣ ସବୁ ଆଦେଶ, ନିର୍ଦ୍ଦେଶ ଦିଆଯାଉଚି । ଜଣେ ଅଧେ ହୋଟେଲ୍ ଲୋକ ପଛ କବାଟ ଦେଇ ଯିବା ଆସିବା କରୁଛନ୍ତି, ତାଙ୍କ ପାଖକୁ ଧାଇଁ ଯାଇ ପଚରା ଉଚରା କରୁଛନ୍ତି ଅନ୍ୟମାନେ । ମୁହଁରୁ ମୁହଁକୁ ହେଇ ସତ ମିଛ ମିଶି କାହାଣୀ ପାଲଟୁଚି । ଅମୁକ ଜାଗାରେ ବୋମା ଫୁଟିଲାଣି, ସମୁକ ଜାଗାରେ ପୋଲ ଉପରେ କେଇ ହଜାରେ ଲୋକ ଖଣ୍ଡା ବର୍ଚ୍ଛା ଧରି ଡ଼ାକ ଦେଉଛନ୍ତି । ଲୋକେ ହଣାହଣି ହେଲେଣି ଏବେ ବିଚ୍‌ରାସ୍ତା ଉପରେ । ପୋଲିସ୍ କଥା ଜାଣିନା, ସେମାନେ ଚୁପ୍ ହେଇ ତାମାସା ଦେଖୁଛନ୍ତି । ଆରେ ଖାଲି କ'ଣ ସେତିକି, ଗୁଳି ମାରୁଚନ୍ତି କାଳେ ଆମରି ଲୋକଙ୍କୁ ଦେଖି ।

ଦିନ ଚାରିଟା ହେଲାଣି । ହାତରେ ବ୍ୟାଗ୍ ଖଣ୍ଡକ ନେଇ ଫାତିମା ବାହାର ବାରଣ୍ଡାରେ ଛିଡ଼ାହୋଇଛି, ତୁନି ହୋଇ ଶୁଣୁଚି ସେମାନଙ୍କ କଥା । ଅଫିସ୍ ଟେବୁଲ୍‌ରେ ମ୍ୟାନେଜର୍ ରଘୁବୀରବାବୁ ରେଜିଷ୍ଟାରଟାଏ ଧରି କ'ଣ କାମ କରୁଛନ୍ତି । ପାଖକୁ ଯାଇ ଠିଆହେଲା ଫାତିମା, ପଚାରିଲା, "ସତରେ ଏମିତି ଅବସ୍ଥା ହେଲାଣି ମଉସା ? ଆପଣ ପୁଣି କେମିତି ଘରକୁ ଫେରିବେ ?" ମୁଣ୍ଡ ନ ଉଠାଇ ସେ କହିଲେ, "ଏମାନଙ୍କ କଥାକୁ କାନ ଦିଅନା ଝିଅ, କିଏ କୁଆଡ଼େ ଆସିଚି ଯେ ଦେଖିଚି ସତରେ କ'ଣ ଘଟୁଚି ? ହେଲେ ତମେ ଏକୁଟିଆ ଯେମିତି ଗୋଡ଼ ନ କାଢ଼ ।"

ଫାତିମା ନିଜ ଶୋ ରୁମ୍ ଭିତରେ ଯାଇ ଟେବୁଲ୍ ପାଖେ ବସିଲା ଚୁପ୍‌ଚାପ୍ । ଘରକୁ ଫେରିବାର ଚିନ୍ତା ତାକୁ ବିଶେଷ ନଥିଲା, ତାକୁ ନେଇ ଖାସ୍ ଚିନ୍ତା କଲାଭଳି ଏବେ ଆଉ କିଏ ବା ଅଛି ଯେ ? ଭାଇ ଭଉଣୀ ଦିହିଁଙ୍କୁ ଜଣା ଯେ ସେ ଶାହନ୍‌ଶାରେ ଅଛି । ପୁଣି ଏଠୁ ଘରଯାକେ ପୁରୁଣା ସହର ଇଲାକା । କେବେ ପରିଚୟ ନ ଥିବା ସତସତିକା ଦଙ୍ଗା ବିଷୟରେ ସେ ବେଶୀ ବେଳ ଚିନ୍ତା କରିପାରୁନଥିଲା । ତାକୁ ଅସଲରେ ଘାରୁଥିଲା ବେପାର ଲାଗି ବରାଦ ନେଇଥିବା କାମର କଥା । କାରିଗରମାନଙ୍କୁ ନିଜେ ଯାଇ ତାଗିଦ୍ ନକଲେ, ତାଙ୍କ କାମ ତଦାରଖ ନକଲେ ନଚଳେ । ସମୟ ସୀମା ଭିତରେ କାମ କରିବାର ଅଭ୍ୟାସ ଏମାନଙ୍କର ନାହିଁ । ଅଗ୍ରୀମ ପଇସାକୁ ଖର୍ଚ୍ଚ କରିଦେଉଚନ୍ତି, ଅଭାବୀ ଲୋକ ସମସ୍ତେ । କାହା

ପୁଅର ସ୍କୁଲ ଡ୍ରେସ୍ ତିଆରି ହେଇପାରୁନଥିଲା ତ କାହା ବୁଢ଼ୀ ମା' ଲାଗି ବିଛଣା ଖଣ୍ଡେ ନଥିଲା କେତେଦିନୁ । ପଇସା ସାରିଦେଇ ପୁଣି ବସିଯିବେ, ଦଶଥର ଯାଇ ତିଆରିବାକୁ ହେବ କାମ ସାରିବାଲାଗି । ଏଠା ଲୋକଙ୍କୁ କ'ଣ ବୁଝେଇହେବ ଠିକଣା ସମୟରେ ବରାଦ ଜିନିଷ ତିଆରିକରି ଦେଇଦେବା କେଡ଼େ ଜରୁରୀ ?

ସେଦିନ ଡାକ୍ତରଖାନାରେ ହବିବ୍ ସାହାବଙ୍କ ଆଗରେ ଫାତିମା ଅପ୍ରସ୍ତୁତ ହୋଇଥିଲା, ତାଙ୍କ କଥା ନରଖି ନୂଆ ବରାଦ ଜିନିଷ ପଦାକୁ ଯାଇଥିବାର ସେ ଦେଖିଲେ । ତେବେ ସେ ବିଷୟରେ ଆଉ ଉଚ୍ଚବାଚ୍ୟ ହେଇନି । ଅନ୍ନି ଆଖିବୁଜିଥିବାର ଖବର ହୁଏତ ସେ ପାଇଥିବେ । ତା'ପରେ ତାଙ୍କ ଦେଶକୁ ଫେରିଯିବାପରେ ଏଇ ଦି'ଦିନ ହେଲା ଆସିଚନ୍ତି ପୁଣି । ଜାଣିଶୁଣି ଦେଖା କରିନି ଫାତିମା, ତାଙ୍କ ରୁମ୍‌କୁ ପଠେଦେଇଚି ଅର୍ଡ଼ର ଦିଆ ସରିଥିବା କାଟଲଗ୍, ରିସେପସନରୁ ଫୋନ୍‌ରେ କଥା ହେଇଚି କାମ ବିଷୟରେ । ଏଣିକି ତାଙ୍କ ଭରସା ହରେଇବା ଭଳି ବେଳ କେବେ ନ ଆସୁ ।

ଏ ଭିତରେ ନୂଆ କାମର ନାହିଁ ନଥିବା କାଟ୍‌ତି ହେଇଚି ଦୁବାଇ ବଜାରରେ । ବଡ଼ ଧରଣର ଅର୍ଡ଼ର ମିଳିଚି ବି । ସେଥିରେ ଫାତିମାର ଖୁସି ଭାଗ କେତେ ଉଦ୍‌ବେଗ କେତେ ତାକୁ ନିଜକୁ ବୁଝାପଡୁନି । ବରାଦ ମତେ ଏଠି କାମ ପୂରା କରି ଦେଇପାରିବା ତ କିଛି ସହଜ କଥା ନୁହେଁ । ପୁଣି ଏଭଳି ଦାୟିତ୍ୱ ନିଜ ହାତକୁ ନେବା ଲାଗି ଯେଉଁ ସାହସ ଦରକାର, ଫାତିମା ସେତିକି କୁଳେଇ ପାରିଲେ ତ । ସାମ୍ପଲର ନୂଆ କାଟଲଗ୍ ତିଆରି କରି ଦେଖେଇବାକୁ ଥିଲା ଆସନ୍ତାକାଲି । ଏଣେ ସହରର ଏ ଅବସ୍ଥା । କାରିଗରଙ୍କ ସାଙ୍ଗେ ଦେଖା ସାକ୍ଷାତ ନାହିଁ ।

# ମୁଖା ତଳର ମୁହଁ

ଉପରଓଳି ଖରା ନଇଁବାକୁ ହେଲାଣି । ହୋଟେଲ ଭିତର ଆଉରି ଚୁପ୍‌ଚାପ୍ ପଡ଼ିଯାଇଚି । ବାହାରୁ ଆଉ ଜଣେ ହେଲେ କେହି ଆସୁନାହାନ୍ତି । ରହିଥିବା ଲୋକେ ନିଜ ନିଜ ରୁମ୍ ଭିତରେ ଅଛନ୍ତି ପ୍ରାୟ । ଶୋରୁମ୍‌କୁ ଆସିଥିଲେ ସେଇମାନଙ୍କ ଭିତରୁ ଜଣେ ଅଧେ, ଅଧା ମନରେ ଜିନିଷ ଦେଖୁଥିଲେ, ଗୋଟେ ଅଧେ କିଛି କିଣିଥିଲେ । ଫାତିମା ଯେତେ ନାହିଁ କଲେ ବି ଏଣେ ଦଙ୍ଗା କଥାଟା ବି ମନରୁ ବେଶୀ ବେଳ ଦୂରେଇ ଦେଇ ପାରୁନି, କ'ଣ ଚାଲିଚି ତେଣେ ହୋଟେଲ୍ ଫାଟକ ବାହାର ଦୁନିଆରେ କିଏ ଜାଣେ ? ରେହମାନ୍ ବେଳ ଥାଉଣୁ ଘରକୁ ଫେରିଆସିଥାଉ ଆଲ୍ଲାତାଲାଙ୍କ ଦୟାରୁ, କୋଉ ଗଣ୍ଡଗୋଳ ଭିତରକୁ ଯାଇନଥାଉ ।

ମିଛ ଆଶା ବୋଲି ଜାଣି ବି ଫାତିମା ଭାବୁଚି, କାଳେ ରେହମାନ ଆସିବ ତା' ଅପା କଥା ବୁଝିବା ଲାଗି, ସାଙ୍ଗରେ ଘରକୁ ନେବା ଲାଗି । ଚାହିଁଚି, ରିସେପସନରୁ କିଏ ଆସି କହିବ ତା' କଥା ପଚାରିବାକୁ ଘରୁ ଫୋନ୍ କରିଥିଲା କେହି ବୋଲି । ପୁଣି ବୋଧ ଦେଉଚି ନିଜକୁ, ନା, ଏଇ ସଞ୍ଜବେଳେ ହୋଟେଲ କର୍ମଚାରୀ ଜଣେ ଆସିଚି ପରା ତାଆରି ମୋହଲ୍ଲାରୁ । ସେମିତି ଚିନ୍ତା କଲାଭଳି କିଛି ନାଇଁ ।

ନିଜ ଟେବୁଲ୍‌ରେ ଡିଜାଇନ୍ କାଗଜ କେଇପ୍ରସ୍ତ ମେଲିଦେଇ ତାଆରି ଉପରକୁ ଝୁଙ୍କି ପଡ଼ିଥିଲା ଫାତିମା । କେତେବେଳେ ହବିବ୍ ସାହାବ ଆସି ପାଖ ସୋଫାରେ ବସିପଡ଼ିଥିଲେ । ଫାତିମାର ନଜର ପଡ଼ିଲାକ୍ଷଣି ଉଠିପଡ଼ି ଆଦାବ କଲା, ଆଖପାଖକୁ ଅନେଇ ବ୍ୟସ୍ତ ହେଇ କହିଲା, "ଆପଣ ନିଜେ ଆସିଲେ, ମୋତେ ଡକେଇ ଦେଲେନି ସାର୍ ? ଚା' କଫି କିଛି ମଗେଇବି ?"

ପାଖ ସୋଫାକୁ ଦେଖାଇ ସେ କହିଲେ, "ନାଇଁ କିଛି ନାଇଁ । ତମେ ବସ ।"

ଅନ୍ୟଥର ଭଳି କାମ କଥା ନ କହି ଭଦ୍ରଲୋକ ହଠାତ୍ ଆରମ୍ଭ କଲେ, "ଏତେଦିନ ଧରି ଚିହ୍ନା ହେଲାଣି । ଦି'ପଦ ଭଲକରି କେବେ କଥାବାର୍ତ୍ତା ବି ହୋଇନେ ଆମେ । ତମକୁ କେବେ ଧନ୍ୟବାଦ ବି ଦେଇନି ।"

ଉଠିପଡ଼ି ନୂଆ ତିଆରି କେତେଟା ଜିନିଷ ଥାକରୁ ଆଣୁ ଆଣୁ ଫାତିମା କହିଲା, "ମୋର ସିନା ଧନ୍ୟବାଦ ଦେବା କଥା ସାର୍ । ଲଜ୍ଜିତ ହେବା କଥା ବି । ଆଶା ମତେ କାମ ହେଇପାରୁନି ।"

ଟେବୁଲ୍ ଉପରୁ କେତେଟା ସାନ ବଡ଼ ନୂଆ ପ୍ରକାର ଭେଲ୍‌ଭେଟ୍ ବଟୁଆ ନେଇ ତାଙ୍କୁ ଦେଖାଇବସିଲା ଫାତିମା । ତାକୁ ହାତକୁ ନେଇ ଭଲକରି ନ ଦେଖୁଣୁ ପୁଣି ଟେବୁଲ୍‌ରେ ଥୋଇଲେ ହବିବ । ତାପରେ ସେସବୁ ଟେବୁଲ୍ କଡ଼କୁ ଘୁଞ୍ଚାଇ ଦେଇ କହିଲେ, "ଆଜି କାମ କଥା ନୁହଁ, ଚାଲ ଟିକେ ଗପସପ କରିବା ।"

ବସିପଡ଼ିଲା ଫାତିମା କଥା ମାନିଲା ଭଳି, ଯା ହେଉ ତାଙ୍କ ସ୍ୱରରେ କିଛି ଅଭିଯୋଗ ନାହିଁ ଅନ୍ତତଃ । କେଜାଣି ହୁଏତ ଦିନଯାକ ରୁମ୍‌ରେ ବସି ଭଦ୍ରଲୋକ ବୋର ହେଉଥିବେ, କଥାବାର୍ତ୍ତା କରିବାକୁ ଆସିଚନ୍ତି । ଓଠକୁ ଅଳ୍ପଟିକିଏ ହସ ଆଣି କହିଲା, "ହଉ ସାର୍ । ଆଜି ଦିନଟା ଯାକ ତ କିଛି କାମ ହେଲାନି ।"

ଅଳ୍ପ ଦୂରରୁ କର୍ମଚାରୀକୁ ଡାକି ଫାତିମା ଚା' ବରାଦ କଲା । କିଛି ଚୁପ୍‌ଚାପ୍ ପରେ ଅଗତ୍ୟା ପୁଣି କାମ କଥା ପକାଇଲା ସେ, "ଏଥର ଯୋଉ ଭେଲ୍‌ଭେଟ୍‌ର ଟୀ-କୋଜି ଆଉ ଟ୍ରେ-କ୍ଲଥ୍‌ମାନ, ଏଡ଼େ ସୁନ୍ଦର ହେଇଚି ସାର୍, ଆଜି ଦେଖେଇଥାଆନ୍ତି ଆପଣଙ୍କୁ, ହେଲେ..." ଭଦ୍ରଲୋକ ନିରୁତ୍ତର ରହିଲେ । ଫାତିମା ମନକୁ ପୁଣି ଟିକିଏ ଛନକା ଛୁଇଁଲା, ସେଇ ନୂଆ ଓଢ଼ଣୀଟା ବିଷୟରେ କିଛି ମତାମତ ଆସିନି ତାଙ୍କଠୁ, ଯାହାକୁ ନେଇ ଏତେଦିନ ମୁଣ୍ଡ ଖେଳା ଚାଲିଥିଲା । ଆହୁରି ଥରେ ମନ ଭିତରେ ବିନ୍ଧିଗଲା ଗତଥର ହସ୍‌ପିଟାଲରେ ଦେଖା ହେଇଥିବା ବେଳର ଘଟଣାଟା । ଥାଉ, ସେ ନିଜେ କଥାଟା ଉଠାନ୍ତୁ ଯଦି ଉଠେଇବେ ।

କେତେବେଳକେ ଗଳା ସଫା କରି, ଦୋଦୋପାଞ୍ଚକୁ ଲଙ୍ଘିଲା ପରି ରହିରହି ହବିବ୍ କହିଲେ, "ମୁଁ ଜାଣେ ମୋତେ ତମେ କିଭଳି ଆଖିରେ ଦେଖୁଥିବ । କ'ଣ ବୋଲି ଭାବୁଥିବ । କେବଳ ମଧ୍ୟବୟସ୍କ, ସଫଳ ବ୍ୟବସାୟୀଟିଏ ମୁଁ । ନୁହଁ ? ଲାଭଖୋର୍, ସ୍ୱାର୍ଥପର ବୋଲି ବି ଭାବୁଥାଇପାର ।"

ମନକୁ ଅଣ୍ଡାଳିପକେଇଲା ଫାତିମା, ଏ କଥାର କିଭଳି ଜବାବ ଦିଆଯିବ । ଓଠ ବୁଜି ଏଣିକି ତେଣିକି ଅନେଇଲା ସେ । ଚଉକିରୁ ଉଠିପଡ଼ି ଏଣୁ ତେଣୁ କିଛି କହି ଟେବୁଲ୍‌ରୁ ଜିନିଷ ନେଇ ଥାକରେ ରଖିଲା, ପୁଣି ଜିନିଷ କେତେଟା ଥାକରୁ ନେଇ ଟେବୁଲ୍‌ରେ ରଖିଲା ।

ହେଲେ ଭଦ୍ରଲୋକ ସେଆଡ଼ିକି ଜମା ଚାହୁଁନାହାନ୍ତି, ଅନେଇଛନ୍ତି ତା' ମୁହଁକୁ, ଅନୁମତି ଚାହୁଁଥିବା ଭଳି । ଏଇ ସେ ମାଲିକର ମୁହଁ ଯାହାକୁ ସେ ଆଜିଯାଏଁ ଏତେ ସମ୍ଭ୍ରମ, ଏକରକମ ଭୟ କରିଆସିଥିଲା ? ହବିବ୍ ଏଥର ଉଠିଲା ଭଳି ହେଲେ, କହିଲେ, "ହଉ, ତମର ଗପସପ କରିବାକୁ ମନନାହିଁ ଯଦି ଯାଉଚି ମୁଁ ତୁମ୍‌କୁ । ଟିଭିରେ କ'ଣ ଆସୁଚି ଦେଖେଁ ।"

ଫାତିମା ଏଥର ବସିପଡ଼ିଲା କହିଲା, "ନାଇଁ ସାର୍ ବସନ୍ତୁ । ବ୍ୟସ୍ତ ଲାଗୁଥିଲା, କାମ ତୁଡ଼ା ଜମା ସରି ପାରୁନି ତ...."

ହବିବ୍ ଆଶ୍ଚର୍ଯ୍ୟ ହେଲା ଭଳି ପଚାରିଲେ, "କିଏ କହୁଚି ତୁମକୁ କାମ ହଉନି ବୋଲି ? ମୁଁ କହିଚି କେବେ ?" କେତେବେଳେକ କଷ୍ଟରେ ଶବ୍ଦ ଖୋଜି ଫାତିମା କହିଲା, "ଆପଣ ତ ଜାଣି ସାରିଥିବେ ସାର୍, ମୁଁ ନିଜ ଗୋଡ଼ରେ ଠିଆ ହୋଇ ପାରିଲି ଆପଣଙ୍କଠୁ ଏ କାମ ମିଳିଲା ବୋଲି । ନହେଲେ ଏଠି ଚାକିରି ଖଣ୍ଡକ ବି ରଖିପାରିଥାନ୍ତି କି ନାଇଁ । ବଡ଼ ଅସୁବିଧାରେ ଥିଲି ।"

ହବିବ୍‌ଙ୍କ ମୁହଁ ଏଥର କୋହଳ ହେଲା । ହସ ଫୁଟାଇ କହିଲେ, "ଛାଡ଼ ସେସବୁ । ସେଦିନ ହସ୍ପିଟାଲ୍‌ରୁ ଫେରି ଖୁବ୍ ଲଜ୍ଜିତ ହେଲି । ତମ ଲାଗି ମୋ ବୁଡ଼ିଯାଉଥିବା ବ୍ୟବସାୟକୁ ମୁଁ ଫେରିପାଇଲି, ହେଲେ ତମ ସୁବିଧା ଅସୁବିଧା କଥା କେବେ ଜାଣିବାକୁ ଚେଷ୍ଟା କରିନଥିଲି ।"

ଅଡ଼ୁଆ ଲାଗୁଥିଲା ଫାତିମାକୁ । ଆଖପାଖରେ କେହି ନାହାନ୍ତି । ଘରୁ କାମ କରିବାଲାଗି ଗୋଡ଼ କାଢ଼ିଲେ କୋଉ ଝିଅ ବା ପୁରୁଷଙ୍କ ଇଙ୍ଗିତ ଭେଟିନଥାଏ । ତେବେ ସେଭଳି ଅବାଞ୍ଛିତ ସମୟ ଆସିଲେ ଅନେକ ଝିଅଙ୍କ ଭଳି ନିଜ ବୁଦ୍ଧିରେ ବାଟଭାଙ୍ଗି ଚାଲିଯିବା ଶିଖିଚି ସେ । ବିପଦରେ ପଡ଼ିବା ଆଗରୁ ନିଜେ ନିରାପଦ ଜାଗାଦେଖି ଘୁଞ୍ଚିଯିବାକୁ ଚେଷ୍ଟା କରିଚି । କାହାକୁ ଦୋଷ ଦେବାଲାଗି, କଥାକୁ ଫେଣେଇ ଯୁଝିବା ଲାଗି ବଳ କାହିଁ ତା'ର ?

ନିଜ ମୁଣ୍ଡର ପତଳା ବାଳକୁ ସାଉଁଳି ଭାବିଲା ଭଳି ଏଥର କହୁଥିଲେ ହବିବ୍, "ତମ ବିଷୟରେ ସବୁ ଖବର ମିଳିଚି ମୋତେ । ସାହସୀ ଝିଅ ତମେ, ଏତେ ଅସୁବିଧା ଭିତରେ ବି ଚାଲିଚ ।"

ଯା'ର କିଛି ଉତ୍ତର ଅପେକ୍ଷିତ ନାହିଁ ବୋଲି ଜାଣି ବି ଫାତିମା କହିଲା, "ମୋ'ଭଳି ଅନେକେ ଅଛନ୍ତି ଏ ସହରରେ । ଗ୍ୟାସ୍ କାଣ୍ଡରେ କେତେ ଘର ଛାରଖାର ହେଇଯାଇଚନ୍ତି, ପୁଣି ମୁଣ୍ଡ ଟେକିଚନ୍ତି । ମୁଁ ବା କିଏ ।"

ଦୃଷ୍ଟି ଟେକିଲେ ହବିବ୍, କହିଲେ, "ତମକୁ କଥାଟା ଭଲ ଲାଗିଲାନି ବୋଧେ ? ମୋତେ କଥା କହିଆସେନି, ମାନେ ଅନ୍ୟର ପସନ୍ଦ ହେଲାଭଳି, ସୁନ୍ଦର ମିଠା କଥା ।"

ଫାତିମା ସହଜ ହେଇଆସୁଥିଲା । କହିଲା, "ନାଇଁ ସାର୍, ସେକଥା ସତ ହେଇଥିଲେ କ'ଣ ବ୍ୟବସାୟରେ ଉନ୍ନତି କରିପାରିଥାନ୍ତେ ?"

ଟେବୁଲ୍ ଉପରକୁ ଦୃଷ୍ଟି ନୁଆଁଇ ସେ କହିଲେ, "ସେକଥା ନୁହଁ । କହୁଥିଲି, ମୋର ସାଙ୍ଗ ସାଥୀ ନାହାନ୍ତି କେହି ପ୍ରାୟ । ଅଯଥା ଗପସପ କରିବା ଲାଗି ସମୟ ସୁବିଧା ବି ନଥାଏ । ତେଣୁ ।"

ବାହାରେ ସଞ୍ଜ ନଇଁଆସିଲାଣି । ହଠାତ୍ କଥା ଭାଙ୍ଗି ଫାତିମା କହିଲା, "ଆଚ୍ଛା ସାର୍, ଆପଣ ଗୋଟିଏ ଉପକାର କରିଦେଇପାରିବେ ? ହୋଟେଲ ଗାଡ଼ି କରି ମୋତେ ଟିକିଏ ଘରେ ଛାଡ଼ିଦେଇ ପାରିବେ ?"

ସେ ଓଲଟି ପଚାରିଲେ, "ଏଇକ୍ଷିଣା ଘରକୁ ଯିବ କହୁଚ ?" ପୁଣି ଜୋର୍ ଦେଇ କହିଲେ, "ସତରେ ସାହାସୀ ଝିଅ ତ ତମେ । ସହରରେ କର୍ଫ୍ୟୁ ଅଛି ପରା ।"

ଗପସପ ଏବାଟେ ଯାଇ ପୁଣି ଅମୁହାଁ ଗଳି ଦେଖି ଅନ୍ୟ ବାଟେ ଯାଉଥିଲା ସଞ୍ଜ ସାରା । ଫାତିମା ସ୍ଥିର କରିନେଇଥିଲା, ଆଜି ଘରକୁ ଆଉ ଫେରିବା କଥା ନୁହେଁ । ଛୋଟିଆ ଶୋ ରୁମ୍‌ର ତିନିପାଖ କାଚକାନ୍ଥ ସିନା, କବାଟ ଭିତରୁ ବନ୍ଦ କରିବା ବ୍ୟବସ୍ଥା ଅଛି । ହୋଟେଲ୍‌ରେ କିଛି ଖାଇଦେଇ ଏଇଠି ସୋଫାରେ ରାତିକ କଟାଇନେବ । ଭଦ୍ରଲୋକ ଗପସପ କରିବାକୁ ଚାହୁଁଛନ୍ତି ଯଦି, କିଛି ଯାଏ ଆସେ ନାହିଁ । ବରଂ ହୋଟେଲ କର୍ମଚାରୀଙ୍କ ଭିତରେ ତା'ର ସମ୍ମାନ ବଢ଼ିବ, ସୁରକ୍ଷା ବି ।

ନିଜ ବିଷୟରେ ଏଥରକ କହିବସିଲେ ଭଦ୍ରଲୋକ । ଦୁବାଇରେ ତାଙ୍କର ପରିବାର କଥା । ବଡ଼ ପୁଅ କଲେଜରେ ପଢ଼େ, ତଳ ଦିହେଁ ସ୍କୁଲରେ । ଗପିଲେ ବି, କେମିତି ଶଶୁର ଘରୁ ହିଁ ତାଙ୍କୁ ଦୁବାଇର ବ୍ୟବସାୟୀ ସମାଜରେ ପ୍ରତିଷ୍ଠା ଓ ସଫଳତା ମିଳିଛି । କୋଉ ଯୁଗରେ ତାଙ୍କ ବାପା ଦେଶ ଛାଡ଼ିଥିଲେ, କେଉଁ ଜଣେ ଥିଲାବାଲା ବ୍ୟବାସାୟୀଙ୍କ ରୋଷେୟା ହେଇ । ବର୍ଷ କେଇଟାରେ ହବିବ୍ ନିଜ ବେପାର ବେଉସା ପାତିଲା, ନିଜ ଗୋଡ଼ରେ ଛିଡ଼ା ହେଲା । ଗପୁ ଗପୁ ସେ ଉଦାସ ଦିଶିଲେ । କହିଲେ ଯେ ସ୍ତ୍ରୀ ତାଙ୍କୁ ନିଜ ସମକକ୍ଷ ବୋଲି କେବେ ମାନିପାରିଲା ନାଇଁ । ହବିବ୍‌ର ବ୍ୟବସାୟ ପ୍ରତିଷ୍ଠା ପାଇଲାପରେ ବି ନୁହେଁ ।

ନିଜକୁ ଶୁଣାଇଲା ଭଳି ଅଧା ମୁହଁ ପୋତି କହିଚାଲିଛି ମହମ୍ମଦ ହବିବ୍, ସେବେ ତା'ର ଅଳ୍ପ ବୟସର କଥା । ସମ୍ବଳ ନଥିଲା ହାତରେ, ଜୀବନ ସଂଘର୍ଷ ବଳେଇ ପଡୁଥିଲା । ହାରିଯିବାର ଭୟ ରାତି ରାତି ଅନିଦ୍ରା ରଖୁଥିଲା । ସେତିକିବେଳେ ସମ୍ପନ୍ନ ପରିବାରଟିର ଆଶ୍ରୟ ପାଇ ସେ କୃତାର୍ଥ ହେଇ ଯାଇଥିଲା । ଝିଅଟି ସହିତ ନିକାହକରି ସେଭଳି ପରିବାରର ଅଂଶ ପାଲଟିଯିବାକୁ ସେ ନାହିଁ ନଥିବା ଭାଗ୍ୟ ବୋଲି ମିଳିଥିଲା । ଏଭଳି ପରିସ୍ଥିତିରେ ଅନେକ

କିଛି ତ୍ୟାଗ ବି କରିବାକୁ ହୁଏ, ବେଶ୍ କିଛି ହରାଇବାକୁ ବି ହୁଏ ଯାହା ଦୁନିଆ ଦୃଷ୍ଟିରେ ହୁଏତ ପଡ଼େନାହିଁ । ଏ ଭିତରେ ସେ ନୂଆ ଦେଶଟି ଆପଣାର ପାଲଟିଛି । ସମାଜରେ ନିଜ ଲାଗି ସୁଖଦ ସ୍ଥାନଟିଏ, ମୁଣ୍ଡଟେକିଲା ଭଳି ପରିଚୟଟିଏ ବି ମିଳିସାରିଛି ।

ଏକାଧିକ ସହରାଞ୍ଚଳରେ ପ୍ରତିଷ୍ଠିତ ବ୍ୟବସାୟରୁ ମୁଖ୍ୟ ଗୋଟିକର କାରବାର ସମ୍ଭାଳନ୍ତି ତାଙ୍କ ବେଗମ୍ । ମାଆ ସାଥିରେ ରହନ୍ତି ପିଲା ଦିହେଁ । ନିଜ ଭାଗର ବ୍ୟବସାୟରେ ବେଗମ୍ ବିଚକ୍ଷଣା ବୋଲି ଗଣାଯାଆନ୍ତି, ହସ୍ତକ୍ଷେପ ଭଲପାଆନ୍ତି ନାହିଁ । ପିଲାଙ୍କ ସ୍କୁଲ କଲେଜର ଦୀର୍ଘ ଛୁଟିଦିନ ମାନଙ୍କରେ ହିଁ ଏଣିକି ପୂରା ପରିବାର ଏକାଠି ହୁଅନ୍ତି, ବେଗମ୍‌ଙ୍କ ପାଖରେ ।

କେତେବେଳ ଚୁପ୍ ପରେ ହବିବ୍ କହିଲେ, ପିଲାଙ୍କୁ ଛାଡ଼ିଦେଲେ ଆଜିକାଲି ତାଙ୍କ ସ୍ୱାମୀ ସ୍ତ୍ରୀଙ୍କ ଭିତରେ ଆଉ କିଛି ସଂପର୍କ ନାହିଁ ପ୍ରାୟ ।

କହୁ କହୁ ସେ ଚୁପ୍ ହେଇଯାଇଥିଲେ, ବୋଧହୁଏ ଖିଆଲ ହେଇଥିବ ଯେ ଶେଷ ଭାଗଟି ନ କହିଥିଲେ ଚଳିଥାନ୍ତା । କାନ୍ଥ ଘଡ଼ିଆଡ଼େ ଚାହିଁ ଫାତିମା କହିଲା,"ନଅଟା ବାଜିବ ସାର୍ । ଆପଣ ଡ଼ିନର୍ କରିନିଅନ୍ତୁ ।"

ଟିକିଏ ଅପ୍ରସ୍ତୁତ ହେଲାଭଳି ହବିବ୍ ଉଠିଲେ, କହିଲେ, "ହଉ ଚାଲ, ଖାଇନେବା ।"

# କେଉଁଟି କାହା ମାଟି

ହୋଟେଲ୍ ଭିତର ଅଗଣାର ବଗିଚା ଘେରା ଆକାଶ ତଳ ଭୋଜନାଳୟଟିରେ ଅନ୍ୟ ଦିନ ଭଳି ଆଜି ଗହଳ ଚହଳ ନାହିଁ । ଛାଇଛାଇଆ ରୋମାଣ୍ଟିକ୍ ଆଲୁଅ, ଏଠି ସେଠି କାଚ ଗିନାମାନଙ୍କରେ ଜଳନ୍ତା ମହମ୍‌ବତୀ ବି ନାହିଁ ଆଜି । ସାଧାସିଧା ଉଜ୍ଜଳ ଲାଇଟ୍‌ଗୁଡ଼ିଏ କେବଳ । ଗୋଟିଏ ପାଖେ ତିଆରି ସୁଦୃଶ୍ୟ ଝରଣା ଓ ରଙ୍ଗୀନ୍ ମାଛମାନଙ୍କ ପୁଷ୍କରିଣୀର ପାଖ ଟେବୁଲ୍‌ରେ ମହମ୍ମଦ ହବିବ୍ ବସିଥିଲେ, ତାଙ୍କ ପାଖରେ ଫାତିମା । ଆରପାଖରେ ଝଙ୍କାଳିଆ ଗଛଟି ତଳେ ଥିବା ବାରବିକ୍ୟୁ କର୍ଣ୍ଣର ପାଖରେ ଅଳ୍ପ କେତେଜଣ ଯାହା ଦେଖାଯାଉଛନ୍ତି, ତହିଁରୁ ଅଧେ ହେଲେ ଧଳା ଏପ୍ରନ୍ ଓ ଟୋପି ପିନ୍ଧା କର୍ମଚାରୀ । ତାଓ୍ୱା ଓ ଲୁହାଛଡ଼ ସବୁରୁ ଉଠୁଥିବା ମସଲା ଦିଆ ମାଂସ ଓ କବାବ୍‌ର ବାସ୍ନା ଧୂଆଁହେଇ ଅଳ୍ପେ ବହୁତେ ଖିଆପିଆର ଆବହାଓ୍ୱା ତିଆରି କରିରଖିଚି । ଅନ୍ୟ ସବୁଯାକ ଟେବୁଲ୍ ପୂରାପୁରି ଖାଲି ।

ବୋଧହୁଏ ଫାତିମାର ଅସହଜ ଭାବ, କଣ ଆଖିରେ ସେପାଖ ଥିବା ଲୋକଙ୍କୁ ଚାହୁଁଥିବା କଥାଟା ହବିବ୍‌ଙ୍କ ଆଖିରେ ବାଦ୍ ଗଲାନାହିଁ । ଏକାସାଙ୍ଗରେ ଖାଇବା ଲାଗି ଦି ତିନିଥର ନିମନ୍ତ୍ରଣ କଲା ପରେ ବେଶ୍ ଦୋଦୋପାଂଚ ହେଇ ହିଁ ଫାତିମା ରାଜି ହେଇଥିଲା । ସେ କହିଲେ, "ତୁମକୁ ବୋଧେ ମୋ ସଙ୍ଗେ ଏମିତି ବସିବାକୁ ଭଲ ଲାଗୁନାହିଁ । ତେବେ ଏଠି ଡ଼ିନର୍ ତ କରୁଥିବ ମଝି ମଝିରେ ?" ଫାତିମା ଅଳ୍ପ ହସିଲା ଭଦ୍ରଲୋକଙ୍କ ବୋକାମୀରେ, କହିଲା, "ନା, ଏଠି ଖାଇବା ଟେବୁଲ୍‌ରେ ବସିବା ଏଇ ମୋର ପ୍ରଥମ । ଆଜି ସହରରେ ଗଣ୍ଡଗୋଳ ହେଇ ନଥିଲେ ମୁଁ ସଂଜ ପୂର୍ବରୁ ଘରକୁ ଫେରିସାରିଥାନ୍ତି ।"

ତା' ମନକଥା ଠଉରେଇଲା ଭଳି ହବିବ୍ କହିଲେ, "ମୁଁ ବୁଝୁଚି । ତମ ନିଜ ସହର ଏଇଟା ଯେତେବେଳେ । ହେଲେ ଆଜି ଦିନଟା ତ ଆଉ ଅନ୍ୟ ଦିନ ଭଳି ନୁହେଁ । ତୁମକୁ ଆଜି ରାତିଟା ବି ରହିବାକୁ ହେବ ହୋଟେଲ୍‌ରେ ।"

ଏ କଥାରେ ତାଙ୍କ ମୁହଁକୁ ଫାତିମା ଯେଉଁ ଆଖିରେ ଚାହିଁଲା, ଭଦ୍ରଲୋକ ଜୋର୍‌ରେ ହସି ପକେଇଲେ । କହିଲେ, "ମାନେ ଘରକୁ ଆଜି ଫେରିବା ସମ୍ଭବ ନୁହଁ ବୋଲି କହିଲ । ହୋଟେଲ୍‌ରେ ଖାଲି ରୁମ୍ ଥିବ ନିଶ୍ଚୟ । ତମ ଲାଗି ଗୋଟିଏ ବୁକ୍ କରିଦେବା ।"

ଫାତିମାର କୁଣ୍ଠା କଟିସାରିଥିଲା ଏତେବେଳକୁ । କହିଲା, "ନାଇଁ ସାର୍ । ମୋର ସେଇ ଶୋରୁମ୍‌ରେ ଆରାମ୍‌ରେ ରହିଯିବି ।"

ମେନୁ କାର୍ଡ଼ଟା ପଢୁପଢୁ ରହିଗଲେ ହବିବ୍ । ଟିକିଏ ସ୍ୱର ଉଂଚେଇ ପଚାରିଲେ, "କ'ଣ କହିଲ ? ସେଇ ଶୋ ରୁମ୍‌ରେ ରହିବ ? ଶୋଇବ କୋଉଠି ?"

ଫାତିମା ଏଥର ସହଜରେ ତାଙ୍କୁ ଚାହିଁ ବୁଝାଇଦେଲା ଯେ ଶୋ ରୁମ୍‌ଟି ତା' ଘରଠୁ ବଳି ଆପଣାର ହେଇଗଲାଣି ତା ଲାଗି, ନିରାପଦ ବି । ରାତିଟାଏ କାଟିବାକୁ ଅସୁବିଧା ହେବନି ।

ହବିବ୍‌ଙ୍କ ହସରେ ଟିକକ ଆଗର ଚମକ୍ କାଇଁକି ମଉଳି ଯାଇଥିଲା, କହିଲେ, "ହୋଟେଲ୍‌ର ରୁମ୍ ଖାଲିଥିବ, ଲୋକନାହାନ୍ତି ଆଜି । ଅଯଥା ଜିଦ୍ କରନା ଫାତିମା । ଏଣିକି ଆମ ବ୍ୟବସାୟର ଲୋକ ତମେ, ଆମ କଂପାନୀର, କେବଳ ଏ ହୋଟେଲ୍ କର୍ମଚାରୀ ନୁହଁ ।"

ଏତିକିବେଳେ ତେଣୁ ମ୍ୟାନେଜର ରଘୁବୀରବାବୁ ଆସିଲେ ଟେବୁଲ୍ ପାଖକୁ, ବଡ଼ ପାଟିରେ ହବିବ୍‌ଙ୍କୁ କହିକହିକା, "ଗୁଡ୍ ଇଭିନିଙ୍ଗ୍ ସାର୍ । କିଛି ଅସୁବିଧା ତ ହେଇନି ? ଆମ ଫାତିମା ଆପଣଙ୍କ ସୁବିଧା ଅସୁବିଧା ବୁଝୁଚି ତ ?"

କିଛି ସମୟ ଭିତରେ ଫାତିମା ଲାଗି ଅଲଗା ରୁମ୍ ବନ୍ଦୋବସ୍ତ ହେଇଗଲା । ପୁଣି ଗଣ୍ଡଗୋଳିଆ ପରିସ୍ଥିତିରେ ଅତିଥିମାନେ ପଡ଼ିଥିବା ଯୋଗୁଁ ଓ ସମ୍ଭବତଃ ମେନୁ କାର୍ଡ଼ରେ ଲେଖା ସବୁ ରକମର ବ୍ୟଞ୍ଜନ ତିଆରି ହୋଇନଥିବାରୁ ଆଜି ହୋଟେଲ୍‌ର ଆତିଥ୍ୟରେ ହିଁ ଡ଼ିନର୍ ଯୋଗାଇ ଦିଆଯାଉଛି ସଭିଙ୍କୁ । ଅନ୍ ଦ ହାଉସ୍ ।

ଫାତିମା ଏଥର ଅନୁରୋଧ କଲା, "ତେବେ ଆପଣ ବି ଆମ ସାଙ୍ଗରେ ବସିଯାଆନ୍ତୁ ନା ମଉସା । ଆଜି ତ ଆପଣ କାମରେ ବ୍ୟସ୍ତ ନଥିବେ ।"

ରଘୁବୀର ଏ କଥାରେ ଖୁସି ହେଲେ, ହବିବ୍‌ଙ୍କୁ ସମର୍ଥନ ଆଶାରେ ଚାହିଁ କହିଲେ, "କାହିଁକି ନୁହଁ ? ଏମିତି ଏକାଠି ବସିବାର ସୁଯୋଗ କ'ଣ ସବୁଦିନେ ଆସେ ?"

ତେଣୁ କିଏ ଜଣେ ଆସି ତାଙ୍କ କାନ ପାଖେ ନଇଁପଡ଼ି କ'ଣ କହିଲାଣି । ଏଥର ଉଠି ପଡୁପଡୁ ରଘୁବୀର କହିଲେ, "ଆଜ୍ଞା ଗୋଟେ କଥା କହିବି ? ଜଣେ ବିଦେଶୀ, ଫରାସୀ ଭଦ୍ରଲୋକ ଏଠି ଅଛନ୍ତି, ଆମ ହୋଟେଲ୍‌ରେ ପୁରୁଣା ଗ୍ରାହକ । ଆପତ୍ତି ନଥିଲେ ତାଙ୍କୁ ବି ଡ଼ାକିଦେବା କି ଏଠିକି ? ଦିନଯାକ ହୋଟେଲ୍ ଭିତରେ ବନ୍ଦ ହେଇ ସମସ୍ତେ ବୋର୍ ହେଇଛନ୍ତି

ଆଜି । ଟିକିଏ ଗପସପରେ ସମୟ କଟିଯା'ନ୍ତା ?"

ରଘୁବୀର ଚାଲିଯାଉଣୁ ହବିବ୍ କହିଲେ, "ମୋ ସଙ୍ଗେ ଏକୁଟିଆ ବସିବାକୁ ଚାହୁଁନା ଦେଖୁଚି ।"

ଫାତିମା ଏ କଥାରେ ମୁଣ୍ଡ ହଲେଇ ନାହିଁ କରୁକରୁ ହସିଲା, କହିଲା, "ମୁଁ ଭାବିଲି ସେ ସତରେ ଖୁସି ହେବେ । ରଘୁବୀର ମଉସାଙ୍କୁ ପିଲାଦିନୁ ଜାଣେ ମୁଁ ।"

ଟିକିଏ ରହି ହବିବ୍ କହିଲେ, "ଏ ସହର ଗୋଟାର ଲୋକଙ୍କୁ ତମେ ପିଲାଦିନୁ ଜାଣ, ନୁହେଁ ଫାତିମା ? ତମେ ନଥିଲେ ମୁଁ ଏ ବେଉସା କୋଉଠୁ କରିପାରିଥା'ନ୍ତି ?"

ଫାତିମା ଅଳ୍ପ ଦୂରରେ ପାଣିର ରଙ୍ଗୀନ୍ ମାଛମାନଙ୍କୁ ଚାହିଁଲା । କହିଲା, "ମୁଁ ନଥିଲେ ଆଉ ଯେ କେହିହେଲେ କରିଥାଆନ୍ତା ଆପଣଙ୍କ କାମ ।"

"ଅସମ୍ଭବ ।" ବେଶ୍ ଜୋର୍ ଦେଇ ଏଥର କହୁଥିଲେ ହବିବ୍ । "ତମ ଭଳି ମଣିଷଟିଏ ଏ ସହରରେ ଆଉ କିଏ ଥିବ ? କାହିଁ ଦେଖେଇଦେଲ ମତେ, ଏତେ କାମ ଏକାଥରେ ଯିଏ କରିପାରୁଥିବ ।"

ଫାତିମା ଖୋଲାଖୋଲି ହସିଲା ଏଥର । ପଚାରିଲା, "ଆଉ କାହାକୁ ଖୋଜି ଚିହ୍ନା କରେଇଦେବି, କ'ଣ ମୋ ଚାକିରୀଟା ହାତରୁ ଯିବ ବୋଲି ?" ହବିବ୍ କିନ୍ତୁ ହସି ନଥିଲେ । କହିଲେ, "ଚାକିରୀ ନୁହଁ ଫାତିମା । ଏଣିକି ଏ ବ୍ୟବସାୟର ଅଂଶୀଦାର ହେବ ତୁମେ ।" ଫାତିମା ଚୁପ୍ ରହିଲା, ତା' ଦୃଷ୍ଟି ପୁଣିଥରେ ଦୂରକୁ ଫେରିଯାଇଥିଲା ।

ରଘୁବୀର ଅନ୍ୟମାନଙ୍କୁ ନେଇ ବାରବିକ୍ୟୁ କର୍ଣ୍ଣର ଆଡୁ ଆସୁଥିଲେ । ହବିବ୍ ସ୍ୱର ନୁଆଁଇ ପଚାରିଲେ, "ତମେ ଦୁବାଇ ଯିବାକୁ ପ୍ରସ୍ତୁତ ହେବ ? ଆମ ବ୍ୟବସାୟ ଆହୁରି ଆଗକୁ ବଢ଼ନ୍ତା ।"

ଏଥର ତାଙ୍କ ମୁହଁକୁ ସିଧା ଅନେଇ ଫାତିମା ଉତ୍ତର ଦେଲା, "ନା । ସେକଥା ଅସମ୍ଭବ ।"

"କାଇଁକି ?" ଏଡ଼େ ରୋକ୍‌ଠୋକ୍ ନା ଟିଏ ଶୁଣିବାକୁ ଆଶା କରିନଥିଲେ ହବିବ୍ ।

ଆସୁଥିବା ଲୋକଙ୍କୁ ନ ଶୁଭିବାଭଳି ଧୀର ସ୍ୱରରେ ଫାତିମା କହିଲା, "ଭୋପାଲ୍ ଛାଡ଼ି ମୁଁ କୁଆଡ଼େ ଯିବିନି । ଏଇଠି ରହିବି । ଖାଲି ଚାକିରିଟିଏ ଦିଅନ୍ତୁ ମତେ, ସେତିକି କେବଳ ମୋର ଲୋଡ଼ା ।"

ଏତେବେଳକୁ ସେଇ ତିନି ଚାରିଜଣ କଥାବାର୍ତ୍ତା କରୁକରୁ ପାଖକୁ ଆସିଯାଇଥିଲେ । ତାଙ୍କୁ ଭିତରୁ ବିଦେଶୀ ଗୋରା ଭଦ୍ରଲୋକଙ୍କୁ ଫାତିମା ଚିହ୍ନିପାରିଲା, ଯାଙ୍କୁ ସେ ପୂର୍ବରୁ ଭେଟିଛି । ଆଜି ଦିନଯାକ ଲାଉଞ୍ଜରେ, ଶୋ' ରୁମ୍ ପାଖେ ଏପାଖ ସେପାଖ ହେଉଥିଲେ । ମଝିରେ

ଥରେ ଆସି ସେଲ୍‌ଫରୁ ଜିନିଷ ପତ୍ର ଦେଖିଥିଲେ, ଗୋଟେ ଅଧେ କିଛି କିଣିଥିଲେ ବି । ମ୍ୟାନେଜର ରଘୁବୀର ଭଙ୍ଗ ସାଥିରେ ଥିବା ଦି'ଜଣଙ୍କୁ ବି ପରିଚୟ କରାଇଦେଲେ, "ପ୍ରଫେସର୍ ମାର୍ଟିନ୍ ପ୍ୟାରିସ୍‌ରୁ ଆସିଛନ୍ତି, ଆଉ ଇଏ ହେଉଛନ୍ତି ପ୍ରଫେସର୍ ଶ୍ରୀନାଥ ଅବସ୍ଥି, ଏଠା ଆର୍.ଇ.ସି.ରେ ଆର୍କିଟେକ୍ଟର ପଢ଼ାନ୍ତି । ଦିହେଁ ମିଶି ଭୋପାଳ ସହର ଉପରେ ବହି ଲେଖୁଛନ୍ତି ।"

ଫାତିମାର ପରିଚୟ ଦେବା ଆବଶ୍ୟକ ହେଲାନାହିଁ । ଶୋ'ରୁମ୍‌ରେ ତାକୁ ଭେଟିଛନ୍ତି ସେମାନେ । ରଘୁବୀର ଏଥର ଯୋଗକଲେ, "ଫାତିମା, ଅବସ୍ଥି ଜୀ ବି ଫସିଯାଇଛନ୍ତି ଆଜି, ଦଙ୍ଗା ଯୋଗୁଁ ଆଉ ଘରକୁ ଫେରିପାରିନାହାନ୍ତି ।"

ସାଥୀରେ ଥିଲେ କିଚେନ୍‌ର ମ୍ୟାନେଜର୍ ଶକିଲ । ଅତିଥିଙ୍କ ଖାଇବା କଥା ବୁଝୁବୁଝୁ ସିଏ ବି ଗପସପରେ ଯୋଗ ଦେଲେ । କଥାବାର୍ତ୍ତା ସିଧା ଗଣ୍ଡଗୋଳ, ସାମ୍ପ୍ରଦାୟିକ ଦଙ୍ଗା ଆଡ଼କୁ ଗଲା । ନାହିଁନଥିବା ଘଟଣା ଏ ସହରରେ । କଣ ଆଉ କରାଯିବ ? ଦେଶରେ ଯୋଉ ପବନ ବହିବ, ସେଥିରୁ ବାହାରିଯିବାଲାଗି କାହାର ଆଉ ଯୁ ଅଛି ?

ଅଚାନକ ପ୍ରଫେସର ମାର୍ଟିନ୍ ପଚାରିଲେ ରଘୁବୀରଙ୍କୁ, "କିଛି ମନେ କରିବେନି, ଆପଣ ତ ପୁରୁଣା ସହରର ବାସିନ୍ଦା ନା ? ମାନେ ମୁସ୍‌ଲିମ୍ ବହୁଳ ଅଞ୍ଚଳର ? ଆପଣ ଦଙ୍ଗାରେ କିଛି ବିପଦର ଆଶଙ୍କା କରୁନାହାନ୍ତି ?"

ରଘୁବୀର କହିଲେ, "ଆଜ୍ଞା, ଆଶଙ୍କା ହେବନି କେମିତି ? ଉଣା ଅଧିକେ ଭୟ ଆଶଙ୍କା ଏଠି ଥିବା ସମସ୍ତଙ୍କୁ ହେଉଚି । ତେବେ ଏଇକ୍ଷିଣା ଏଠି ଏକାଠି ଅଛୁ ଯେତେବେଳେ, ଭୟ ଆଉ କଣ । ସେଣେ ଆମ ମୋହଲ୍ଲାର ପଡ଼ିଶା ଲୋକେ ବି କୁଟୁମ୍ବ ଲୋକଙ୍କଠୁ ବଳି, କୋଉ କାଳରୁ ଏକାଠି ଅଛୁ ।"

ଶକିଲ୍ ହସିଦେଇ କହିଲେ, "ମ୍ୟାନେଜର ସାହାବ୍ ଆମର ଭଗତ୍ ପଣ୍ଡିତ ଲୋକ, ତାଙ୍କର କିଏ କ'ଣ ବିଗାଡ଼ିବ ?"

ରଘୁବୀର ଜବାବ୍ ଦେଲେ, "କାହାରି କେହି କିଛି ବିଗାଡ଼ି ପାରିବ ନାହିଁ ବାବୁ, ଯେ ଯାଏଁ ଡମର ବେଳ ନ ଆସିଚି ।"

ଏଥର କଥା ବଦଳାଇ ମାର୍ଟିନ୍ କହିଲେ, "ଭୋପାଳର ବାସ୍ତୁ ଓ ସ୍ଥାପତ୍ୟ ଉପରେ ଗବେଷଣା କରୁଛି ମୁଁ, ଜାଣିଥିବେ । ଏ ଅଞ୍ଚଳ ଯାକ ବୁଲି ଦେଖିବା, ଲୋକଙ୍କୁ ପଚରା ଉଚରା କରିବା ମୋ କାମ । କେବେ କେମିତି ଟିକିଏ ବ୍ୟକ୍ତିଗତ ପ୍ରଶ୍ନ ବି ପଚାରିଦିଏ ।"

ରଘୁବୀର ଭଙ୍ଗ ପାଖ ଟେବୁଲ୍‌ରୁ ଚଉକିଟାଏ ଟାଣି ଆଣି ବସିଲେ । କହିଲେ, "ଗତ ଅଢ଼େଇଶ ବର୍ଷ ହେଲା ଆମେ ପୁରୁଣା ଭୋପାଳରେ ହିଁ ରହିଆସୁଚୁ ଆଜ୍ଞା । କେବଳ ସେତିକି

ନୁହଁ, ଆମ କୁଳଦେବୀ ବି ସେଇଦିନୁ ପୂଜା ପାଉଚନ୍ତି । ସେଇଠି, ସେଇ ମୂଳ ଆସ୍ଥାନରେ ଯୋଉଠି ସେ ଅଧିଷ୍ଠିତ ଥିଲେ ଭୋପାଳ ରାଜ୍ୟ ପ୍ରତିଷ୍ଠା ହେଲାବେଳେ । ଆମେ ହେଲୁ ବଂଶାନୁକ୍ରମେ ସେଇ ମନ୍ଦିରର ପୁରୋହିତ ।"

ଅବସ୍ଥି ଅବିଶ୍ୱାସରେ ଅନେଇଲେ ରଘୁବୀରଙ୍କ ମୁହଁକୁ, ପଚାରିଲେ, "କଣ କହୁଛନ୍ତି ଭଟ୍ଟ ସାହାବ୍ ? ଏଡ଼େ ପୁରୁଣା ଦେବୀ ମନ୍ଦିର କୋଉଠି ଅଛି ଏଠି ପୁରୁଣା ଭୋପାଳରେ ?"

ରଘୁବୀର କହିଲେ, "ଆମ ମନ୍ଦିରଟା ବାହାରୁ ମନ୍ଦିର ବୋଲି ଜଣା ଯାଏନି ଆଜ୍ଞା, ତା'ର ଚୂଡ଼ା ନାହିଁ । ଛାତଟା ସମତୁଲ କରିବା ଲାଗି ନବାବ୍‌ଙ୍କ ଆଦେଶ ହୋଇଥିଲା । ଆପଣ ତ ବିଦ୍ୱାନ ଲୋକ, ଜାଣିଥିବେ, ଇତିହାସରେ ସମୟ ସମୟରେ ଯେତେବେଳେ ମଠ ମନ୍ଦିରମାନ ଭଙ୍ଗା ଯାଉଥିଲା, କେତୋଟି ସର୍ତ୍ତରେ ମନ୍ଦିରମାନଙ୍କୁ, ବିଗ୍ରହଙ୍କୁ ରାଜସୁରକ୍ଷା ମିଳିବାର ନଜିର୍ ଅଛି ଅନେକ ସ୍ଥାନରେ ।"

ଶକିଲ୍ ବି ଏଥର ଚଉକିଟିଏ ଟାଣି ଆଣିଲେ ନିଜ ଲାଗି, କହିଲେ, "ଆମ ଭଟ୍ଟ ଜୀଙ୍କ ଗୋସାଁ ବାପା ବଡ଼ ଜ୍ୟୋତିଷୀ ଥିଲେ, କୁଆଡ଼େ ଯିବାକୁ ହେଲେ ନବାବ୍ ସାହିବା ଆଗ ତାଙ୍କୁ ପଚାରୁଥିଲେ । ତାଙ୍କ ଘରଟା ସବୁଘରଠୁ ନିଆରା ।"

ମାର୍ଟିନ୍ କହିଲେ, "ବାଃ, ଆପଣଙ୍କ ଘରଟା କୋଉ ମୋହଲ୍ଲାରେ କହନ୍ତୁ ତ । ଯାଇ ଦେଖିବାକୁ ହେବ । ଏଠି ପ୍ରତି ମୋହଲ୍ଲାର ସ୍ଥାପତ୍ୟର ବିଶେଷତ୍ୱ ଅଛି, ଜାଣନ୍ତି ନା ? ପୁଣି ଲୋକଙ୍କ ରହିଲା ଘରଗୁଡ଼ିକର ବି କେତେପ୍ରକାର ବିଶେଷତ୍ୱ ।"

ହବିବ୍ ପଚାରିଲେ, "ଶୁଣିଲୁ ଆପଣ ବଡ଼ ବିଦ୍ୱାନ୍ ଲୋକ । ଭୋପାଳ ଉପରେ ବହି ଲେଖୁଛନ୍ତି । ପ୍ୟାରିସ୍‌ରୁ ଆସି ଏଠି କ'ଣ ନୂଆ ଦେଖିଲେ ?"

ମାର୍ଟିନ୍ ତାଙ୍କୁ ଅନେଇ ମୁରୁକେଇ ହସିଲେ, କହିଲେ, "ଆପଣଙ୍କ ଭଳି ମୁଁ ବି ଭୋପାଳର କାରିଗରଙ୍କୁ ନେଇ କାମ କରିବାକୁ ଆସିଛି । ଏଠାକାର ସ୍ଥାପତ୍ୟରେ ଯେଭଳି ତିନି ଚାରିଟି ସଭ୍ୟତାର ବାସ୍ତୁ ଶିଳ୍ପ ମିଶିଚି, ଦେଶସାରା ଆଉ କୋଉଠି ଆପଣ ପାଇବେନି, ଜାଣିଛନ୍ତି ନା ?"

ରଘୁବୀର କହିଲେ, "ଆଉ ସେଥିରୁ ଗୋଟିଏ ପ୍ରଭାବ ହେଉଛି ଫ୍ରେଞ୍ଚ୍ ଆର୍କିଟେକ୍‌ଚରର, ନୁହେଁ ସାର୍ ? ମୋତେ ଜଣା ଏକଥା ।"

ଗପସପର ଆସର ଜମି ଯାଇଥିଲା । ମାର୍ଟିନ୍ ନିଜେ କହୁଥିଲେ, ପ୍ୟାରିସ୍‌ର ଆର୍କିଟେକ୍‌ଚର ସ୍କୁଲ୍‌ରେ ଥିଲାବେଳେ କୋଉଠି ଗୋଟେ ମୁଁ ପଢ଼ିଲି - ଇଣ୍ଡିଆରେ, ବିନ୍ଧ୍ୟା ଆଉ ସିଙ୍ଗରକୋଲୀ ପର୍ବତମାଳା ଭିତରେ ନୀଳ ହ୍ରଦର ଅପୂର୍ବ ସହରଟିଏ ଅଛି, ଭୋପାଳ । ହେଲେ ଯେତେବେଳେ ଜଣାଗଲା, ସେ ସହରର ପରିକଳ୍ପନାରେ ମୁଖ୍ୟ ଭୂମିକା ଥିଲା ଜଣେ

ଫରାସୀ ବାସ୍ତୁବିଦ୍‌ଙ୍କର, ସେଇ ବିସ୍ମୃତ ବ୍ୟକ୍ତିତ୍ୱଟିକୁ ଖୋଜିବାକୁ ମନସ୍ଥ କଲି ମୁଁ । ଖୋଜୁଖୋଜୁ କ'ଣ ପାଇଲି ଜାଣନ୍ତି ? ଯେ ସେଇ ବାସ୍ତୁବିଦ୍ ବର୍ବନ ଥିଲେ ମୋରି ପୂର୍ବପୁରୁଷଙ୍କ ଭିତରୁ ଜଣେ ।"

ଆଶ୍ଚର୍ଯ୍ୟବ୍ୟଞ୍ଜକ ଧ୍ୱନିମାନଙ୍କ ଭିତରେ କେତେବେଳେ ବ୍ୟଞ୍ଜନ ସବୁ ପରଷା ଯାଇସାରିଥିଲା ଜଣାଗଲା ନାହିଁ । ଶକିଲ୍ କହିଲେ, "ଆଜ୍ଞା, ହାତ ଚାଲୁ, କଥା ଜାରି ରହୁ ।"

ବିଦେଶୀ ମାର୍ଟିନ୍ ଶ୍ରୋତାମାନଙ୍କୁ ଶୁଣାଇ ଲାଗିଲେ ତାଙ୍କରି ସହରର ଇତିହାସ । ସପ୍ତଦଶ ଶତାବ୍ଦୀରେ ଦୋସ୍ତ ମହମ୍ମଦଙ୍କୁ ରାଜ୍ୟ ପ୍ରତିଷ୍ଠା କରିବାରେ ମୁଖ୍ୟ ସହାୟକ ଥିଲେ ଜଣେ ଇଂରେଜ ବ୍ୟକ୍ତି ଜିନ୍ ଫିଲିପ୍ । ତାଙ୍କ ଦାୟାଦ ପରେ ପ୍ରଥମ ନାରୀ ନବାବ କୁଦିଶା ବେଗମ୍‌ଙ୍କ ଦରବାରରେ ପ୍ରଧାନ ମନ୍ତ୍ରୀ ଥିଲେ । ନୂତନ ରାଜ୍ୟ ପ୍ରତିଷ୍ଠାର ଅନ୍ୟ ଜଣେ ସହାୟକ ଥିଲେ ଫରାସୀ କୂଟନୀତିଜ୍ଞ ବର୍ବନ ଦ୍ଦି ନଭାରେ । ଫରାସୀ ରାଜା ଚତୁର୍ଥ ହେନେରୀଙ୍କ ପରିବାରର ସଦସ୍ୟ ସେ । ଗୋଟିଏ ଦ୍ୱନ୍ଦ୍ୱ ଯୁଦ୍ଧରେ ପରାଜିତ ହୋଇ ପଳାୟନ କରିବାକୁ ହେଲା ତାଙ୍କୁ । ଶେଷରେ ଦୀର୍ଘ ପଥଯାତ୍ରାରେ ପଶ୍ଚିମ ଏସିଆ ବାଟଦେଇ ସେ ଭାରତକୁ ଆସିଲେ, ଆଉ ଶେଷରେ ଦୋସ୍ତ ମହମ୍ମଦର ଦୋସ୍ତ ହୋଇ ରହିଗଲେ । ବର୍ବନଙ୍କ ଦାୟାଦ ଆଜି ବି ଭୋପାଳରେ ବସବାସ କରନ୍ତି ।

ଖାଉ ଖାଉ ସେମାନେ ନିଜ ମାଟିର କାହାଣୀ ଶୁଣୁଥିଲେ ଜଣେ ମୁଗ୍ଧ ଅତିଥିଙ୍କ ମୁହଁରୁ । ଅଗଣିତ ଉତ୍ସର ପାଣିରେ ତିଆରି ହ୍ରଦର ଚାରିପାଖେ ଗଢ଼ିବାକୁ ଲାଗିଲା ଅଗଣିତ ମହଲ, ମସ୍‌ଜିଦ୍, ସରାଇ, ହାତୀଖାନା, ବାଓ୍ୱଡ଼ୀ, ହମାମ୍, ବଜାର, ଆଖଡ଼ାମାନ ଏ ଅନନ୍ୟ ଇତିହାସକୁ ନେଇ ମାର୍ଟିନ୍ ଲେଖିଛନ୍ତି ବହିଟିଏ, ଉଭୟ ଫରାସୀ ଓ ଇଂରେଜୀ ଭାଷାରେ ।

ହଠାତ୍ ଫାତିମାକୁ ପ୍ରଶ୍ନ କଲେ ମାର୍ଟିନ୍, "ସାମ୍ରାଜ୍ଞୀମାନଙ୍କ ଉଆସ ଭିତର କିଛି କାହାଣୀ ହୁଏତ ଥାଇପାରେ ଆପଣଙ୍କ ପରିବାରର ସ୍ମୃତିରେ ?"

ଏତେବେଳକେ ମୁହଁ ଖୋଲିଲା ଫାତିମା, "ଅନେକ କାହାଣୀ କହିଚି ମୋ ଦାଦିମା । ତେବେ ସେ ଚାରିଜଣ ବେଗମ୍‌ଙ୍କ ପୂର୍ବରୁ ବି ଏଠି ନାରୀମାନେ ଶାସକ ଥିଲେ । ଦୋସ୍ତ ମହମ୍ମଦଙ୍କ ରାଣୀ ରାମୋଲା ବାଇ ହିଁ ବାସ୍ତବରେ ଏ ନୂତନ ରାଜ୍ୟର ଶାସକ ଥିଲେ ଦୀର୍ଘ କାଳ ଧରି । ସେକଥା ଖୁବ୍ କମ୍ ଲୋକ ଜାଣନ୍ତି ।"

"ଆରେ ବାଃ, ତମେ ପୁଣି କୋଉ ଗବେଷଣାରୁ ଜାଣିଲ ଏତେ କଥା ?" ରଘୁବୀର ଜୀଙ୍କ ଲାଗି ବି ହୁଏତ ଏ ନୂଆ ଖବର ଥିଲା ।

ଫାତିମା ଧୀର ସହଜ ଗଳାରେ କହିଲା, "ନର୍ଗୀସ୍ ବେଗମ୍ ବହୁତ ପଢ଼ାପଢ଼ି କରନ୍ତି । ତାଙ୍କଠୁ ଶୁଣିଚି କିଛି, ପଢ଼ିଚି ବି କିଛି ତାଙ୍କରି କହିବାରେ ।"

ଫାତିମା ଜିଭ ଅଗକୁ ଆଉ କଥାଏ ଆଣି ବି ଆଉ କହିଲା ନାହିଁ ଯେ ଏ ଭିତରେ ପାକିସ୍ଥାନ୍‌ରୁ ତାଙ୍କର କିଏ ସଂପର୍କୀୟ ଆସି ମହଲରୁ କାଗଜ ପତ୍ରଯାକ ନେଇଯିବାକୁ ବସିଥିଲେ ବୋଲି ନର୍ଗୀସ ଗୁଡ଼ାଏ ବହି, ଡ଼ାଏରୀ ଓ ପାଣ୍ଡୁଲିପି ଆଣି ରଖିଥିଲେ ଏଇ ଶୋ ରୁମ୍‌ର ଡ୍ରୟାରରେ । ଖାଲି ସମୟରେ ପଢ଼େ ଫାତିମା । ଅଜସ୍ର କାହାଣୀ ଓ ଅପୂର୍ବ ତଥ୍ୟମାନଙ୍କ ଖଣି ସେସବୁ । ତେବେ ନର୍ଗୀସ୍ ଦେଶ ଛାଡ଼ି ଚାଲିଗଲେ । ଫାତିମା ଶୋ ରୁମ୍‌କୁ ଫେରି ଆଉ ସେସବୁ ପାଇନଥିଲା । ସମ୍ଭବତଃ ଆଉ ଜଣେ ବିଦେଶୀ ଲେଖକଙ୍କର ଅନ୍ୟ ଗୋଟିଏ ବହି ଆସୁଚି କିଛି ଦିନ ଭିତରେ, ଭୋପାଳର ବେଗମ୍‌ମାନଙ୍କ ଉପରେ ।

ଫାତିମା ଏଥର ପଚାରିଲା ମାର୍ଟିନ୍‌ଙ୍କୁ, "ଆପଣ ଗୌହର ମହଲ ଦେଖିଛନ୍ତି ? ପ୍ରଥମ ଶାସକ କୁଦସିଆ ବେଗମ୍‌ଙ୍କ ନିଜ ପରିକଳ୍ପନା । ଖିରନୀଓ୍ୱାଲା ମୈଦାନରେ କ୍ଷୀରକୋଳୀ ଗଛ ତୋଟା ଭିତରେ ବଡ଼ ତାଲ୍ କୂଳରେ ତିଆରି ହୋଇଥିଲା ସେ । ତାର ଇତିହାସ ବଡ଼ ରୋମାଞ୍ଚକର ।"

ଖିଆ ସରି ମିଠା ପରଷା ଯାଉଥିଲା । ଖୋଲା ଆକାଶ ତଳେ ବସିଥିବା ଛୋଟିଆ ଦଳଟିର ଗପ ଆସର ଆହୁରି ଉଷୁମ ହେଉଥିଲା ।

ଫାତିମା କହୁଥିଲା, ଏଠି କାହିଁ କୋଉ ଯୁଗର ଆଖପାଖ ରାଜ୍ୟଙ୍କ ଭିତରେ ନିତିଦିନିଆ ଯୁଦ୍ଧ ଚାଲିଥିଲା । ବଳି ପଡୁଥିଲେ ସାରା ଅଞ୍ଚଳ ଗୋଟାକର ଯୁବକମାନେ । ଘର ଚଳାଉଥିଲେ ଏକାଠି ବିଧବାମାନେ । ଆଜି ଭଳି ନଥିଲେ ଏଠାକାର ସ୍ତ୍ରୀମାନେ । ଲାଜକୁଳୀ, ପର୍ଦ୍ଦାନସୀନ ନଥିଲେ ।

ହବିବ୍ ମୁହଁ ଖୋଲିଲେ ଏତେବେଳକେ "ଫାତିମାର ପୂର୍ବଜ ଲୋକେ ନବାବ୍ ବେଗମ୍‌ଙ୍କ ପାଖ ଲଗା ଲୋକ ଥିଲେ ଜାଣନ୍ତି ତ ?"

ଫାତିମା କହିଲା, ମୋ ଦାଦିମା କିନ୍ତୁ ଏଇୟା ବି କହୁଥିଲେ, ଯେ ଆମ ନିଜକୁ ସୁହେଇଲା ଭଳି ଜଣ କେତେ ପୂର୍ବଜଙ୍କୁ ମାନି ନେଉ । ପରମ୍ପରା, ବିଶ୍ୱାସ ସବୁକୁ ଆପଣେଇ ନେଉ । ମାର୍ଟିନ୍ କହିଲେ, "ଇତିହାସକୁ ବି ମାନିନେଉ । ପୃଥିବୀର କୋଉ ମାଟିର ଇତିହାସରୁ କାଣିଚାଏରେ ଆମର ବି ହକ୍ ଥିବ, ସେ କଥା କାହାକୁ ବା ଜଣା ? ଏଇ ସହରରେ ହୁଏତ ଅନେକ ଥିବେ ଯାହାଙ୍କ ରକ୍ତରୁ କାଣିଚାଏ ଅବିକଳ ମୋ ରକ୍ତ ଭଳି ଥିବ । କାଇଁକି ନା ଫରାସୀ ବାସ୍ତୁବିଦ୍ ବର୍ବନଙ୍କ ରକ୍ତ ମିଶିଯାଇଛି ଏଠିକା ଲୋକଙ୍କ ଧମନୀରେ । ତେଣୁ ଭୋପାଳର ଇତିହାସ କିଛିଟା ମୋର ନଂ ହେବ କାହିଁକି ? ଆଜି ମୁଁ ଆପଣାର କରିବାକୁ ବସିଚି ଭୋପାଳ ଇତିହାସକୁ, ଏଇଠି ମୋ ଦେଶରେ ହସ୍ତାକ୍ଷର ଦେଖୁଚି ବୋଲି । ହଁ, ଯାହା ଆମକୁ ସୁହାଏ ତାକୁ ହିଁ ଆମେ ନିଜର ବୋଲି ମାନିନେଉ, ନଚେତ୍ ନାକଚ କରିଦେଉ ।"

ହବିବ୍ ଫାତିମାକୁ ଅନାଇ କହିଲେ, "କାଇଁକି ତେବେ ଆମେ ଗୋଟିଏ ଜାଗାକୁ ନିଜ ମାଟି, ନିଜ ସହର ବୋଲି ଜାବୁଡ଼ି ଧରୁ ? ତାକୁ ଆଦର୍ଶ ବୋଲି ମାନିବାକୁ ଚେଷ୍ଟା କରୁ ଜୀବନ ଯାକ ?"

ରାତି କେତେ ହେଇଯାଇଥିଲା କେଜାଣି । ଗୋଟି ଗୋଟିକରି ଉଠିଲେ ସଭିଏଁ । ରଘୁବୀର ଭଞ୍ଜ କହିଲେ ଫାତିମାକୁ, "ତମ ଲାଗି ଝିଅ ଦୁଇଶ ସତର ରୁମ୍‌ଟା କରିଦେଇଚି, ଯାଇ ଶୋଇପଡ଼ ନିଶ୍ଚିନ୍ତରେ ।"

ପାଖାପାଖି ଥିବା ନିଜନିଜ ରୁମ୍ ଯାଏଁ ଫାତିମା ସହିତ ଚାଲୁ ଚାଲୁ ହବିବ୍ ଚୁପ୍ ଥିଲେ । ଫାତିମାର କୋଠରୀ ପାଖେ ପହଞ୍ଚି କହିଲେ, "ଫାତିମା, ମୁଁ ତୁମକୁ କେବେ ବି କୌଣସି କଥା ଲାଗି ଜୋର୍ ଦେବି ନାହିଁ । ତମେ ଯେଉଁଠି ଚାହିଁବ ସେଇଠି ରହିବ । ମୋ ଉପରେ ଏତିକି ଭରସା ରଖ ।"

ଆଜି ଯାଏଁ ଶାହନ୍‌ଶା ହୋଟେଲ୍‌ର ରୁମ୍ ଭିତର କେବେ ଦେଖିନଥିଲା ଫାତିମା । ବିରାଟ ଡ଼ବଲ୍ ବେଡ଼୍‌ରେ ଏକୁଟିଆ ପଡ଼ିପଡ଼ି ତାକୁ ଭୋର୍ ଯାଏଁ ନିଦ ହେଇନଥିଲା । ଖାଲି ଏ ଯାଏଁ ବାହାରୁ ଦେଖିଆସୁଥିବା କକ୍ଷଟିର ବିଳାସୀ ବିଛଣାରେ ଶୋଇଶୋଇ ଚାରିପାଖ କାନ୍ଥର ସୁନେଲି ଲତାପତ୍ରମାନଙ୍କୁ ନୂଆକରି ଦେଖୁଥିଲା ସେ । ପାଖରୁ ମନଦେଇ ଦେଖିଲେ, ନିକାଞ୍ଚନରେ ନିଠେଇ ଚାହିଁଲେ କେତେ ନୂଆ କଥା ମାନ ଦିଶେ କାଲି ଯାଏଁ ଚିହ୍ନା ଘଷରା ଲାଗୁଥିବା ଚିତ୍ର ମାନଙ୍କଠାରେ ।

# ସୁନା ଜାଲିର ଓଢ଼ଣୀ

ଏଥର ଫାତିମା ଯେବେ ସହର ଛାଡ଼ିଲା, ସାଇପଡ଼ିଶା କମିଥିଲା ବାଣରେ ରୋଶଣୀରେ । ମୁଣ୍ଡରେ ତା'ର ଥିଲା ସୁନା ଜାଲିର ଓଢ଼ଣୀ । ଅମ୍ମି ସଂସାର ଛାଡ଼ିଯିବା ପୂର୍ବରୁ ଯେଉଁ କିମିଆଁ ଚିରୁଡ଼ାଏ ଫାତିମା ହାତରେ ଦେଇଥିଲା, ସେଥିରେ ଝିଅର ବାହାଘର ସ୍ୱପ୍ନ ଦେଖିଥିଲା, ତାକୁଇ ପୂରାକରି ସେଇ ଜରିଝାଲର ବେହରଣ ଘୋରିପୋରି ହେଇ ହାତରେ ମେହେନ୍ଦୀ ଲଗେଇ ଶାହନାଇ ମଉଛବ ଭିତରେ ଏଥର ଘରୁ ଗୋଡ଼ କାଢ଼ିଥିଲା ଫାତିମା । ବାହାଘର ଲାଗି ଲୁଗା ଗହଣା ସହିତ ହବିବ୍ ମହମ୍ମଦଠାରୁ ଆସିଥିଲା ଫାତିମାର ହାତ ତିଆରି ସେଇ ଅପୂର୍ବ କୋଟୀକମ ଓଢ଼ଣୀଟି, ଯେଉଁଟିକି ପାଇଲାଦିନୁ ସେ ସାଇତି ରଖିଥିଲେ ସାଫଲ୍ୟର ସନ୍ତକ କରି । ପରିବାର, ବନ୍ଧୁବାନ୍ଧବ, ସାଇପଡ଼ିଶା କାହାରି ଦ୍ୱିମତ ନଥିଲା ଯେ ଫାତିମାର ଭାଗ୍ୟ ଖୋଲିଯାଇଚି । ଆକାଶରୁ ସାକ୍ଷାତ୍ ଦେବଦୂତ ଓହ୍ଲେଇ ଆସିଚନ୍ତି ତା' ଜୀବନକୁ । ଫୁଲ ମଣ୍ଡିଥିବା ଗାଡ଼ିରୁ ବରକୁ ପାଛୋଟି ନେଇ ତାଙ୍କ ସାଙ୍ଗେ ସରବତ ପିଇବାବେଳେ ରେହମାନ୍ ଛାତିଫୁଲେଇ ମୁରୁକି ହସିଥିଲା ଆଖପାଖ ଇର୍ଷା ଝଲସୁଥିବା ମୁହଁମାନଙ୍କୁ ଚାହିଁ । ଶାରୁଖ୍ ଚାଚା କର୍ଣ୍ଣାପଣିଆରେ ବରଯାତ୍ରୀଙ୍କ ଦେଖାଚାହାଁ କରିଥିଲେ । ଜରୀନା ବନ୍ଧୁମେଳରେ ହାତରେ ଫୁଲତୋଡ଼ା ନେଇ ଜ୍ୱାଇଁଙ୍କ ଦେହକୁ ମାରିଥିଲା । ଅପାକୁ କୁଣ୍ଢେଇ ଧରି କାନ୍ଦିଥିଲା ବିଦାବେଳେ । ରେହମାନ୍ ରୁମାଲ୍‌ରେ ଆଖି ପୋଛି କହିଥିଲା, "ଆସୁଥିବୁ ଦିଦି, ତୋ' ଆପଣା ଘର ପରା ଇଏ ।"

ଘର ବାହାରେ ଲୋକ ଭିଡ଼ ଥିଲା, ପାଟିଗୋଳ ଗାନା ବାଜଣା ଶୁଭୁଥିଲା ଗାଡ଼ି ଗଳି ଛାଡ଼ିବା ଯାଏଁ । ଗତଥର ଛାଡ଼ିବାବେଳେ ଲୋକ ହାଉଯାଉ ଏଇ ଘରଟି ଭିତରୁ କେଉଁ ଛଟକରେ ଶୂନ୍‌ଶାନ୍ ବାଟ ଦେଇ ବାହାରିଯିବା କଥା ମନେପଡୁଥିଲା ଫାତିମାର । ମୋଡ଼ ସେପାଖ ଗଳିର ଲମ୍ବ ନିବୁଜ ପାଚେରୀ ଆଡ଼େ ଚାହିଁଚାହିଁ ଗଳି ଶେଷ ତିନିଛକି ମୋଡ଼ ଆଉ

ବରଗଛ ଚଉତରା ପାରିହେଇ ଗାଡ଼ି ବଡ଼ ରାସ୍ତାକୁ ଉଠିଗଲା । ଲମ୍ବ ନିଶ୍ୱାସଟାଏ ଛାଡ଼ି ଆଞ୍ଜୁଳି ମଝିରେ ମୁହଁ ପୋତି ଦେବାବେଳେ ପିଠିରେ କାହା ପାପୁଲିଟିଏ ଆଉଁସି ଦେଲା । ହବିବ୍ ଧୀର ଆଶ୍ୱାସରେ କହୁଥିଲେ, "ଏଡ଼େ ଉଦାସ କାଇଁକି ଜାନ୍? ତମେ କ'ଣ ସତରେ ଏ ସହର ଛାଡ଼ି ସବୁଦିନ ଲାଗି ଚାଲିଯାଉଚ ନା କ'ଣ ?"

ମୁହଁଟେକି ଚାହିଁଲା ଫାତିମା, ଲୁହ ପୋଛି ହାତ ବଢ଼େଇ କଥା ମାଗିବା ଭଳି କହିଲା, "କୁଆଡ଼େ ନେଇ ଯାଉଚ ମତେ ? ଫେରିବା ତ ଏଇଠିକି ?"

ହସିଲେ ହବିବ୍, ପିଲାଳିଆ କଥାଟିଏ ଶୁଣୁଥିବା ଭଳି । କହିଲେ,"ଏଠିକି ନ ଆସିଲେ ଆମ କାମ କେମିତି ଚଳିବ ? ତା' ବୋଲି ଫେରିବା ଆଗରୁ ଦୁନିଆରେ ଆଉ କୋଉଠି କ'ଣ ଅଛି କିଛି ଦେଖିବାର ମନ ନାଇଁ ତମର ?"

ଝରକା ବାହାରକୁ ଦୃଷ୍ଟି ଫେରାଇଲା ଫାତିମା । ବଡ଼ ଗୋଟିଏ ଦୁନିଆର ସ୍ୱପ୍ନ ପଛରେ ଯାଇ ସେ ଥରେ ରୁନ୍ଧା ବଖୁରିଟିଏ ଭିତରେ ଅଣନିଶ୍ୱାସୀ ହୋଇପଡ଼ିଥିଲା । ଏଥର ସେକଥା ଘଟିବାର ନୁହେଁ ନିଶ୍ଚେ ।

# ନିଜ ସହରର ସୀମା

ଅନେକ ଦିନ ଧରି ତା' ପରେ ଫାତିମା ସଙ୍ଗେ ଆଉ ମୋର ଦେଖା ହୋଇନଥିଲା । ଏ କାହାଣୀଟିକୁ ଆଉ ଖୁବ୍ ବେଶୀ ଆଗକୁ ବଢ଼ାଇବା ଭଳି କଥା ବେଶୀ କିଛି ଆସିନାହିଁ ମୋ' ହାତକୁ । ସେତେବେଳେ କାନରେ ପଡ଼ିଥିଲା ତା' ବାହାଘର କଥା । ମୋ କଲେଜ ଠିକଣାରେ ବାହାଘର କାର୍ଡ଼ ଖଣ୍ଡେ ବି ପଠାଇଥିଲା ଫାତିମା, ପୁଣି କାର୍ଡ଼ ତଳେ ବସେଇ ବସେଇ ଲେଖିଥିଲା ବି କ'ଣ ଦି' ଧାଡ଼ି ।

ତା' ଭଉଣୀ ଜରୀନା ସାଙ୍ଗେ ଥରେ ଅଧେ ଦେଖାହେଇଚି, ସେ ବାହାହୋଇ ସ୍ୱାମୀ ସହିତ ଏଣିକି ହୁସ୍‌ନା ବେଗମ୍‌ଙ୍କ ସଙ୍ଗେ ମିଶି ଫାତିମାର ବ୍ୟବସାୟ କାମ ସବୁ ସମ୍ଭାଳୁଚି ବୋଲି କହୁଥିଲା । କାଳେ ବାହାଘର ଚାରି ପାଞ୍ଚ ବର୍ଷ ପରେ ଯାଇ ସହରକୁ ଫେରିଥିଲା ଫାତିମା । ଥରେ ନିଉ ମାର୍କେଟରେ ଜରୀନା ମୋତେ ଦେଖି ଦୂରରୁ ଧାଇଁଆସିଥିଲା. ମୁଁ ନ ପଚାରୁଣୁ ଚରଚର ହୋଇ କେତେକଥା ଗପିଗଲା, ତା' ଅପାର ନାହିଁ ନଥିବା ସୌଭାଗ୍ୟ ବିଷୟରେ, ଆହୁରି ତା' ଗହଣା ଗଣ୍ଠି ଘର ଦ୍ୱାର ଆଉ ଗୁଲୁଗୁଲିଆ ପିଲା ଦିଇଟିଙ୍କ ବିଷୟରେ । ଅପା ତା'ର ଆସିଲେ ରହେ ଶାହନ୍‌ଶା ହୋଟେଲ୍‌ରେ, ଭାଇ ଭାଉଜଙ୍କ ପାଖକୁ କିଛି ବେଳ ଲାଗି ଯାଏ ତା' ବାପଘରକୁ । ମୋତେ କିନ୍ତୁ ତା'ର ସେସବୁ ଗପ ଭିତରେ ଆଉ ଫାତିମା ଦିଶୁନଥିଲା, ତା' ପର୍ସରୁ କାଢ଼ି ଦେଖାଉଥିବା ଫଟୋମାନଙ୍କରେ ବି ନୁହେଁ ।

ତେବେ ଆମ ସହରଟା ତ ସେତେବଡ଼ ନୁହେଁ ଯେ ଫାତିମା ଭଳି ଆଖିଦୃଶିଆ ମଣିଷଟାର କଥା ଲୁଚିରହନ୍ତା । କୁଆଡ଼ୁ ବୋଲି କୁଆଡ଼ୁ ଖିଏ ଲେଖାଁ ଉଡ଼ିଆସି ପହଞ୍ଚେ ମୋ' ପାଖେ । ବର୍ଷ କେତେଟା ଭିତରେ ତା' ବ୍ୟବସାୟ ନାନା ମତେ ବଢ଼ିଛି ବୋଲି ଶୁଣେ । ପୁରୁଣା ସହରର ପର୍ଦ୍ଦା ଭିତରେ ରହୁଥିବା, ଚିପ ଚିହ୍ନମାରି ଦରମା ନେଉଥିବା ନିରୀମାଖୀ ସ୍ତ୍ରୀ ଲୋକଙ୍କୁ କାରିଗରର ପଦ, ଜୀବିକାର ଭରସା ଦେଇଛି ବୋଲି ତା'ର ନାଁ ଡ଼ାକ ଥାଏ । ମୋ' ଲାଗି ସବୁଠୁ ବଡ଼ ଖବର ଥିଲା ଯେତେବେଳେ ତାଙ୍କର ନୂଆ ହୋଟେଲ୍ ନବାବ୍ ମଞ୍ଜିଲ୍ ଖୋଲିଲା । ସବୁଠି ବିଜ୍ଞାପନ ଥିଲା, ଖବରକାଗଜରେ, ଟିଭିରେ ।

ଦେଖୁଛି ମୁଁ । ବର୍ଷ ଦିଇଟାରେ ବିଧ୍ୱସ୍ତପ୍ରାୟ ଦିଶୁଥିବା ନବାବ୍ ମଞ୍ଜିଲ୍ ସହରର ସବୁଠାରୁ

ଭବ୍ୟ ହୋଟେଲ୍‌ରେ ରୂପାନ୍ତରିତ ହୋଇଥାଏ । ଶାହନ୍‌ଶା ହୋଟେଲ୍‌ର ଖ୍ୟାତି କେବେଠୁ ଅସ୍ତ ହୋଇସାରିଥାଏ । ଏଇ କେତେଟା ବର୍ଷ ତଳର କଥା ଇଏ । ସହରର ରୂପ ବଦଳି ଗଲାଣି ଏତେବେଳକୁ । ବଡ଼ ତାଲ୍‌ର କୂଳରେ ଆବର୍ଜନା କୁଢ଼ ସବୁ ସହିତ କେତେଦିନୁ ଜମିଥିବା ଝୁଗ୍‌ଗୀ ବସ୍ତି ସବୁ ଯାଇ ଘରି ପରସ୍ତିଆ ଭିଆଇପି ରୋଡ୍ ତିଆରି ହୋଇଛି । କୂଳେକୂଳେ ସହରର ସବୁଠୁ ସମ୍ଭ୍ରାନ୍ତ କୋଠୀମାନ ଗଢ଼ିଉଠିଛି । ତାଆରି ଭିତରେ କୋଉ ଗୋଟିକ କାଳେ ଫାତିମାର । ଥରେ ଅଧେ ମୁଁ କାହା ବାହାଘରର କି ଅନ୍ୟ ଭୋଜି ଉତ୍ସବ ଲାଗି ସେଇ ପାଖରେ ଥିବା ନବାବ୍ ମଞ୍ଜିଲ୍ ହୋଟେଲ୍‌କୁ ଯାଇଛି । ଗଳି ପାଖ ପୁରୁଣା ପାଚେରୀକୁ ପଛକରି ସେବର ଅରମା ହତା ଏଥର ସୁନ୍ଦର ବାଡ଼ ବଗିଚର ରୂପ ନେଇ ଆଗେଇ ଆସିଛି ଭିଆଇପି ରୋଡ୍ ଯାଏଁ । କାୟାକଳ୍ପ ହୋଇଯାଇଥିବା ହଭେଲୀଟି ସୁଶୋଭିତ ଫାଟକ ସହିତ ମୁହଁ କରିଚି ବଡ଼ ତାଲ୍‌ର ନୀଳ ବିସ୍ତାରକୁ । ସୁସଜ୍ଜିତ ଲାଉଞ୍ଜକୁ ଦେଖିଲେ କାହାରି ବିଶ୍ୱାସ ହେବନି ଯେ ଏ ଅଂଶଟି ନୂଆ ତିଆରି ହୋଇଛି । କାନ୍ଥରେ ହୋଟେଲ ମାଲିକଙ୍କ ସହ ଅନ୍ୟ ଅଭିଜାତ ବିଖ୍ୟାତ ଦିଶୁଥିବା ଚିହ୍ନା ଅଚିହ୍ନା ଲୋକଙ୍କ ଛବିସବୁ ଦେଖିଗଲି, କୋଉଠି କିନ୍ତୁ ଫାତିମାର ନାଁ କି ଫଟୋ ନାହିଁ ।

ଫାତିମା ସାଙ୍ଗରେ ଶେଷକୁ ଦେଖାହେଲା ଏଇ କିଛିଦିନ ତଳେ । ତା' ପୂର୍ବରୁ ଅବଶ୍ୟ ଭେଟ ହେଲାଣି ଫେସ୍‌ବୁକ୍‌ର ଭୂଇଁରେ । ତେବେ ସେଦିନ ମୋ ମୋବାଇଲ୍ ରିଂ ର ଜବାବ୍ ଦେଲାବେଳେ ଯେବେ ଶୁଣିଲି, "ମ୍ୟାଡ଼ାମ୍, ଚିହ୍ନିଲେ ଦେଖି କିଏ କହୁଛି ?" ସ୍ୱରଟି ଅବିକଳ ସେଇ ମୋର ଚିହ୍ନା ଝିଅଟିର ଥିଲା । ଜମା ଆମ୍ନା ସାମ୍ନା ନ ହୋଇ ଯୁଗଟିଏ ବିତି ସାରିଥିବା ଯୋଗୁଁ କଥାବାର୍ତ୍ତା ପଦେ ଦି ପଦଠୁ ଆଗକୁ ବଢ଼ୁନଥିଲା । ତାଙ୍କର ସଦ୍ୟ ତିଆରି ମଲ୍‌ର ଉଦ୍‌ଘାଟନ ଲାଗି ଫାତିମା ନିମନ୍ତ୍ରଣ କରୁଥିଲା ମୋତେ । କହିଲି, "ତମର ତ ଖୁବ୍ ଭୀଡ଼ଭାଡ଼ ହବ ନିଶ୍ଚେ । ସେଠିକି ଯାଇ ଆଉ ଅଧିକା କ'ଣ ହେବ ? ବରଂ ଏମିତି ଫୋନ୍ କରୁଥିବ ମଝିରେ ମଝିରେ ।"

ଉତ୍ତର ଦେଲାବେଳେ ତା' ଗଳାରେ ସେମିତି ଆଗ ଭଳି ଗୋଟେ ମିଠା ଖୋଲାପଣ ଥିଲା । "ନାଇଁ ମାଡ଼ାମ୍, ଟିକିଏ କେମିତି ଦେଖା ହୁଅନ୍ତା । ନିମନ୍ତ୍ରଣ ତ ଖାଲି ଗୋଟେ ଆଳ ଥିଲା, ଆପଣଙ୍କୁ ଫୋନ୍ କରିବାକୁ । ଯେବେ ଏଠିକି ଆସେ, ଆପଣ ମନେ ପଡ଼ନ୍ତି । ଦେଖା କରେନି, କାଇଁକି କେଜାଣି କେମିତି ମାଡ଼ିପଡ଼େ । ଥରେ ଥରେ ଭାବେ, ମୋ' କଥା କ'ଣ ଥରେହେଲେ ଆପଣଙ୍କ ମନକୁ ଆସୁନଥିବ ? ମୋର ସିନା ନିଜକଥା ଶୁଣେଇବା ଲାଗି ଆଉ କେହି ନାହାନ୍ତି ।"

ହସିଲି ମୁଁ କଥାଟାକୁ ହାଲୁକା କରିଦେବାଲାଗି । କହିଲି, "ହଉ । କୋଉଠି ଦେଖା

କରିବା କହ ତେବେ ।"

ତା' ଅନୁରୋଧ ଟାଳି ନପାରି ମଲ୍ ଉଦ୍‌ଘାଟନର ପୂର୍ବଦିନ ଦିପହରେ ମୋତେ ଯିବାକୁ ହେଲା ତା' ହୋଟେଲ୍‌କୁ । ତେବେ ଡ଼ାଇନିଂ ହଲ୍ ନୁହଁ, ତା'ର ବ୍ୟକ୍ତିଗତ ରିଜର୍ଭ ସୁଇଟ୍‌ରେ ଖାଇବା ବନ୍ଦୋବସ୍ତ କରିଥିଲା । ପ୍ରୌଢ଼ ବୟସରେ ବି ସୁନ୍ଦର ଦିଶୁଥିଲା ଫାତିମା । ଦେହର ରଙ୍ଗ ବରଂ ଫିଟିଯାଇଥିଲା, ଟିକିଏ ମୋଟେଇ ଯାଇଥିଲା ଏ ଭିତରେ । ପୂରା ହାତ ଆଉ ପାଦଯାଏଁ ଥିବା ହାଲ୍‌କା ରଙ୍ଗର ଗୋଟିଏ ସୁନ୍ଦର ପୋଷାକ ପିନ୍ଧିଥିଲା । କପାଳ ପାଖେ ପାଖେ ଅଳ୍ପ ଖିଏଲେଖାଁ ଧଳାବାଳ, ରଙ୍ଗ କରିନି । ହାବଭାବରେ ଦୃପ୍ତ ଆତ୍ମବିଶ୍ୱାସ । ସଳଖ ଚାହାଣୀରେ, ସାରାମୁହଁ ଖେଳିଯାଉଥିବା ହସରେ ତଥାପି ମୋର ସେଇ ଚିହ୍ନା ଝିଅଟି ହଜିଯାଇନାହିଁ ।

ତା' ଝିଅ ବାହାହେଇ ଫାତିମାର ନାତୁଣୀଟିଏ ହେଲାଣି, ପୁଅଟି କଲେଜ ମାଡ଼ିଲାଣି, ବ୍ୟବସାୟରେ ବି ମନ ଦେଲାଣି । ତେଣିକି କିଛି କଥାବାର୍ତ୍ତା ହେଲା ଯାହା ସବୁ ପ୍ରାୟ ମୁଁ ଜାଣିସାରିଥିଲି, ଶୁଣାଶୁଣିରେ । ଅନୁମାନରେ । ତା' ପରେ ହଠାତ୍ ପଚାରିଲା ସେ, "ଆପଣଙ୍କ ମନକୁ ଆସିଥାଇପାରେ ନା, ଯେ ନବାବ୍ ମଞ୍ଜିଲ କେମିତି ହୋଟେଲ୍ ହେଲା ?"

କିଛି କହିବାକୁ ନଥିଲା ମୋ' ପାଖେ । ଶୁଣିଥିଲି ମୁକ୍ତାର ରହୁଥିବା ସାନ ଅଂଶଟି ସମେତ ପୂରା ହୱେଲୀଟା କରଜରେ ବୁଡ଼ି ନିଲାମ ହେଲାବେଳେ ଫାତିମା ତାକୁ କିଣିନେଇଥିଲା ବୋଲି । ସେ ନେଇ ମନରେ ପ୍ରଶ୍ନ ଉଠିଲେ ବି ଉତ୍ତର ଦେବାଲାଗି କେହି ନଥାନ୍ତି । ଏଇ ବର୍ଷମାନଙ୍କ ଭିତରେ କେବେ କେମିତି ମୁକ୍ତାରକୁ ମୁଁ ଦେଖେ କଳାଭବନର ମଞ୍ଚରେ ବା କାବ୍ୟ-କବିତା ସଭାରେ । ତା' ହାବଭାବରେ ବେଶପୋଷାକରେ ଥାଏ ଗୋଟିଏ ଆତ୍ମମୁଗ୍ଧ କବି, ଆୱାରା ଶାୟରର ଛାପ । ଖବରକାଗଜରେ ଟିକିଏ ଅଧେ ଖବର ବି ଥାଏ କେବେ କେବେ ତା' ବିଷୟରେ । ତାକୁ ଜାଣିଥିବା ଆମ ଶୋଭା ମାଡ଼ାମ୍ କହନ୍ତି, "ସିଏ ଅଲଗା ରକମର ଲୋକ ଯିଏ ଯାହା କହନ୍ତୁ । ମୁକ୍ତାର ଆମର ପୂରା କଳାକାର । ମୁମ୍ବାଇରେ କ'ଣ ସମସ୍ତଙ୍କୁ ସକ୍‌ସେସ୍ ମିଳେ ।"

ଏଥର ଫାତିମା ମତେ ହତଚକିତ କରିଦେଇ କହିଲା, "ମୁକ୍ତାର କ'ଣ ସହଜରେ ରାଜି ହେଉଥିଲା ମାଡ଼ାମ୍, ନବାବ୍ ମଞ୍ଜିଲ୍‌କୁ ଦେବାଲାଗି । କେତେ ଚେଷ୍ଟାକରି ବିଚରା ହବିବ୍ ପୂରା ହୱେଲୀଟାକୁ ଖାଲି କରେଇଲେ । ଆଉ କେତେଟା ଦିନରେ ବିନା ମରାମତିରେ ଭାଙ୍ଗିରୁଜି ଯାଇଥାଆନ୍ତା । ନିଲାମ ହୋଇ ଯାଇଥାଆନ୍ତା । ଅଧେ ଲୋକ ତାଲା ପକେଇ ବିଦେଶ ପଳେଇ ଥିଲେ, ଆଉ କେତେ ଭାଗ ବନ୍ଧା ପଡ଼ିଥିଲା । ତା' ଅମ୍ମି ଚାଲିଗଲା ପରେ ମୁକ୍ତାର ତ ସେଠିକି ଯାଉନଥିଲା ସୁଦ୍ଧା । ଯାହାର ସବୁ ଘର ଥିଲା ସମସ୍ତଙ୍କୁ ଭଲ ଦାମ୍ ବି

ଆମେ ଦେଲୁ ।"

କ'ଣ ବା କହିବାକୁ ଥିଲା ମୋର । ନା କିଛି ପଚାରିବାକୁ ଥିଲା । ତେବେ ବୁଝିଲି, ମୁକ୍ତାର ବିଷୟରେ କିଛି କଥା କହି ଛାତି ହାଲୁକା କରିଦେବା ଲାଗି ଚାହୁଁଚି ଫାତିମା । ପଚାରିଲି, "ମୁକ୍ତାରର ଖବର ରଖିଚ ତାହେଲେ ?"

ଏଥର ଫାତିମା ମୋ ମୁହଁକୁ ଚାହିଁଲା, ତା'ର ପୁରୁଣା ଶ୍ରୋତାଟି ଅଛି ବୋଲି ବିଶ୍ୱାସ ପାଇବା ଲାଗି । ସେଇଠୁ ଗପିଗଲା । ମୁକ୍ତାରର ଜୀବନ ଯେମିତି ଥିଲା ସେମିତି ହିଁ ଉଣା ଅଧିକେ ଚାଲିଚି ଆଜି ବି । ବମ୍ବେର ରୂପେଲୀ ପରଦା ତାକୁ କେବେ ଧରା ଦେଲା ନାହିଁ, ଆଉ ସିଏ ବି ମାୟା ନଗରୀର ମୋହ ଏଯାବତ୍ ଛାଡ଼ି ପାରିଲା ନାହିଁ । କହୁକହୁ ଫାତିମା ହସିପକାଇଲା, ପିତାଳିଆ ଟିକିଏନାକୁ ବଙ୍କା ହସଟିଏ, "ବୁଝିଲେ ମାଡ଼ାମ୍, ଯେବେ ଦେଖାହୁଏ, ତା'ର ସେଇ ପୁରୁଣା ଡ଼ାଇଲଗ୍ । ନୂଆ ସ୍କ୍ରିପ୍ଟଟାଏ ଲେଖୁଛି । ଖାଲି ବୁଝିଲା ଭଳି ପ୍ରଡ୍ୟୁସରଟାଏ ମିଳିଯାଉ, ମୋ ଷ୍ଟ୍ରଗଲ୍‌ର ଅନ୍ତ ହେବ । ଷ୍ଟ୍ରଗଲ୍ ! ଏମିତି ମଣିଷକୁ କ'ଣ କହିବେ ଆପଣ ?"

ମୁଁ ପଚାରିପାରିଲିନି ତମେ କାହିଁକି ବା ଆଶା କରୁଥିଲ ବଦଳି ଯାଇଥିବ ବୋଲି ସେମିତି ମଣିଷଟା ?

କହୁଥିଲା ଫାତିମା, କେମିତି ଅନେକ ଥର ଚିଠି ଲେଖି ଅନୁରୋଧ କଲାପରେ, ବୁଝାସୁଝା କଲାପରେ ମୁକ୍ତାର ଶେଷକୁ ବିକ୍ରିବଟା ପ୍ରକ୍ରିୟାରେ ଭାଗନେବାକୁ ରାଜି ହୋଇଥିଲା । ହଓ୍ୱେଲୀରେ ତା'ର ସବୁଠୁ ବଡ଼ ଭାଗ ଥିଲା ବୋଲି ହବିବ୍ ତାକୁ ହୋଟେଲ୍‌ର ଅଂଶୀଦାର ବି କରିଛନ୍ତି । ତେବେ ଫାତିମାକୁ ଜଣା ଯେ ସେତକ ଲାଗି ମୁକ୍ତାର କୃତଜ୍ଞ ନୁହେଁ କେବେବି । ସମାଜଠାରୁ ତା'ର ପ୍ରାପ୍ୟ ଯେତିକି ସେ ତୁଳନାରେ ଇଏ କିଛି ନୁହେଁ ବୋଲି ସେ ବୋଧେ ବିଚାରୁ ଥିଲା ।

ପୁଣିଥରେ ମନରେ ଉଠୁଥିବା ପ୍ରଶ୍ନକୁ ମୁଁ ଚାପିନେଲି, ଯେ ନବାବ୍ ମଞ୍ଜିଲ୍ ଯଦି ମୁକ୍ତାରର ହୋଇନଥାନ୍ତା, ତଥାପି କ'ଣ ତମେ ତାକୁ ପାଇବା ଲାଗି ଏତେ ସାଧ୍ୟ ସାଧନ କରିଥାନ୍ତ ଫାତିମା ?

ଫାତିମାର ଗପ ସରୁନଥିଲା, "ତାକୁ କେତେ ବୁଝେଇ ରାଣ ନିୟମ ପକେଇ କହିଛି ମାଡ଼ାମ୍, ଟଙ୍କା ଯାକ ଥିଏଟର୍ ଡ୍ରାମାରେ ଉଡ଼େଇ ନଦେଇ ବ୍ୟାଙ୍କରେ ରଖି ଟିକିଏ ଭଲରେ ଚଳିବାକୁ । ଆହୁରି କହିଛି, ଏଥର ବାହା ହୋଇପଡ଼ ମୁକ୍ତାର । ଯେତିକି ଆୟ ହେଉଛି ତମ ବୀବୀ ଆସିଲେ ସେତିକିରେ ଆହୁରି ଭଲ ଚଳେଇନେଇ ପାରିବ । ଏଣିକି ଦେହ ପା'କୁ ଜଗି ତମର ଭଲରେ ଦିନ କାଟିବା କଥା ନା ନୁହଁ ? ହେଲେ ସିଏ କାହା କଥା ଶୁଣିଛି ଯେ ଆଜି ଶୁଣିବ ?"

# ହାତ ପାପୁଲିରେ ଖରା

ବାଲକୋନିରୁ ଅନେଇଛି ଫାତିମା, ବିଶିଷ୍ଟ ଅତିଥିମାନଙ୍କ ଗାଡ଼ିସବୁ ଆସି ଗେଟ୍ ସାମ୍ନାରେ ରହୁଛି । ରାଷ୍ଟ୍ର ହୋଇଯାଇଥିଲା ବିଗ୍ ବି ଆସୁଛନ୍ତି ବୋଲି, ହେଲେ ନା, ସେ ତ କାଳେ ଶ୍ୱଶୁର ଘର ମାଡ଼ନ୍ତି ନି । ଏ ସହରକୁ ଆସିବେ କେମିତି ?

"ଜୟା ଦି ଆସିବାର ଥିଲା ପରା ଆକା ?"

"ନାଇଁ ମ, ଆସିଲେନି । କାଳେ ତାଙ୍କ ଝିଅ ଜୋଇଁ ଆସି ପହଞ୍ଚିଛନ୍ତି, ନହେଲେ ଆସିଥାନ୍ତେ ।"

ଝିଅ, ଝିଆରୀ, ଭାଉଜ ସଭିଏଁ ଥରେଲେଖାଁ ଆସି ଡ଼ାକିଗଲେଣି । ଅଳ୍ପବୟସୀ ଝିଅମାନେ ସାମ୍ନାପାଖ ସାମିଆନାକୁ ଗଲେ ବି ବୟସ୍କ ସ୍ତ୍ରୀ ମାନଙ୍କ ଲାଗି ଆଜି ବି ଅଲଗା ଜାଗା ରହିଚି, ପର୍ଦା ଆଢୁଆଳରେ । ପଟୌଦୀ ସାହାବ ଆସୁଚନ୍ତି, ଶର୍ମିଳା କାଳେ ବେଗମ୍‌ମାନଙ୍କ ସାଙ୍ଗେ ବସିବେ ଆଢୁଆଳରେ । ଏଇ ସହରର ବୋହୂ ପରା, କେମିତି ପଦାଟାରେ ବସନ୍ତେ ଯେ ? ଅପେକ୍ଷା କରି ବସିଚନ୍ତି ସମସ୍ତେ, ମଲ୍‌ର ଉଦ୍‌ଘାଟନ ଲାଗି ମୁଖ୍ୟମନ୍ତ୍ରୀ ଆସିବେ ।

ନାତୁଣୀ ମୁହଁରେ ଦୁଧ ବୋତଲ ନେଇ ଫାତିମା କୋଳରେ ଶୋଇଗଲାଣି । ବାହାରେ ଏତେ ଆଲୁଅ ରୋଶଣୀ ଥାଇ ବି ବାଲକନି ଲାଇଟ୍‌ଟା କେହି ଜଳେଇ ନାହାନ୍ତି, ଅନ୍ଧାରରେ ଥାଇ ବାହାରକୁ ଚାହିଁବାକୁ ଭଲଲାଗୁଚି । ତଳର ଗହଳଚହଳ ବଢ଼ି ବଢ଼ି ଚାଲିଚି । ହେଲେ ପୁରୁଣା ବନ୍ଧୁ ସେଭଳି କେହି ଦିଶୁନାହାନ୍ତି । ମିଶ୍ର ମାଡ଼ାମ୍‌ଙ୍କ ସାଙ୍ଗେ ଦେଖା ହେଇଥିଲା କାଲି । ଆଜି ଆଉ ତାଙ୍କର ଆସିବାର ନାହିଁ । ଅନେକ କଥା କୁହାଯାଇପାରିଲାନି ।

ମନରେ ଗୋଳେଇ ଘାଣ୍ଟି ହେଉଥିଲା, ଆହୁରି କେତେ ରହିଗଲା କହିବାକୁ । ତାଙ୍କୁ ବାଟେଇଦେଇ ଗଲାବେଳେ ଫାତିମା ଅପ୍ରସ୍ତୁତ ହସ ହସି କହିଥିଲା, "ଆପଣ ତ କେତେ ଗପ ଲେଖନ୍ତି ମାଡ଼ାମ୍ । ଥରେ ଥରେ ମୁଁ ଭାବେ, ମୋତେ ନେଇ କାଳେ ଗପ ଲେଖିଦେବେ, କିଏ ଜାଣିଚି । ଭାବିଲେ ମୋତେ କେମିତି ହାଲୁକା ହେଇଗଲା ଭଳି ଲାଗେ ।"

ତେବେ ଫାତିମା ଜାଣେ, ଗପରେ ସେ ଯାହା ବା ଲେଖିବେ, ସିଏ କ'ଣ ତାଆରି କଥା ହେଇ ରହିବ ? ଯେତିକି କହିଚି, ଯେତିକି ସେ ବୁଝିଲେ ବା ମନେରଖିଲେ, ପୁଣି ଯେତିକି ସେ ଆଉରି ନିଜେ ଭାବି ମିଶେଇଲେ ତହିଁରେ, କଳ୍ପନା ଜଳ୍ପନା ସବୁ ମିଶି ତ ଗପ କି ନଭେଲ୍ କିଛି ଗୋଟେ ଲେଖିବେ । ହେଲେ ଆଉରି କେତେ କଥା ତ କହିହେଲା ନାଇଁ, ମୁହଁକୁ ପଇଟିଲା ନାହିଁ । ସବୁକଥା କ'ଣ କହିହୁଏ ? ସେସବୁ କ'ଣ ଭାବିବାକୁ କଳ୍ପନା କରିବାକୁ ତାଙ୍କ ମନରେ ଜୁଟିବ ?

ମୁକ୍ତାର ବିଷୟରେ ସେ କ'ଣ କେମିତି ଲେଖିବେ ? ସେଭଳି ଲୋକକୁ ନିଜେ ନ ଜାଣିଲେ କ'ଣ ଜାଣିହେବ ତା' ଭିତର ମଣିଷଟିକି ? କୋଉ ମଣିଷଟିକୁ ବା ଜାଣିହୁଏ ସତରେ ? ଭଲା ଗୋଟିଏ ହେଲେ ମଣିଷକୁ ଗୋଟିପଣେ ଜାଣିହୁଏ ? ନା ବୁଝେଇହୁଏ ଅପରକୁ ? ତଥାପି ।

ଭାବିହେଉଥିଲା ଫାତିମା, କହିଥାଆନ୍ତା କି, ମୁକ୍ତାରକୁ ଭେଟିବାର ଲୋଭ ଛାଡ଼ିପାରିନଥିଲା ସେ ଥରେ । ସେଇଥି ଲାଗି ହଭେଲୀକୁ ହୋଟେଲ୍ କରିବା ଆଳରେ ଯାଇ ଭେଟିଥିଲା । କି ମତଲବ ମୁଣ୍ଡ ଭିତରେ ରହିଥାଏ ହୁଏତ ନିଜକୁ ବି ଜଣାନଥାଏ । ଆଉ କାହାକୁ କଣ କହିହେବ ? ମୁକ୍ତାର ନିଜେ ତ ଭାବିଚି ଯେ ସବୁ ଫାତିମାର ଦୋକାନୀ ମନ ଛଡ଼ା ଆଉ କିଛି ନୁହଁ ବୋଲି । ନବାବ୍ ମଞ୍ଜିଲର କିଛି ଭାଗ କିନ୍ତୁ ତଥାପି ମୁକ୍ତାରର ହେଇ ରହିଲା । ଖାଲି ହୋଟେଲ୍‌ର ଅଂଶୀଦାର ହୋଇ ନୁହଁ, ସେଇ କଣିକିଆ ତାଆରି ପୁରୁଣା ଘର ଦି' ବଖରା ବଦଳିଯାଇ ତିଆରି ହେଇଥିବା ବିରାଟ ସୁଇଟ୍ ମୁକ୍ତାର ନାଆଁରେ ହିଁ ରହିଚି ।

ମୁକ୍ତାରର ସବୁ ସର୍ତ୍ତ ରଖିଚି ଫାତିମା । ସ୍ୱାମୀକୁ ରାଜି କରେଇବାରେ କିଛି ଅସୁବିଧା ହେଇନି । କୋଠାଟିକୁ ପୁଣି ତିଆରି କରି ଗଢ଼ିବାକୁ ସଜେଇବାକୁ ଚେଷ୍ଟା କରାଯାଇଚି ଯେମିତି ଦିନେ କେବେ ହୁଏତ ନବାବ୍ ମଞ୍ଜିଲର ରୂପ ହେଇଥିବ । ତା' ବାହାର ଭିତର ସବୁ ସାଜସଜା କରି ଆଧୁନିକ କରାଯାଇଚି । ମୁକ୍ତାର ତା'ର ଡ୍ରାମା ଥିଏଟର କରିବାଲାଗି ଯେବେ ମୁମ୍ବାଇରୁ ଆସେ, ରହେ ତାଆରି ଭାଗର ପୁରୁଣା ଘରେ ହେଇଥିବା ନୂଆ ସୁଇଟ୍‌ରେ । ଏ ଗପ ଲେଖିବା ଲୋକ କ'ଣ ସେସବୁ କଳ୍ପନାକରି ଲେଖିପାରିବ ? ନିଜେ ଫାତିମା ବା କାହାକୁ କହିପାରିବ ସେକଥା ?

ଗପ ଲେଖିଲା ଲୋକ ଲେଖିବ ଯାହା ତା' ମନକୁ ପାଇଲା । ଲୋକ ଦେଖିଲା ଶୁଣିଲା ମତେ, ନ ଦେଖିଲା ନ ବୁଝିଲା ମତେ ବି । ଆଖପାଖର ମଣିଷମାନେ ବଞ୍ଚୁଥିବା, ଭରସା କରୁଥିବା ସଂପର୍କ ସବୁକୁ ସେ ଯେମିତି ଦେଖିଚି ଜାଣିଚି, ସେଇଭଳି । ତେବେ ମଣିଷ ସଂପର୍କ କେତେ ପ୍ରକାର ତା'ର କିଛି ଠିକଣା ଅଛି ? ଆବଶ୍ୟକତା ସବୁର ବି । କେତେ ପ୍ରକାର ପୁଣି

ସେସବୁର ନାଁ । ଦେହକୁ ଦେହର ଡ଼ାକ । ଏକ ହୋଇଯିବାଲାଗି ଦେହର ବିଭିନ୍ନତା ପାଶୋରି ଯିବା ।

ହାତ ପାପୁଲିର ଖରା ସିଏ । ଧରିବାକୁ ଯାଉ ଯାଉ ଏକାଠି ହେଉଥିବା ଦେହ ପାଖରୁ କୋଉ ଖଣ୍ଡରେ ସେ ହୁଏତ ଖସି ଚାଲିଯାଇଥାଏ ଅନ୍ୟ କେଉଁଠିକି । ନିତିଦିନିଆ ହେଇଯାଏ ଶେଷରେ ସବୁ ଆବଶ୍ୟକତାର ରୂପ । ତଥାପି କଦବା କେବେ କିଛି କିଛି ଲିଭିଯିବାକୁ ନାହିଁ କରେ । ଚିରଦିନ ଛାତି ଭିତରେ ଭୋକ ଆକୁଳ କରୁଥାଏ କ'ଣ ଟିକିଏ ପାଇଲାଲାଗି ।

ତଳୁ କିଏ ଆସି କହିଦେଇଗଲା, ଜାବେଦ୍ ଭାଇ ଆସିଲେଣି । ନିଜ ସହର ପରା, ଏଇଠି ବଢ଼ିଲେ, ପାଠ ପଢ଼ିଲେ । କୋଉଠିରୁ ଯାଇ କୋଉଠିକି ପହଞ୍ଚିଲେ । ଆସନ୍ତେନି କେମିତି ? ଶାୟରୀ କରିବେ ସେ ଝଲମଲ ଶାମିଆନା ତଳେ । କିଲିକାଲିଆ ହେଇ ଝିଅସବୁ ଧାଇଁଗଲେ ତଳକୁ । କିଏ ଜଣେ ପାଟିକଲାଣି, "ଶବାନା ଆସିଚନ୍ତି ନା ଏକା ମ ?"

ନବାବ୍ ମଞ୍ଜିଲ ହୋଟେଲ୍‌ରେ ସିନେମା ସୁଟିଂଲାଗି ଆସି ରହିଛନ୍ତି ବମ୍ବେରୁ ବଡ଼ ଗୋଟିଏ ଟୀମ୍, ସେମାନଙ୍କ ଗାଡ଼ି ମାନ ଗୋଟି ପରେ ଗୋଟି ଆସି ଭିଡ଼ିଲାଣି ସେପାଖ ପାର୍କିଂରେ । ଭୀଡ଼ରୁ କାହାର ଜୟଜୟକାର ଶୁଭିଲାଣି । ଛାଇଅନ୍ଧାରରେ ମୋବାଇଲ ସ୍କ୍ରିନ୍‌କୁ ଚାହିଁ ପୁଣିଥରେ ଫାତିମା ଫୋନ୍ ଲଗେଇଲା ।

ସୁଇଚ୍ ଅଫ୍ ଅଛି ମୁକ୍ତାରର ମୋବାଇଲ ।



ସତୁରି ଦଶକର ଆରମ୍ଭରେ ଯଶୋଧାରା ବେହେରା (ମିଶ୍ର)ଙ୍କ ଗଳ୍ପମାନ ଝଙ୍କାର, ସମାବେଶ, ମାନସ, ସୁଚରିତା ଓ ଗଳ୍ପ ଆଦି ତତ୍କାଳୀନ ଶ୍ରେଷ୍ଠ ଓଡିଆ ପତ୍ରିକାମାନଙ୍କ ପୃଷ୍ଠାକୁ ଏକ ନିଜସ୍ୱ ସ୍ୱାଦ ନେଇ ଆସିଥିଲା । ସେଇଦିନୁ ଯଶୋଧାରା ମିଶ୍ର ଓଡିଆ ସାହିତ୍ୟରେ ଏକ ସୁପରିଚିତ ଉପସ୍ଥିତି । ପାଠକୀୟ ସ୍ୱୀକୃତି ତାଙ୍କୁ ପୁରସ୍କାର ଓ ସମ୍ମାନ ସହ ଅନ୍ୟ ଅନେକ ରୂପରେ ମିଳିଛି । ଅଧିକାଂଶ ଭାରତୀୟ ଭାଷା ତଥ । କେତେକ ବିଦେଶୀ ଭାଷାରେ ମଧ୍ୟ ଲେଖାମାନ ଅନୁଦିତ ହୋଇଛି । ଇଂରାଜୀରେ ଅନୁଦିତ ଗଳ୍ପ କବିତାମାନ ବିଶେଷ ଅନ୍ତଃରାଷ୍ଟ୍ରୀୟ ତଥା ଆନ୍ତର୍ଜାତିକ ସଂକଳନମାନଙ୍କରେ ସ୍ଥାନ ପାଇଛି ।



ରେଭେନ୍ସା ଓ ବାଣୀବିହାରରୁ ଶିକ୍ଷା ସମାପ୍ତି ପରେ ମଧ୍ୟପ୍ରଦେଶର ଶିକ୍ଷା ବିଭାଗରେ ଇଂରାଜୀ ଅଧାପନା କରି ସେ ଭୋପାଳର ସରୋଜିନୀ ନାଇଡୁ କଲେଜରେ ପ୍ରଫେସର ପଦରୁ ଅବସର ନେଇଛନ୍ତି । ଜବଲପୁର ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି., ୟୁ.ଜି.ସି.ର ସିନିୟର ରିସର୍ଚ୍ଚ ଫେଲୋସିପ୍ ଏବଂ ପ୍ୟାରିସ୍‌ର ମେସଁ ଦ ସାଏନ୍ସରେ ଭିଜିଟିଂ ଫେଲୋସିପ୍ ପ୍ରାପ୍ତି ସହ ଶିମଳାର ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଏଡ୍‌ଭାନ୍ସ ଷ୍ଟଡିରେ ପୋଷ୍ଟ ଡକ୍ଟରାଲ୍ ଫେଲୋ ପଦରେ ରହିଛନ୍ତି। ଦେଶବିଦେଶର ସାହିତ୍ୟ ସଭାମାନଙ୍କୁ ସେ ଆମନ୍ତ୍ରିତ ହୋଇଛନ୍ତି । କେନ୍ଦ୍ର ସାହିତ୍ୟ ଏକାଡେମୀର ଇଣ୍ଡିଆନ୍ ଲିଟରେଚର ପତ୍ରିକାର ସେ ହେଉଛନ୍ତି ପ୍ରଥମ ମହିଳା ସଂପାଦକ ।

'ହାତପାପୁଲିରେ ଖରା' ଉପନ୍ୟାସଟିର କିୟଦଂଶ ସୁନିଲ ପୃଷ୍ଟିଙ୍କ ଦ୍ୱାରା ସଂପାଦିତ 'ସାହିତ୍ୟ ପୃଥିବୀ' ପତ୍ରିକାରେ ତଥା ସମଗ୍ର ଉପନ୍ୟାସଟି 'ଓଦା ମାଟିର ପାଦଚିହ୍ନ' ରୂପେ ଧାରାବାହିକ ଗୌରହରି ଦାସଙ୍କ ଦ୍ୱାରା ସଂପାଦିତ ସାହିତ୍ୟ ପତ୍ରିକା 'କଥା'ରେ ପ୍ରକାଶିତ ହୋଇଥିଲା ।

**ପ୍ରକାଶିତ କୃତି**

- ହାତପାପୁଲିରେ ଖରା (ଉପନ୍ୟାସ)
- ସମୁଦ୍ରକୂଳ ଘର (ଗଳ୍ପ ସଂକଳନ)
- ଏ ବଣ ମୋ ଲାଗି ନୂଆ (କବିତା ସଂକଳନ)
- ମୁହଁ ସଂଜ (ଗଳ୍ପ ସଂକଳନ)
- ଇଷ୍ଟରୂପ (ଉପନ୍ୟାସ)
- ଶ୍ରେଷ୍ଠ ଗଳ୍ପ (ଚୟନିତ ଗଳ୍ପ ସଂକଳନ)
- ରେଖାଚିତ୍ର (ଗଳ୍ପ ସଂକଳନ)
- ଦେଖଣାହାରି (ଗଳ୍ପ ସଂକଳନ)
- ପକ୍ଷୀଜନ୍ମ (ଉପନ୍ୟାସ)
- ଜହ୍ନରାତି (ଗଳ୍ପ ସଂକଳନ)
- ଦ୍ୱୀପ ଓ ଅନ୍ୟାନ୍ୟ ଗଳ୍ପ (ଗଳ୍ପ ସଂକଳନ)
- ନିଶୁଣିର ପାହି (ମୂଳ ଲେଖକ-ଶିବଶଙ୍କର ପିଲ୍ଲେ
- ବିଧ୍ୱସ୍ତ ନାରୀଟିଏ (ମୂଳ ଲେଖିକା:ସିମୋନ ବ୍ୟୋଓ୍ୱା
- ସେତୁବନ୍ଧ (ହିନ୍ଦୀ ଅନୁବାଦକ ରାଜେନ୍ଦ୍ର ପ୍ରସାଦ ମିଶ୍ର
- ଯାତ୍ରୀକ (ହିନ୍ଦୀ ଅନୁବାଦକ ପୂର୍ଣ୍ଣଚନ୍ଦ୍ର ରଥ)
- ଯଶୋଧାରା ମିଶ୍ର : ଷ୍ଟୋରିଜ୍ (ଗଳ୍ପ ସଂକଳନ )
- ଦ୍ୱୀପ, ଜହ୍ନରାତି, ଦେଖଣାହାରୀ (କଥା ସମଗ୍ର-୧)

**HATA PAPULIRE KHARA**
Novel by Yashodhara Mishra,
Published by Paschima Publications,
1882, Nayapalli, Bhubaneswar-12, Odisha
1st Edition: 2017



978-81-89098-68-8

₹. 270.00